# ପଦ୍ମନାଭ ନାରାୟଣ ଦେବ
# ଗ୍ରନ୍ଥାବଳୀ



ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ



ଓଡ଼ିଆ ନାଟକ ଓ ରଙ୍ଗମଞ୍ଚର ବିକାଶ କ୍ଷେତ୍ରରେ ପାରଳାଖେମୁଣ୍ଡିର ରାଜଭ୍ରାତା ପଦ୍ମନାଭ ନାରାୟଣଙ୍କ ନାମ ଅବିସ୍ମରଣୀୟ। ପଦ୍ମନାଭ ରଙ୍ଗାଳୟର ପୃଷ୍ଠପୋଷକତା ସହିତ ସେଥିରେ ଅଭିନୀତ ହେବାପାଇଁ ସେ ରଚନା କରିଥିଲେ ବହୁ ନାଟକ। ଦର୍ଶକମାନଙ୍କ ନାଟକୀୟ ରୁଚି ପରିବର୍ତ୍ତନ ପାଇଁ ଏଗୁଡ଼ିକର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ। ସେହି ଦୁଷ୍ପ୍ରାପ୍ୟ ନାଟକଗୁଡ଼ିକ ସହିତ ରାଜକବିଙ୍କ ଅନ୍ୟାନ୍ୟ ରଚନା ଓ ତାଙ୍କ ଜ୍ୟେଷ୍ଠଭ୍ରାତା ଗୌରଚନ୍ଦ୍ର ଦେବଙ୍କ ରଚନାବଳୀକୁ ନେଇ ଏହି ସଙ୍କଳନଟି ପ୍ରସ୍ତୁତ କରାଯାଇଛି।

# ପଦ୍ମନାଭ ନାରାୟଣ ଦେବ ଗ୍ରନ୍ଥାବଳୀ


ସଂପାଦକ

ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ



ପ୍ରକାଶକ :

**ଜଗନ୍ନାଥ ରଥ**

ପୁସ୍ତକ ପ୍ରକାଶକ ଓ ବିକ୍ରେତା,

ବିନୋଦ ବିହାରୀ, କଟକ–୨

# ପଦ୍ମନାଭ ନାରାୟଣ ଦେବ ଗ୍ରନ୍ଥାବଳୀ


ସଂପାଦକ :

**ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ**

ଯତିରାଜ ନିକେତନ

୧-ଅଶୋକ ନଗର

ବ୍ରହ୍ମପୁର-୭୬୦୦୦୪

ଦୂରଭାଷ : ୯୪୩୮୦୩୮୯୯୬

ପ୍ରକାଶକ :

**ଜଗନ୍ନାଥ ରଥ**

ପୁସ୍ତକ ପ୍ରକାଶକ ଓ ବିକ୍ରେତା

ବିନୋଦ ବିହାରୀ, କଟକ-୨

ଅକ୍ଷରସଜ୍ଜା

ସିଗ୍‌ମା କଂପ୍ୟୁଟରସ୍‌

ରାଜାବଗିଚା, କଟକ

ମୁଦ୍ରଣ :

ପଞ୍ଚସଖା ପ୍ରକାଶନ

ସୂତାହାଟ, କଟକ

ପ୍ରଚ୍ଛଦ

ମାନସ ଜେନା

ପ୍ରଥମ ସଂସ୍କରଣ :

**୨୦୧୧**

ମୂଲ୍ୟ: ଟ. ୩୫୦/-


**PADMANABHA NARAYANA DEVA GRANTHABALI**


Edited by:

**Prof. Sudarsana Acharya**

Yatiraj Niketan, 1-Ashok Nagar

Berhampur-4, Cell - 9438038996

Publisher

**M/s Jagannath Ratha**

Publisher & Book-seller

Binod Bihari, Cuttack-2

Printed at

**Panchasakha Prakashan**

Sutahat, Cuttack.

First Edition : **2011**

Cover design:

**Manas Jena**

Price :

**Rs. 350/-**

# ସୂଚିପତ୍ର

**ସମ୍ପାଦକଙ୍କ ଲେଖନୀରୁ–**

ରାଜନୈତିକ ଓଡ଼ିଶାଠାରୁ ବିଚ୍ଛିନ୍ନ ହୋଇ ରହିଥିବା ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକୀଭୂତ କରିବା, ପଡ଼ୋଶୀମାନଙ୍କ ପ୍ରତ୍ୟକ୍ଷ ଓ ପରୋକ୍ଷ ଆକ୍ରମଣରୁ ଓଡ଼ିଶାର ଜନସାଧାରଣ ତଥା ଓଡ଼ିଆ ଭାଷା ଓ ସାହିତ୍ୟକୁ ସୁରକ୍ଷା ଦେବା, ଓଡ଼ିଆମାନଙ୍କ ମନରେ ଆତ୍ମସଚେତନତା ସୃଷ୍ଟିକରି ସ୍ୱାଭିମାନକୁ ଜାଗ୍ରତ କରିବାପାଇଁ ଊନବିଂଶ ଶତାବ୍ଦୀର ପରାର୍ଦ୍ଧରେ ଯେଉଁ ବୁଦ୍ଧିଜୀବୀମାନେ ତତ୍‌କାଳୀନ ରାଜନୈତିକ ଓଡ଼ିଶାର ଦୂରଦୂରାନ୍ତରେ ରହି ଉଦ୍ୟମ ଆରମ୍ଭ କରିଥିଲେ, ସେମାନଙ୍କ କୃତି ଓ କୀର୍ତ୍ତି ସମ୍ପର୍କରେ ଅବହିତ ନ ହେଲେ ଓଡ଼ିଶା ଓ ଓଡ଼ିଆ ସାହିତ୍ୟର ନିରପେକ୍ଷ ଓ ପ୍ରାମାଣିକ ଇତିହାସ ସଂକଳନ ସମ୍ଭବ ନୁହେଁ । ଦୁଃଖର କଥା ଏପର୍ଯ୍ୟନ୍ତ ଓଡ଼ିଶା କହିଲେ କଟକ, ପୁରୀ ଓ ବାଲେଶ୍ୱରକୁ ହିଁ ବୁଝାଯାଇଥାଏ । ରାଜନୈତିକ, ସାମାଜିକ, ସାଂସ୍କୃତିକ ଇତିହାସ ପ୍ରଣୟନବେଳେ ଐତିହାସିକମାନେ ଏହି ତିନୋଟି ଅବିଭକ୍ତ ଜିଲ୍ଲା ଉପରେ ଅଧିକ ଗୁରୁତ୍ୱାରୋପ କରିଥାଆନ୍ତି । ଏଥିପାଇଁତ ଷଢ଼େଇକଳା, ଖରସୁଆଁ, ବସ୍ତର, ମିଦିନାପୁର, ମଞ୍ଜୁଷା, ତରଳା, ଟିକିଲୀ ଆଦି ବିଚ୍ଛିନ୍ନାଞ୍ଚଳରୂପେ ପରିଚିତ ହୋଇ ନେତାମାନଙ୍କ କୁମ୍ଭୀର କାନ୍ଦଣା ଓ ଆତ୍ମପ୍ରତାରଣା ପାଇଁ ଉପଭୋଗ୍ୟ ଉପାଦାନ ଯୋଗାଇ ଚାଲିଛି । ଯେଉଁମାନେ ଏସବୁ ଅଞ୍ଚଳରେ ରହି ନିଃସ୍ୱାର୍ଥପର ଓ ନିଷ୍ଠାପରଭାବେ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ପାଇଁ ଆପ୍ରାଣ ଉଦ୍ୟମ କରୁଥିଲେ, ସେମାନେ ଆଜି ବିସ୍ମୃତି ଗର୍ଭରେ ବିଲୀୟମାନ । ପାରଳାଖେମୁଣ୍ଡି ଏବଂ ଖଲ୍ଲିକୋଟର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଓ ରାମଚନ୍ଦ୍ର ମର୍ଦ୍ଦରାଜ ଦେବ ଆଧୁନିକ ଓଡ଼ିଶାର ନିର୍ମାତା । ପବିତ୍ର ସ୍ମୃତିଚାରଣାବେଳେ ସେମାନଙ୍କ ପୃଷ୍ଠଭୂମିରେ ଯେ ଏକ ସୁଦୀର୍ଘ ପରମ୍ପରା ରହିଥିଲା, ତା' ସମ୍ପର୍କରେ ଆମେ ପ୍ରାୟ ନିସ୍ପୃହ । ଏମାନଙ୍କ ମାନସିକତାକୁ ଜାଣିବାକୁ ହେଲେ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ, ପଦ୍ମନାଭ ଦେବ, ହରିହର ମର୍ଦ୍ଦରାଜ ଏବଂ ଏମାନଙ୍କ ପୂର୍ବପୁରୁଷଙ୍କ ଜାତୀୟ ଭାବନାକୁ ଆକଳନ କରିବା ଆବଶ୍ୟକ । କିନ୍ତୁ ପରିତାପର ବିଷୟ ଏମାନଙ୍କ ପରିଚୟ ବିସ୍ମୃତ ରଚନାବଳୀ ଓ ପତ୍ରପତ୍ରିକା ମଧ୍ୟରେ ଦୁର୍ଲ୍ଲଭ ଓ ବିଲୁପ୍ତପ୍ରାୟ । ଏସବୁକୁ ସଂଗ୍ରହ

କରିବାର ଆବଶ୍ୟକତା ଓ ଉପାଦେୟତା ସମ୍ପର୍କରେ ପ୍ରଥମେ ଯେଉଁ ପୂଜ୍ୟ ଅଧ୍ୟାପକ ମୋ ମନରେ ଆଗ୍ରହ ସୃଷ୍ଟି କରିଥିଲେ ଆଜିର ଏହି ଗ୍ରନ୍ଥ ପ୍ରକାଶନବେଳେ ମୁଁ ଆଧୁନିକ ଓଡ଼ିଆ ସମାଲୋଚନା ସାହିତ୍ୟର ସେହି ଯୁଗ ପ୍ରବର୍ତ୍ତକ ସ୍ୱର୍ଗତ ଡକ୍ଟର ନଟବର ସାମନ୍ତରାୟଙ୍କ ଅମରଆତ୍ମା ନିକଟରେ ଭକ୍ତିପୂତ ପ୍ରଣତି ଜ୍ଞାପନ କରୁଛି ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ପାରଳାଖେମୁଣ୍ଡିକୁ ଓଡ଼ିଶା ସହିତ ସଂଯୁକ୍ତ କରିବା ପୂର୍ବରୁ ଏହାକୁ ଏକ ଓଡ଼ିଆ ଅଞ୍ଚଳରୂପେ ଅକ୍ଷୁଣ୍ଣ ରଖିବାପାଇଁ ଯେଉଁ ମହାତ୍ମାମାନେ ତଥାକଥିତ କେନ୍ଦ୍ରାଧିପତି ଓଡ଼ିଆ ବୁଦ୍ଧିଜୀବୀମାନଙ୍କ ସମସ୍ତ ଉପହାସ, ପ୍ରତାରଣା ତଥା ପ୍ରତିକୂଳତାର ଶରବ୍ୟ ହୋଇ ସୁଦ୍ଧା ଅକ୍ଳାନ୍ତ ଉଦ୍ୟମ କରିଥିଲେ, ସେମାନଙ୍କ ମଧ୍ୟରେ ରାଜଭ୍ରାତା ପଦ୍ମନାଭ ଦେବଙ୍କ ନାମ ସର୍ବାଦୌ ସ୍ମରଣଯୋଗ୍ୟ । ପାରଳାଖେମୁଣ୍ଡିରେ ଏକ ସାଂସ୍କୃତିକ ବାତାବରଣ ସୃଷ୍ଟିକରି ଓଡ଼ିଆମାନଙ୍କ ସ୍ୱାଭିମାନକୁ ଜାଗ୍ରତ ରଖିବାପାଇଁ ସେ ଆପ୍ରାଣ ପ୍ରୟାସ କରୁଥିଲେ । କିନ୍ତୁ ଆଜି ସେ ପାରଳାର ରାଜା ନା ପାରଳା ଗଜପତି, ପାରଳା ଅଧୀଶ୍ୱର ନା ପାରଳା ମହାରାଜା, ରାଜା, ନରପତି, ପାରଳାଧିପତି, ପାରଳା ନୃପତି, ନାଟ୍ୟାମୋଦି ରାଜା, ଗାନ୍ଧାର ବିଦ୍ୟା କେନ୍ଦ୍ରାଧିପ ରାଜା ସାହେବ, ନା ରାଜଭ୍ରାତା ଆଲୋଚକମାନେ ସଠିକ୍‌ଭାବେ ନିର୍ଦ୍ଧାରଣ କରିପାରୁ ନାହାଁନ୍ତି । ତାଙ୍କ ରଚନାବଳୀ ଦୁଷ୍ପ୍ରାପ୍ୟ, ଏଥିପାଇଁ ତାଙ୍କ ଜୀବନୀ, ସାହିତ୍ୟ ସାଧନା, ରଚନାବଳୀ ଓ ଜାତୀୟ କାର୍ଯ୍ୟକ୍ରମର ଆଲୋଚନା ଖଣ୍ଡିତ ଓ ଅସଂପୂର୍ଣ୍ଣ । ଏହି ଅଭାବ ପୂରଣ ପାଇଁ ଆମର ଏ ଉଦ୍ୟମ । ଏହା ମଧ୍ୟ ଯେ ସଂପୂର୍ଣ୍ଣ, କହିବା ଦୁଃସାହସ ଆମର ନାହିଁ । ତଥାପି ଏଇ ପ୍ରବାଦ ପୁରୁଷଙ୍କୁ ଚିହ୍ନାଇବାରେ ଏ ସଂକଳନ ନିଶ୍ଚିତଭାବେ ସହାୟକ ହେବ ।

ବିଶାଖାପାଟଣାସ୍ଥିତ ଉତ୍କଳ ସମ୍ମିଳନୀ ପାଠାଗାରର ତତ୍ତ୍ୱାବଧାରକ ଶ୍ରୀଯୁକ୍ତ ଜଗନ୍ନାଥ ମିଶ୍ର, ବଡ଼ଗଡ଼ ରାଜକୁମାର ଓ ରାଜଜେମା ଶ୍ରୀଚରଣ ସିଂହ ଓ କିଶୋରୀ ପ୍ରିୟା ଏବଂ ବନ୍ଧୁ ସ୍ୱର୍ଗତ କାଳୀପ୍ରସାଦ ମିଶ୍ରଙ୍କ ସୌଜନ୍ୟରୁ ପଦ୍ମନାଭ ନାରାୟଣ ଦେବଙ୍କ ଅଧିକାଂଶ ରଚନା ପାଇବା ପରେ ଅନ୍ୟଗୁଡ଼ିକୁ ସଂଗ୍ରହ କରି ତାଙ୍କର ସମଗ୍ର ରଚନାବଳୀ ସଂକଳନ କରିବାପାଇଁ ଅଭିଳାଷ ଜାଗ୍ରତ ହୋଇଥିଲା । ଏ ସମୟରେ ସ୍ୱର୍ଗତ ଶିବରାମ ପାତ୍ର ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ଏମ୍.ଫିଲ୍ ଶ୍ରେଣୀରେ ଆସି ଯୋଗଦେଲେ । ସାହିତ୍ୟିକମାନଙ୍କ ସହିତ ସମ୍ପର୍କ ସ୍ଥାପନ, ବିସ୍ମୃତ ତଥ୍ୟାବଳୀ ସଂଗ୍ରହ ଏବଂ ସାହିତ୍ୟ ସଂଗଠନ ଦିଗରେ ତାଙ୍କପରି ସିଏ । ଆଲୋଚନା କ୍ରମରେ ପଦ୍ମନାଭ ନାରାୟଣ ଦେବଙ୍କ ନାଟକ ସଂପର୍କୀୟ ଆଲୋଚନାକୁ ଏମ.ଫିଲ୍ ପାଠ୍ୟକ୍ରମର ସନ୍ଦର୍ଭ ରଚନାପାଇଁ ନିର୍ବାଚନ

କଲେ । ଏ ଅବସରରେ ସେ ପାରଳାଖେମୁଣ୍ଡିଯାଇ ବୟୋଜ୍ୟେଷ୍ଠ ସାହିତ୍ୟିକ ସ୍ୱର୍ଗତ ସତ୍ୟନାରାୟଣ ପଣ୍ଡା, ସତ୍ୟନାରାୟଣ ରାଜଗୁରୁ, ଗୋପୀନାଥ ପାଢ଼ୀ, ଯୁଗଳ କିଶୋର ପାଣିଗ୍ରାହୀ ପ୍ରଭୃତିଙ୍କ ସହିତ ସାକ୍ଷାତ୍ କରିଥିଲେ । କିଛି ନୂତନ ତଥ୍ୟ ସଂଗୃହୀତ ହେଲା । କିନ୍ତୁ ସନ୍ଦର୍ଭ ଉପସ୍ଥାପନାପାଇଁ ସମୟ ନିର୍ଦ୍ଧାରିତ ଥିବାଯୋଗୁଁ ଅଧିକ ତଥ୍ୟର ଅନୁସନ୍ଧାନ କରିବା ସମ୍ଭବ ହୋଇପାରିଲା ନାହିଁ । ପ୍ରସ୍ତାବ ଥିଲା ପଦ୍ମନାଭଙ୍କ ଗ୍ରନ୍ଥାବଳୀ ପ୍ରକାଶନ । ଅବସରପର କୌଣସି କଳ୍ପନାକୁ କାର୍ଯ୍ୟକାରୀ କରିବା ପୂର୍ବରୁ ଶିବରାମ ଅକାଳରେ ଚାଲିଗଲେ । ଗ୍ରନ୍ଥାବଳୀ କଥା ସେତିକିରେ ରହିଗଲା । ଦିନେ କଟକ ବାଲୁବଜାର ଯିବା ଅବସରରେ ବନ୍ଧୁ ସ୍ୱର୍ଗତ ଜଗନ୍ନାଥ ରଥଙ୍କ ସୁପୁତ୍ର ଶୁଭେନ୍ଦୁଙ୍କ ସହ ଦେଖାହୁଏ । ସେ ତାଙ୍କ ନନାଙ୍କ ପରି ମେଳାପି ଓ ସାହିତ୍ୟପ୍ରେମୀ । କଥା ପ୍ରସଙ୍ଗରେ ପଦ୍ମନାଭ ନାରାୟଣ ଦେବଙ୍କ ରଚନାବଳୀ ପ୍ରକାଶ କରିବାପାଇଁ ସେ ଆଗ୍ରହ ପ୍ରକାଶ କଲେ । ପୁଣି ଉଦ୍ୟମ ଆରମ୍ଭ ହେଲା । ଅପ୍ରାପ୍ତ ରଚନା ଗୁଡ଼ିକୁ ଯୋଗାଇ ଦେବାରେ ସାହାଯ୍ୟ କଲେ ବିଦଗ୍ଧ ଛାତ୍ର ପାରଳାଖେମୁଣ୍ଡି ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟର ଓଡ଼ିଆ ଅଧ୍ୟାପକ ଡ. କାହ୍ନୁଚରଣ ପାଢ଼ୀ, ସେବାନିବୃତ୍ତ ପ୍ରଶାସକ ଓ ଗବେଷକ ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ମହାପାତ୍ର ଏବଂ ସ୍ୱନାମଧନ୍ୟ ପରିଚ୍ଛାମଠର ବର୍ତ୍ତମାନ ତତ୍ତ୍ୱାବଧାରକ ମୁରଲୀ ପରିଚ୍ଛା । ଏମାନଙ୍କ ଅକୁଣ୍ଠ ସାହାଯ୍ୟ ଭୁଲିବାର ନୁହେଁ ।

ତଥାପି ପଦ୍ମନାଭ ଦେବଙ୍କ ଦୁଇଟି ଅପ୍ରକାଶିତ ନାଟକର ପାଣ୍ଡୁଲିପି ଏବଂ ଅଧିକାଂଶ ପ୍ରକାଶିତ ରଚନାର ପ୍ରଥମ ସଂସ୍କରଣ ପାଇବାସମ୍ଭବ ହେଲା ନାହିଁ । ପରବର୍ତ୍ତୀ ସଂସ୍କରଣର ପ୍ରକାଶକମାନେ ପୂର୍ବ ସଂସ୍କରଣର ପାଠକୁ ଅବିକୃତ ରଖିଥିବା ଜଣାଇଥିବା ଯୋଗୁଁ ରଚନାଗୁଡ଼ିକର ଭାବ ଓ ଭାଷା ସମ୍ପର୍କରେ ଅବହିତ ହେବା ସୌଭାଗ୍ୟରୁ ପାଠକ ଓ ଆଲୋଚକମାନେ ବଞ୍ଚିତ ହେବେ ନାହିଁ । ଉପଲବ୍ଧ ପ୍ରକାଶିତ ରଚନାବଳୀ ମଧ୍ୟ ଜୀର୍ଣ୍ଣଶୀର୍ଣ୍ଣ, ଅନେକ ସ୍ଥଳରେ ଅକ୍ଷର ଅସ୍ପଷ୍ଟ ଏବଂ କିଛିପୃଷ୍ଠା ଖଣ୍ଡିତ । ସଂକଳନ ଅବସରରେ ପାଠ ପୂରଣ ପାଇଁ ପ୍ରୟାସ କରାଯାଇନାହିଁ । ଶୁଦ୍ଧିପତ୍ର ଆଧାରରେ ପାଠଶୁଦ୍ଧି କରିବା ସହ ବନାନଗୁଡ଼ିକୁ ନିର୍ଭୁଲ ରଖିବାପାଇଁ ଯଥାସାଧ୍ୟ ଚେଷ୍ଟା କରାଯାଇଛି ।

ପାଣ୍ଡୁଲିପି ପ୍ରାପ୍ତି ମାତ୍ରେ ଶୁଭେନ୍ଦୁ ଅବିଳମ୍ବେ ତା'ର ପ୍ରଥମ ପ୍ରୁଫ୍ ପଠାଇ ଦେଇଥିଲେ ସୁଦ୍ଧା ଦୀର୍ଘଦିନ ଧରି ଏହା ମୋ ପାଖରେ ପଡ଼ି ରହିଥିଲା । କାରଣ **'ରାଧାଗୋବିନ୍ଦ ଜଣାଣ'**ର ସମ୍ପୂର୍ଣ୍ଣ ପୁସ୍ତକଟିର ତଥାପି ଅନୁପଲବ୍ଧ । ସୁଖର କଥା କଲ୍ୟାଣୀୟ କାହ୍ନୁଚରଣ ଏହାକୁ ସଂଗ୍ରହ କରିପାରିଛନ୍ତି । ଏ ଅବସରରେ ଯୁବ ଗବେଷକ ଶ୍ରୀଯୁକ୍ତ ଦେବେନ୍ଦ୍ର କୁମାର ଦାଶ, ଡଃ ଗୌରାଙ୍ଗ ଚରଣ ଦାଶ ଏବଂ ଡ. ଫଣୀନ୍ଦ୍ର ଭୂଷଣ

ନନ୍ଦଙ୍କ ନିକଟରେ ମୁଁ କୃତଜ୍ଞ । ସେମାନଙ୍କ ବାରମ୍ବାର ତାଗିଦା ଏବଂ କ୍ଷୋଭ କାର୍ଯ୍ୟଟିକୁ ତ୍ୱରାନ୍ୱିତ କରାଇ ପାରିଛି ।

ଏ ଦିଗରେ ରାଜ୍ୟ ଅଭିଲେଖାଗାରର କର୍ମକର୍ତ୍ତା ଓ ଗ୍ରନ୍ଥାଗାରିକା ଏବଂ ଉତ୍କଳ ସାହିତ୍ୟ ସମାଜର ଗ୍ରନ୍ଥାଗାରିକା କୁମାରୀ ଲକ୍ଷ୍ମୀପଦ୍ମା ଜେନାଙ୍କ ସାହାଯ୍ୟ ଭୁଲିବାର ନୁହେଁ । କଷ୍ଟ ସ୍ୱୀକାର କରି ସେମାନେ ଛିନ୍ନ ପୃଷ୍ଠା ମଧ୍ୟରୁ ତଥ୍ୟସଂଗ୍ରହ କରିବାର ସୁଯୋଗ ଦେଇଛନ୍ତି । ପାରିବାରିକ ଜଞ୍ଜାଳ ସତ୍ତ୍ୱେ ପ୍ରିୟଛାତ୍ର ଅଧ୍ୟାପକ ଡକ୍ଟର ସୁରେଶ ଚନ୍ଦ୍ର ପାଣିଗ୍ରାହୀ ପ୍ରୁଫ୍ ସଂଶୋଧନରେ ଯଥେଷ୍ଟ ସହାୟତା କରିଛନ୍ତି । ସମସ୍ତଙ୍କ ଶୁଭକାମନା କରୁଛି ।

ପଦ୍ମନାଭ ଦେବଙ୍କ ଦ୍ୱାରା ପ୍ରୋତ୍ସାହିତ ହୋଇ ଜ୍ୟେଷ୍ଠଭ୍ରାତା ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ ରଚନା କରିଥିଲେ ଧ୍ରୁବ ନାଟକ ଏବଂ କିଛି ଗୀତିକା । ସେଗୁଡ଼ିକ ଆଜି ପ୍ରାୟ ଦୁର୍ଲଭ । ତେଣୁ ଏ ଦୁଇଟିକୁ ପ୍ରସ୍ତୁତ ସଙ୍କଳନର ପରିଶିଷ୍ଟରେ ସଂଯୋଗ କରାଯାଇଛି । ଏହା ଆଲୋଚକମାନଙ୍କ ଉପକାରରେ ଆସିବ ବୋଲି ବିଶ୍ୱାସ ।

ପ୍ରକାଶକ କଲ୍ୟାଣୀୟ ଶୁଭେନ୍ଦୁ (ବାପି), ମୁଦ୍ରାକର ଏବଂ ପ୍ରଚ୍ଛଦଶିଳ୍ପୀ ଅଶେଷ ଧନ୍ୟବାଦର ପାତ୍ର । ମୁଁ ସେମାନଙ୍କ ଉତ୍ତରୋତ୍ତର ଉନ୍ନତି କାମନା କରୁଛି ।

ପରିଶେଷରେ ପଦ୍ମନାଭ ନାରାୟଣ ଦେବଙ୍କ ବ୍ୟକ୍ତିତ୍ୱ ଓ କୃତିତ୍ୱ ଆକଳନ ଏବଂ ଓଡ଼ିଆ ନାଟକ ଓ ରଙ୍ଗମଞ୍ଚର ଇତିହାସ ସଙ୍କଳନ ଦିଗରେ ମୋର ପରିଶ୍ରମ କିଛି ସହାୟକ ହେଲେ କୃତାର୍ଥ ହେବି ।

ସୁଦର୍ଶନ ଆଚାର୍ଯ୍ୟ

●

# ପଦ୍ମନାଭ ନାରାୟଣ ଦେବ–ବ୍ୟକ୍ତିତ୍ୱ ଓ କୃତିତ୍ୱ

ଓଡ଼ିଆ ସାହିତ୍ୟର ଇତିହାସରେ ରାଜାମାନଙ୍କ ଅପେକ୍ଷା ରାଜଭ୍ରାତା ଓ ରାଜସିଂହାସନ-ବଞ୍ଚିତ ରାଜପୁତ୍ରମାନଙ୍କ ଭୂମିକା ଅଧିକ ଗୁରୁତ୍ୱପୂର୍ଣ୍ଣ । ରାଜାମାନଙ୍କ ନାମାଙ୍କିତ ରଚନାଗୁଡ଼ିକ ସମ୍ପର୍କରେ ସାହିତ୍ୟ ସମାଲୋଚକମାନେ ଅନେକ ସମୟରେ ସନ୍ଦେହ ପ୍ରକାଶ କରିଥାନ୍ତି । ରାଜାଙ୍କଠାରୁ ପାରିତୋଷିକ ଲାଭ କରିବାପାଇଁ କିମ୍ବା ସେମାନଙ୍କ ପୃଷ୍ଠପୋଷକତାରୁ ବଞ୍ଚିତ ନ ହେବାପାଇଁ ଲେଖକମାନେ ନିଜ ନିଜ ରଚନାକୁ ସେମାନଙ୍କ ନାମରେ ଭଣିତି କରିଥାନ୍ତି । କବିସୂର୍ଯ୍ୟ ବଳଦେବ ରଥ, ଯଦୁମଣି ମହାପାତ୍ର ତ ଏହାର ପ୍ରମାଣ ଦେଇଛନ୍ତି । କିନ୍ତୁ ରାଜଭ୍ରାତା କିମ୍ବା ରାଜପଦବଞ୍ଚିତମାନଙ୍କ କ୍ଷେତ୍ରରେ ଏପ୍ରକାର ସନ୍ଦେହର ଅବକାଶ ନ ଥାଏ । ନନ୍ଦପୁର ରାଜା ରାମଚନ୍ଦ୍ର ଦେବଙ୍କ କନିଷ୍ଠଭ୍ରାତା **ଅଖିଳରସ ଚିନ୍ତାମଣି** ଅଳଙ୍କାର ଗ୍ରନ୍ଥ ରଚୟିତା **ପୀତାମ୍ବର ଦେବ**, ନୀଳକଣ୍ଠ ଭଞ୍ଜଙ୍କ ଭ୍ରାତା **ଗନ୍ଧମାଳା** କାବ୍ୟ ପ୍ରଣେତା **ଚକ୍ରଧର ଭଞ୍ଜ**, ମଞ୍ଜୁଷା ରାଜା ବାସୁଦେବ ରାଜମଣିଙ୍କ କନିଷ୍ଠଭ୍ରାତା **ସୁରେଖା ପରିଣୟ** କାବ୍ୟ ପ୍ରଣେତା ରଙ୍ଗନାଥ ଥାଟରାଜ, ଗଜପତି ପ୍ରଥମ ବୀରକେଶରୀ ଦେବଙ୍କ ପୁତ୍ର **ଅନୁରାଗ କଳ୍ପଲତା** ରଚୟିତା ଶ୍ୟାମସୁନ୍ଦର ଦେବ, **ମନ୍ମଥ ବିଳାସ** କାବ୍ୟକାର ପାଟଣାଧିପତି ହୀରାବ୍ରଜଙ୍କ ମଧ୍ୟମପୁତ୍ର **ବିଶ୍ୱନାଥ ସିଂହ**, ଚିକିଟି ପୀତାମ୍ବର ରାଜେନ୍ଦ୍ରଙ୍କ ଅନୁଜ **ଚନ୍ଦ୍ରପ୍ରଭା** କାବ୍ୟ ରଚୟିତା **ବଳଭଦ୍ର ଦେଓ**, ଧରାକୋଟ ରଘୁନାଥ ସିଂହଙ୍କ ଭ୍ରାତା **ଯଦୁନାଥ ସିଂହ** (ଅଭିନୟ ଦର୍ପଣ), ନୀଳକଣ୍ଠ ଭଞ୍ଜଙ୍କ ପୁତ୍ର **ଉପେନ୍ଦ୍ର ଭଞ୍ଜ**, ତରଳା ରାଜକୁମାର **ଗୋବିନ୍ଦ ଚନ୍ଦ୍ର ସୁରଦେବ**, ଟିକିଲି ରାଜଭ୍ରାତା **ଜଗନ୍ନାଥ ଦେବ ବର୍ମା** ପ୍ରଭୃତିଙ୍କ ଦାନରେ ଓଡ଼ିଆ ସାହିତ୍ୟ ଋଦ୍ଧିମନ୍ତ ।

ରାଜାଙ୍କ ଜ୍ୟେଷ୍ଠ ସନ୍ତାନ ରାଜସିଂହାସନର ଅଧିକାରୀ ହେବା ଥିଲା ଶାସ୍ତ୍ରସିଦ୍ଧ ପରମ୍ପରା । ବ୍ୟତିକ୍ରମଭାବେ କୌଣସି କୌଣସି ରାଜା, ରାଣୀ କିମ୍ବା ଶ୍ୱଶୁରଙ୍କଠାରେ ପ୍ରତିଶ୍ରୁତିବଦ୍ଧହୋଇ ଜ୍ୟେଷ୍ଠପୁତ୍ରକୁ ସିଂହାସନରୁ ବଞ୍ଚିତ କରୁଥିଲେ । ଏକ୍ଷେତ୍ରରେ

ଜ୍ୟେଷ୍ଠପୁତ୍ରମାନେ ନ୍ୟାୟ୍ୟଦାବୀପାଇଁ ରାଜ୍ୟରେ ବିଦ୍ରୋହ ସୃଷ୍ଟି କରୁଥିବା ଦୃଷ୍ଟାନ୍ତ ମଧ୍ୟ କମ୍ ନୁହେଁ । କିନ୍ତୁ ଅଧିକାଂଶ କ୍ଷେତ୍ରରେ ଅପର ରାଜକୁମାରମାନେ ସେମାନଙ୍କ ଜନ୍ମକୁ ବିଧି-ନିର୍ଦ୍ଦିଷ୍ଟ ବୋଲି ଗ୍ରହଣ କରି ନେଉଥିଲେ । ସେମାନଙ୍କ ଭରଣପୋଷଣର ଦାୟିତ୍ୱ ରାଜକୋଷ ବହନ କରୁଥିଲା । ଏମାନଙ୍କ ମଧ୍ୟରୁ ଅଧିକାଂଶ ବିଳାସବ୍ୟସନରେ କାଳାତିପାତ କରୁଥିଲେ ସୁଦ୍ଧା ଅନ୍ୟ କେତେକ ଥିଲେ କଳା ଓ ସାହିତ୍ୟ ପ୍ରିୟ । ଏମାନଙ୍କର ଅନ୍ନଚିନ୍ତା ନଥିଲା । କଳା ସାଧନାପାଇଁ ଆବଶ୍ୟକ ଅର୍ଥ ଓ ଉପକରଣ ଏମାନଙ୍କ ପାଇଁ ରାଜକୋଷରୁ ସୁଲଭ ଥିଲା । ରାଜଦଣ୍ଡ ଧାରଣ କରି ନ ଥିବା ଯୋଗୁଁ ପ୍ରଜାମାନେ ଏମାନଙ୍କୁ ଭୟ କରୁନଥିଲେ, ବରଂ ରାଜସନ୍ତାନରୂପେ ଭକ୍ତି କରୁଥିଲେ । ଏହାର ସୁଯୋଗ ନେଇ ଏହି ରାଜସନ୍ତାନମାନେ ସାଧାରଣ ପ୍ରଜାଙ୍କ ନିକଟରେ ଥିବା କଳାବିଦ୍ୟା ଆହରଣ କରିବା ସହିତ ସେମାନଙ୍କ ଜୀବନଚର୍ଯ୍ୟା ସହିତ ପରିଚିତ ହୋଇପାରୁଥିଲେ । ଏହା ସେମାନଙ୍କପାଇଁ ଚାରୁ ଓ କାରୁକଳା ସୃଷ୍ଟିରେ ଥିଲା ବିଶେଷ ସହାୟକ । ଆଲୋଚ୍ୟ ପଦ୍ମନାଭ ନାରାୟଣ ଦେବ ପାରଳାଖେମୁଣ୍ଡିର ଶାସକ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ କନିଷ୍ଠ ଭ୍ରାତା; ଓଡ଼ିଶାର ସାହିତ୍ୟ ଜଗତର ଜଣେ ପ୍ରବାଦ ପୁରୁଷ ।

(୨)

ପାରଳାଖେମୁଣ୍ଡିର ସ୍ୱନାମଧନ୍ୟ ଶାସକ ପ୍ରତାପରୁଦ୍ର ଗଜପତି ନାରାୟଣ ଦେବ ଦ୍ୱିତୀୟଙ୍କ କନିଷ୍ଠ ପୁତ୍ରରୂପେ ପଦ୍ମନାଭ ନାରାୟଣଦେବ ଜନ୍ମଗ୍ରହଣ କରିଥିଲେ । ମାତା କୃଷ୍ଣପ୍ରିୟା ପାଟ ମହାଦେବୀ ଥିଲେ ବିଦୂଷୀ ଓ ସନ୍ତାନବତ୍ସଳା । ଜୀବନୀକାର **ଅପର୍ଣ୍ଣା ପଣ୍ଡା** ପଦ୍ମନାଭଙ୍କ ଜନ୍ମକୁଣ୍ଡଳୀ ପ୍ରସ୍ତୁତକରି ତାଙ୍କ ଜନ୍ମ ସମୟ ଅଙ୍ଗୀରସ ନାମ ସମ୍ବତ୍ସର, ପୌଷ କୃଷ୍ଣ ପ୍ରତିପଦା ରବିବାର ମୃଗଶିରା ନକ୍ଷତ୍ର ଚତୁର୍ଥପାଦ ଅର୍ଥାତ୍ ଶାଳିବାହନ ଶକାବ୍ଦ ୧୭୯୪,୮ ମାସ ୩ ଦିନ ବୋଲି ନିର୍ଦ୍ଧାରଣ କରିଛନ୍ତି । ଜନ୍ମକାଳକୁ କେରଳ ମତରେ ମଙ୍ଗଳ ମହାଦଶା ଏକବର୍ଷ ସତାଇଶ ଦିନ ଅବଶିଷ୍ଟ ଥିଲା । ଖ୍ରୀଷ୍ଟାବ୍ଦ ଅନୁଯାୟୀ ସେ ୧୮୭୨ ସାଲ ଡିସେମ୍ବର ମାସ ତା୧୫ରିଖ ଦିନ ପୂର୍ବାହ୍ନ ଘ୮.୧୭ମି. ୩୦ ସେ.ରେ ଭୂମିଷ୍ଠ ହୋଇଥିଲେ । ତାଙ୍କ ପୂର୍ବରୁ ମହାରାଣୀଙ୍କ ଗର୍ଭରୁ ଆଉ ତିନୋଟି ପୁତ୍ର ଏବଂ ଦୁଇଟି କନ୍ୟା ଜନ୍ମଲାଭ କରିଥିବା ଜଣାଯାଏ । ଜ୍ୟେଷ୍ଠ ଗୌରଚନ୍ଦ୍ର ରାଜ୍ୟପ୍ରାପ୍ତିପରେ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ ଭାବେ ସୁପରିଚିତ । ଦ୍ୱିତୀୟ ପୁରୁଷୋତ୍ତମ ଅକାଳରେ ମୃତ୍ୟୁବରଣ କରିଥିଲେ । ତୃତୀୟ ଜଗନ୍ନାଥ ଥିଲେ କୁସଙ୍ଗୀ

ଓ ଦୁରାଚାରୀ । ଆତ୍ମହତ୍ୟାକରି ସେ ମଧ୍ୟ ଅକାଳରେ ଇହଧାମରୁ ବିଦାୟ ନେଇଥିଲେ । ଦୁଇ କନ୍ୟାଙ୍କ ମଧ୍ୟରୁ ଜଣେ ଥିଲେ ଜଳନ୍ତର ରାଜ୍ୟର ପଟ୍ଟମହିଷୀ । ସେ ୧୯୦୩ ମସିହା ଜାନୁୟାରୀ ମାସରେ ମୃତ୍ୟୁବରଣ କରିଥିବା ଜଣାଯାଏ । (**ଉତ୍କଳ ଦୀପିକା,** ୬-୨-୧୯୦୩) ଅପର୍ଣ୍ଣା ପଣ୍ଡା ନିମ୍ନଲିଖିତ ଭାବେ ପଦ୍ମନାଭଙ୍କ ଜନ୍ମକୁଣ୍ଡଳୀ ପ୍ରଦାନ କରିଛନ୍ତି-




ଜନ୍ମ ସମୟରେ ପୁତ୍ରଟିର ମୁଖମଣ୍ଡଳର ଶୋଭା ସନ୍ଦର୍ଶନକରି ମାତା ତାକୁ **ଚନ୍ଦ୍ର** ବୋଲି ନାମକରଣ କରିବାପାଇଁ ସ୍ଥିର କରିଥିଲେ । ପାରଳାର ଜନସାଧାରଣଙ୍କ ନିକଟରେ ସେ ଏହି ନାମରେ ହିଁ ପରିଚିତ । ଭାଷାକୋଷ ପ୍ରଣେତା ଗୋପାଳଚନ୍ଦ୍ର ପ୍ରହରାଜ ତାଙ୍କୁ ଚନ୍ଦ୍ର ମହାରାଜାରୂପେ ପରିଚିତ କରାଇଛନ୍ତି । କେବଳ ଶାରୀରିକ କାନ୍ତିରେ ନୁହେଁ ସ୍ନିଗ୍ଧ ଶୀତଳ ଗୁଣାବଳୀରେ ମଧ୍ୟ ସେ ଚନ୍ଦ୍ରମାତୁଲ୍ୟ ପାରଳା ରାଜବଂଶକୁ ଦୀପ୍ତିମନ୍ତ କରିଥିଲେ । ମହାରାଣୀଙ୍କ କୋଡ଼ପୋଛା ସନ୍ତାନ ଥିବାଯୋଗୁଁ ଅନ୍ୟ ସନ୍ତାନମାନଙ୍କଠାରୁ ସେ ମାତାପିତା ଓ ରାଜ ପରିବାରର ଥିଲେ ଅଧିକ ଆଦରଣୀୟ ।

ଯୁଗେ ଯୁଗେ ପାରଳାଖେମୁଣ୍ଡିର ରାଜପୁରୁଷମାନେ ଶାସ୍ତ୍ରଚର୍ଚ୍ଚା ଓ ଗ୍ରନ୍ଥ ପ୍ରଣୟନପାଇଁ ଯେପରି ସୁପରିଚିତ, କବି ଓ ପଣ୍ଡିତମାନଙ୍କ ପୃଷ୍ଠପୋଷକତା କରିବାରେ ସେହିପରି ମୁକ୍ତହସ୍ତ । ସର୍ବଜ୍ଞ ଜଗନ୍ନାଥ ଗଜପତି ନାରାୟଣଦେବ, ଦ୍ୱିତୀୟ ଜଗନ୍ନାଥ ନାରାୟଣଦେବ ପ୍ରଭୃତିଙ୍କ ପୃଷ୍ଠପୋଷକତା ଲାଭ କରି ଶ୍ରୀଧର ମିଶ୍ର, କବିରତ୍ନ ପୁରୁଷୋତ୍ତମ ମିଶ୍ର, କବିଭୂଷଣ ଗୋପୀନାଥ ପାତ୍ର, ଲୋକନାଥ ତ୍ରିପାଠୀ, ଗୋପାଳକୃଷ୍ଣ ପଟ୍ଟନାୟକ, ଗୌରହରି ପରିଚ୍ଛା, ସମୁଦ୍ରପେଟା ହରିବନ୍ଧୁ ପ୍ରମୁଖ ବହୁ ସଂସ୍କୃତ ଓ ଓଡ଼ିଆଗ୍ରନ୍ଥ ରଚନାକରି ଅକ୍ଷୟ ଯଶର ଅଧିକାରୀ ହୋଇପାରିଛନ୍ତି । ପିତୃପୁରୁଷଙ୍କ ପରି ପ୍ରତାପରୁଦ୍ର ଗଜପତି ନାରାୟଣଦେବଙ୍କ ରାଜସଭା ମଧ୍ୟ ବହୁ ଓଡ଼ିଆ ଓ ତେଲୁଗୁ

ପଣ୍ଡିତଙ୍କ ଶାସ୍ତ୍ରଚର୍ଚ୍ଚାରେ ମୁଖରିତ ଥିଲା । ପିତାଙ୍କ ପ୍ରେରଣା ଏବଂ ପଣ୍ଡିତମାନଙ୍କ ସାହଚର୍ଯ୍ୟ ରାଜପୁତ୍ର ପଦ୍ମନାଭଙ୍କୁ ଅଧ୍ୟୟନ ପ୍ରତି ଆଗ୍ରହୀ କରିଥିଲା । ଓଡ଼ିଆ ଶିକ୍ଷା ଦେବାପାଇଁ ରାଧାକୃଷ୍ଣ ଗୁରୁ, ତେଲୁଗୁପାଇଁ ଚେଲମୟା ଶାସ୍ତ୍ରୀ ନିଯୁକ୍ତ ଥିଲେ । ଗୌରଚନ୍ଦ୍ର ନାବାଳକ ଥିବାଯୋଗୁଁ ୧୮୮୦ ବେଳକୁ ପାରଳାଖେମୁଣ୍ଡି କୋର୍ଟ ଅଫ୍ ୱାର୍ଡସ୍ ଅଧୀନକୁ ଚାଲିଯିବା ଫଳରେ ରାଜକୁମାରଙ୍କୁ ଶିକ୍ଷା ଦେବାପାଇଁ ଏଠାରେ ଏକ ରାଜକୀୟ ବିଦ୍ୟାଳୟ ସ୍ଥାପିତ ହୋଇଥିଲା । ଖଲ୍ଲିକୋଟ ରାଜକୁମାର ହରିହର ମର୍ଦ୍ଦରାଜ, ଧରାକୋଟ ରାଜକୁମାର ମଦନମୋହନ ସିଂହ, ସାନଖେମଣ୍ଡି ରାଜକୁମାର ବ୍ରଜକିଶୋର ଦେବ, ଜରଡ଼ା ରାଜକୁମାର ରଘୁନାଥ ସାମନ୍ତରାୟଙ୍କ ସହିତ ପାରଳା ରାଜକୁମାରମାନେ ମଧ୍ୟ ଏଠାରେ ଶିକ୍ଷାଲାଭ କରିବାର ସୁଯୋଗ ପାଇଥିଲେ । ଏହି ସୁଯୋଗରେ ପଦ୍ମନାଭ ଓଡ଼ିଆ ଶିକ୍ଷକ ପଦ୍ମନାଭ ପରିଛା, ତେଲୁଗୁ ଶିକ୍ଷକ ରାଜାନ୍ନା ପଣ୍ଡିତ ଏବଂ ଇଂରେଜୀ ଶିକ୍ଷକ ୱିଲିୟମ୍ ଟେଲର୍ଙ୍କଠାରୁ ତିନୋଟି ଭାଷାରେ ବ୍ୟୁତ୍ପତ୍ତି ଲାଭ କରିଥିଲେ । ଆଦ୍ୟ ଯୌବନରେ ବହୁ ଭାଷାବିତ୍ ଏବଂ ବହୁ ଶାସ୍ତ୍ରଦର୍ଶୀ ଗିଡୁଗୁ ବେଙ୍କଟ ରାମମୂର୍ତ୍ତି, ପ୍ରାଚୀନ ଓଡ଼ିଆ ସାହିତ୍ୟ ପ୍ରବୀଣ ମହାପାତ୍ର ପୁରୁଷୋତ୍ତମ ପଟ୍ଟନାୟକ, ପାରଳା ମହାବିଦ୍ୟାଳୟର ବିଜ୍ଞାନ ଅଧ୍ୟାପକ ଶ୍ରୀନିବାସ ରାଓ ଏବଂ ଏସ୍. ରାମେୟାଙ୍କଠାରୁ ସେ ପ୍ରାଚୀନ ଓ ଆଧୁନିକ ଜ୍ଞାନ ବିଜ୍ଞାନର ବିଭିନ୍ନ ଦିଗ ସମ୍ପର୍କରେ ଜ୍ଞାନ ଆହରଣ କରିପାରିଥିଲେ । ପାରଳାଖେମୁଣ୍ଡି ସଙ୍ଗୀତ ଓ ସଙ୍ଗୀତଜ୍ଞମାନଙ୍କ କ୍ରୀଡ଼ାସ୍ଥଳୀ । ଶୈଶବରୁ ପ୍ରତ୍ୟହ ସଙ୍ଗୀତ ଓ ବାଦ୍ୟର ଲଳିତ ମଧୁର ଧ୍ୱନି ଶୁଣି ଆସୁଥିବା ଯୋଗୁଁ ପ୍ରତିଭାଧର ପଦ୍ମନାଭ ଏହାପ୍ରତି ଆକୃଷ୍ଟ ହେବା ସ୍ୱାଭାବିକ । ପ୍ରବୀଣ ସଙ୍ଗୀତଜ୍ଞ ଦାମୋଦର ପାଠୀଙ୍କଠାରୁ ସେ ଉଭୟ କଣ୍ଠ ଓ ଯନ୍ତ୍ର ସଙ୍ଗୀତରେ ପ୍ରାବିଣ୍ୟ ଲାଭ କରିପାରିଥିଲେ । ବେହେଲାବାଦନ ପ୍ରତି ତାଙ୍କର ଥିଲା ସ୍ୱତନ୍ତ୍ର ଆକର୍ଷଣ । ପାରଳାର ମୃଦଙ୍ଗରାୟ ଲଚ୍ଛମନଙ୍କଠାରୁ ମୃଦଙ୍ଗବାଦନ ଶିକ୍ଷାକରି ସେ ଶ୍ରୋତାମାନଙ୍କୁ ମୁଗ୍ଧ କରିପାରୁଥିଲେ । **ତାଳ ସର୍ବସାର ସଂଗ୍ରହ** ରାଜକୁମାରଙ୍କ ସଙ୍ଗୀତଜ୍ଞାନର ପରିଚାୟକ । ଶେଷରେ ତାଙ୍କୁ ଅଧିକତର ଶିକ୍ଷାଦାନର ଦାୟିତ୍ୱ ଗ୍ରହଣ କଲେ ରାଜମହେନ୍ଦ୍ରୀ ମହାବିଦ୍ୟାଳୟରୁ ସଦ୍ୟ ବି.ଏ. ପାସ୍ କରିଆସିଥିବା ଏବଂ ସ୍ୱାଭିମାନ ଦୃଷ୍ଟିରୁ ଡେପୁଟି କଲେକ୍ଟର ଚାକିରୀକୁ ପ୍ରତ୍ୟାଖ୍ୟାନ କରି ରାଜଗୁରୁ ପଦବୀର ମର୍ଯ୍ୟାଦା ରକ୍ଷାକରିଥିବା ଓଡ଼ିଆ ଭାଷା ଓ ସାହିତ୍ୟର ଆଦି ଗବେଷକ ଜାତି ଓ ଦେଶପ୍ରାଣ **ଶ୍ୟାମସୁନ୍ଦର ରାଜଗୁରୁ** । ସେ ଯେ କେବଳ ଶିକ୍ଷାଗୁରୁ ଥିଲେ ତାହା ନୁହେଁ, ପଦ୍ମନାଭଙ୍କ ଜୀବନର ଶେଷପର୍ଯ୍ୟନ୍ତ ସେ ଥିଲେ ତାଙ୍କର ବନ୍ଧୁ, ଦିଗ୍‌ଦର୍ଶକ, ସହାୟକ ଏବଂ ସହକର୍ମୀ । ପ୍ରସଙ୍ଗକ୍ରମେ ଏଠାରେ ସୂଚାଇ ଦିଆଯାଇପାରେ ଯେ ରାଜକୁମାରଙ୍କ ଅକାଳ ବିୟୋଗ ପରେ ଶ୍ୟାମସୁନ୍ଦରଙ୍କ ପ୍ରତିଭା ଯେପରି ମୂକ ପାଲଟି ଯାଇଥିଲା । ମାତ୍ର ଚାରୋଟି ବର୍ଷ

ମଧ୍ୟରେ ତାଙ୍କର ଜୀବନଦୀପ ନିରାଶାର ବାଲିଚର ମଧ୍ୟରେ ନିର୍ବାପିତ ହୋଇଯାଇଥିଲା । ଶ୍ୟାମସୁନ୍ଦରଙ୍କଠାରୁ ସେ ଓଡ଼ିଆ, ସଂସ୍କୃତ, ଇଂରେଜୀ ଓ ବଙ୍ଗଳା ସାହିତ୍ୟର ବିଶିଷ୍ଟ ରଚନାଗୁଡ଼ିକର ଭାବ ସୌନ୍ଦର୍ଯ୍ୟ ଉପଲବ୍ଧି କରିବା ମାର୍ଗ ଶିକ୍ଷା କରିଥିଲେ । ପଦ୍ମନାଭଙ୍କୁ ଜଣେ କବି, ନାଟ୍ୟକାର ଏବଂ ବାଗ୍ମୀଭାବେ ପ୍ରତିଷ୍ଠିତ କରାଇବାରେ ଶ୍ୟାମସୁନ୍ଦରଙ୍କ ଅବଦାନ ଅବଶ୍ୟ ସ୍ୱୀକରର୍ଯ୍ୟ ।

ପଦ୍ମନାଭ ଶିକ୍ଷାଗୁରୁମାନଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେମାନଙ୍କ ସ୍ୱପ୍ନକୁ ସାକାର କରିବା ଦିଗରେ କଦାପି ଅବହେଳା କରିନାହାଁନ୍ତି । କୋର୍ଟ ଅଫ୍ ୱାର୍ଡସ୍ ଅଧୀନରେ ଥିଲାବେଳେ ପାରଳାର ସାଂସ୍କୃତିକ ପ୍ରବାହରେ ଯେଉଁ ସ୍ଥାଣୁତା ସୃଷ୍ଟି ହୋଇ ଆସୁଥିଲା, ଚନ୍ଦ୍ର ମହାରାଜାଙ୍କ ଜ୍ଞାନାଲୋକ ତାକୁ ପୁଣି ଚଳଚଞ୍ଚଳ କରିବାପାଇଁ ପାରଳାର ବୁଦ୍ଧିଜୀବୀ, ଶିଳ୍ପୀ ଓ ସାହିତ୍ୟିକମାନଙ୍କ ମନରେ ଅଦମ୍ୟ ଉତ୍ସାହ ଭରି ଦେଇଥିଲା । ଏପର୍ଯ୍ୟନ୍ତ ସେହି ଚନ୍ଦ୍ରର ଆଲୋକ ବହୁବାର ରାହୁ, କେତୁ ଗ୍ରାସର କବଳିତ ହୋଇ ସୁଦ୍ଧା ଦେଦୀପ୍ୟମାନ ।

(୩)

ଶ୍ୟାମସୁନ୍ଦର ରାଜଗୁରୁଙ୍କ ସାହଚର୍ଯ୍ୟ ଓ ସୁଶିକ୍ଷା ରାଜକୁମାର ପଦ୍ମନାଭଙ୍କ ମନରେ ଦେଶୀୟ ଉନ୍ନତି ଏବଂ ସାହିତ୍ୟ ପ୍ରତି ଅଙ୍ଗୀକାରବଦ୍ଧତାର ଯେଉଁ ବୀଜ ଅଙ୍କୁରଣ କରିଥିଲା, ତାହା ଭାରତଭ୍ରମଣ ଏବଂ ଜାତୀୟ କଂଗ୍ରେସରେ ଯୋଗଦାନ ଫଳରେ ପଲ୍ଲବିତ ଓ ପୁଷ୍ପିତ ହୋଇପାରିଥିଲା । କୁସଙ୍ଗରୁ ଦୂରେଇ ରଖିବାପାଇଁ ଶ୍ୟାମସୁନ୍ଦର ରାଜଗୁରୁ ତାଙ୍କୁ ସଙ୍ଗରେ ଧରି ଭାରତ ଭ୍ରମଣରେ ବାହାରିଥିଲେ । ସଙ୍ଗରେ ଥିଲେ ମିଷ୍ଟର ଡବ୍ଲ୍ୟୁ ବାସ । ମାନ୍ଦ୍ରାଜର ସରକାରୀ କର୍ମଚାରୀମାନଙ୍କ ସହିତ ସେ ତାଙ୍କୁ ପରିଚିତ କରାଇ ଦେଇଥିଲେ । ମାନ୍ଦ୍ରାଜରୁ ବମ୍ବେ, ବରୋଦା ଏବଂ ସେଠାରୁ ଦିଲ୍ଲୀ, ଅଯୋଧ୍ୟା, ଜୟପୁର, ମଥୁରା, ବୃନ୍ଦାବନ, ଆଗ୍ରା, ବାରାଣସୀ ଓ କଲିକତାର ବିଭିନ୍ନ ଦର୍ଶନୀୟ ସ୍ଥାନ ସହିତ ଗ୍ରନ୍ଥାଗାର, ରଙ୍ଗାଳୟ, ମୁଦ୍ରଣାଳୟ ଇତ୍ୟାଦି ପରିଦର୍ଶନ କରି ଦୀର୍ଘ ଚାରିମାସ ପରେ ସେ ପାରଳାଖେମୁଣ୍ଡି ପ୍ରତ୍ୟାବର୍ତ୍ତନ କରିଥିଲେ । ଏହି ପରିଭ୍ରମଣର ଅନୁଭୂତି ୨୧ ବର୍ଷୀୟ ଯୁବରାଜକୁମାରଙ୍କ ମନରେ ପାରଳାଖେମୁଣ୍ଡିକୁ ଏକ ସମୃଦ୍ଧ ନଗରରେ ପରିଣତ କରିବାର ଅଭିଳାଷ ସୃଷ୍ଟି କରିଥିଲା । ଏଠାରେ ବିଦ୍ୟାଳୟ, ମୁଦ୍ରାଯନ୍ତ୍ର ଏବଂ ସମୃଦ୍ଧ ଗ୍ରନ୍ଥାଗାରଟିଏ ସ୍ଥାପନା କରି ପତ୍ରିକାଟିଏ ପ୍ରକାଶ କରିବାର ସ୍ୱପ୍ନ ମଧ୍ୟ ସେ ଦେଖିଥିଲେ । ଏହି ସ୍ୱପ୍ନ ବନ୍ଧୁ ଓ ଗୁରୁଜନମାନଙ୍କ ସହଯୋଗରେ ସାକାର ମଧ୍ୟ ହୋଇଥିଲା । ଏ ଦିଗରେ ମାନ୍ଦ୍ରାଜ (୧୮୯୪), ପୁନା (୧୮୯୫), ଅମରାବତୀ (୧୮୯୭) ଠାରେ ଅନୁଷ୍ଠିତ ଜାତୀୟ କଂଗ୍ରେସ ଅଧିବେଶନଗୁଡ଼ିକରେ ଯୋଗଦାନ କରି ତତ୍କାଳୀନ ଭାରତର ବିଶିଷ୍ଟ ବୁଦ୍ଧିଜୀବୀ ଏବଂ ଚିନ୍ତାନାୟକମାନଙ୍କ ସହ ସମ୍ପର୍କ ସ୍ଥାପନା ଏବଂ ଆଳାପ ଆଲୋଚନା ତାଙ୍କୁ ଅଧିକ

ପ୍ରୋତ୍ସାହିତ କରିଥିଲା । ସେ ରାଜପ୍ରାସାଦ ମଧ୍ୟରେ ଏକ ଗ୍ରନ୍ଥାଗାର ପ୍ରତିଷ୍ଠା କରିଥିଲେ । ସମକାଳରେ ପ୍ରକାଶିତ ଅଧିକାଂଶ ଇଂରେଜୀ, ଓଡ଼ିଆ, ସଂସ୍କୃତ, ତେଲଗୁ ଓ ବଙ୍ଗଳା ବହି ସଂଗୃହୀତ ହୋଇ ଆସିଲା । ପ୍ରାୟ ସମସ୍ତ ଓଡ଼ିଆ ଓ ଇଂରେଜୀ ସମ୍ବାଦପତ୍ର ଓ ସାହିତ୍ୟ ପତ୍ରିକା ପାଠକମାନଙ୍କୁ ଯୋଗାଇ ଦେବାର ବ୍ୟବସ୍ଥା ହେଲା । ଏପରି ଏକ ଗ୍ରନ୍ଥାଗାର ସ୍ଥାପିତ ହୋଇ ନଥିଲେ ପାରଳାଖେମୁଣ୍ଡିରୁ ବୋଧହୁଏ ଗୋପୀନାଥ ନନ୍ଦ, ସତ୍ୟନାରାୟଣ ରାଜଗୁରୁ, ସତ୍ୟନାରାୟଣ ପଣ୍ଡା, ଅନନ୍ତ ତ୍ରିପାଠୀ ଶର୍ମା, ଗୋପବନ୍ଧୁ ବିଦ୍ୟାଭୂଷଣ, ଅପର୍ଣ୍ଣା ପଣ୍ଡା ପ୍ରମୁଖଙ୍କ ପରି ପ୍ରସିଦ୍ଧ ଲେଖକ ଓ ଗବେଷକ ସୃଷ୍ଟି ହୋଇପାରିନଥାନ୍ତେ କିମ୍ବା ଏକ ସମୟରେ ଓଡ଼ିଶାର ପ୍ରଶାସନ କ୍ଷେତ୍ରକୁ ପରିଚାଳିତ କରୁଥିବା ପୋଲିସ ମହାନିର୍ଦ୍ଦେଶକ ରାମକୃଷ୍ଣ ପାଢ଼ୀ, ପ୍ରମୁଖ ଶାସନସଚିବ ଏବଂ ବିଶ୍ୱବିଦ୍ୟାଳୟ କୁଳପତି ରଘୁନାଥ ପ୍ରସାଦ ପାଢ଼ୀ, ମୁଖ୍ୟ ଇଞ୍ଜିନିୟର ଏବଂ ବିଭାଗୀୟ ସଚିବ ଆନନ୍ଦ ଚନ୍ଦ୍ର ପାଢ଼ୀ, ନ୍ୟାୟମୂର୍ତ୍ତି ଅଭିମନ୍ୟୁ ମିଶ୍ର ପ୍ରମୁଖ ସୃଷ୍ଟି ହୋଇପାରିନଥାନ୍ତେ । ଏହି ସମୃଦ୍ଧ ପାଠାଗାରଟିର ସ୍ୱରୂପ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟ ଏବଂ ପାରଳା ସଂସ୍କୃତ ମହାବିଦ୍ୟାଳୟରେ ଅତ୍ୟନ୍ତ ଅବହେଳିତ ଅବସ୍ଥାରେ ରହିଥିବା ପୁସ୍ତକାବଳୀ ଏବଂ ମହାରାଜାଙ୍କଦ୍ୱାରା ପ୍ରଦତ୍ତ ପୁସ୍ତକ ତାଲିକାରୁ ଅନୁସନ୍ଧାନ କରିହେବ ।

ରାଜକୁମାରଙ୍କ ଉଦ୍ୟମରେ ଯେଉଁ ମୁଦ୍ରାଯନ୍ତ୍ର ବା ଗଜପତି ପ୍ରେସ୍ (୧୮୯୬) ସ୍ଥାପିତ ହୋଇଥିଲା, ତାହା ପାରଳାଖେମୁଣ୍ଡିର ଅତୀତ ଓ ସମକାଳୀନ ଲେଖକମାନଙ୍କ ପୁସ୍ତକ ପ୍ରକାଶନରେ କମ୍ ସହାୟକ ନଥିଲା । ଏହି **ଶ୍ରୀଗଜପତି ଯନ୍ତ୍ରାଳୟରୁ** ନିମ୍ନଲିଖିତ ପୁସ୍ତକମାନ ପ୍ରକାଶ ପାଇ ସୁଲଭ ମୂଲ୍ୟରେ ପାଠକମାନଙ୍କୁ ଯୋଗାଇ ଦିଆଯାଇଥିବା ଜାଣିହୁଏ ।

ଗୋପାଳକୃଷ୍ଣ ପଦ୍ୟାବଳୀ (ବୃହତ୍), ଗୌରହରୀ ଗ୍ରନ୍ଥାବଳୀ, ବୃନ୍ଦାବନ ଚନ୍ଦ୍ର ବିହାର, ସଙ୍ଗୀତ ପ୍ରହ୍ଲାଦ ନାଟକ, ଧ୍ରୁବ ନାଟକ, ଅହଲ୍ୟାଶାପ ଓ ବିମୋଚନ ନାଟକ, ବାଣଦର୍ପଦଳନ ନାଟକ, ଦାନପରୀକ୍ଷା ନାଟକ, ତାଳ ସର୍ବସାର ସଂଗ୍ରହ, ଗୀତ ରତ୍ନାବଳୀ, କଳାବତୀ, ହିତରତ୍ନାବଳୀ, ଗୋପାଳକୃଷ୍ଣ ପଦ୍ୟାବଳି (ଛୋଟ), ପାରଳାଖେମୁଣ୍ଡି ଜମିଦାରି (ଇଂରାଜୀ), ଓଡ଼ିଆମାନଙ୍କ ପର୍ବାଦି ବା Feasts and Fasts, କବିତା କଳିକା (ଦ୍ୱିତୀୟଭାଗ), ରାଧାଗୋବିନ୍ଦ ଜଣାଣ, ନବାନୁରାଗ, ଗୋପାଳକୃଷ୍ଣ କୋଇଲି, ନକ୍ଷତ୍ର ନିର୍ଣ୍ଣୟ ନିୟମାବଳୀ ଓ ଦୋଳିଗୀତ, ବେଙ୍କଟ କବି ଜାଉଁଳି (ଆନ୍ଧ୍ର), ମୁଖ ଲିଙ୍ଗେଶ୍ୱର ଉଦାହରଣ (ଆନ୍ଧ୍ର), ଗାଙ୍ଗେୟ ବଂଶାବଳୀ, ସଙ୍ଗୀତ ନନ୍ଦୋଦୟ ନାଟକ, ଗୀତସ୍ତବକ, କବିତା କଳିକା (ପ୍ରଥମଭାଗ), ହରିବନ୍ଧୁ ପଦ୍ୟାବଳୀ, ପ୍ରବନ୍ଧାବଳି, ଓଡ଼ିଆ ଢଗମାଳିକା ତତ୍ତ୍ୱବୋଧିନୀ ଇତ୍ୟାଦି ।

ପ୍ରେସ୍ ସ୍ଥାପିତ ହୋଇ ନଥିଲେ **ଦି ଗଞ୍ଜାମ ନିଉସ୍** ପରି ଏକ ଇଂରେଜୀ ସାପ୍ତାହିକ ସମ୍ବାଦପତ୍ର ମଧ୍ୟ ପ୍ରକାଶ ପାଇପାରିନଥାନ୍ତା । ପତ୍ରିକାଟିର ସମ୍ପାଦକ ଶ୍ୟାମସୁନ୍ଦର ରାଜଗୁରୁ ଏବଂ ପୃଷ୍ଠପୋଷକ ପଦ୍ମନାଭ ନାରାୟଣ ଦେବ ଅନୁଭବ କରିଥିଲେ ଯେ ତେଲୁଗୁ ଅଧ୍ୟୁଷିତ ଅଞ୍ଚଳରେ ରହିଥିବା ଯୋଗୁଁ ଓଡ଼ିଆମାନଙ୍କ ସୁଖଦୁଃଖ, ମନୋଭାବ ଯଥାର୍ଥଭାବେ ମାନ୍ଦ୍ରାଜ ସରକାର ଏବଂ ଓଡ଼ିଶାର ନେତୃବୃନ୍ଦଙ୍କ ନିକଟରେ ଯଥାର୍ଥ ଭାବେ ଉପସ୍ଥାପିତ ହୋଇପାରୁନାହିଁ । ଓଡ଼ିଆ ସମ୍ବାଦପତ୍ର ମାଧ୍ୟମରେ ଏହା ସମ୍ଭବ ନୁହେଁ । ତେଣୁ ଉଭୟ ଗୁରୁ ଓ ଶିଷ୍ୟ ଆର୍ଥିକ କ୍ଷତି ସତ୍ତ୍ୱେ ଏହି ଇଂରେଜୀ ପତ୍ରିକାଟି ପ୍ରକାଶକରି ଦୀର୍ଘ ୫ ବର୍ଷ କାଳ ଏହାର ପ୍ରକାଶନ ଅବ୍ୟାହତ ରଖିଥିଲେ । ପତ୍ରିକାଟି ଜୁଲାଇ ୧୮୯୬ ଜୁନ୍‌ରୁ ୧୯୦୧ ପର୍ଯ୍ୟନ୍ତ ଧାରାବାହିକ ଭାବେ ପ୍ରକାଶ ପାଇଥିଲା । ଏହାର ତିରୋଧାନରେ ମର୍ମାହତ ହୋଇ **ଉତ୍କଳ ଦୀପିକା**ର ସମ୍ପାଦକ ଦେଶହିତୈଷୀ ଗୌରୀଶଙ୍କର ରାୟ ଲେଖିଥିଲେ-

> *ଗଞ୍ଜାମ ନିଉସ୍‌ର ବିଦାୟ । ପାରଳାଖେମିଡ଼ିରୁ ପ୍ରକାଶ ହେଉଥିବା ଗଞ୍ଜାମ ନିୟୁସ୍ ନାମକ ଇଂରାଜୀ ସାପ୍ତାହିକ ସମ୍ବାଦପତ୍ରର ଗତମାସ ତା୨୯ରିଖର ସଂଖ୍ୟା ଉପରେ ବଡ଼ ବଡ଼ ଇଂରାଜୀ ଅକ୍ଷରରେ ଏହା ଶେଷସଂଖ୍ୟା ବୋଲି ମୁଦ୍ରିତ ହୋଇଥିବାର ଦେଖି ଅତ୍ୟନ୍ତ ଦୁଃଖିତ ଓ ବିସ୍ମିତ ହେଲୁଁ । ସରକାରୀ ବନ୍ଦୋବସ୍ତରେ ପାରଳାଖେମିଡି ମାନ୍ଦ୍ରାଜ୍ ପ୍ରଦେଶାନ୍ତର୍ଗତ ଗଞ୍ଜାମ ବିଭାଗରେ ସ୍ଥାପିତ ହେଲେ ହେଁ ତାହା ପ୍ରକୃତ ପକ୍ଷେ ଓଡ଼ିଶାର ଏକ ଅଂଶ ଏବଂ ଗଞ୍ଜାମ ନିୟୁସ୍ ଓଡ଼ିଆମାନଙ୍କର ହିତ, ଉନ୍ନତି ଏବଂ ଆଶା ଜନସାଧାରଣ ଏବଂ ଗଭର୍ଣ୍ଣମେଣ୍ଟଙ୍କୁ ଜ୍ଞାତ କରାଇବା କାର୍ଯ୍ୟରେ ନିଯୁକ୍ତ ଥିଲା । ଏକକଥାରେ ଏହା ଓଡ଼ିୟାମାନଙ୍କର ଏକମାତ୍ର ଇଂରାଜୀ ସମ୍ବାଦପତ୍ର ଥିଲା । ଏହା ଉଠିଯିବା ଅତ୍ୟନ୍ତ ଦୁଃଖର ବିଷୟ ନୁହେଁ କି ? ଉଠିଯିବାର କାରଣ ଗ୍ରାହକମାନଙ୍କର ଅଦିୟାପଣ ? ମ୍ୟାନେଜରଙ୍କ ବିଜ୍ଞାପନରୁ ପ୍ରକାଶ ଯେ ଗ୍ରାହକମାନଙ୍କ ମଧ୍ୟରୁ ତିନିଚତୁର୍ଥାଂଶଠାରେ ମୂଲ୍ୟ ବାକି ରହିଅଛି । ସେ ପାଞ୍ଚବର୍ଷ କାଗଜ ଚଳାଇ ଛାପାଖରଚା ପର୍ଯ୍ୟନ୍ତ ଯୋଗାଇପାରିଲେ ନାହିଁ । ଅନ୍ୟାନ୍ୟ ଖରଚା କଥାକି ବୋଲାଯିବ ?*

ଏହାବ୍ୟତୀତ ପଦ୍ମନାଭ ବିଭିନ୍ନ ଶିକ୍ଷା ଏବଂ ସାଂସ୍କୃତିକ ଅନୁଷ୍ଠାନର ଅଧିବେଶନଗୁଡ଼ିକରେ ଯୋଗଦାନ କରି ପାରଳାଖେମିଡି ଅଧିବାସୀମାନଙ୍କ ମଧ୍ୟରେ ଆତ୍ମସଚେତନତା ଏବଂ ସାଂସ୍କୃତିକ ଜାଗରଣ ସୃଷ୍ଟି କରିବାପାଇଁ ଚେଷ୍ଟା କରୁଥିଲେ ।

ରାଜ ଦରବାର ପକ୍ଷରୁ ଉଭୟ ତେଲୁଗୁ ଓ ଓଡ଼ିଆ ବୁଦ୍ଧିଜୀବୀମାନଙ୍କୁ ସମାନ ପ୍ରୋତ୍ସାହନ ଦିଆଯାଉଥିଲେ ସୁଦ୍ଧା ପାରଳାଖେମିଡ଼ିରେ ଓଡ଼ିଆମାନଙ୍କ ସ୍ୱାର୍ଥରକ୍ଷାପାଇଁ ଉପଯୁକ୍ତ ବାତାବରଣ ସୃଷ୍ଟି ନ କଲେ ଆଗାମୀ ଦିନରେ ଏ ଅଞ୍ଚଳକୁ ବୃହତ୍ତର ଓଡ଼ିଶା ପ୍ରଦେଶ ମଧ୍ୟରେ ସମ୍ମିଳିତ କରିବା ସମ୍ଭବ ହେବ ନାହିଁ ବୋଲି ଦୂରଦୃଷ୍ଟି ସଂପନ୍ନ ରାଜକୁମାର ଏବଂ ଶ୍ୟାମସୁନ୍ଦରଙ୍କ ହୃଦ୍‌ବୋଧ ହୋଇଥିଲା । ଏମାନେହିଁ ତ ଥିଲେ ଉତ୍କଳ ସମ୍ମିଳନୀର ଆଦି ନେପଥ୍ୟନାୟକ ।

ପୁଣି ସେ ହିଁ ଥିଲେ ପାରଳାଖେମିଣ୍ଡି ଏବଂ ଦକ୍ଷିଣ ଓଡ଼ିଶାରେ ଜାତୀୟ କଂଗ୍ରେସର ଆଭିମୁଖ୍ୟକୁ ପରିପ୍ରଚାର କରାଇବାରେ ଅନ୍ୟତମ ଉଦ୍ୟୋକ୍ତା । ୧୮୯୪ରେ ମାନ୍ଦ୍ରାଜରେ କଂଗ୍ରେସର ଯେଉଁ ଅଧିବେଶନ ହୋଇଥିଲା ସେଥିରେ ପାରଳାଖେମୁଣ୍ଡି **ଉତ୍କଳ ହିତୈଷିଣୀ ସମାଜ** ପକ୍ଷରୁ ଶ୍ୟାମସୁନ୍ଦର ରାଜଗୁରୁ ଏବଂ ଦେବାନ ସଦାଶିବ ମିଶ୍ର ଯୋଗ ଦେଇଥିଲେ । ଏହି ଅବସରରେ ଶ୍ୟାମସୁନ୍ଦର ପଦ୍ମନାଭଙ୍କୁ ସଙ୍ଗରେ ନେଇ କଂଗ୍ରେସର କାର୍ଯ୍ୟକ୍ରମ ସହିତ ପରିଚିତ କରାଇଥିଲେ । ଏଠାରେ ରାଜକୁମାର ଥିଲେ ଜଣେ ଦର୍ଶକ ମାତ୍ର । କିନ୍ତୁ ୧୮୯୫ ପୁନା ଅଧିବେଶନରେ ଉତ୍କଳ ହିତୈଷିଣୀ ସମାଜର ଜଣେ ମନୋନୀତ ସଭ୍ୟଭାବେ ଶ୍ୟାମସୁନ୍ଦର ରାଜଗୁରୁ ଏବଂ ଭବକୃଷ୍ଣ ଦ୍ୱୈପାୟନ ରାଓଙ୍କ ସହିତ ଯୋଗଦେଇ ଯୁବକ ପଦ୍ମନାଭଙ୍କ କର୍ମକର୍ତ୍ତା ଦୃଷ୍ଟି ଆକର୍ଷଣ କରିପାରିଥିଲେ । ଫଳରେ ୧୮୯୭ ଅମରାବତୀ ଅଧିବେଶନରେ ସେ ସବ୍‌ଜେକ୍ଟ କମିଟି ବା ସ୍ଥାୟୀ ସମିତି ପାଇଁ ଜଣେ ସଭ୍ୟ ନିର୍ବାଚିତ ହୋଇଥିଲେ । ଏହି ଅଧିବେଶନଗୁଡ଼ିକରୁ ଯେଉଁ ଜାତୀୟବାଦୀ ଚେତନା ସେ ଆହରଣ କରିଥିଲେ, ତାହା ତାଙ୍କୁ ଓଡ଼ିଶାର ବିଭିନ୍ନ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ ସହିତ ସଂପୃକ୍ତ ହେବାର ସୁଯୋଗ ଆଣି ଦେଇଥିଲା । ସେ ସ୍ୱଳ୍ପ ବୟସରେ ହିଁ ଓଡ଼ିଶାର ପ୍ରବୀଣ ନେତୃବୃନ୍ଦଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିଲେ । ଯୁବରାଜ-କୁମାରଙ୍କ ପ୍ରତିଭାରେ ମୁଗ୍ଧ ହୋଇ ଫକୀରମୋହନ ଲେଖିଥିଲେ-

‘ଓଡ଼ିଆ ଦକ୍ଷିଣ ସୀମା ପାରଳାଖିମଡ଼ି,  
ଧନେ ମାନେ କିଏ ଆଉ ଅଛି ତାଙ୍କୁ ବଡ଼ି ?  
କବିତ୍ୱ ଗୌରବ ସ୍ଥାନ ନ ଦେଖେଁ ସେପରି,  
ଗାଉଥିଲେ ବସି ଗୀତ ଯହିଁ ଗୌରହରି ।  
ଧନ୍ୟ ହେ ସେକେଣ୍ଡ ପ୍ରିନ୍‌ସ୍ ଧନ୍ୟ ତୁମ୍ଭ ନାମ,  
ବଂଶ ଅନୁରୂପ ଏକା କରିଅଛ କାମ ।

କେତେ ରାଜାଙ୍କର ଅଛି ଇଂରେଜ୍ Knowledge
ନ ଛୁଇଁବେ very dirty ଓଡ଼ିଆ Language
ସତକଥା ହେଲେ ଏବେ English-educated
consequently ଓଡ଼ିଆ study sadly neglected.
ମୁଁ ତ କହୁନାହିଁ dirty oriya ପଢ଼ିବାକୁ,
କିଂପା ଯିବେ ଏଡ଼େ ମହାପାପ କରିବାକୁ ।
ମାତ୍ର ରାଜଧର୍ମ ଛାମୁ ନ ଯାଅ ପାସୋରି,
ଦେଶୀ ଲୋକ ଦେଶୀ ଭାଷା ଶିଖିବେ କିପରି ?
ଭରସି ବୋଲିବି ଯେବେ ତାକୁ ଦୁଇ କଥା,
ଖପା ହୋଇ ପିଟିଦେବେ ଠେଙ୍ଗାରେ ମୋ ମଥା ।
କାହିଁପାଇଁ ମିଛଟାରେ ହେବି ହରବର,
ଅଦାର ବେପାର କରି ଜାହାଜ ଖବର ।
ଆପଣ ବୁଝନ୍ତି କଥା, ସିନା ସେଥିପାଇଁ,
ବୋଇଲି ଚାରିଟା କଥା ଶୁଣ ଅବା ନାହିଁ ।
ଦକ୍ଷିଣ ରାଜ୍ୟରେ ମାତୃଭାଷା ରକ୍ଷା ପାଇଁ
ସମସ୍ତେ ଅଛନ୍ତି ଏକା ତୁମ୍ଭଙ୍କୁ ଅନାଇ ।
ଆମ୍ଭେମାନେ ଷୋଳପଣି କରିଅଛୁ ଆଶା,
ଉନ୍ନତି ଲଭିବ ତୁମ୍ଭ ଯୋଗେ ମାତୃଭାଷା ।
କେତେ ହାତୀ କେତେ ଘୋଡ଼ା ଯାଉଅଛି କିଣା,
ବାନ୍ଧି ନେଉଅଛି ଥଳି କେ ବଜାଇ ବୀଣା ।
ଦେଶ ଭାଷା ଉନ୍ନତିରେ ଯାହା କରିଯିବ,
ଯୁଗ ଯୁଗାନ୍ତରେ କୀର୍ତ୍ତି ବାନା ଉଡୁଥିବ ।
ଟେଲର ତ ଦେଇଥିଲା ଓଡ଼ିଆ ଉଡ଼ାଇ,
ଗୌରଚନ୍ଦ୍ର ଗଜପତି ଦେଲେ ସେ ରଖାଇ ।
ମହାରାଜ ଆପଣଙ୍କ ଏ କଥା ପଦକ,
କରିଥିବି ସବୁଦିନେ ହୃଦୟେ ପଦକ ।

ପଶ୍ଚିମରେ ପେଟ୍ରିୟଟ, ଦକ୍ଷଣେ ନିୟୁସ,
ଉତ୍ତରେ ଏ ସବୁ କଥା ମୂଳରୁ ରିଫ୍ୟୁସ୍ ।
ଏହିପରି ଜଣେ ଯେବେ ଥାଆନ୍ତେ ଉତ୍ତରେ,
ବୁଲୁଥାନ୍ତି ମୁହିଁ ହାତ ପକାଇ ନିଶରେ ।'' (ଉତ୍କଳ ଭ୍ରମଣଂ)

ସେନାପତିଙ୍କ ଏ ପ୍ରଶଂସା ଅପାତ୍ରୋଚିତ ନଥିଲା । ତାଙ୍କ ଆଶା-ବୀଜ ମଧ ଉଷର ଭୂମିରେ ପଡ଼ି ନଥିଲା । ସେକେଣ୍ଡ ପ୍ରିନ୍ସ ଜୀବନର ଶେଷାବଧି ତାଙ୍କ ଆଶାକୁ ଫଳବତୀ କରିବାପାଇଁ ସକଳ ଉଦ୍ୟମ ଅବ୍ୟାହତ ରଖିଥିଲେ ।

(୪)

ଭାରତ ପର୍ଯ୍ୟଟନ ଅବସରରେ କଲିକତାଠାରେ ଆଧୁନିକ ରଙ୍ଗମଞ୍ଚ ଏବଂ ସେଥିରେ ଅଭିନୀତ ଇଂରେଜୀ ଓ ବଙ୍ଗଳା ନାଟକ ପରିଦର୍ଶନ କରି ସଙ୍ଗୀତ ଓ ନାଟ୍ୟପ୍ରିୟ ଯୁବକ ପଦ୍ମନାଭ ନାରାୟଣଙ୍କ ମନରେ ପାରଳାଖେମୁଣ୍ଡିଠାରେ ଏପରି ଏକ ରଙ୍ଗାଳୟର ପରିକଳ୍ପନା ଜାଗ୍ରତ ହୋଇଥିଲା । ରାଜଧାନୀକୁ ଫେରିବା ପରେ ଏଠାରେ ଆୟୋଜିତ ସଙ୍ଗୀତ ଓ ଲୀଳା ଅନୁଷ୍ଠାନ ପ୍ରତି ସେ ଅଧିକ ଧ୍ୟାନ ଦେଇଥିଲେ । ପାରଳାଖେମୁଣ୍ଡିଠାରେ ଲୀଳା-ରଚୟିତା, ଅଭିନେତା ଏବଂ ଗାହକ ଓ ବାୟକଙ୍କ ଅଭାବ ନଥିଲା । ପୂର୍ବରୁ ରଘୁନାଥ ପରିଚ୍ଛାଙ୍କ **ଗୋପୀନାଥବଲ୍ଲଭ ନାଟକ** ଏଠାରେ ଅଭିନୀତ ହୋଇ ଦର୍ଶକମାନଙ୍କ ପ୍ରିୟପାତ୍ର ହୋଇଥିଲା । ସେ ନୃତ୍ୟ ଭାଗବତ, ନୃତ୍ୟ ରାମାୟଣ ପରି ଲୀଳାମାନ ମଧ୍ୟ ମଞ୍ଚସ୍ଥ କରିଥିବା ଶୁଣାଯାଏ । ଏହି ପରମ୍ପରାକୁ ଅଧିକ ଉନ୍ନତ ଓ ଆକର୍ଷଣୀୟ କରିବାପାଇଁ ପାରଳାଖେମୁଣ୍ଡିର ଅନ୍ୟତମ ପ୍ରବାଦପୁରୁଷ ଆପନ୍ନା ପରିଚ୍ଛା ଏବଂ ତାଙ୍କ ଜ୍ୟେଷ୍ଠଭ୍ରାତା ନୀଳମଣି ପରିଚ୍ଛା ତାଳଗଛର ଖୁଣ୍ଟିପୋତି ଏକ ମୁକ୍ତ ରଙ୍ଗମଞ୍ଚ ନିର୍ମାଣ କରିଥିଲେ । ଏଥିରେ ଧାରାବାହିକ ଅଭିନୟପାଇଁ ସେ **ବୈଷ୍ଣବାନନ୍ଦଦାୟିନୀ ସଭା** ନାମରେ ଏକ ନାଟ୍ୟସଂଘ ମଧ୍ୟ ଗଠନ କରିଥିଲେ । କେହି କେହି ଏହାକୁ **ବୈଷ୍ଣବାନନ୍ଦ ଦାୟିନୀ ସମାଜ** କିମ୍ବା **ରସିକରାଜ ପ୍ରସାଦୈକ ନାଟକ ସଂଘ** ବୋଲି ଉଲ୍ଲେଖ କରିଛନ୍ତି କିନ୍ତୁ ସ୍ୱୟଂ ଆପନ୍ନା ପରିଚ୍ଛାଙ୍କ ଦିନଲିପି ଭିତ୍ତିରେ ଗବେଷକ ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ମହାପାତ୍ର ଏହା **ବୈଷ୍ଣବାନନ୍ଦ ଦାୟିନୀ ସଭା** ଥିବା ସପ୍ରମାଣ ନିର୍ଦ୍ଧାରଣ କରିଛନ୍ତି । ଏହା ୧୮୯୭ ମସିହାରେ ଗଠିତ ହୋଇଥିବା ତାଙ୍କ ଦ୍ୱାରା ନିର୍ଦ୍ଧାରିତ (ପୃ-୯୯) । ଏହି ସଭାଦ୍ୱାରା ପ୍ରଦର୍ଶିତ ହେବା ପାଇଁ ରାଜକୁମାର ପଦ୍ମନାଭଙ୍କ ଦ୍ୱାରା ଏକ **ରାସ** ରଚନା କରାଯାଇଥିବା ପାରଳାଖେମୁଣ୍ଡିଠାରୁ ଜଣେ **ଗଞ୍ଜାମ ଓଡ଼ିଆ ହିତବାଦୀ** ପାଠକଙ୍କ ତା୧୦-୩-

୧୯୦୧ରେ ଏକ ପତ୍ରରୁ ଜଣାଯାଏ । **ଗଞ୍ଜାମ ଓଡ଼ିଆ ହିତବାଦିନୀ ପତ୍ରିକାର** ଦ୍ୱିତୀୟ ଭାଗ ୧୫ଶ ସଂଖ୍ୟାରେ ପାରଳାଖେମୁଣ୍ଡି ଚାଙ୍ଗୁଡ଼ି ଶାସନ ନିବାସୀ ଶ୍ରୀ ଗଙ୍ଗାଧର ଖାଡ଼ଙ୍ଗାଙ୍କ ଏକରଚନା ପ୍ରକାଶ ପାଇଥିଲା । ଏଥିରେ ସେ ''ଲୀଳା ଅପେକ୍ଷା ନାଟକ ଶ୍ରେଷ୍ଠତର ବୋଲି କହି ଲୀଳା ଅନୁରାଗୀମାନଙ୍କୁ କୁତ୍ସା'' କରିଥିଲେ । ଏହାର ପତିବାଦରେ ଉପରୋକ୍ତ ପାଠକଙ୍କ ଯେଉଁ ପତ୍ର **ଉତ୍କଳ ଦୀପିକା** ତା୧୩-୪-୧୯୦୧ରିଖ ସଂଖ୍ୟାରେ ପ୍ରକାଶ ପାଇଥିଲା, ସେଥିରେ ଅଛି-

*ଜନସାଧାରଣଙ୍କ ଉପକାର ନିମନ୍ତେ ଏଠାରେ ବାବୁ ରଘୁନାଥ ପରୀକ୍ଷା 'ସଙ୍ଗୀତ ରାମାୟଣ' ରଚନା କରିଅଛନ୍ତି ଏବଂ ଶ୍ରୀ ଶ୍ରୀ ପଦ୍ମନାଭ ନାରାୟଣ ଦେବ ରାସ ରଚନା କରିଅଛନ୍ତି । ଏହି ଦୁଇଟି ଲୀଳା ପାରଳାରେ ପ୍ରସିଦ୍ଧ । ବୋଧହୁଏ ଏହି ଲୀଳାମାନ ନ ଶୁଣିବା ଜଣେ ଓଡ଼ିଆ ପୁଅ ପାରଳାରେ ନଥିବ । ରାମ ଓ କୃଷ୍ଣଙ୍କ ଚରିତ ଶୁଣି କାହାର ନୟନରୁ ଅଶ୍ରୁ ଗଳିବ ନାହିଁ ଏବଂ କାହାର ଦେହ ରୋମାଞ୍ଚିତ ହେବ ନାହିଁ ।*

*ଏହି ପତ୍ରରେ ସେହି ପାଠକ ମହୋଦୟ ଜଣାଇଛନ୍ତି ଯେସମ୍ପ୍ରତିରେ ପାରଳାର ରାଜଗୁରୁ ସାହିର ଭଦ୍ର ସନ୍ତାନମାନେ ପାରଳାର ଆଧୁନିକ ସଭ୍ୟ ବ୍ୟକ୍ତିମାନଙ୍କଦ୍ୱାରା ରଚିତ ଦୁଇଟି ଓଡ଼ିଆ ନାଟକ ଅଭିନୟ କରି ସଭ୍ୟବୃନ୍ଦର ଆନନ୍ଦ ବର୍ଦ୍ଧନ କରିବା ଏବଂ ଆଉ କେତେକ ନାଟକ ଅଭିନୟ କରିବାକୁ ସେମାନେ ଶିକ୍ଷା କରୁଥିବାର ଅବଲୋକନ କରି ଖାଡ଼ଙ୍ଗା ବାବୁ ଲୀଳା ଅପେକ୍ଷା ନାଟକ ଶ୍ରେଷ୍ଠତର ବୋଲି କହିଅଛନ୍ତି ।'' (ତତ୍ରୈବ)*

ସଠିକ୍ ସମୟ ଜାଣିବା ସମ୍ଭବ ନ ହେଲେ ସୁଦ୍ଧା ଗଙ୍ଗାଧର ଖାଡ଼ଙ୍ଗାଙ୍କ ପ୍ରବନ୍ଧ, ତା'ର ପ୍ରତିବାଦ, ବିଭିନ୍ନ ସୂତ୍ରରୁ ପ୍ରାମାଣିକ ତଥ୍ୟ ଏବଂ ବିଶେଷତଃ ଗବେଷକ ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ମହାପାତ୍ରଙ୍କ ବିବରଣୀରୁ ମନେହୁଏ ଆପନ୍ନା ପରିଚ୍ଛାଙ୍କ ରଙ୍ଗମଞ୍ଚ ପଦ୍ମନାଭ ନାରାୟଣ ଦେବ ଏବଂ ପାରଳାଧିପତି ଗୌରଚନ୍ଦ୍ର ଗଜପତି ନାରାୟଣ ଦେବଙ୍କଦ୍ୱାରା ନବୀକୃତ ହୋଇ ଖ୍ରୀ.୧୯୦୦ ମସିହାରେ **ପଦ୍ମନାଭ ରଙ୍ଗାଳୟ** ନାମରେ ନାମିତ ହୋଇଥିଲା । ମହାରାଜାଙ୍କ ଅଖଣ୍ଡ ଭାତୃ ପ୍ରୀତି, ପଦ୍ମନାଭଙ୍କ ସାହିତ୍ୟ ପ୍ରୀତି ଏବଂ ପାରଳା ପ୍ରଜାବୃନ୍ଦଙ୍କ ପଦ୍ମନାଭ ପ୍ରୀତିରୁ ନବନିର୍ମିତ ରଙ୍ଗାଳୟଟି ରାଜାଙ୍କ ପରିବର୍ତ୍ତେ ରାଜଭ୍ରାତାଙ୍କ ନାମରେ ନାମିତ ହୋଇଥିବା ମନେହୁଏ । ୧୯୦୦ ମସିହାଟି ପଦ୍ମନାଭଙ୍କ ପାଇଁ ଥିଲା ଏକ ଅଶୁଭ ବର୍ଷ । ନିଜର ଦୁଃସାଧ୍ୟରୋଗ, ପତ୍ନୀ ଓ ପଞ୍ଚମ ପୁତ୍ରର ମୃତ୍ୟୁ ତାଙ୍କ ଜୀବନକୁ ଦୁର୍ବିସହ କରିଦେଇଥିଲା । ଏ ସମୟରେ ଭ୍ରାତୃବତ୍ସଳ ଗୌରଚନ୍ଦ୍ର ଗଜପତି ନିଜ ନାମ ଅପେକ୍ଷା ଭ୍ରାତାଙ୍କ ନାମରେ ରଙ୍ଗାଳୟଟିକୁ ନାମିତ କରିବାର ଉପାଦେୟତା ଅଧିକ ଉପଲବ୍ଧି କରିଥିଲେ ।




ସ୍ୱର୍ଗତ ଶିବରାମ ପାତ୍ରଙ୍କ ସୌଜନ୍ୟରୁ ପ୍ରାପ୍ତ



ପଦ୍ମନାଭ ହଗଂଗଙ୍କ ଭଗ୍ନାବଶେଷ

ସ୍ୱର୍ଗତ ଶିବରାମ ପାତ୍ରଙ୍କ ସୌଜନ୍ୟରୁ ପ୍ରାପ୍ତ

ନବନିର୍ମିତ ରଙ୍ଗମଞ୍ଚଟିକୁ ଭ୍ରମବଶତଃ ଆଲୋଚକମାନେ ପାରଳା ରଙ୍ଗାଳୟ, ପଦ୍ମାଳୟା ରଙ୍ଗାଳୟ, ପଦ୍ମନାଭ ରଙ୍ଗମଞ୍ଚ ଇତ୍ୟାଦି ରୂପେ ପରିଚିତ କରାଇଥିଲେ ହେଁ, ଏହାର ପ୍ରକୃତ ନାମ ଥିଲା ପଦ୍ମନାଭ ରଙ୍ଗାଳୟ । ସ୍ୱର୍ଗତ କବିଶେଖର ଚିନ୍ତାମଣି ମହାନ୍ତି ପାରଳା ପର୍ଯ୍ୟଟନ ସମୟରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କଦ୍ୱାରା ଆଧୁନିକ ଶୈଳୀରେ ନବନିର୍ମିତ ରଙ୍ଗମଞ୍ଚ ପରିଦର୍ଶନ ବେଳେ ଏହାର ପ୍ରଥମ ପର୍ଦ୍ଦାରେ ଇଂରେଜୀ ଅକ୍ଷରରେ 'ଶ୍ରୀ ଶ୍ରୀ ପଦ୍ମନାଭ ରଙ୍ଗାଳୟ' ଲେଖାଥିବା ଦେଖିଛନ୍ତି । ଏହାର ଉର୍ଦ୍ଧ୍ୱରେ ଯେଉଁ ଚିତ୍ରଟି ଶୋଭା ପାଉଥିଲା ସେଥିରେ-

> *''ପଦ୍ମନାଭ ଦେବ ନାଟକ ଲେଖୁଅଛନ୍ତି, ନାରଦ ତାହାଙ୍କ ମସ୍ତକରେ ହସ୍ତାର୍ପଣପୂର୍ବକ ଆଶୀର୍ବାଦ କରୁଅଛନ୍ତି, ବୀଣାପାଣୀ ସରସ୍ୱତୀ ଉପରୁ ଅବତୀର୍ଣ୍ଣ ହେଉଅଛନ୍ତି'' ଅଙ୍କିତ ଥିବା ଜଣାଯାଏ । ଏଥିରେ ଶ୍ରୀ ଶ୍ରୀ ରସିକ ରାଜ ପ୍ରସାଦୈକ ସୁଜନ ମନୋରଞ୍ଜନ ନାଟକ ଦଳ ୧୮୯୫ ମସିହାରେ ପ୍ରତିଷ୍ଠିତ ହୋଇଥିବା ମଧ ଉଲ୍ଲେଖ ଥିଲା । ଏହି ନାଟକ ଦଳ ରାଜପ୍ରାସାଦ ଏବଂ ମନ୍ଦିର ପ୍ରାଙ୍ଗଣ ଗୁଡ଼ିକରେ ଲୀଳା ପ୍ରଦର୍ଶନ କରି ଆସୁଥିବାବେଳେ ୧୯୦୦ ମସିହାରେ କେବଳ ନାଟକ ପ୍ରଦର୍ଶନଦ୍ୱାରା ପାରଳାବାସୀଙ୍କ ମନୋରଞ୍ଜନ କରିପାରିଥିଲା ।*

ରଙ୍ଗମଞ୍ଚର ସ୍ଥାନ ସମ୍ପର୍କରେ ମଧ ବିଭିନ୍ନ ଭ୍ରାନ୍ତଧାରଣା ପ୍ରଚଳିତ; କିନ୍ତୁ ଏସବୁକୁ ନିରାକରଣ କରି ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ମହାପାତ୍ର ସ୍ୱୀୟ 'ଇତିହାସର ପୃଷ୍ଠଭୂମିରେ ପାରଳାର ପରିଚ୍ଛା ମଠ ଓ ଜାତିପ୍ରାଣ ଆପନ୍ନା ପରିଚ୍ଛା' ଗ୍ରନ୍ଥରେ (୨୦୦୭) ଏହା ରାଜଗୁରୁ ସାହିର ଦକ୍ଷିଣ ପଶ୍ଚିମ ମୁଣ୍ଡରେ ଥିବା ନିର୍ଦ୍ଧାରଣ କରିଛନ୍ତି । ଏ ସମ୍ପର୍କରେ ତାଙ୍କ ବକ୍ତବ୍ୟ ହେଲା ।

> *ପଦ୍ମନାଭ ରଙ୍ଗାଳୟ, ରାଜପୃଷ୍ଠପୋଷକତା ପାଇବା ପରେ ପାରଳା ଜଙ୍ଗମ ସାହିର ପୂର୍ବ ମୁଣ୍ଡରେ ଥିବା ଛତ୍ରଘରଠାରେ ନିର୍ମାଣ କରାଯାଇଥିବା କେହି କେହି ମତ ଦିଅନ୍ତି । ଆଉ କେତେକଙ୍କ ମତରେ ଏହା ରାଜବାଟୀ ମଧରେ ଥିଲା । ଏସବୁ ଭ୍ରାନ୍ତ ଧାରଣାର ପରିଚାୟକ । ରାଜବାଟୀରେ ନାଟକ ଅଭିନୟ ବେଳେବେଳେ ହେଉଥିଲା । କିନ୍ତୁ ପଦ୍ମନାଭ ରଙ୍ଗାଳୟ ସେଠାରେ ନଥିଲା । ରାଜରମଣୀମାନେ ରାଜନଅର ବାହାରକୁ ଆସି ନାଟକ ଦେଖିବା ଜନିତ ଅସୁବିଧା ଉପଲବ୍‌ଧି କରି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନଅର ମଧରେ ନାଟକ ବ୍ୟବସ୍ଥା ବେଳେବେଳେ କରୁଥିଲେ । ଛତ୍ରଘରଠାରେ ରଙ୍ଗାଳୟର ଚିହ୍ନବର୍ଣ୍ଣ ସୁଦ୍ଧା ନାହିଁ । ରଙ୍ଗାଳୟର ଅବସ୍ଥିତି*

*ସମ୍ପର୍କରେ ''ପାରଳା ସହର ବର୍ଣ୍ଣନା'' (୧୯୩୭ରେ ପ୍ରକାଶିତ) ନାମକ ଏକ କ୍ଷୁଦ୍ର ଗୀତି ପୁସ୍ତକର ଟିପ୍‌ପଣୀ ଏଠାରେ ଉଲ୍ଲେଖଯୋଗ୍ୟ । ଏ ପୁସ୍ତିକାର ଲେଖକ ପାରଳାଖେମୁଣ୍ଡି ବକ୍ସି ସାହିର ମୀନକେତନ ପାଢ଼ୀ ନାମକ ଜଣେ ଶିକ୍ଷକ । ଉକ୍ତ ଟିପ୍‌ପଣୀ ଏହିପରି-*

*''ଶୁଣ ଭାଇ ଆରେ　　　　　　ପନ୍ଦରା ସାହିରେ*
*　　ସାଗ ବିକି ଧାନେ ପୂରାନ୍ତି ମୁଣା (୧୫)*
*ତହିଁ ନିକଟରେ　　　　　　ରଙ୍ଗାଳୟ ଘର*
*　　ସଦା ଲାଗିଥାଏ ସଙ୍ଗୀତ ଡ୍ରାମା*
*ଆର ପାଶେ ଜାଣ　　　　　　ସୁରମ୍ୟ ଉଦ୍ୟାନ*
*　　ଜାମି, ଟଭା, ନଡ଼ିଆ, ପୁଟାଲିମା (୧୬) ।''*

('ପୁଟାଲିମା' ଏକ ତେଲୁଗୁ ଶବ୍ଦ-ଓଡ଼ିଆରେ ଏହାକୁ ବତେଇ କୁହାଯାଏ ।)

*ରାଜଗୁରୁ ସାହି ବାରିପଟେ ପନ୍ଦରା ସାହି ଥିବାରୁ ପଦ୍ମାଳୟ ରଙ୍ଗାଳୟର ଅବସ୍ଥିତି ରାଜଗୁରୁ ସାହିର ଦକ୍ଷିଣ ପଶ୍ଚିମ ମୁଣ୍ଡରେ ଥିବା ନେଇ କୌଣସି ସନ୍ଦେହର ଅବକାଶ ନାହିଁ । 'ପଦ୍ମନାଭ ରଙ୍ଗାଳୟ' ନାମକରଣ ପୂର୍ବରୁ ସମ୍ପୃକ୍ତ ମଞ୍ଚରେ ବୈଷ୍ଣବାନନ୍ଦଦାୟିନୀ ସଭା ନାଟକ ଅଭିନୟ କରୁଥିଲା' (ପୃ-୯୮-୯୯) ।*

ପଦ୍ମନାଭ ରଙ୍ଗାଳୟ କେବଳ ନାମତଃ ନୁହେଁ, ବାସ୍ତବରେ ଥିଲା ପଦ୍ମନାଭ ନାରାୟଣ ଦେବଙ୍କ ମାନସସନ୍ତାନ । ଅଧ୍ୟାପକ ଶ୍ୟାମସୁନ୍ଦର ରାଜଗୁରୁଙ୍କଠାରୁ ସେ ସେକ୍‌ସପିୟର ପ୍ରଭୃତି ପାଶ୍ଚାତ୍ୟ ନାଟ୍ୟକାରଙ୍କ ନାଟକ ଓ ନାଟ୍ୟଶୈଳୀ ସମ୍ପର୍କରେ ଜ୍ଞାନ ଆହରଣ କରିଥିଲେ । ଦେଶ ପର୍ଯ୍ୟଟନ କାଳରେ ମଞ୍ଚସ୍ଥ ହିନ୍ଦୀ, ବଂଗଳା ଓ ଇଂରେଜୀ ନାଟକ ଦେଖି ଆଧୁନିକ ନାଟକ ସମ୍ପର୍କରେ ତାଙ୍କର ସ୍ପଷ୍ଟ ଧାରଣା ହୋଇଥିଲା । ଊନବିଂଶ ଶତାବ୍ଦୀର ଶେଷ ଦଶକରେ ଉତ୍ତର ଓଡ଼ିଶାର ବିଭିନ୍ନ ସ୍ଥାନରେ ବଙ୍ଗଳା ଥିଏଟର୍ ଏବଂ ରାମଶଙ୍କର ରାୟ ପ୍ରଭୃତିଙ୍କର ଓଡ଼ିଆ ନାଟକ ଅଭିନୀତ ହୋଇ ଓଡ଼ିଆ ନାଟ୍ୟ ଜଗତରେ ଏକ ନୂତନ ଯୁଗର ଅଭ୍ୟୁଦୟ ହୋଇ ଆସୁଥିବା ସମ୍ପର୍କରେ ସେ ବିଭିନ୍ନ ପତ୍ରପତ୍ରିକାରୁ ଅବଗତ ହେଉଥିଲେ । ପାରଳାରେ ମଧ୍ୟ ଏହି ପରିବର୍ତ୍ତନକୁ ସ୍ୱାଗତ କରିବାପାଇଁ ପଦ୍ମନାଭ ପ୍ରସ୍ତୁତ ହେଉଥିବାବେଳେ 'ବାପଟଲାଲ୍ କମ୍ପାନି' ନାମରେ ଏକ ଭ୍ରାମ୍ୟମାଣ ପେଶାଦାର ନାଟକଗୋଷ୍ଠୀ ପାରଳାଖେମୁଣ୍ଡିରେ ପଦାର୍ପଣ କରି ଚନ୍ଦ୍ରକାନ୍ତ, ହରିଶ୍ଚନ୍ଦ୍ର, ପାରିଜାତ ହରଣ ଇତ୍ୟାଦି ନାଟକ ଦୀର୍ଘଦିନ ଧରି ପରିବେଷଣ କରିଥିଲେ ।

ପଦ୍ମନାଭ ଦେବ ନିଜ ସ୍ୱପ୍ନକୁ ସାକାର କରିବାପାଇଁ ଏହି କମ୍ପାନୀର ଦୁଇଜଣ ବିଶିଷ୍ଟ କଳାକାର କୃଷ୍ଣମୂର୍ତ୍ତି ଓ ରାମମୂର୍ତ୍ତିଙ୍କୁ ଡକାଇ ଆଣି ଆପନ୍ନା ପରିଚ୍ଛାଙ୍କ ନାଟ୍ୟଗୋଷ୍ଠୀକୁ ଆଧୁନିକ ମଞ୍ଚ ପରିଚାଳନା, ଅଭିନୟ, ନାଟ୍ୟ ପ୍ରଯୋଜନା ଶିକ୍ଷା ଦେବାପାଇଁ ନିଯୁକ୍ତ କରିଥିଲେ । ପୂର୍ବରୁ ଲୀଳା ନାଟକର ନିର୍ଦ୍ଦେଶକ ଆପନ୍ନା ପରିଚ୍ଛା ହିଁ ରହିଲେ ଆଧୁନିକ ନାଟକର ପ୍ରଯୋଜକ ଓ ନିର୍ଦ୍ଦେଶକ । ଏକ ଅଭିନବ ନାଟକ ଗୋଷ୍ଠୀ ଗଠିତ ହେଲା । ପ୍ରଭୁ ରସିକରାଜଙ୍କ ନାମାନୁସାରେ ଏହାର ନାମକରଣ କରାଗଲା **ରସିକରାଜ ପ୍ରସାଦୈକ ସୁଜନ ମନୋରଞ୍ଜନ ନାଟ୍ୟସଂଘ** । ବହୁ ଉତ୍‌ଥାନ ପତନ ମଧ ଦେଇ ପଦ୍ମନାଭ ରଙ୍ଗାଳୟ ଏବଂ ନାଟକ ସଂଘ ପ୍ରାୟ ୩୦ ବର୍ଷ ଧରି ନାଟକ ପରିବେଷଣ କରିଥିବା କମ୍ ଗୌରବର କଥା ନୁହେଁ । ଏମାନେ କେବଳ ଯେ ପାରଳାଖେମୁଣ୍ଡିରେ ନାଟକ ପ୍ରଦର୍ଶନ କରୁଥିଲେ ତାହା ନୁହେଁ, ଓଡ଼ିଶାର ବିଭିନ୍ନ ସ୍ଥାନରେ ନାଟକ ମଞ୍ଚସ୍ଥ କରି ସୁନାମ ଅର୍ଜନ କରିଥିଲେ । କଟକ, ବ୍ରହ୍ମପୁର, ଭଞ୍ଜନଗର ପ୍ରଭୃତି ସ୍ଥାନରେ ଅଭିନୟ ପ୍ରଦର୍ଶନ କରୁଥିବା ସମ୍ବାଦ ତତ୍‌କାଳୀନ ପତ୍ରପତ୍ରିକାରୁ ଶୁଣିବାକୁ ମିଳେ ।

ପଦ୍ମନାଭ ରଙ୍ଗାଳୟର ଇତିବୃତ୍ତ ସମ୍ପର୍କରେ ଅଧିକ ଜାଣିବାପାଇଁ ପାଠକମାନେ ଗବେଷକ ପୂର୍ଣ୍ଣଚନ୍ଦ୍ର ମହାପାତ୍ରଙ୍କ ପ୍ରାମାଣିକ ତଥ୍ୟ ସମ୍ବଳିତ 'ଇତିହାସର ପୃଷ୍ଠଭୂମିରେ ପାରଳାର ପରିଚ୍ଛା ମଠ ଓ ଜାତିପ୍ରାଣ ଆପନ୍ନା ପରିଚ୍ଛା' ଗ୍ରନ୍ଥର ପୃଷ୍ଠା ସତାନବେରୁ ଶହେତେର ପୃଷ୍ଠା ଦେଖିପାରନ୍ତି ।

ରଙ୍ଗାଳୟ ତ ସ୍ଥାପିତ ହେଲା, ଅଭିନେତାମାନେ ଆଧୁନିକ ନାଟକ ପରିବେଷଣ ପାଇଁ ପ୍ରସ୍ତୁତ ହେଲେ । କିନ୍ତୁ ନାଟକ କାହିଁ ? ପଦ୍ମନାଭ ଦେବ ଏଥିପାଇଁ ନିଜେ ହିଁ ପ୍ରଥମେ ପଦକ୍ଷେପ ନେଲେ । ଯେତେଦୂର ସମ୍ଭବ ମନେହୁଏ ତାଙ୍କ ରଚିତ **ସଙ୍ଗୀତ ପ୍ରହ୍ଲାଦ ନାଟକ** ହିଁ ପ୍ରଥମେ ଏ ରଙ୍ଗାଳୟରେ ଅଭିନୀତ ହୋଇଥିଲା । ମାତ୍ର ଦୁଇଟି ବର୍ଷ ମଧରେ ସେ ଛ'ଟି ନାଟକ ରଚନା କରି ଏହି ରଙ୍ଗାଳୟରେ ମଞ୍ଚସ୍ଥ କରାଇଥିଲେ । ତାଙ୍କ ପ୍ରେରଣାରେ ପ୍ରୋତ୍ସାହିତ ହୋଇ ପଣ୍ଡିତ ଗୋପୀନାଥ ନନ୍ଦ ଦୀର୍ଘ ସଂସ୍କୃତ ନାଟକଗୁଡ଼ିକୁ ଏକରାତ୍ରାଭିନୟୋପଯୋଗୀ କରି ସୀତା ବନବାସ, ରାମାଶ୍ୱମେଧ, ବିକ୍ରମୋର୍ବଶୀୟ, ଦ୍ରୌପଦୀ ବସ୍ତ୍ରହରଣ ପ୍ରଭୃତି ଏବଂ ବୃନ୍ଦାବନ ଚନ୍ଦ୍ର ପାଣିଗ୍ରାହୀ ସଂଗୀତ ନଳୋଦୟ ନାଟକ ରଚନା କରିଥିଲେ । ଆପନ୍ନା ପରିଚ୍ଛା ଏହି ନାଟ୍ୟାନ୍ଦୋଳନର ଥିଲେ ପୁରୋଧା । ସେ ପାରଳାର ନାଟ୍ୟକାରମାନଙ୍କୁ ଆଧୁନିକ ନାଟକ ରଚନା ଦିଗରେ ଦିଗ୍‌ଦର୍ଶନ ଦେବାପାଇଁ ବଙ୍ଗୀୟ ନାଟ୍ୟକାରମାନଙ୍କ ସମକାଳରେ ପ୍ରକାଶିତ ଶତାଧିକ ନାଟକ ପରିଚ୍ଛା ମଠର ଗ୍ରନ୍ଥାଗାରପାଇଁ ସଂଗ୍ରହ କରିଥିଲେ । ତା' ମଧରୁ ଅଧିକାଂଶ 'ଆଖୁ, ଅନଳ ଓ

ହୀରା'ଙ୍କ ଦୌରାତ୍ମ୍ୟରେ ନଷ୍ଟ ହୋଇ ସାରିଥିଲେ ସୁଦ୍ଧା ତାଙ୍କ ସୁଯୋଗ୍ୟ ଦାୟାଦ ମୁରଲୀ ପରିଚ୍ଛାଙ୍କ ଦ୍ୱାରା ଉଦ୍ଧାର କରାଯାଇଥିବା ପୁସ୍ତକଗୁଡ଼ିକୁ ଦେଖିଲେ ସେହି ମହାତ୍ମାଙ୍କ ନିକଟରେ ମସ୍ତକ ସ୍ୱତଃ ନତ ହୋଇଯାଏ । ପରବର୍ତ୍ତୀ ସମୟରେ ପାରଳାଖେମୁଣ୍ଡିରେ ଯେଉଁ ବିଶିଷ୍ଟ ନାଟ୍ୟକାରମାନେ ଜନ୍ମଗ୍ରହଣ କରି ଶତାଧିକ ନାଟକଦ୍ୱାରା ଓଡ଼ିଆ ନାଟ୍ୟ ସାହିତ୍ୟକୁ ସମୃଦ୍ଧ କରିଯାଇଛନ୍ତି, ସେମାନଙ୍କପାଇଁ ଏହି ଗ୍ରନ୍ଥାଗାର ହିଁ ଥିଲା ପ୍ରେରଣାର ଉତ୍ସ ।

ଚନ୍ଦ୍ର ମହାରାଜା ପଦ୍ମନାଭ ଦେବଙ୍କ ଏହି ସୁଚିନ୍ତିତ ପଦକ୍ଷେପ ସମଗ୍ର ଦକ୍ଷିଣ ଓଡ଼ିଶାରେ ଅଭିନବ ମଞ୍ଚ ଏବଂ ନାଟ୍ୟ ଆନ୍ଦୋଳନର ସୂତ୍ରପାତ କରିଥିଲା । ପଦ୍ମନାଭ ରଙ୍ଗାଳୟର ସୁଖ୍ୟାତିରେ ଉନ୍ମାଦିତ ହୋଇ ଦକ୍ଷିଣ ଓଡ଼ିଶାର ରାଜାମାନେ ନିଜ ନିଜ ରାଜଧାନୀରେ ରଙ୍ଗମଞ୍ଚ ସ୍ଥାପନ କରି ଏହି ନାଟ୍ୟ ଆନ୍ଦୋଳନକୁ ତ୍ୱରାନ୍ୱିତ କରାଇଥିଲେ । ଚିକିଟି **ରାଧାମୋହନ ରଙ୍ଗାଳୟ**, ଧରାକୋଟ ମଦନମୋହନ ସିଂହଙ୍କ **କିଶୋରୀ ରଙ୍ଗାଳୟ**, ସୁରଙ୍ଗୀ ରାଜା ଚନ୍ଦ୍ରଚୂଡ଼ାମଣି ଜଗଦେବଙ୍କ **ସୁରଙ୍ଗୀ ରଙ୍ଗାଳୟ**, ଜୟପୁର ବିକ୍ରମଦେବ ବର୍ମାଙ୍କ **ବିକ୍ରମ ଥିଏଟର୍** ଏବଂ ବିଶାଖାପାଟଣାର **ଜଗନ୍ମିତ୍ର ହଲ୍**, ବ୍ରହ୍ମପୁରର କୃପାସିନ୍ଧୁ ନରେନ୍ଦ୍ର ଦେବଙ୍କ **ନରେନ୍ଦ୍ର ନାଟ୍ୟସଂଘ**, ଇତ୍ୟାଦି ନାମ ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ।

(୫)

ରଙ୍ଗମଞ୍ଚ, ନାଟ୍ୟକାର ଓ ଅଭିନେତାମାନଙ୍କ ପୃଷ୍ଠପୋଷକତା କରିବାରେ ଚନ୍ଦ୍ର ମହାରାଜାଙ୍କ ସାରସ୍ୱତ କାର୍ଯ୍ୟକ୍ରମ ସୀମିତ ନଥିଲା । ସେ କେବଳ ପାରଳାଖେମୁଣ୍ଡି ନୁହେଁ ଓଡ଼ିଶାର ପ୍ରାୟ ପ୍ରତ୍ୟେକ ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନ ସହିତ ଜଡ଼ିତ ଥିଲେ । ପାରଳାଖେମୁଣ୍ଡିର ଗରିବ ଓଡ଼ିଆ ଛାତ୍ରଛାତ୍ରୀମାନଙ୍କୁ ପୁସ୍ତକ, ଦରମା ଓ ପରୀକ୍ଷାଦେୟ ପ୍ରଦାନ କରିବା ସହିତ ସାହିତ୍ୟର ଉନ୍ନତିପାଇଁ ଓଡ଼ିଶାର ବିଭିନ୍ନ ଅନୁଷ୍ଠାନ ଓ ପତ୍ରପତ୍ରିକାକୁ ନିଜ ପାଣ୍ଠିରୁ ଦୁଇଶ ପଚାଶ ଟଙ୍କା ଦାନ କରୁଥିବା ଜୀବନୀକାର ଅପର୍ଣ୍ଣା ପଣ୍ଡା ଜଣାଇଛନ୍ତି । ପିତୃପୁରୁଷଙ୍କ ସଂସ୍କୃତ ସାହିତ୍ୟ ପୃଷ୍ଠପୋଷକତା ଏବଂ ଗ୍ରନ୍ଥ ରଚନା ସହିତ ଜଗନ୍ନାଥ ନାରାୟଣ ଦେବ, ପ୍ରତାପରୁଦ୍ର ନାରାୟଣ ଦେବ ପ୍ରମୁଖଙ୍କ ଓଡ଼ିଆ କାବ୍ୟ ପ୍ରଣୟନ, ପାରଳାଖିମୁଣ୍ଡିର ମଠ ସଂସ୍କୃତି ଏବଂ ବୈଷ୍ଣବୀୟ ଭକ୍ତିଗୀତି ପ୍ରତି ଅନୁରକ୍ତ ଗୋପାଳକୃଷ୍ଣ-ଗୌରହରି ପ୍ରମୁଖଙ୍କ ଲଳିତ ମଧୁର ପଦାବଳୀ ଏବଂ ସର୍ବୋପରି ରାଜକୀୟ ପଣ୍ଡିତ ସଭାରେ ପ୍ରାଚୀନ ଓଡ଼ିଆ ସାହିତ୍ୟ ଆଲୋଚନା ପଦ୍ମନାଭ ଦେବଙ୍କୁ ପ୍ରାଚୀନ ଓଡ଼ିଆ ସାହିତ୍ୟ ପ୍ରତି କୈଶୋରରୁ ଆକୃଷ୍ଟ କରିଥିଲା । ସଙ୍ଗୀତ ଶିକ୍ଷା ଏବଂ ପାରଳା

ବୁଦ୍ଧିଜୀବୀମାନଙ୍କ ଜାତୀୟ ଚେତନା ଯୁବକ ରାଜକୁମାରଙ୍କ ମନରେ ଏହା ପ୍ରତି ଅଧିକ ମମତ୍ୱବୋଧ ସୃଷ୍ଟି ହେବା ଥିଲା ସ୍ୱାଭାବିକ । ଇନ୍ଦ୍ରଧନୁ-ବିଜୁଳି ସାରସ୍ୱତ ଆନ୍ଦୋଳନବେଳେ ଶିକ୍ଷକ ଓ ବନ୍ଧୁ ଶ୍ୟାମସୁନ୍ଦର ରାଜଗୁରୁ ନିଜ ଅଞ୍ଚଳ ପାଇଁ **ଇନ୍ଦ୍ରଧନୁ** ପତ୍ରିକାର ପ୍ରତିନିଧିଥିବା ଯୋଗୁଁ ପଦ୍ମନାଭ ମଧ୍ୟ ଏହି ପତ୍ରିକାର ଥିଲେ ଅନ୍ୟତମ ପୃଷ୍ଠପୋଷକ । ଇନ୍ଦ୍ରଧନୁର ଉପଲବ୍ଧ ସଂଖ୍ୟାଗୁଡ଼ିକରୁ ସେ ପ୍ରଥମ ବର୍ଷ ଦଶଟଙ୍କା, ଦ୍ୱିତୀୟ ବର୍ଷ ପଚାଶ ଟଙ୍କା ଏବଂ ଚତୁର୍ଥ ବର୍ଷ ବାର୍ଷିକ ଦେୟ ଏକଟଙ୍କା ଦାନ କରିଥିବା ଜଣାଯାଏ । **ଇନ୍ଦ୍ରଧନୁ**ର ଦ୍ୱିତୀୟ ବର୍ଷ ପ୍ରଥମ ସଂଖ୍ୟାରେ ସମ୍ପାଦକ, ଶୁଭେଚ୍ଛୁ ଓ ପୃଷ୍ଠପୋଷକମାନଙ୍କୁ କୃତଜ୍ଞତା ଜଣାଇ ଯେଉଁ କବିତାଟି ପ୍ରକାଶ କରିଥିଲେ, ସେଥିରେ ରାଜକୁମାରଙ୍କ ସମ୍ପର୍କରେ ଲେଖାଥିଲା-

ପଦ୍ମନାଭ ମିତ୍ରବର, ପାରଳାଖେମୁଣ୍ଡି ରାଜକୁମାର ରେ
ରାଜକୁଳେ ଶଶଧର, ମୋ ବନ୍ଧୁରେ ।
ସହି ତୁ କେତେ କଷଣ ସ୍ୱଦେଶୀ ବିଦେଶୀ ଭାଷା ପଠନ ରେ
କରିଣ ଅର୍ଜିଛୁ ଜ୍ଞାନ, ମୋ ବନ୍ଧୁରେ ।
ରାଜକୁଳେ ମହାଭାଗ ଭଞ୍ଜ ନିନ୍ଦା ଶୁଣି ବଢ଼ିଲା ରାଗ ରେ
ଲେଖନୀ ଧଇଲୁ ଆଗ, ମୋ ବନ୍ଧୁରେ ।
ସନ୍ତୋଷ ନୋହିଲା ମନ କରିବାକୁ ଇନ୍ଦ୍ରଧନୁ ପୋଷଣ ରେ ।
ଗୁଣମଣି ଦେଲୁ ଧନ, ମୋ ବନ୍ଧୁରେ ।
ଦୂରେ ଥିଲେ ପାଖେ ଅଛି ଉପଇନ୍ଦ୍ର କଥା ମନେ ଲାଗିଛି ରେ
ଆଉ ସବୁ ନୋହେ କିଛି, ମୋ ବନ୍ଧୁରେ ।।

**ଇନ୍ଦ୍ରଧନୁ** ବ୍ୟତୀତ ସେ ବିଶ୍ୱନାଥ କର ସମ୍ପାଦିତ **ଉତ୍କଳ ସାହିତ୍ୟ ପତ୍ରିକାକୁ** ମଧ୍ୟ ନିୟମିତ ପଚାଶ ଟଙ୍କା ଦାନ କରି ଆସୁଥିଲେ । ସମ୍ପାଦକ ଏହି ସାହାଯ୍ୟ ସ୍ୱୀକାର ପୂର୍ବକ ରାଜଭ୍ରାତାଙ୍କ ସାହିତ୍ୟ ପ୍ରୀତି ସମ୍ପର୍କରେ ଯେଉଁ ମନ୍ତବ୍ୟ ଦେଇଥିଲେ ତାହା ଉତ୍କଳ ସାହିତ୍ୟ ପତ୍ରିକାର ପଞ୍ଚମ ଭାଗ ସପ୍ତମ ସଂଖ୍ୟାରେ (କାର୍ତ୍ତିକ ୧୩୦୯, ପୃଷ୍ଠା ୧୬୪-୧୬୫) ପ୍ରକାଶ ପାଇଥିଲା । ସମ୍ପ୍ରତି ଉତ୍କଳ ସାହିତ୍ୟର ସଂଖ୍ୟାଗୁଡ଼ିକ ଦୁର୍ଲଭ ଥିବାଯୋଗୁଁ ପାଠକମାନଙ୍କ ଅବଗତି ପାଇଁ ତାହା ଏଠାରେ ଉଦ୍ଧାର କରାଗଲା-

***ପାରଳାଖେମିଣ୍ଡିର ଦ୍ବିତୀୟ ରାଜକୁମାର ଶ୍ରୀ ପଦ୍ମନାଭ ନାରାୟଣ ଦେବ***

*ଉତ୍କଳ ସାହିତ୍ୟର ଯଥାସାଧ ଉନ୍ନତି ସମ୍ପାଦନ ଆମ୍ଭମାନଙ୍କ ଜୀବନର ପ୍ରଧାନ ଲକ୍ଷ୍ୟ । ଦୁଃଖର ବିଷୟ ଆମ୍ଭେମାନେ ଅବସ୍ଥାପନ୍ନ ଓ ଶିକ୍ଷିତ ଉତ୍କଳବାସୀମାନଙ୍କ*

ନିକଟରୁ ଆଶାନୁରୂପ ସାହାଯ୍ୟ ଓ ସହାନୁଭୂତି ପାଉନାହୁଁ । ଉତ୍କଳର ଆଧୁନିକ ଖ୍ୟାତନାମା ସାହିତ୍ୟ ସେବକମାନଙ୍କର ଏବଂ ସ୍ୱଦେଶବତ୍ସଳ ସୁସନ୍ତାନମାନଙ୍କର ଫଟୋଗ୍ରାଫ୍ ଚିତ୍ର 'ଉତ୍କଳ ସାହିତ୍ୟ'ରେ ପ୍ରକାଶ କରିବା ଆମ୍ଭମାନଙ୍କର ଗୋଟିଏ ବହୁକାଳପୋଷିତ ଆକାଂକ୍ଷା । ମାତ୍ର ଆମ୍ଭମାନଙ୍କର ଅବସ୍ଥା ଏପରି ନୁହେଁ ଯେ ଆମ୍ଭେମାନେ ନିଜ ବ୍ୟୟରେ ସମସ୍ତଙ୍କର ଫଟୋଚିତ୍ର ନେଇ ସେଥିରୁ ବ୍ଲକ୍ ପ୍ରସ୍ତୁତ କରାଇ ତାହା 'ଉତ୍କଳ ସାହିତ୍ୟ'ରେ ପ୍ରକାଶ କରି ପାରିବୁ । ଆମ୍ଭମାନଙ୍କର ଏହିପରି ଅନେକ ଆକାଂକ୍ଷା କେବଳ ଆକାଂକ୍ଷା ମାତ୍ରରେ ପର୍ଯ୍ୟବସିତ ରହିଅଛି । ଏ ଜୀବନରେ କେବେ ପୂର୍ଣ୍ଣ ହେବ କି ନାହିଁ, କହି ନ ପାରୁଁ । ବିଧାତା ପୁରୁଷଙ୍କ ଇଚ୍ଛା ! ବର୍ତ୍ତମାନ କେବଳ "ଉତ୍‌ଥାୟ ହୃଦି ଲୀୟନ୍ତେ-"

ଶୀର୍ଷାଙ୍କିତ ବ୍ୟକ୍ତିଙ୍କ ନାମ ଉତ୍କଳ ସାହିତ୍ୟ କ୍ଷେତ୍ରରେ ସୁପରିଚିତ ହୋଇଅଛି । ଅଳ୍ପ ଦିବସ ପୂର୍ବେ ତାଙ୍କ ପ୍ରକାଶିତ ଖଣ୍ଡିଏ ଓଡ଼ିଆ ନାଟକରେ ତାଙ୍କର ପ୍ରତିମୂର୍ତ୍ତି ଦେଖି ତାଙ୍କୁ ବହୁ ପ୍ରାର୍ଥନା କରିଥିଲୁଁ । ରାଜକୁମାର ମହୋଦୟ ବିନା ଆପତ୍ତିରେ ଆମ୍ଭମାନଙ୍କର ପ୍ରାର୍ଥନା ପୂରଣ କରିଥିବାରୁ ଆମ୍ଭେମାନେ ହୃଦୟର ଗଭୀର କୃତଜ୍ଞତା ତାଙ୍କୁ ଅର୍ପଣ କରୁଅଛୁଁ । ତାଙ୍କର ପ୍ରତିମୂର୍ତ୍ତି ଏଥର ପ୍ରଦତ୍ତ ହେଲା ।]

ରାଜକୁମାର ମହୋଦୟ ଉତ୍କଳର ବିଖ୍ୟାତ ଗଜପତିବଂଶ ସମ୍ଭୂତ ପାରଳାଖେମୁଣ୍ଡିର ବର୍ତ୍ତମାନ ବୃଦ୍ଧଜମିଦାର ମହୋଦୟଙ୍କର କନିଷ୍ଠପୁତ୍ର ଅଟନ୍ତି । ବୃଦ୍ଧ ଜମିଦାର ମହାଶୟ ନାନା କାରଣରୁ ଜମିଦାରୀ ଚଳାଇବାରେ ଅକ୍ଷମହେବାରୁ ତହିଁର ଭାର କୋର୍ଟ ଅଫ୍ ବାର୍ଡସଙ୍କ ହସ୍ତରେ ନ୍ୟସ୍ତ ହୋଇଥିଲା । ଉକ୍ତ କୋର୍ଟ ଅଧୀନରେ ପାରଳାଖେମୁଣ୍ଡିରେ ଯେଉଁ ବିଦ୍ୟାଳୟ ସ୍ଥାପିତ ହୋଇଥିଲା, ସେଥିରେ ଅନ୍ୟାନ୍ୟ ବାର୍ଡମାନଙ୍କ ସହିତ ଏ ମହାଶୟ ଓ ତାଙ୍କର ଜ୍ୟେଷ୍ଠଭ୍ରାତା (ବର୍ତ୍ତମାନ ରାଜୋପାଧିଭୂଷିତ ଜମିଦାର) କିଛିକାଳ ଅଧ୍ୟୟନ କରିଥିଲେ । ଶିକ୍ଷକମାନେ ଓଡ଼ିଆ ଭାଷାଭିଜ୍ଞ ନ ଥିବାରୁ ମାତୃଭାଷାର ଶିକ୍ଷା ତାଙ୍କର ସମୁଚିତରୂପେ ହୋଇପାରିନଥିଲା । ୧୮୯୦ ଖ୍ରୀଷ୍ଟାବ୍ଦର ମଧ୍ୟଭାଗରେ ତାଙ୍କର ଜ୍ୟେଷ୍ଠଭ୍ରାତା ଜମିଦାରୀର ଭାରପ୍ରାପ୍ତ ହେବାରୁ ଏହାଙ୍କର ଶିକ୍ଷାଭାର ତାଙ୍କ ଉପରେ ପଡ଼ିଲା । ଏହି ସମୟରେ ଦୁଇଜଣ ଉପଯୁକ୍ତ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ରହିବାରୁ ଏହାଙ୍କର ଶିକ୍ଷା ଉତ୍ତମରୂପେ ସମ୍ପାଦିତ ହୋଇଥିଲା । ସାହିତ୍ୟ ଛଡ଼ା ଏ ମହାଶୟ ଜ୍ୟୋତିର୍ବିଦ୍ୟା, ଜଡ଼ ବିଜ୍ଞାନ, ରସାୟନ ଶାସ୍ତ୍ର ପ୍ରଭୃତିରେ ମଧ୍ୟ ସମୁଚିତ ଆଲୋଚନା କରିଅଛନ୍ତି । ଆମ୍ଭେମାନେ ତାଙ୍କ ସହିତ କଥାବାର୍ତ୍ତା କରି ଏ ସକଳ

ଶାସ୍ତ୍ରରେ ତାଙ୍କର ପାଣ୍ଡିତ୍ୟର ପରିଚୟ ପ୍ରାପ୍ତ ହୋଇଅଛୁଁ । ବିଦ୍ୟାଳୟ ପରିତ୍ୟାଗ କରି ଏ ମହୋଦୟ ନାନା ପୁସ୍ତକ ଅଧ୍ୟୟନ ଓ ଭାରତ ବର୍ଷର ଅଧିକାଂଶ ସ୍ଥଳ ଭ୍ରମଣଦ୍ୱାରା ଆପଣାର ଜ୍ଞାନଭଣ୍ଡାରକୁ ଶତଗୁଣ ବର୍ଦ୍ଧିତ କରିଅଛନ୍ତି । ଏହାଙ୍କର ବୃହତ୍ ପୁସ୍ତକାଗାରରେ ଇଂରାଜୀ, ସଂସ୍କୃତ, ବଙ୍ଗଳା, ଓଡ଼ିଆ ପ୍ରଭୃତି ଭାଷାର ବହୁ ପାଣ୍ଡିତ୍ୟପୂର୍ଣ୍ଣ ଗ୍ରନ୍ଥାବଳୀ ସଯତ୍ନରେ ରକ୍ଷିତ ହୋଇଅଛି ଏବଂ ସେ ସମସ୍ତ ତାଙ୍କଦ୍ୱାରା ଉତ୍ତମରୂପେ ଅଧୀତ ହୋଇଅଛି । ଦେଶ ବିଦେଶର ବହୁବିଧ ସମ୍ବାଦପତ୍ରାଦି ନିୟମିତରୂପେ ଅଧ୍ୟୟନ କରି ଜଗତର ସକଳ ପ୍ରକାର ସମ୍ବାଦ ଅବଗତ ହେବା ବିଷୟରେ ଚିର ଅଭ୍ୟସ୍ତ । ଜ୍ଞାନପିପାସା ତାଙ୍କର ଅତ୍ୟନ୍ତ ବଳବତୀ । ପୁସ୍ତକାଦି ଅଧ୍ୟୟନରେ ଏବଂ ବନ୍ଧୁମାନଙ୍କ ସହିତ ବିବିଧ ବିଷୟର ଆଲୋଚନାରେ ତାଙ୍କର ଦିବସର ଅଧିକାଂଶ ସମୟ ଅତିବାହିତ ହୋଇଥାଏ । ମାତୃଭାଷା ପ୍ରତି ଏହାଙ୍କର ପ୍ରଗାଢ଼ ଅନୁରାଗର ଉଦାହରଣ ଉତ୍କଳବାସୀଙ୍କୁ ନୂତନ କରି କହି ଦେବାକୁ ହେବ ନାହିଁ । ଗଞ୍ଜାମ ଜିଲ୍ଲାର ଓଡ଼ିଆ ସନ୍ତାନମାନଙ୍କର ସୁଶିକ୍ଷା ନିମନ୍ତେ ସେ 'Madras educational oriya committee'ଙ୍କ ତତ୍ତ୍ୱାବଧାନରେ ଗୋଟିଏ ପାଣ୍ଠି ଖୋଲି ସମସ୍ତ ଭାରତବର୍ଷୀୟ ରାଜା ମହାରାଜାମାନଙ୍କୁ ସାହାଯ୍ୟ ଭିକ୍ଷା କରିଥିଲେ । ମାତ୍ର ଆଶାନୁରୂପ ଫଳ ନ ହେବାରୁ ଦୁଃଖିତ ହୋଇ ବର୍ତ୍ତମାନ କେବଳ ପାରଳାଖେମୁଣ୍ଡିର ଓଡ଼ିଆ ସନ୍ତାନମାନଙ୍କର ଶିକ୍ଷା ନିମିତ୍ତ ମାସିକ ୨୦ ଟଙ୍କା ଦାନ କରି ଆସୁଅଛନ୍ତି । ଗଞ୍ଜାମ ଅଞ୍ଚଳର ପ୍ରତ୍ୟେକ ଦେଶ ହିତକର କାର୍ଯ୍ୟ ସହିତରେ ତାଙ୍କର ନାମ ଜଡ଼ିତ ଏବଂ ସେ ପ୍ରାୟ ପ୍ରତ୍ୟେକ ସଭାସମିତିରେ ଆଗ୍ରହର ସହିତ ଯୋଗ ଦେଇଥାନ୍ତି । ଏକା ଗଞ୍ଜାମ କାହିଁକି, ସମଗ୍ର ଉତ୍କଳ ଭୂମିରେ ଯେଉଁଠାରେ ଯେଉଁସବୁ କାର୍ଯ୍ୟ ଅନୁଷ୍ଠିତ ହେଉଅଛି, ସବୁଠାରେ ତାଙ୍କର ପୂର୍ଣ୍ଣ ସହାନୁଭୂତି ଓ ପୂର୍ଣ୍ଣପ୍ରାଣରେ ଯୋଗ ରହିଅଛି । ରାଜକୁମାର ମହୋଦୟ କଂଗ୍ରେସର ଜଣେ ପରମବନ୍ଧୁ । ପୁନା ଏବଂ ଅମରାବତୀ କଂଗ୍ରେସମାନଙ୍କରେ ପାରଳାବାସୀଙ୍କର ପ୍ରତିନିଧିରୂପେ ଉପସ୍ଥିତ ହୋଇଥିଲେ ଏବଂ ଶେଷୋକ୍ତ କଂଗ୍ରେସରେ ବିଷୟ ନିର୍ବାଚନ କମିଟିରେ ଆସନ ପ୍ରାପ୍ତ ହୋଇଥିଲେ । ଏହି କଂଗ୍ରେସକୁ ଯିବାବେଳେ କିଛି ଦିନ ଏହି କଟକ ନଗରରେ ଅବସ୍ଥାନ କରି ଏଠାକାର କେତେକ ପ୍ରଧାନ ବିଦ୍ୟାଳୟ ପ୍ରଭୃତି ଦେଖିଥିଲେ ଓ ପ୍ରଧାନ ବ୍ୟକ୍ତିମାନଙ୍କ ସହିତ ସାକ୍ଷାତ୍ ଓ

*ଆଳାପ କରିଥିଲେ । ୧୮୯୬ ଖ୍ରୀଷ୍ଟାବ୍ଦରେ ପାରଳାଖେମୁଣ୍ଡିରେ ଗୋଟିଏ ପ୍ରେସ୍ ସ୍ଥାପିତ ହେଲାରୁ ସେ କ୍ରମାନ୍ୱୟେ 'ହିତ ରତ୍ନାବଳୀ' ଗୋପାଳକୃଷ୍ଣଙ୍କ 'କୋଇଲି', 'ତାଳ ସର୍ବସାର ସଂଗ୍ରହ'*, 'ଗୀତ ସ୍ତବକ'*, 'ରାଧାଗୋବିନ୍ଦ ଜଣାଣ'* 'କବିତା କଳିକା', 'ସାବିତ୍ରୀ ଚରିତ୍ର', ଏବଂ 'ସଂଗୀତ ପ୍ରହଲାଦ ନାଟକ'* ପ୍ରକାଶ କରିଅଛନ୍ତି । ଏଥିମଧ୍ୟରୁ ତାରକା ଚିହ୍ନିତ ପୁସ୍ତକଗୁଡ଼ିକ ତାଙ୍କ ସ୍ୱରଚିତ ଅଟେ । ତାଙ୍କର ପ୍ରବର୍ତ୍ତନାରେ "Ganjam News" ନାମକ ଇଂରାଜୀ ସମ୍ବାଦପତ୍ର ଉକ୍ତ ପ୍ରେସ୍‌ରୁ ବାହାରି କ୍ରମାଗତ ପାଞ୍ଚବର୍ଷ କାଳ ଦକ୍ଷତାର ସହିତ ପରିଚାଳିତ ହୋଇଥିଲା । ଯେଉଁମାନେ ଥରେ ପାରଳାଖେମୁଣ୍ଡି ଯାଇଅଛନ୍ତି, ସେମାନେ ଏହାଙ୍କର ଆତିଥେୟତା, ସଦାଳାପ, ନମ୍ର ସ୍ୱଭାବ, ଉଦାରତା ପ୍ରଭୃତି ସଦ୍‌ଗୁଣାବଳୀରେ ମୋହିତ ହୋଇଅଛନ୍ତି । ଆମ୍ଭେମାନେ କାର୍ଯ୍ୟୋପଲକ୍ଷରେ ଦୁଇଥର ପାରଳାଖେମୁଣ୍ଡି ଯାଇ ତାଙ୍କର ଆତିଥ୍ୟ ଗ୍ରହଣ କରି ବିବିଧ ବିଷୟରେ ତାଙ୍କ ସହିତ ଆଲୋଚନା କରି ପରମ ପ୍ରୀତି ଲାଭ କରିଅଛୁଁ । 'ଉତ୍କଳ ସାହିତ୍ୟ' ତାଙ୍କଠାରୁ ଯେଉଁ ଅମୂଲ୍ୟ ସାହାଯ୍ୟ ପ୍ରାପ୍ତ ହୋଇଅଛି, ତାହା ପାଠକମାନଙ୍କୁ ଅବିଦିତ ନାହିଁ । ଆର୍ଥିକ ସାହାଯ୍ୟ ଛଡ଼ା ନାନା ସମୟରେ ଆମ୍ଭେମାନେ ତାଙ୍କଠାରୁ ଯେଉଁ ଅମୂଲ୍ୟ ଉତ୍ସାହପୂର୍ଣ୍ଣ ପତ୍ରମାନ ପାଇଅଛୁ ଏବଂ ସାକ୍ଷାତ୍ କାଳରେ ସୁମିଷ୍ଟ ସହୃଦୟ ବାକ୍ୟାବଳୀ ଶୁଣିଅଛୁଁ, ତାହା ଏ ଜୀବନରେ କଦାପି ବିସ୍ମୃତ ହୋଇପାରିବ ନାହିଁ । ଈଶ୍ୱର ଏହାଙ୍କୁ ସୁଦୀର୍ଘ ଜୀବନ ଓ ଅଖଣ୍ଡ ସ୍ୱାସ୍ଥ୍ୟ ପ୍ରଦାନ କରନ୍ତୁ, ଏହାହିଁ ଆମ୍ଭମାନଙ୍କର ହୃଦ୍‌ଗତ ପ୍ରାର୍ଥନା... ।*

ଓଡ଼ିଆ ଭାଷାରେ ପତ୍ରିକାଟିଏ ପ୍ରକାଶ ପାଇଲେ ସେ କିପରି ଆନନ୍ଦ ଅନୁଭବ କରୁଥିଲେ ଏବଂ ସଂପାଦକମାନଙ୍କ ନିକଟକୁ 'ଅମୂଲ୍ୟ ଉତ୍ସାହପୂର୍ଣ୍ଣ ପତ୍ରମାନ' ପ୍ରେରଣ କରୁଥିଲେ, ତା'ର ଗୋଟିଏ ନିଦର୍ଶନ ହେଲା, ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜଙ୍କ ମର୍ଦ୍ଦରାଜ ପ୍ରେସ୍‌ରୁ ପ୍ରକାଶ ପାଉଥିବା 'ପ୍ରଜାବନ୍ଧୁ' ପତ୍ରିକାର ସମ୍ପାଦକଙ୍କ ନିକଟକୁ ଲେଖିଥିବା ପତ୍ର । ସେ ଲେଖିଥିଲେ-

*ଆମ୍ଭେ ଅତୀବ ଆନନ୍ଦ ସହକାରେ ପ୍ରକାଶ କରୁଅଛୁଁ ଯେ ପ୍ରଜାବନ୍ଧୁ ଉତ୍ତମ ରୂପେ ପରିଚାଳିତ ଖଣ୍ଡିଏ ସାପ୍ତାହିକ ପତ୍ର । ଏଥିରେ ସାଧାରଣ ଓ ସ୍ଥାନୀୟ ଅନେକ ଆବଶ୍ୟକୀୟ ବିଷୟ ଚର୍ଚ୍ଚା ହୁଏ । ଆମ୍ଭ ମତରେ ପ୍ରଜାବନ୍ଧୁ ଓଡ଼ିଆ ଜାତିଙ୍କ ମନରେ ନୂତନ ତେଜର ଉଦ୍ରେକ କରିଅଛି ଏବଂ ଏହାଦ୍ୱାରା ଏପରି*

*(ଗଞ୍ଜାମ) ଜିଲ୍ଲାର ସାହିତ୍ୟଗତ ଓ ଅନେକ ସତେଜତା, ଅନେକ ପରିମାଣରେ ବୃଦ୍ଧି ଲାଭ କରିଅଛି । ବର୍ତ୍ତମାନ ଏହା ଯେଉଁ ପନ୍ଥା ଅବଲମ୍ବନ କରି ଚଳୁଅଛି, ଯେବେ ଭବିଷ୍ୟତରେ ସେହି ପନ୍ଥା ଅବଲମ୍ବନ କରେ, ତାହାହେଲେ ଏହା ପ୍ରକୃତରେ ପ୍ରଜାବନ୍ଧୁ ନାମ ସାର୍ଥକ କରିବ । ଏଥିରେ ଆମ୍ଭର କିଛିମାତ୍ର ସନ୍ଦେହ ନାହିଁ । ଏ ପତ୍ରିକା ଖଣ୍ଡି ଉପଯୁକ୍ତ ସିଦ୍ଧି ଲାଭ କରୁ ଏହା ହିଁ ଆମ୍ଭର କାମନା ।*

ପତ୍ରପତ୍ରିକାକୁ ଆର୍ଥିକ ସାହାଯ୍ୟ ଦେବା ସହିତ ସେ ଲେଖକ ଓ ସାହିତ୍ୟପ୍ରେମୀ ଓଡ଼ିଆ ଛାତ୍ରଛାତ୍ରୀମାନଙ୍କୁ ମଧ୍ୟ ଆର୍ଥିକ ସାହାଯ୍ୟ ପ୍ରଦାନ କରିବାରେ କୁଣ୍ଠିତ ନଥିଲେ । ପୁସ୍ତକ ପ୍ରକାଶନବେଳେ ବହୁ ଲେଖକ ତାଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରିଛନ୍ତି ।

୧୯୦୩ ମସିହାରେ ଉତ୍କଳ ସମ୍ମିଳନୀ ପାଇଁ ପ୍ରସ୍ତୁତି ପର୍ବ ଆରମ୍ଭ ହୁଏ । ସେତେବେଳକୁ ପଦ୍ମନାଭ ନାରାୟଣ ଦେବ ଅସାଧ ରୋଗରେ ପୀଡ଼ିତ । ନିଜେ ଜୀବନ ପ୍ରତି ଆଶାତ୍ୟାଗ କରିଥିଲେ ସୁଦ୍ଧା ଓଡ଼ିଶାର ବୁଦ୍ଧିଜୀବୀମାନେ ତାଙ୍କର ଦୀର୍ଘଜୀବନ କାମନା କରୁଥିଲେ । ଏହିବର୍ଷ ଡିସେମ୍ବର ତିରିଶିରେ ଏହାର ପ୍ରଥମ ଅଧିବେଶନ କଟକଠାରେ ଅନୁଷ୍ଠିତ ହୋଇଥିଲା । ଗଞ୍ଜାମରୁ ତିନିଶହ ପ୍ରତିନିଧି ଏଥିରେ ଯୋଗଦାନ କରିଥିଲେ ସୁଦ୍ଧା ରୋଗ ସହିତ ଯୁଦ୍ଧ କରୁଥିବା ପାରଳାଖେମୁଣ୍ଡିର ସେକେଣ୍ଡ ପ୍ରିନ୍ସ ଏଥିରେ ଯୋଗଦେଇ ନ ପାରି ନିଜର ସହାନୁଭୂତି ଓ ସହଯୋଗର କଥା ପତ୍ରଦ୍ୱାରା ଜଣାଇଛନ୍ତି । ସେ ଅନୁପସ୍ଥିତ ଥିଲେ ସୁଦ୍ଧା ଏହି ଅଧିବେଶନରେ ଗୃହୀତ ଚତୁର୍ଥ ପ୍ରସ୍ତାବ 'ଉତ୍କଳୀୟମାନଙ୍କ ମଧ୍ୟରେ କାଳୋଚିତ ସାମାଜିକ ସଂସ୍କାରମାନ ପ୍ରବର୍ତ୍ତିତ କରିବା ନିମିତ୍ତ ବିହିତ ଉପାୟମାନ ଅବଧାରଣ କରି କାର୍ଯ୍ୟରେ ତାହା ପରିଣତ କରିବା ଉଦ୍ଦେଶ୍ୟରେ ଲୋକସାଧାରଣ ମତକୁ ଯତ୍ନ ସହକାରେ ସୁଶିକ୍ଷିତ କରିବା', ଷଷ୍ଠ ପ୍ରସ୍ତାବ 'ଉତ୍କଳୀୟମାନଙ୍କର ବୈଷୟିକ ଉନ୍ନତି ଏବଂ ଉତ୍କଳଭାଷୀ ଅଞ୍ଚଳର କୃଷି ଓ ଶିଳ୍ପାଦି ସମ୍ବନ୍ଧୀୟ ଉନ୍ନତି ସାଧନା', ସପ୍ତମ ପ୍ରସ୍ତାବ 'ଉପଯୁକ୍ତ ଦରିଦ୍ର ଛାତ୍ରମାନଙ୍କୁ ସାହାଯ୍ୟ କରିବା କାରଣ ଓ ଶିଳ୍ପାଦି ଶିକ୍ଷା ନିମନ୍ତେ ଉପଯୁକ୍ତ ଯୁବକମାନଙ୍କୁ ବିଦେଶକୁ ପଠାଇବାର ଉପାୟ ବିଧାନ କରିବା' ନିମିତ୍ତ ଯେଉଁ ସ୍ଥାୟୀ ସମିତି (ଷ୍ଟାଣ୍ଡିଙ୍ଗ୍ କମିଟି) ମାନ ଗଠିତ ହୋଇଥିଲା ସେଥିରେ ପାରଳାଖେମୁଣ୍ଡିର ଦ୍ୱିତୀୟ ରାଜକୁମାରଙ୍କୁ ସଦସ୍ୟରୂପେ ଗ୍ରହଣ କରାଯାଇଥିଲା । କିନ୍ତୁ ଓଡ଼ିଶାର ଦୁର୍ଭାଗ୍ୟ ଉତ୍କଳ ସମ୍ମିଳନୀର ଦ୍ୱିତୀୟ ଅଧିବେଶନ ୧୯୦୪ ମସିହା ଡିସେମ୍ବର ଅଠାଇଶ ଓ ଅଣତିରିଶିରେ ଅନୁଷ୍ଠିତ ହେବାବେଳେ ମଞ୍ଜୁଷା

ଯୁବରାଜ ଶ୍ରୀନିବାସ ରାଜମଣିଙ୍କ ଦ୍ୱାରା ଆଗତ ଏବଂ ଗୋପବନ୍ଧୁ ଦାସଙ୍କଦ୍ୱାରା ଅନୁମୋଦିତ ପଞ୍ଚଦଶ ନିର୍ଦ୍ଧାରଣ ଥିଲା-

*ଉତ୍କଳର ଆଦର୍ଶ ରାଜକୁମାର ପାରଳାଖେମୁଣ୍ଡିର ସ୍ୱର୍ଗୀୟ ଦ୍ୱିତୀୟ ରାଜକୁମାର ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ ଆଦର୍ଶ ଜୀବନକୁ ଚିର ସ୍ମରଣୀୟ କରିବା ଉଦ୍ଦେଶ୍ୟରେ ତାହାଙ୍କ ଜୀବନର ଉପଦେଶପୂର୍ଣ୍ଣ ତଥ୍ୟଗୁଡ଼ିକ ସଂଗ୍ରହ କରି ସମ୍ମିଳନୀ ପକ୍ଷରୁ ଖଣ୍ଡିଏ ଉତ୍କୃଷ୍ଟ ଜୀବନୀ ଚରିତ ପ୍ରକାଶ କରିବାର ବିହିତ ଉପାୟ ଅବଲମ୍ବନ କରାଯାଉ । ଏହି ନିର୍ଦ୍ଧାରଣକୁ କାର୍ଯ୍ୟରେ ପରିଣତ କରିବା ଲାଗି ତଳଲିଖିତ ବ୍ୟକ୍ତିମାନଙ୍କ ଦ୍ୱାରା ଗୋଟିଏ ସମିତି ଗଠିତ ହେଉ । ସଭ୍ୟ ସଂଖ୍ୟା ବୃଦ୍ଧି କରିବାର ଭାର ଉକ୍ତ ସମିତିଠାରେ ନ୍ୟସ୍ତ କରାଯାଉ ।*

*ସ୍ଥାୟୀ ସମିତିର ସଭ୍ୟବୃନ୍ଦ-ଶ୍ରୀଯୁକ୍ତ ଫକୀରମୋହନ ସେନାପତି, ଶ୍ରୀଯୁକ୍ତ ମଧୁସୂଦନ ରାଓ, ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ରାଜଗୁରୁ, ଶ୍ରୀଯୁକ୍ତ ମଧୁସୂଦନ ଦାସ (ଶିକ୍ଷକ)*

ରାଜକୁମାରଙ୍କ ଅକାଳ ତିରୋଧାନ ଫଳରେ ଉତ୍କଳ ସମ୍ମିଳନୀ ଜଣେ ସଶ୍ରଦ୍ଧ ଓ ସକ୍ରିୟ କର୍ମୀ, ପୃଷ୍ଟପୋଷକ ଏବଂ ଭାବି ସଭାପତିଙ୍କୁ ଯେ ହରାଇଲା କହିବା ବାହୁଲ୍ୟମାତ୍ର । ଉଲ୍ଲିଖିତ ନିର୍ଦ୍ଧାରଣ କାର୍ଯ୍ୟକାରୀ ହୋଇଥିଲା କି ନାହିଁ ଜାଣିବା ସମ୍ଭବ ସମାଚର ନୁହେଁ । ଯଦିବା ହୋଇଥିବ ତାହା ଉତ୍କଳ ସାହିତ୍ୟରେ ଗନ୍ତାଘରେ ପଡ଼ିଥିବ । ସୁଖର କଥା ରାଜକୁମାରଙ୍କ ସହଯୋଗୀ ଓ ବଂଧୁ ଅପର୍ଣ୍ଣା ପଣ୍ଡା ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ ସଂକ୍ଷିପ୍ତ ଜୀବନୀଟିଏ ପ୍ରସ୍ତୁତ କରି ୧୯୧୫ ମସିହାରେ ପ୍ରକାଶ କରିଥିଲେ ।

(୬)

ପଦ୍ମନାଭ ନାରାୟଣ ଦେବ ପାରଳାଖେମୁଣ୍ଡିର ସେକେଣ୍ଡ ପ୍ରିନ୍ସ । ଏଣୁ ରାଜସିଂହାସନ ଆରୋହଣ କରିବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । କିନ୍ତୁ ଜ୍ୟେଷ୍ଠଭ୍ରାତା ଗୌରଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ପ୍ରତି ତାଙ୍କର ଭକ୍ତି ଓ ଆନୁଗତ୍ୟ ଏବଂ ରାଜକାର୍ଯ୍ୟ ପରିଚାଳନାରେ ସକ୍ରିୟ ସହଯୋଗ ଅନୁକରଣୀୟ । ସେ ମୁକୁଟଧାରୀ ରାଜା ନଥିଲେ, କିନ୍ତୁ ପ୍ରଜାମାନଙ୍କ ପାଇଁ ସେ ଥିଲେ ଚନ୍ଦ୍ର ମହାରାଜା । ପୂର୍ଣ୍ଣଚନ୍ଦ୍ର ଭାଷାକୋଷରେ ଗୋପାଳଚନ୍ଦ୍ର ପ୍ରହରାଜ ମଧ ତାଙ୍କୁ ଏହି ନାମରେ ହିଁ ପରିଚିତ କରାଇଛନ୍ତି । ପ୍ରଜାମାନଙ୍କ ସର୍ବାଙ୍ଗୀନ ଉନ୍ନତିପାଇଁ ସେ ଥିଲେ ସତତ ଯତ୍ନଶୀଳ । ସେମାନଙ୍କ ଶିକ୍ଷା, ସ୍ୱାସ୍ଥ୍ୟ ଏବଂ ଆର୍ଥିକ ଉନ୍ନତିପାଇଁ ତାଙ୍କ ଦୃଷ୍ଟି ଥିଲା ସବୁ ବେଳେ ସଜାଗ । ବିଦ୍ୟାଳୟ, ପାଠାଗାର,

ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନରେ ଯୋଗଦାନ କରି ନିଜ ବାଗ୍ମୀତାରେ ଶ୍ରୋତାମାନଙ୍କୁ ମୁଗ୍‌ଧ କରିବା ସହିତ ସେ ଉନ୍ନତିର ମାର୍ଗ ମଧ୍ୟ ପ୍ରଦର୍ଶନ କରୁଥିଲେ । ଏଠାରେ ତାଙ୍କ ପ୍ରଜାବାତ୍ସଲ୍ୟର ଗୋଟିଏ ଉଦାହରଣ ଦିଆଯାଇପାରେ ।

୧୮୯୯ ମସିହାରେ ସମଗ୍ର ଭାରତ ବର୍ଷରେ ପ୍ଲେଗ ମହାମାରୀ ଯେଉଁ ତାଣ୍ଡବଲୀଳା ସୃଷ୍ଟି କରିଥିଲା, ତାହା ଯେପରି ଭୟାବହ ସେପରି ମର୍ମନ୍ତୁଦ । ତା୭।୬।୧୮୯୯ର **ଓଡ଼ିଆ ଓ ନବସମ୍ବାଦ** ଭା୧୩/୨୯ ସଂଖ୍ୟାରେ ଏହାର ଯେଉଁ ଚିତ୍ର ଦିଆଯାଇଛି ସେଥିରେ ଅଛି -

*'ଗତ ତା୨୭ରିଖ ମଇ ଶେଷ ହୋଇଥିବା ସପ୍ତାହରେ ସମସ୍ତ ଭାରତ ବର୍ଷରୁ ପ୍ଲେଗ ଆକ୍ରମଣରୁ ୬୪୬ ଜଣର ମାତ୍ର ମୃତ୍ୟୁ ହୋଇଅଛି । ଏଥିମଧ୍ୟରୁ ବୋମ୍ବାଇରୁ ୧୪୭, କରାଚୀ ୧୭, ବଡ଼ ବୋମ୍ବେର ଅନ୍ୟାନ୍ୟ ପ୍ରଦେଶରୁ ୩୯୭ ଜଣର ମାତ୍ର ମୃତ୍ୟୁ ହୋଇଅଛି । ସମସ୍ତ ମାନ୍ଦ୍ରାଜରୁ ୯ ଜଣର ଏବଂ ବଙ୍ଗଦେଶର କଲିକତାରୁ ୩୯ ଜଣ, ପଞ୍ଜାବରୁ ୭ ଜଣ, ମହୀଶୂରରୁ ୯ଜଣ ଓ ନିଜାମ ରାଜ୍ୟରୁ ୧ ଜଣ, କୋଲାର ସ୍ୱର୍ଣ୍ଣଖଣିରୁ ୧୬ ଜଣ ମରିଅଛନ୍ତି । ସେହିପରି ୧୦ ଜଣ ଜୁନ୍‌ରେ ଶେଷ ହୋଇଥିବା ସପ୍ତାହରେ ମାନ୍ଦ୍ରାଜରୁ ୩ ଏବଂ କଲିକତାରୁ ୨୨ ଜଣ ସମେତ ୪୬୭ ଜଣ ମୃତ୍ୟୁବରଣ କରିଅଛନ୍ତି ।*

ଓଡ଼ିଶାର ଉଭୟ ଦିଗରେ ଏହି ରୋଗର ପ୍ରାଦୁର୍ଭାବ ଲକ୍ଷ୍ୟ କରି ପଦ୍ମନାଭ ଦେବ ଓଡ଼ିଶାକୁ, ବିଶେଷକରି ପାରଳାଖେମୁଣ୍ଡି ଅଧିବାସୀମାନଙ୍କୁ ଏହି ସଂକ୍ରାମକ ରୋଗର ଉତ୍ପୀଡ଼ନରୁ ରକ୍ଷା କରିବାପାଇଁ ଆଗୁଆ-ପଦକ୍ଷେପ ନେଇଛନ୍ତି । ଏ ସଂପର୍କରେ **ଓଡ଼ିଆ ଓ ନବସମ୍ବାଦ** ନିଜର ଭା୧୩/୧୫ ସତା, ୦୧-୩-୧୮୯୯ ସଂଖ୍ୟାରେ ରାଜକୁମାରଙ୍କୁ ପ୍ରଶଂସା କରି ଲେଖିଛନ୍ତି-

*ପାରଳାଖେମୁଣ୍ଡିର ଦ୍ୱିତୀୟ ପ୍ରିନ୍‌ସ ଶ୍ରୀଯୁକ୍ତ ପଦ୍ମନାଭ ନାରାୟଣ ଦେବ ମହାଶୟ ମହାମାରୀ ପ୍ଲେଗ୍ ସଂପର୍କରେ ଡେପୁଟି କମିଶନର ସରଜନ୍ ମେଜ୍‌ର ଡ.ଡବ୍ଲୁ.ୟ. ବି. ବେନରମାନ ଏବଂ ମାନ୍ଦ୍ରାଜ ହତାର ସ୍ୱାସ୍ଥ୍ୟରକ୍ଷକ କର୍ମଚାରୀ ସରଜନ୍ ଲୁଇସନ୍ ଓ ଯେ. ଡବଲ୍ୟୁ.କର୍ଣ୍ଣୱାଲିସ୍‌ଙ୍କ ଦ୍ୱାରା ମହାମାରୀ ସମ୍ବନ୍ଧୀୟ କେତେକ ବିଶେଷ ବିଧାନ ସ୍ଥିରୀକୃତ ହୋଇଥିଲା ତାହା ସର୍ବସାଧାରଣଙ୍କ ଅବଗତାର୍ଥେ ଓଡ଼ିଆ ଭାଷାରେ ମୁଦ୍ରିତ କରି ତିନି ସହସ୍ର ଖଣ୍ଡ ବିତରଣ କରିଅଛନ୍ତି । ସେଥିରୁ ଏକଖଣ୍ଡ ଆମ୍ଭେମାନେ ମଧ୍ୟ ପ୍ରାପ୍ତ ହୋଇଅଛି । କି କଲେ ମହାମାରୀ ହସ୍ତରୁ ରକ୍ଷା ମିଳିପାରେ*

*ଏବଂ ରୋଗ ଉପସ୍ଥିତ ହେଲେ କି କର୍ତ୍ତବ୍ୟ, ଗୃହଦ୍ୱାର କିପରି ଭାବରେ ରଖିବାର ଉଚିତ ଇତ୍ୟାଦି ବିଷୟ ବିଶଦଭାବରେ ତହିଁରେ ବର୍ଣ୍ଣିତ ହୋଇଅଛି । ପ୍ରିନ୍‌ସ ମହାଶୟଙ୍କ ଏ ଜନହିତକର କାର୍ଯ୍ୟରେ ଆଗ୍ରହ ପ୍ରଶଂସାର୍ହ ଅଟେ ।*

(୭)

ପଦ୍ମନାଭ ନାରାୟଣ ଦେବ କେବଳ ଯେ ଜଣେ ପ୍ରଜାହିତୈଷୀ ଏବଂ ବିଦ୍ୟାନୁରାଗୀ ରାଜକୁମାର ଥିଲେ ତା’ ନୁହେଁ, ସେ ନିଜେ ମଧ୍ୟ ଥିଲେ ଜଣେ କବି, ନାଟ୍ୟକାର ଏବଂ ସଙ୍ଗୀତଜ୍ଞ । ଏଥିପାଇଁ ଓଡ଼ିଆ ସାହିତ୍ୟର ଇତିହାସରେ ସେ ସ୍ମରଣୀୟ ହୋଇ ରହିଛନ୍ତି । ପାରଳାଖେମୁଣ୍ଡି ବିପଞ୍ଚିବାଦିନୀ ସରସ୍ୱତୀଙ୍କ ଲୀଳାଭୂମି । ପାରଳା ରାଜବଂଶ ସାହିତ୍ୟଚର୍ଚ୍ଚା ଓ ସାହିତ୍ୟିକମାନଙ୍କ ପୃଷ୍ଠପୋଷକତା ପାଇଁ ସୁବିଦିତ । କାବ୍ୟ, ଅଳଂକାର, ସଙ୍ଗୀତ, ନାଟକ, ଛନ୍ଦଶାସ୍ତ୍ର, ଭାଷାତତ୍ତ୍ୱ, ସାହିତ୍ୟ ସମାଲୋଚନା ଇତ୍ୟାଦି ବହୁକ୍ଷେତ୍ରରେ ପାରଳାଖେମୁଣ୍ଡି ଦିଗ୍‌ଦର୍ଶକର ଭୂମିକା ଗ୍ରହଣ କରିଛି । ଏହି ଭୂମି ଓ ଏହି ରାଜବଂଶର ସୁଯୋଗ୍ୟ ଦାୟାଦ ପଦ୍ମନାଭ ନାରାୟଣ ଦେବ । ନାଟ୍ୟକାରଭାବେ ତାଙ୍କ ପ୍ରତିଷ୍ଠା ଅବିସମ୍ବାଦିତ ହେଲେ ସୁଦ୍ଧା ସାହିତ୍ୟର ଅନ୍ୟାନ୍ୟ ବିଭାଗ ତାଙ୍କଦ୍ୱାରା କମ୍ ସମୃଦ୍ଧ ହୋଇନାହିଁ । ଶିକ୍ଷାଗୁରୁମାନଙ୍କ ପ୍ରଭାବରୁ ସେ ଆଦ୍ୟ ଯୌବନରେ ସାହିତ୍ୟ କ୍ଷେତ୍ରରେ ପଦାର୍ପଣ କରିଥିଲେ । ଇନ୍ଦ୍ରଧନୁ-ବିଜୁଳି ଆନ୍ଦୋଳନ ବେଳେ ଇନ୍ଦ୍ରଧନୁ ଗୋଷ୍ଠୀରେ ରହି ସେ ଏହି ପତ୍ରିକାରେ କିଛି ରଚନା ପ୍ରକାଶ କରିଥିବା ଇନ୍ଦ୍ରଧନୁର ପୂର୍ବୋକ୍ତ ଉଦ୍ଧୃତିରୁ ଜଣାଯାଏ । କିନ୍ତୁ ପତ୍ରିକାଟିର ସମସ୍ତ ସଂଖ୍ୟା ଉପଲବ୍‌ଧ ହେଉ ନଥିବା ଯୋଗୁଁ ଏବଂ ଏଥିରେ ପ୍ରକାଶ ପାଉଥିବା ଅଧିକାଂଶ ରଚନାର ଲେଖକ ନିଜ ନାମ ଗୋପନ ରଖୁଥିବା କାରଣରୁ ଏଥିରେ ପ୍ରକାଶ ପାଇଥିବା ପଦ୍ମନାଭଙ୍କ ରଚନାର ସ୍ୱରୂପ ଓ ବିଶେଷତ୍ୱ ସମ୍ପର୍କରେ ଅବହିତ ହେବା ସମ୍ଭବ ହେଉ ନାହିଁ । ପୁଣି ନାଟକ ରଚନାରେ ହାତଦେବା ପୂର୍ବରୁ ସେ **ରାସ** ବା ଲୀଳା ରଚନା କରୁଥିବା ତା ୧୩।୪।୧୯୦୧ **ଉତ୍କଳ ଦୀପିକା**ରେ ପ୍ରକାଶିତ ପାରଳାଖେମୁଣ୍ଡିର ‘ଜଣେ ଗଞ୍ଜାମ ଓଡ଼ିଆ ହିତବାଦୀ’ ପାଠକଙ୍କ ପତ୍ରରୁ ଜଣାଯାଏ । ଏଥିରେ ଉଲ୍ଲେଖ ଅଛି-

*ଜନସାଧାରଣଙ୍କ ଉପକାର ନିମନ୍ତେ ଏଠାରେ ବାବୁ ରଘୁନାଥ ପରୀକ୍ଷା ସଙ୍ଗୀତ ରାମାୟଣ ରଚନା କରିଅଛନ୍ତି ଏବଂ ଶ୍ରୀ ଶ୍ରୀ ପଦ୍ମନାଭ ନାରାୟଣ ଦେବ ରାସ ରଚନା କରିଅଛନ୍ତି । ଏ ଦୁଇଟି ଲୀଳା ପାରଳାରେ ପ୍ରସିଦ୍ଧ । ବୋଧହୁଏ ଏ ଲୀଳାମାନ*

*ନ ଶୁଣିବା ଜଣେ ଓଡ଼ିଆ ପୁଅ ପାରଳାରେ ନଥିବ । ରାମ ଓ କୃଷ୍ଣଙ୍କ ଚରିତ ଶୁଣି କାହାର ନୟନରୁ ଅଶ୍ରୁ ଗଳିବ ନାହିଁ ଏବଂ କାହାର ଦେହ ରୋମାଞ୍ଚିତ ହେବ ନାହିଁ ।*

ଆପନ୍ନା ପରିଚ୍ଛାଙ୍କ ରଙ୍ଗାଳୟ ପଦ୍ମନାଭ ରଙ୍ଗାଳୟର ରୂପ ନେବା ପୂର୍ବରୁ ସେଠରେ ଯେଉଁ ଲୀଳାମାନ ପ୍ରଦର୍ଶିତ ହେଉଥିଲା, ସେଥିପାଇଁ ସଙ୍ଗୀତ ଓ ଗୀତିରଚନା କ୍ଷେତ୍ରରେ ନାଁ କରି ଆସୁଥିବା ପଦ୍ମନାଭ ଲୀଳା ବା ରାସ ରଚନା କରିଥିବା ଅସମ୍ଭବ ନୁହେଁ । କିନ୍ତୁ ଏହା ଆଜି ବିସ୍ମୃତି ଗର୍ଭରେ ବିଲୀନ ।

ପୂର୍ବରୁ ଉଲ୍ଲେଖ ଅଛି ଯେ ପଦ୍ମନାଭ ନାରାୟଣ ଦେବ ବିଭିନ୍ନ ଗୁରୁଙ୍କ ଠାରୁ ଓଡ଼ିଆ, ତେଲୁଗୁ, ହିନ୍ଦୀ ଓ ବଙ୍ଗଳା ଭାଷା ଶିକ୍ଷା କରିବା ସହିତ ସଙ୍ଗୀତ, ମୃଦଙ୍ଗ ବାଦନ, ବେହେଲା ବାଦନ, ପ୍ରାଚୀନ ଓଡ଼ିଆ ସାହିତ୍ୟ, ପଦାର୍ଥ ଓ ରସାୟନ ବିଜ୍ଞାନ, ଇଂରେଜୀ ବ୍ୟାକରଣ ଓ ସାହିତ୍ୟ, ଗଣିତ, ଜ୍ୟାମିତି, ଶରୀରତତ୍ତ୍ୱ ଓ ଦର୍ଶନଶାସ୍ତ୍ର ଅଧ୍ୟୟନ କରିଥିଲେ । ଶୈଶବରୁ ବିଦ୍ୟା ଅଧ୍ୟୟନ ଓ ପୁସ୍ତକପାଠ ପ୍ରତି ତାଙ୍କର ଏକାଗ୍ରତା ଥିଲା । ଦିନର ଚାରିପାଞ୍ଚ ଘଣ୍ଟା ଜ୍ଞାନ ଆହରଣ ଓ ଶାସ୍ତ୍ର ଚର୍ଚ୍ଚାରେ ବିନିଯୋଗ କରୁଥିବା ତାଙ୍କ ଜୀବନୀକାର ସୂଚିତ କରିଛନ୍ତି । ପୂର୍ବବର୍ତ୍ତୀ ରାଜାମାନଙ୍କ ପରି ପଦ୍ମନାଭଙ୍କର ମଧ୍ୟ ଏକ ପଣ୍ଡିତ ସଭା ଥିଲା । ଏଥିରେ ପାରଳାର ସମକାଳୀନ ତେଲୁଗୁ ଓ ଓଡ଼ିଆ କବି, ପଣ୍ଡିତ, ଶିକ୍ଷକ ଓ ଅଧ୍ୟାପକମାନେ ଯୋଗ ଦେଉଥିଲେ । ପ୍ରତ୍ୟହ ସନ୍ଧ୍ୟାରେ ବନ୍ଧୁ ମିଳନର ଆୟୋଜନ କରାଯାଉଥିଲା । ଏଥିରେ ଓଡ଼ିଶାର ଏବଂ ଓଡ଼ିଶା ବାହାର ବିଭିନ୍ନ ପ୍ରାନ୍ତରୁ ଆସୁଥିବା ବିଜ୍ଞ ବିଦ୍ୱାନ୍‌ମାନେ ମଧ୍ୟ ଯୋଗ ଦେଉଥିଲେ । ଓଡ଼ିଶା ଓ ଓଡ଼ିଆ ସାହିତ୍ୟର ଅଭାବ ଅସୁବିଧା ସମ୍ପର୍କରେ ଭାବ ବିନିମୟ ହେଉଥିଲା । ପଦ୍ମନାଭ ଏବଂ ଶ୍ୟାମସୁନ୍ଦରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଗଢ଼ି ଉଠିଥିବା ରାଜକୀୟ ଗ୍ରନ୍ଥାଗାର ଏବଂ ସେଠାକୁ ଆସୁଥିବା ଓଡ଼ିଆ, ଇଂରେଜୀ, ତେଲୁଗୁ ଓ ବଙ୍ଗଳା ପତ୍ରପତ୍ରିକା ଭାରତୀୟ ଏବଂ ବିଶ୍ୱ ରାଜନୈତିକ ଘଟଣାବଳୀ ସମ୍ପର୍କରେ ଯେ ସଦସ୍ୟମାନଙ୍କୁ ଅବହିତ କରାଉଥିଲା, ତା' ନୁହେଁ, ସେମାନଙ୍କ ମନରେ ସାହିତ୍ୟ ରଚନା ପାଇଁ ଆବେଗ ମଧ୍ୟ ସୃଷ୍ଟି କରୁଥିଲା । ଏହି ପରିବେଶ ଯୁବରାଜକୁମାର ପଦ୍ମନାଭଙ୍କୁ ସାହିତ୍ୟ ରଚନା ଦିଗରେ ଆଗ୍ରହୀ କରିଥିବା ସ୍ୱାଭାବିକ ।

ପୂର୍ବାନୁମିତ ରଚନାଗୁଡ଼ିକ ବ୍ୟତୀତ ପଦ୍ମନାଭ ନାରାୟଣ ଦେବଙ୍କ ଯେଉଁସବୁ ରଚନା ପ୍ରକାଶିତ ଏବଂ ଯେଉଁଗୁଡ଼ିକ ଅପ୍ରକାଶିତ ବୋଲି ବିଭିନ୍ନ ସୂତ୍ରରୁ ନିର୍ଦ୍ଧାରିତ ସେଗୁଡ଼ିକ ହେଲା-

**(୧) ତାଳ ସର୍ବସାର ସଂଗ୍ରହ (୧୮୯୮)**

(୨) ଗୀତସ୍ତବକ (୧୮୯୯)

(୩) ରାଧାଗୋବିନ୍ଦ ଜଣାଣ (୧୯୦୦)

(୪) ଶ୍ରୀ ସଂଗୀତ ପ୍ରହ୍ଲାଦ ନାଟକ (୧୯୦୧)

(୫) ବାଣ ଦର୍ପଦଳନ ନାଟକ (୧୯୦୧)

(୬) ଅହଲ୍ୟା ଶାପ ଓ ବିମୋଚନ ନାଟକ (୧୯୦୨)

(୭) ଦାନ ପରୀକ୍ଷା ନାଟକ (୧୯୦୨)

(୮) ଚନ୍ଦ୍ରାବତୀ ସ୍ୱୟଂବର (୧୯୦୧, ଅପ୍ରକାଶିତ)

(୯) ତାରକ ସଂହାର ନାଟକ (୧୯୦୨, ଅପ୍ରକାଶିତ)

ଏଗୁଡ଼ିକ ବ୍ୟତୀତ ଡକ୍ଟର ପି. ଶଙ୍କର ନାରାୟଣ ପାତ୍ର, ଅନନ୍ତ ପଦ୍ମନାଭ ପଟ୍ଟନାୟକ, ଡକ୍ଟର ହରିହର କାନୁନ୍‌ଗୋ ପ୍ରଭୃତି ପଦ୍ମନାଭ ନାରାୟଣ ଦେବଙ୍କ ଆଉ କେତୋଟି ରଚନାର ନାମୋଲ୍ଲେଖ କରିଛନ୍ତି । କିନ୍ତୁ **ଶ୍ରୀମଦ୍ ଭାଗବତ ମହାପଟଳ, ଶ୍ରୀମଦ୍ ଭଗବଦ୍ ମାହାତ୍ମ୍ୟ, ଭାବବତୀ କାବ୍ୟ ଇତ୍ୟାଦି ପାରଳା ରାଜପୁତ୍ର ତଥା ଟେକିଲି ରାଜା ଏବଂ ପାରଳାର ମେନେଜର ଜଗଦ୍‌ବଲ୍ଲଭ ଦେବଙ୍କ ପୁତ୍ର ପଦ୍ମନାଭ ଦେବଙ୍କ (୧୭୮୦-୧୮୩୨) ଦ୍ୱାରା ରଚିତ । ନାମ ସାମ୍ୟରୁ ଏବଂ ଚନ୍ଦ୍ର ମହାରାଜାଙ୍କ ସାହିତ୍ୟିକ ସୁଖ୍ୟାତିରୁ ଆଲୋଚକମାନେ ଏପରି ଭ୍ରମରେ ପଡ଼ିଛନ୍ତି ।**

ବର୍ଷରେ ଦୁଇ ତିନୋଟି ନାଟକ ରଚନା କରି ମଞ୍ଚସ୍ଥ କରାଉଥିବା ଏହି ସ୍ୱାଭିମାନୀ ପ୍ରତିଭା ୧୯୦୩ ମସିହାରୁ ନୀରବ ହୋଇଯାଇଥିଲା । ରୋଗକ୍ଲିଷ୍ଟ ଶରୀରରେ ମୃତ୍ୟୁକୁ ସମ୍ମୁଖରେ ଦେଖୁଥିବା ବ୍ୟକ୍ତି ପାଇଁ ସାହିତ୍ୟ ସୃଷ୍ଟିର ଅବକାଶ ବା କାହିଁ । ଏ ସମୟରେ ବିଭୁ ପଦାରବିନ୍ଦ ସ୍ମରଣ ବ୍ୟତୀତ ଅନ୍ୟ କ'ଣ ବା କରାଯାଇପାରେ । ପଦ୍ମନାଭ ଦେବ ତାହାହିଁ କରିଛନ୍ତି । ତାଙ୍କ ଅନ୍ତଃକରଣରୁ ସ୍ୱତଃ ଝରିଆସିଛି କେତୋଟି କାରୁଣ୍ୟ ମିଶ୍ରିତ ଭକ୍ତିଗୀତିକା । ପ୍ରତ୍ୟେକ ରଚନାର ପ୍ରାକ୍-ସୂଚନାରେ ତା'ର ପରିଚୟ ଓ ବିଶେଷତ୍ୱ ସମ୍ପର୍କୀୟ ଆଲୋଚନା ସନ୍ନିହିତ ଥିବା ଯୋଗୁଁ ଏଠାରେ ସେସବୁର ଅଧିକ ଆଲୋଚନାରୁ ନିବୃତ୍ତ ରହୁଛୁ ।

ତଥାପି ଏଠାରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ପଦ୍ମନାଭ ନାରାୟଣ ଦେବ ଥିଲେ ଏକ ପ୍ରଚଣ୍ଡ ସ୍ୱଦେଶାଭିମାନୀ ଓ ଜାତ୍ୟାଭିମାନୀ ଲେଖକ । **ତାଙ୍କ ସର୍ବସାର ସଂଗ୍ରହ ଏବଂ ଗୀତ ସ୍ତବକର** ଗୀତାବଳୀରୁ ଲେଖକଙ୍କ ଓଡ଼ିଶୀ ସଙ୍ଗୀତ ପ୍ରୀତି ସହିତ

ତାଙ୍କ ସମୁଚିତ ଅଭିମାନର ପରିଚୟ ମିଳେ । କିନ୍ତୁ ସଙ୍ଗୀତ ଶାସ୍ତ୍ର ପ୍ରଣେତା ଓ ଗୀତିକବି ଅପେକ୍ଷା ପଦ୍ମନାଭ ଦେବ ନାଟ୍ୟକାର ଭାବେ ଅଧିକ ପରିଚିତ ।

ଓଡ଼ିଶାରେ ସ୍ଥାୟୀ ରଙ୍ଗମଞ୍ଚର ଅଭାବ, ଧାରାବାହିକଭାବେ ନାଟକ ପ୍ରଦର୍ଶନପାଇଁ ଅନୁଷ୍ଠାନର ବିରଳତା, ଦର୍ଶକମାନଙ୍କ ମାନସିକତାକୁ ପରମ୍ପରାଗତ ଲୋକ ନାଟକଠାରୁ ଦୂରେଇ ଆଣି ଆଧୁନିକ ନାଟକ ପ୍ରତି ଆକୃଷ୍ଟ କରାଇବାପାଇଁ ଆଧୁନିକ ନାଟକର ଆବଶ୍ୟକତା ଏବଂ ଏଥିପାଇଁ ଉଭୟ ନାଟ୍ୟଶୈଳୀର ସମୀକରଣ, ଦେଶଭ୍ରମଣ କାଳରେ ଇଂରେଜୀ ଓ ଅନ୍ୟାନ୍ୟ ନାଟକ ଦର୍ଶନ, ବାପଟଲାଲ କମ୍ପାନୀର ହିନ୍ଦୀ ନାଟକ ଉପସ୍ଥାପନା କୌଶଳ ଇତ୍ୟାଦି ପଦ୍ମନାଭଙ୍କୁ ଆଧୁନିକ ନାଟକ ରଚନାପାଇଁ ପ୍ରଣୋଦିତ କରିଥିଲା । ତଥାପି ପାରଳାଖେମୁଣ୍ଡିର ଦର୍ଶକମାନଙ୍କ ଦ୍ୱାରା ଏଗୁଡ଼ିକ କେତେଦୂର ଗୃହୀତ ହେବ ସେ ସନ୍ଦେହ ତାଙ୍କ ମନକୁ ଆନ୍ଦୋଳିତ କରୁଥିଲା । ପ୍ରଥମ ନାଟକ ଶ୍ରୀ ସଙ୍ଗୀତ ପ୍ରହ୍ଲାଦ ନାଟକର ପ୍ରସ୍ତାବନାରେ ନଟ ଓ ସୂତ୍ରଧାରର ସଂଳାପରୁ ଏହା ଅନୁମାନ କରାଯାଇପାରେ-

*ନଟ-* *ବିଜ୍ଞବର ! ଆଜିକାଲି ଆମ୍ଭ ଗଞ୍ଜାମ ଓଡ଼ିଆମାନଙ୍କରେ ନାଟକାଭିନୟର ସମାଦର କରିବା ଲୋକେ ବିରଳ ଲକ୍ଷିତ ହୁଅନ୍ତି । କେତେକ ନବ୍ୟ ସଭ୍ୟ ବ୍ୟକ୍ତି ଆମ୍ଭମାନଙ୍କ ଆର୍ଯ୍ୟ-ରଚିତ ଶାସ୍ତ୍ରମାନଙ୍କୁ ଅଧୀତି, ବୋଧ ଓ ତଦନୁଯାୟୀ ଆଚରଣ କରିବା ତେଣିକି ଥାଉ, ସେମାନଙ୍କ ପ୍ରତି ଭ୍ରୂକ୍ଷେପ ମଧ କରନ୍ତି ନାହିଁ । ଅନ୍ୟ ଯେଉଁମାନେ ଆପଣା ସର୍ବାଙ୍ଗକୁ ମୁଦ୍ରାଙ୍କିତ କରି ହସ୍ତରେ ପ୍ରେମଝୁଲି ଧରି ଭଗବଦ୍ ଭକ୍ତି ପିପାସୁ ବୋଲି ପରିଚୟ ଦିଅନ୍ତି ସେମାନଙ୍କ ଠାରେ ଆନ୍ତରିକ ଭକ୍ତି ଆକାଶ କୁସୁମବତ୍ । ଆଉ ଏକ ଦଳ ଅଛନ୍ତି ଯେ ସେମାନେ ନାଟକାଭିନୟ କାହାକୁ କହନ୍ତି ତାହାର ଗନ୍ଧ ସୁଦ୍ଧା ଜାଣିନାହାଁନ୍ତି । ଏପରି ସ୍ଥଳେ ନାଟକାଭିନୟ କରିବା ଲାଗି ଆପଣ କିପରି ଆଦେଶ ଦେଉଅଛନ୍ତି ? ଏହା ଅତି ଆଶ୍ଚର୍ଯ୍ୟର ବିଷୟ ।*

*ସୂତ୍ର-* *ନଟ ! ଏପରି କହିବା ଉଚିତ ନୁହେଁ । ଆପଣ ଏ ଦେଶୀୟ ଲୋକଙ୍କୁ ଯେଉଁ ଯେଉଁ ଶ୍ରେଣୀରେ ବିଭାଗ କରି ଅଛନ୍ତି ତାହା ସତ୍ୟ । ମାତ୍ର ସେପରି ଲୋକେ ଏହି ଦେଶରେ ଏକା ଅଛନ୍ତି, ତାହା ନୁହେଁ, ସକଳ ଦେଶରେ ନ୍ୟୁନାଧିକରେ ଥାନ୍ତି । ଏହି ହେତୁରୁ ଶ୍ରମ ସ୍ୱୀକାର ପୂର୍ବକ ସାଧ୍ୟତମ ଉପାୟ ଅବଲମ୍ବନ କରି ସେମାନଙ୍କୁ ଉନ୍ନତି ପଥକୁ କର ଧରି ଉଠାଇ ଆଣିବା ଏବଂ କଣ୍ଟକ ସମାକୀର୍ଣ୍ଣ ପଥରେ ପ୍ରଧାବିତ ହେଉଥିବା ଲୋକଙ୍କୁ ସଦ୍‌ମାର୍ଗ ଦେଖାଇବା ପ୍ରତ୍ୟେକ ବିଜ୍ଞ ବ୍ୟକ୍ତିର କର୍ତ୍ତବ୍ୟ କର୍ମ ।*

ଏଥିପାଇଁ ନାଟକଟି ସଙ୍ଗୀତ ବହୁଳ ଏବଂ ପୂର୍ବ ଅଭିନୀତ ଲୋକନାଟକ **ପ୍ରହ୍ଲାଦ ନାଟକ**ର ଉପସ୍ଥାପନା ଶୈଳୀର ଅଧିକ ନିକଟବର୍ତ୍ତୀ । ଆଲୋଚ୍ୟ ନାଟକର ଲୋକପ୍ରିୟତା ନାଟ୍ୟକାରଙ୍କୁ କେବଳ ଯେ ଅଧିକ ନାଟକ ଲେଖିବାପାଇଁ ପ୍ରେରଣା ଯୋଗାଇଥିଲା, ତା' ନୁହେଁ, ଦର୍ଶକମାନଙ୍କ ମାନସିକ ପରିବର୍ତ୍ତନପାଇଁ ମଧ୍ୟ ସମର୍ଥ ହୋଇଥିଲା । ଏଣୁ ପରବର୍ତ୍ତୀ ବର୍ଷରେ ଦାନ ପରୀକ୍ଷା ନାଟକର ପ୍ରସ୍ତାବନାରେ ସୂତ୍ରଧାର ଜଣାଇଛି-

> *ପାଶ୍ଚାତ୍ୟ ଶିକ୍ଷାର ଆଲୋକରୁ ବର୍ତ୍ତମାନ ନବ୍ୟ ଶିକ୍ଷିତ ମଣ୍ଡଳୀର ଦୃଶ୍ୟକାବ୍ୟାସ୍ୱାଦନ ରୁଚି ଏତେ ଦୂର ପରିବର୍ତ୍ତିତ ହୋଇଯାଇଅଛି ଯେ ସେମାନେ ଯାତ୍ରା ବା ଲୀଳାର ଅଭିନୟକୁ ଘୃଣା ଚକ୍ଷୁରେ ଦେଖନ୍ତି । ସେହିହେତୁ ଅଭିନୀତ ନାଟକର ନାୟକ ଏବଂ ନାୟିକାର ଚରିତ୍ର ନିର୍ମଳ ହେବା ନିତାନ୍ତ ଆବଶ୍ୟକ ।*

ଏଠାରେ ଲକ୍ଷ୍ୟ କରିବା କଥା, ଊନବିଂଶ ଶତକର ପରାର୍ଦ୍ଧରେ ବ୍ରାହ୍ମଧର୍ମ ପ୍ରଭାବରୁ ଏ ଦେଶର ଜନମାନସରେ ବ୍ୟକ୍ତିଗତ ଓ ସାମାଜିକ ଶୁଚିତା ପ୍ରତି ଯେଉଁ ମନୋଭାବ ସୃଷ୍ଟି ହୋଇଥିଲା, ତା'ରି ପ୍ରଭାବରେ ପଦ୍ମନାଭ ନାରାୟଣଦେବ ନାଟକୀୟ ଚରିତ୍ରଗୁଡ଼ିକର ଚାରିତ୍ରିକ ନିର୍ମଳତା ପ୍ରତି ଗୁରୁତ୍ୱାରୋପ କରିବାର ଆବଶ୍ୟକତା ଉପଲବ୍ଧି କରିଛନ୍ତି । ପାରଳାଖେମୁଣ୍ଡିରେ ସେତେବେଳେ ବ୍ରାହ୍ମଧର୍ମ ପାଇଁ ଏକ ଅନୁକୂଳ ବାତାବରଣ ସୃଷ୍ଟି ହୋଇଥିଲା । ବାଗ୍ମୀ ବିଶ୍ୱନାଥ କରଙ୍କ ପରି ଧର୍ମପ୍ରଚାରକମାନେ ବାରମ୍ବାର ପାରଳାଭୂମିରେ ପଦାର୍ପଣ କରିଥିବା ସମ୍ବାଦ ସମସାମୟିକ ପତ୍ରିକାଗୁଡ଼ିକରେ ଅନୁସନ୍ଧେୟ । ଏହା ସହିତ ବର୍ଷ ବର୍ଷ ଧରି ରାମ ଓ କୃଷ୍ଣଲୀଳା ସମ୍ବଳିତ ଲୋକନୃତ୍ୟ ଦର୍ଶକମାନଙ୍କ ମନରେ ଯେଉଁ ଧାର୍ମିକ ଚେତନା ଜାଗ୍ରତ ରଖିଥିଲା, ତାହା ମଧ୍ୟ ନବ ନାଟ୍ୟକାରଙ୍କ ଦୃଷ୍ଟି ଅନ୍ତରାଳରେ ରହିନାହିଁ । ଏଣୁ ସେ ନାଟକ ରଚନାବେଳେ ପୌରାଣିକ କଥାବସ୍ତୁ ଉପରେ ହିଁ ଗୁରୁତ୍ୱାରୋପ କରିଛନ୍ତି । ତାଙ୍କ ରାଜସଭା ଏବଂ ଦର୍ଶକମଣ୍ଡଳୀରେ ଥିଲେ-ମୌହୂର୍ତ୍ତିକ, ବୈୟାକରଣ, ନୈୟାୟିକ, ମୀମାଂସକ, ପୌରାଣିକ, ଐତିହାସିକ, ଶ୍ରୋତ୍ରୀୟ, କୁଶୀଲବ, ପାରିହାସିକ, କବି, ବେଦାନ୍ତି, ବୈଷ୍ଣବ, ମୌରାଜିକ ଓ ବୈଣିକ ପ୍ରଭୃତି ।'' ଫଳରେ ନାଟକରୁ ପ୍ରସ୍ତାବନା, ନାନ୍ଦୀ, ସୂତ୍ରଧାର, ନଟ, ନଟୀ ଏବଂ ନଟୀମୁଖରେ ଋତୁ ବା ପରିବେଶ ବର୍ଣ୍ଣନାକୁ ବାଦ୍ ଦେବା ତାଙ୍କପାଇଁ ସମ୍ଭବ ହୋଇ ନାହିଁ । ସେକାଳର ବରିଷ୍ଠ ନାଟ୍ୟକାର ରାମଶଙ୍କର ରାୟ, ହରିହର ରଥ ପ୍ରଭୃତି ମଧ୍ୟ ସଂସ୍କୃତ ନାଟ୍ୟଶୈଳୀର ପ୍ରଭାବରୁ ମୁକ୍ତ ହୋଇପାରିନାହାଁନ୍ତି ।

ପ୍ରସଙ୍ଗକ୍ରମେ ଏଠାରେ ସୂଚାଇ ଦିଆଯାଇପାରେ ଯେ ପଦ୍ମନାଭ ନାରାୟଣ ଦେବ ପରମ୍ପରା ବିରୋଧୀ ନଥିଲେ ସୁଦ୍ଧା ଭାରତବର୍ଷର ବିଭିନ୍ନ ପ୍ରାନ୍ତରେ ଦେଖାଦେଇଥିବା ସଂସ୍କାର ଆନ୍ଦୋଳନ ସମ୍ପର୍କରେ ଅନବହିତ ନଥିଲେ । ଜାତୀୟ କଂଗ୍ରେସରେ ଯୋଗଦାନ ଏବଂ ଭାରତ ଭ୍ରମଣବେଳେ ବହୁ ସଂସ୍କାରବାଦୀ ମନୀଷୀଙ୍କ ସହିତ ତାଙ୍କ ଆଳାପ ଆଲୋଚନା ହୋଇଛି । ପତ୍ରପତ୍ରିକାରେ ପ୍ରକାଶିତ ସାମାଜିକ କୁସଂସ୍କାର ଦୂରୀକରଣ ପାଇଁ ବିଭିନ୍ନ ବ୍ୟକ୍ତି ଓ ଅନୁଷ୍ଠାନର କାର୍ଯ୍ୟକ୍ରମ ସମ୍ପର୍କୀୟ ପ୍ରକାଶିତ ସମ୍ବାଦ ତାଙ୍କୁ ଏ ଦିଗରେ ପ୍ରଭାବିତ କରିଛି । ଦୀର୍ଘଜୀବୀ ହୋଇଥିଲେ ହୁଏତ ସେ ରାମଶଙ୍କର ରାୟ, ଜଗନମୋହନ ଲାଲ, ଭିକାରୀ ପଟ୍ଟନାୟକଙ୍କ ବୁଢ଼ାବର, ବିଷମୋଦକ, କଳିକାଳ, ଯୌତୁକ, ବାବାଜୀ ପରି ସଂସ୍କାରମୂଳକ ପ୍ରହସନ ବା ନାଟିକା ରଚନା କରିଥାଆନ୍ତେ । ତଥାପି ପୌରାଣିକ କଥାବସ୍ତୁ ସମ୍ବଳିତ ନାଟକଗୁଡ଼ିକରେ ନାଟ୍ୟକାରଙ୍କ ସଂସ୍କାରମୁଖୀ ଚେତନାର ପରିଚୟ ଦୁର୍ଲକ୍ଷ୍ୟ ନୁହେଁ । **ସଙ୍ଗୀତ ପ୍ରହ୍ଲାଦ ନାଟକ**ରେ ଦେଶୀୟ ରାଜାମାନଙ୍କ ଶାସନ ସଂସ୍କାର, **ଅହଲ୍ୟା ଶାପ ଓ ବିମୋଚନ** ନାଟକରେ ନାରୀର ଅଧିକାର ସଂପର୍କୀୟ ସୂଚନା ଇତ୍ୟାଦି ଏହାର ନିଦର୍ଶନ ।

ଇନ୍ଦ୍ରଧନୁ-ବିଜୁଳି ଆନ୍ଦୋଳନରେ ପଦ୍ମନାଭ ନାରାୟଣ ଦେବ ଥିଲେ ପ୍ରତ୍ୟକ୍ଷ ଭାବେ ସଂପୃକ୍ତ । ଇନ୍ଦ୍ରଧନୁ ଗୋଷ୍ଠୀରେ ରହି ପ୍ରାଚୀନ ଶୈଳୀରେ କବିତା ରଚନା କରୁଥିଲେ ସୁଦ୍ଧା ମାନସିକତାରେ ସେ ଥିଲେ ଏ ଦଳର ଅନ୍ୟାନ୍ୟ ସାହିତ୍ୟ ସ୍ରଷ୍ଟାଙ୍କ ପରି ଆଧୁନିକ । ବ୍ରାହ୍ମଧର୍ମ ପ୍ରଭାବରୁ ଅଶ୍ଳୀଳତା ବିରୋଧୀ ଚେତନା କିପରି ଏପରି ଏକ ଅଶୋଭନୀୟ ଆନ୍ଦୋଳନକୁ ଜନ୍ମ ଦେଇଥିଲା, ସେଥିପ୍ରତି ସେ ଅବହିତ ଥିଲେ । ସେଥିପାଇଁ କଥାବସ୍ତୁର ଆବଶ୍ୟକତା ଦୃଷ୍ଟିରୁ **ଚନ୍ଦ୍ରାବତୀ ସ୍ୱୟମ୍ବର** ନାଟକରେ ଶୃଙ୍ଗାର ରସର ଅବତାରଣା କରାଯାଇଥିବା ଯୋଗୁଁ ନାଟକଟି ପଦ୍ମନାଭ ରଙ୍ଗାଳୟରେ ବାରମ୍ବାର ମଞ୍ଚସ୍ଥ ହୋଇ ଦର୍ଶକମାନଙ୍କ ମନୋରଞ୍ଜନ କରିଥିଲେ ସୁଦ୍ଧା, ସେ ଏହାକୁ ପ୍ରକାଶ କରି ନାହାନ୍ତି । ତାଙ୍କ ରଚିତ ରାଧାକୃଷ୍ଣ କେଳି ବିଳାସ ଓ ଲୌକିକ ଗୀତି କବିତା ଗୁଡ଼ିକ ଶୃଙ୍ଗାର ରସସିକ୍ତ, କିନ୍ତୁ ଏଥିରେ ମଧ୍ୟଯୁଗୀୟକବିସୁଲଭ ଉଲ୍ଲଙ୍ଗ ଶୃଙ୍ଗାରିକତା ପରିଦୃଷ୍ଟ ନୁହେଁ ।

ରାଜଭ୍ରାତା ପଦ୍ମନାଭଙ୍କ ନାଟକଗୁଡ଼ିକର ବିଚାର ବେଳେ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ଉଲ୍ଲେଖଯୋଗ୍ୟ । ତାଙ୍କ ରଚିତ **ଶ୍ରୀ ସଙ୍ଗୀତ ପ୍ରହ୍ଲାଦ ନାଟକ** ଏବଂ ରାଜା ଗୌରଚନ୍ଦ୍ର ଗଜପତିଙ୍କ **ଧ୍ରୁବ ନାଟକ** ସେତେବେଳେ ଘୋର ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ଏ ଉଭୟ ନାଟକର ସଂଳାପ ଗୁଡ଼ିକରେ ଥିବା ଭାଷାର ଆଞ୍ଚଳିକ ରୂପକୁ ଭିତ୍ତିକରି

ବିଭିନ୍ନ ପତ୍ରପତ୍ରିକାର ସମ୍ପାଦକ ଏବଂ ଉଭୟ ରାଜଭ୍ରାତାଙ୍କ ଶିକ୍ଷା ଓ ଦୀକ୍ଷାଗୁରୁ ଭାଷାତତ୍ତ୍ୱବିତ୍ ଶ୍ୟାମସୁନ୍ଦର ରାଜଗୁରୁଙ୍କ ମଧ୍ୟରେ ସାରସ୍ୱତ ବିବାଦର ସୂତ୍ରପାତ ହୋଇଥିଲା । ଏ ବିବାଦର ସ୍ୱରୂପ ଉପରେ ପ୍ରାକ୍-ସୂଚନାରେ ଅଧିକ ଆଲୋକପାତ କରାଯାଇଛି, କିନ୍ତୁ ଏଠାରେ ଏତିକି କୁହାଯାଇପାରେ ଯେ, ଏହି ଆଲୋଚନା ଓ ପ୍ରତି ଆଲୋଚନା ଫଳରେ ସଂଗୀତ ପ୍ରହ୍ଲାଦ ନାଟକ ପରବର୍ତ୍ତୀ ଅନ୍ୟାନ୍ୟ ନାଟକରେ ସଂଳାପ ଗୁଡ଼ିକୁ ଆଞ୍ଚଳିକତା ମୁକ୍ତ କରିବାପାଇଁ ଯଥାସାଧ୍ୟ ପ୍ରୟାସ କରାଯାଇଛି । ସେତେବେଳେ ଏହି ନାଟକଗୁଡ଼ିକ ଏତେ ଲୋକପ୍ରିୟ ଥିଲା ଯେ ଓଡ଼ିଶାର ବିଭିନ୍ନ ସ୍ଥାନରେ ଅଭିନୀତ ହୋଇ ପ୍ରଶଂସାଭାଜନ ହୋଇପାରିଥିଲା । ତା ୩୦।୫।୧୯୦୩ ରେ ରସୁଲକୁଣ୍ଡାର (ଭଞ୍ଜନଗର) ଜନୈକ ଦର୍ଶକ ଜଣାଇଥିଲେ-

> *ରସୁଲକୁଣ୍ଡାର ବାବୁ ନେତ୍ରୋତ୍ସବ ପଟ୍ଟନାୟକ ପ୍ରଭୃତିଙ୍କ ଯତ୍ନରେ ପାରଳାଖେମୁଣ୍ଡିର ଗଜପତି ମହାରାଜାଙ୍କ କୃତ ଧ୍ରୁବ ନାଟକ, ବାଣାସୁର ନାଟକ ଇତ୍ୟାଦିର ଅଭିନୟ ହୋଇଥିଲା । ଅନ୍ୟାନ୍ୟ ସମ୍ଭ୍ରାନ୍ତ ଦର୍ଶକଙ୍କ ମଧ୍ୟରେ ଗଞ୍ଜାମର କଲେକ୍ଟର ସାହେବ ଉପସ୍ଥିତ ଥିଲେ । ଧ୍ରୁବନାଟକର ଅଭିନୟ ଦେଖି ସାହେବ ମହୋଦୟ ଅତ୍ୟନ୍ତ ଆନନ୍ଦିତ ହୋଇ କହିଲେ କି ମୋତେ ଅନେକ ସ୍ଥଳେ ଓଡ଼ିଆ ନାଟକ ଦେଖିବାର ଆମନ୍ତ୍ରଣ ହୁଏ, ମୁଁ ଯାଏଁ ନାହିଁ । ଆଜି ଅଧଘଣ୍ଟା ସକାଶେ ଏଠାକୁ ଆସିଥିଲି ମାତ୍ର ଅଭିନୟ ଏମନ୍ତ ମନୋହର ହେଲା ଯେ ମୁଁ ଦେଢ଼ଘଣ୍ଟା ବସିଗଲି, ମୁଁ ବୁଝିନଥିଲି ଯେ ଓଡ଼ିଆମାନେ ଏତେ ସଭ୍ୟ ଏଠାରେ ଅଛନ୍ତି । ସେ ଏହି କଥା କହି ଓଡ଼ିଆମାନଙ୍କୁ ବିଶେଷ ଧନ୍ୟବାଦ ଦେଇ ବିଦାୟ ହୋଇଗଲେ । ଜିଲ୍ଲା ହାକିମଙ୍କର ଏପରି ଉତ୍ସାହପୂର୍ଣ୍ଣ ବାକ୍ୟ ଅତ୍ୟନ୍ତ ମୂଲ୍ୟବାନ୍ ସନ୍ଦେହ ନାହିଁ ।*

କହିବା ନିଷ୍ପ୍ରୟୋଜନ ଓଡ଼ିଆ ନାଟକର ଉନ୍ମେଷ ପର୍ବରେ ପାରଳା ରାଜଭ୍ରାତାଙ୍କ ନାଟକ ଗୁଡ଼ିକର ମଞ୍ଚାୟନ ଓ ପ୍ରକାଶନ ନିଶ୍ଚିତଭାବେ ଗୁରୁତ୍ୱପୂର୍ଣ୍ଣ ଥିଲା । ଏଗୁଡ଼ିକ ଦ୍ୱାରା ପ୍ରୋତ୍ସାହିତ ହୋଇ ଦକ୍ଷିଣ ଓଡ଼ିଶାର ବହୁ ରାଜା ଓ ରାଜସଭାଶ୍ରିତ ପଣ୍ଡିତ ପ୍ରାଚୀନ ପରମ୍ପରାରୁ ଓହରି ଆସି ଆଧୁନିକ ନାଟକ ରଚନା ଦିଗରେ ସଫଳ ପ୍ରୟାସ କରିଛନ୍ତି ।

(୮)

ସମଗ୍ର ଓଡ଼ିଶାର ସାରସ୍ୱତ ଓ ସାଂସ୍କୃତିକ ଜଗତକୁ ଆଲୋକିତ କରିଥିବା ଚନ୍ଦ୍ର ମହାରାଜାଙ୍କ ବ୍ୟକ୍ତିଗତ ଓ ପାରିବାରିକ ଜୀବନ ଅଖଣ୍ଡ ଆନନ୍ଦମୟ ନଥିଲା । ମାତାଙ୍କ

ଦ୍ୱାରା ପ୍ରଦତ୍ତ ଶ୍ରଦ୍ଧାନାମ ଚନ୍ଦ୍ରପରି ସେ ଥିଲେ ଅତ୍ୟନ୍ତ ରୂପବାନ୍, ବିଦ୍‌ବାନ ଓ ଗୁଣବାନ୍, କିନ୍ତୁ ଆଜୀବନ ରୁଗ୍‌ଣ ! ଶୈଶବରୁ ସେ ପିତୃସ୍ନେହରୁ ବଞ୍ଚିତ ଥିଲେ । ପିତା ପ୍ରତାପରୁଦ୍ର ଗଜପତି ନାରାୟଣ ଦେବ ପୁତ୍ରମାନେ ସାବାଳକ ହେବା ପୂର୍ବରୁ ସ୍ୱଇଚ୍ଛାରେ ରାଜପଦ ପରିତ୍ୟାଗ କରି ପ୍ରବ୍ରଜ୍ୟା ଗ୍ରହଣ କରିଥିଲେ । ଦର୍ଶନ ଓ ଧର୍ମ ଶାସ୍ତ୍ରରେ ପ୍ରବୀଣ ପ୍ରତାପରୁଦ୍ରଙ୍କ ଜୀବିତାବସ୍ଥାରେ ହିଁ ଜ୍ୟେଷ୍ଠପୁତ୍ର ଗୌରଚନ୍ଦ୍ରଙ୍କୁ ରାଜ୍ୟଭାର ଗ୍ରହଣ କରିବାକୁ ପଡ଼ିଥିଲା । ପିତାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଲାଳିତପାଳିତ ନ ହୋଇଥିଲେ ସୁଦ୍ଧା ତାଙ୍କ ପାଣ୍ଡିତ୍ୟ ଓ ବିଶୁଦ୍ଧ ଚରିତ୍ରବତ୍ତାର ଅଧିକାରୀ ଥିଲେ କନିଷ୍ଠ ପୁତ୍ର ପଦ୍ମନାଭ । ଆଜୀବନ ସେ ଥିଲେ ନିରାମିଷାଶୀ; ପରଦୁଃଖ କାତର, ଦୟାଳୁ, ସଂସ୍କାରକାମୀ ଅଧ୍ୟୟନଶୀଳ ଓ ପରୋପକାରୀ । କନିଷ୍ଠ ପୁତ୍ର ଥିବାରୁ ସେ ଥିଲେ ମାତାଙ୍କର ଅଲିଅଳ ସନ୍ତାନ ଏବଂ ଆଦରର ପାତ୍ର । ୧୮୯୪ ମସିହାରେ ମାତୃ ବିୟୋଗ ତାଙ୍କପାଇଁ ଥିଲା ମର୍ମନ୍ତୁଦ । ସେ ଦୀର୍ଘଦିନ ଧରି ନିଦ୍ରାରେ ମା' ମା' ବୋଲି ବିଳାପ କରୁଥିବା ଜୀବନୀକାର ଉଲ୍ଲେଖ କରିଛନ୍ତି । ପୂର୍ବରୁ ଜ୍ୟେଷ୍ଠଭ୍ରାତା ଜଗନ୍ନାଥ ଆତ୍ମହତ୍ୟା କରି ମୃତ୍ୟୁବରଣ କରିଥିଲେ । କୋମଳମନା ପଦ୍ମନାଭଙ୍କପାଇଁ ଏସବୁ ଥିଲା ଅତ୍ୟନ୍ତ ଦୁଃଖଦାୟକ ।

୧୮୯୫ ମସିହାରେ ସେ ସମ୍ବଲପୁର ଜିଲ୍ଲା ଅନ୍ତର୍ଗତ ବାବୁ ଚକୁଳି ଗ୍ରାମର ହୟବଂଶୀ ସର୍ଦ୍ଦାର ସିଂହଙ୍କ କନ୍ୟାଙ୍କୁ ବିବାହ କରିଥିଲେ । ପତ୍ନୀ ଥିଲେ ତାଙ୍କ ଅନୁରୂପ ସୁଶୀଳା, ଦୟାବତୀ, ପୁରାଣପ୍ରିୟା ଓ ପତି ପରାୟଣା । କିନ୍ତୁ ବୈବାହିକ ଜୀବନର ଆନନ୍ଦ ଅଧିକ ଦିନ ରହିନଥିଲା । ୧୯୦୦ ମସିହାରେ ଚାରୋଟି ଗର୍ଭପାତ ପରେ ପଞ୍ଚମ ସନ୍ତାନକୁ ଜନ୍ମ ଦେଇ ପୁତ୍ର ସହିତ ସେ ଇହଲୀଳା ସମ୍ବରଣ କରିଥିଲେ । ଏଥିରେ କେବଳ ରାଜକୁମାର ନୁହନ୍ତି ତାଙ୍କ ସହିତ ସମ୍ପର୍କ ଥିବା ସମସ୍ତ ବନ୍ଧୁ ଓ ଶୁଭେଚ୍ଛୁ ମର୍ମନ୍ତୁଦ ଦୁଃଖ ଅନୁଭବ କରିଥିଲେ । ଏହି ସମ୍ବାଦ ପରିବେଷଣ କରି **ଉତ୍କଳ ଦୀପିକା**ର ସମ୍ପାଦକ ଗୌରୀଶଙ୍କର ରାୟ ଲେଖିଥିଲେ-

> *ଅତ୍ୟନ୍ତ ଦୁଃଖର ସହିତ ଗଞ୍ଜାମ ନିୟୁସ୍‌ରେ ପାଠକଲୁଁକି ପାରଳାଖେମୁଣ୍ଡିର ୨ୟ ରାଜକୁମାର ଶ୍ରୀଯୁକ୍ତ ପଦ୍ମନାଭ ନାରାୟଣ ଦେବଙ୍କର ପତ୍ନୀ ବିୟୋଗ ହୋଇଅଛି । ଏହି ଶୋକାବହ ଘଟଣା ଗତମାସ ତା ୧୦ ତାରିଖରେ ଘଟିଲା । ସେ ଗୋଟିଏ ପୁତ୍ରସନ୍ତାନ ଜନ୍ମକରି ସୂତିକା ରୋଗରେ ମାରାପଡ଼ିଲେ ଏବଂ ସନ୍ତାନଟି ମଧ୍ୟ ତାହାଙ୍କ ପଛେ ପଛେ ଇହଲୀଳା ସମ୍ବରଣ କଲେ । କୁମାର*

*ପଦ୍ମନାଭ ନାରାୟଣ ଦେବ ଜଣେ ଶ୍ରେଷ୍ଠ ଶ୍ରେଣୀର ସ୍ୱଦେଶାନୁରାଗୀ, ସତ୍‌ସାହସୀ, ପରୋପକାରୀ, ବିଚକ୍ଷଣ ବ୍ୟକ୍ତି ଅଟନ୍ତି । ସୁତରାଂ ତାହାଙ୍କର ବର୍ତ୍ତମାନର ଦାରୁଣ ଶୋକ ସାଧାରଣ ଦୁଃଖର ବିଷୟ ବୋଲିବାକୁ ହେବ । ପରମେଶ୍ୱର ତାହାଙ୍କୁ ଏ ଦୁଃଖ ସହିବାର ଉପଯୁକ୍ତ ବଳ ଓ ସାନ୍ତ୍ୱନା ପ୍ରଦାନ କରନ୍ତୁ ଓ ମୃତ ପତ୍ନୀର ଆତ୍ମାର ମଙ୍ଗଳ ବିଧାନ କରନ୍ତୁ ।*

ଏହି ଦୁଃଖଦ ପତ୍ନୀବିୟୋଗ ପରେ ସେ ପୁନଃ ବିବାହ କରିବାପାଇଁ ଆଉ ଇଚ୍ଛା କରିନାହାନ୍ତି । କିନ୍ତୁ ଜ୍ୟେଷ୍ଠଭ୍ରାତା ଗୌରଚନ୍ଦ୍ର ଗଜପତିଙ୍କର ଭ୍ରାତାର ବିବାହ ସମ୍ପନ୍ନ ନହେଲା ପର୍ଯ୍ୟନ୍ତ ପୁତ୍ରର ବ୍ରତୋପନୟନ ହୋଇପାରିବ ନାହିଁ-ଜିଦ୍‌ରୁ ସେ ୧୯୦୨ ମସିହା ମେ ମାସରେ ସମ୍ବଲପୁର ଜିଲ୍ଲାନ୍ତର୍ଗତ କୁସୁମଲି ଗ୍ରାମନିବାସୀ ଶ୍ରୀ ବଳରାମ ସିଂହଙ୍କ ଭଗିନୀଙ୍କୁ ପୁନଃବିବାହ କରିବାପାଇଁ ବାଧ ହୋଇଥିଲେ । କିନ୍ତୁ ବୈବାହିକ ଜୀବନର ସୁଖ ତାଙ୍କ ଭାଗ୍ୟରେ ଲେଖା ନ ଥିଲା । ଏହି ବର୍ଷ ଡିସେମ୍ବର ମାସରେ ସେ ଜ୍ୟେଷ୍ଠଭ୍ରାତାଙ୍କ ସହିତ ଦିଲ୍ଲୀ ଯାଇଥିବାବେଳେ ପୁଣି ରୋଗାକ୍ରାନ୍ତ ହୋଇ ପଡ଼ିଲେ । ଏ ରୋଗଥିଲା ଅସାଧ । ସେଥିପାଇଁ କେବଳ ସେ ବୋଧହୁଏ ଦ୍ୱିତୀୟ ବିବାହ କରିବାପାଇଁ ଅସମ୍ମତ ଥିଲେ । ବିଶାଖାପାଟଣା, କଲିକତା, ମାନ୍ଦ୍ରାଜର ପ୍ରଖ୍ୟାତଯଶା ଚିକିତ୍ସକମାନେ ରୋଗର ଭିନ୍ନ ଭିନ୍ନ ନିଦାନ କରି ତାଙ୍କ ରୋଗମୁକ୍ତ କରିବା ନିମିତ୍ତ ସମର୍ଥ ହୋଇପାରିନଥିଲେ । ଭ୍ରାତୃବତ୍ସଳ ଗୌରଚନ୍ଦ୍ର ମାନ୍ଦ୍ରାଜର ପ୍ରଖ୍ୟାତ ଡାକ୍ତର ବରଦାପ୍ପା ନାଇଡୁଙ୍କୁ ନିଯୁକ୍ତ କରିଥିଲେ । ସେ ସମୟରେ ତାଙ୍କ ଦୈନନ୍ଦିନ ୩୦୦ ଟଙ୍କା ଦିଆଯାଉଥିଲା । ତଥାପି ସେ ଉକ୍ତ ସିଫ୍ଲିଲିଟିକ୍ କିମ୍ବା ଗର୍ଭାଶୟ ଅଲ୍‌ସର୍ ଓ ଯକୃତ ପ୍ଲୀହା ରୋଗରେ ପୀଡ଼ିତ ତାହା ଜଣାଗଲା ନାହିଁ । ଏହି ରୋଗ ହିଁ ତାଙ୍କ ମୃତ୍ୟୁର କାରଣ ହେଲା । ରୋଗଶଯ୍ୟାରେ ପଡ଼ିଥିବା ବେଳେ ନିଜର ପ୍ରାଣପ୍ରିୟା ଭଗ୍ନୀ, ଜଳନ୍ତର ପାଟମହିଷୀଙ୍କ ମୃତ୍ୟୁ (୨୯।୧।୧୯୦୩) ତାଙ୍କୁ ଜୀବନ ପ୍ରତି ଅଧିକ ବୀତସ୍ପୃହ କରି ଦେଇଥିଲା । ସେ ବିଷ୍ଣୁ ନାମ ଜପ ଏବଂ ଭକ୍ତିଗୀତି ରଚନା ଓ ଗାନ କରି ଦିନଯାପନ କରୁଥିଲେ । ୧୯୦୪ ମସିହା ଫେବୃୟାରୀ ୪ ତାରିଖ ପ୍ରାତଃ କାଳରେ "Oh God save me, Oh God save me, Oh God." ଉଚ୍ଚାରଣ କରୁ କରୁ ଏହି ମହାପୁରୁଷଙ୍କ ଜୀବନବର୍ତ୍ତିକା ନିର୍ବାପିତ ହୋଇଥିଲା ।

(୯)

"ପ୍ରାଣୀର ଭଲମନ୍ଦ ବାଣୀ ମରଣ କାଳେ ତାହା ଜାଣି" ଚନ୍ଦ୍ର ମହାରାଜା ପଦ୍ମନାଭ ନାରାୟଣ ଦେବଙ୍କ ମହାପ୍ରୟାଣ ବାର୍ତ୍ତା ଓଡ଼ିଶାର ଚତୁର୍ଦ୍ଦିଗରେ ପ୍ରଚାରିତ

ହୋଇଯାଇଥିଲା । ରମ୍ଭା ମର୍ଦ୍ଦରାଜ ପ୍ରେସରୁ ନୀଳମଣି ବିଦ୍ୟାରତ୍ନଙ୍କ ଦ୍ୱାରା ସମ୍ପାଦିତ **ପ୍ରଜାବନ୍ଧୁ** ଏହି ମର୍ମନ୍ତୁଦ ଶୋକସମ୍ବାଦ ପ୍ରଥମେ ପ୍ରକାଶ କରିଥିଲା । ଏହି ସଂଖ୍ୟା ହସ୍ତଗତ ହେବା ମାତ୍ରେ ଅନ୍ୟାନ୍ୟ ସମ୍ବାଦପତ୍ରଗୁଡ଼ିକ ଏହା ପ୍ରଚାରିତ କରିବା ସଙ୍ଗେ ସଙ୍ଗେ କିଛିଦିନ ଧରି ସ୍ମୃତିଚାରଣ କରିଥିଲେ । ଏହି ଶୋକସମ୍ବାଦ ଶୋକବାର୍ତ୍ତା ଓ ସ୍ମୃତିଚାରଣ ମଧ୍ୟରୁ ସ୍ୱର୍ଗତ ପଦ୍ମନାଭ ନାରାୟଣ ଦେବଙ୍କ ଅବିସ୍ମରଣୀୟ ବ୍ୟକ୍ତିତ୍ୱର ପରିଚୟ ମିଳିଥାଏ । **ବାଲେଶ୍ୱର ସମ୍ବାଦ ବାହିକା** ତା୧୧।୨।୧୯୦୪ ସଂଖ୍ୟାରେ ଲେଖିଥିଲେ-

> *'ପ୍ରଜାବନ୍ଧୁ'ରୁ ଦୁଃଖର ସହିତ ପାଠକଲୁ ଯେ ପାରଳାଖେମୁଣ୍ଡିର ରାଜଭ୍ରାତା ଶ୍ରୀଯୁକ୍ତ ପଦ୍ମନାଭ ନାରାୟଣ ଦେବ ଦୀର୍ଘକାଳ ଦୁଷ୍ଚିକିତ୍ସ୍ୟ ରୋଗରେ ଆକ୍ରାନ୍ତ ହୋଇ ଗତ ଗୁରୁବାର ଇହଧାମ ପରିତ୍ୟାଗ କରିଅଛନ୍ତି । ସେ ଜଣେ ସୁଶିକ୍ଷିତ ଓ ସ୍ୱଦେଶବତ୍ସଳ ରାଜକୁମାର ଥିଲେ ଏବଂ କେତେକ ସଙ୍ଗୀତ ଓ ନାଟକ ରଚନା କରି ଉତ୍କଳବାସୀମାନଙ୍କୁ ସ୍ୱୀୟ ଯୋଗ୍ୟତାର ପରିଚୟ ପ୍ରଦାନ କରିଅଛନ୍ତି । ଈଶ୍ୱର ତାଙ୍କ ଆତ୍ମାର ସଦ୍‌ଗତି ବିଧାନ କରି ପରିବାରବର୍ଗଙ୍କ ଉପରେ ଶାନ୍ତିବାରି ସେଚନ କରନ୍ତୁ । (ଭା,୩୭/୬)*

**ଉତ୍କଳ ଦୀପିକା** ତା ୧୩।୨।୧୯୦୪ରେ ଏହି ସମ୍ବାଦ ପରିବେଷଣ କରି ଜଣାଇଥିଲେ ଯେ-

> *'ପ୍ରଜାବନ୍ଧୁ'ରୁ ଅତ୍ୟନ୍ତ ଦୁଃଖର ସହିତ ଅବଗତ ହେଲୁ ଯେ ପାରଳାଖେମୁଣ୍ଡିର ରାଜଭ୍ରାତା ଶ୍ରୀ ପଦ୍ମନାଭ ନାରାୟଣ ଦେବ ଗତ ତା୪ରିଖରୁ ପରଲୋକ ଗମନ କରିଛନ୍ତି । ସେ କେତେକାଳ ହେଲା ଏକ ଉତ୍କଟ ରୋଗାକ୍ରାନ୍ତ ହୋଇଥିଲେ । ଅନେକ ଚିକିତ୍ସାରେ ତାହା ଆୟତ୍ତ ନ ହୋଇ ଅକାଳରେ ତାହାଙ୍କୁ ଘେନିଗଲା । ସେ ସୁଶିକ୍ଷିତ, ଉତ୍ସାହୀ, ସ୍ୱଦେଶାନୁରାଗୀ, ଉନ୍ନତଚେତା, ସ୍ୱଦେଶର ସେବାରେ ସଦା ପ୍ରସ୍ତୁତ ଥିଲେ ।*
>
> *ତାହାଙ୍କର ଅକାଳ ମୃତ୍ୟୁରେ ଉତ୍କଳର କ୍ଷତି ହୋଇଅଛି । (ଭା୩୯।୬)*

**ଓଡ଼ିଆ ଓ ନବ ସମ୍ବାଦର** ସମ୍ପାଦକ ପଦ୍ମନାଭଙ୍କ ବିୟୋଗରେ ଦୁଃଖ ପ୍ରକାଶ କରି ଲେଖିଥିଲେ-

*ଅତ୍ୟନ୍ତ ଦୁଃଖର ସହିତ ପ୍ରକାଶ କରୁଅଛୁଁ ଯେ, ପାରଳାଖେମୁଣ୍ଡିର ରାଜଭ୍ରାତା ଶ୍ରୀଯୁକ୍ତ ପଦ୍ମନାଭ ନାରାୟଣ ଦେବ ମହାଶୟ ଗତ ତା୪ରିଖ ଯକୃତର ଦୁଷ୍ଟିକିସ୍ୟ ବ୍ୟାଧିରେ ସ୍ୱର୍ଗାରୋହଣ କରିଛନ୍ତି । ଏହାଙ୍କ ନାମ ସମଗ୍ର ଉତ୍କଳରେ ସୁବିଦିତ । ସାହିତ୍ୟାଦି ବିଷୟରେ ଏ ମହାଶୟ ଅତ୍ୟନ୍ତ ଯତ୍ନଶୀଳ ଥିଲେ । ବାସ୍ତବରେ ଏହାଙ୍କ ଅକାଳ ବିୟୋଗ ଘୋର ପରିତାପର ବିଷୟ ଅଟେ । ସର୍ବବିଧ ସଦନୁଷ୍ଠାନରେ ଏ ମହାଶୟ ଯୋଗଦାନ କରିବାକୁ ପଶ୍ଚାତ୍‌ପଦ ନଥିଲେ । ସୁତରାଂ ଏହାଙ୍କ ମହାପ୍ରୟାଣ ଉତ୍କଳର ଯଥେଷ୍ଟ କ୍ଷତିକର ଅଟେ । ଜଗଦୀଶ୍ୱର ଏହାଙ୍କ ଆତ୍ମାର କୁଶଳ ବିଧାନ କରନ୍ତୁ, ଏହାଙ୍କ ଶୋକ ଗ୍ରସ୍ତ(ସ୍ତ) ପରିବାର ମଧ୍ୟରେ ଶାନ୍ତିଦାନ କରନ୍ତୁ । (ଭା.୧୮/୬)*

**ସମ୍ବଲପୁର ହିତୈଷିଣୀର** ସମ୍ପାଦକ ତା୧୭।୨।୧୯୦୪ ସଂଖ୍ୟାରେ ଜଣାଇଥିଲେ-

*ଶୋକବାର୍ତ୍ତା*

*ଓଃ କି ଦାରୁଣ ଶୋକବାର୍ତ୍ତା । ଆଜି ବିଧାତା କି ନିଷ୍ଠୁର ବିଧାନ ସଂଘଟନ କଲେ । ଆଜି ପ୍ରଜାବନ୍ଧୁ ଯେଉଁ ଦୁଃସମ୍ବାଦ ଦେଇ ଆମ୍ଭମାନଙ୍କୁ ଆକୁଳ କରାଇଲେ, ତାହା ଚିର ଜୀବନ ଏ ଆତ୍ମାକୁ କଷ୍ଟଦାନ କରିବ ।*

*ପାରଳାର ୨ୟ ପ୍ରିନ୍‌ସ୍ ସର୍ବଜନାଦରଣୀୟ ଆମ୍ଭମାନଙ୍କର ଉତ୍ସାହଦାତା ଶ୍ରୀମାନ୍ ପଦ୍ମନାଭ ନାରାୟଣ ଦେବ ଗତ ୪ତାରିଖରେ ଆମ୍ଭମାନଙ୍କୁ ଦୁଃଖ ସାଗରରେ ଭସାଇ (ସଂସାର ତ୍ୟାଗ) କଲେ । ମହାରାଜ୍ ସାର୍ ସୂର୍ଯ୍ୟ ଦେବଙ୍କ ସ୍ୱର୍ଗାରୋହଣ ପରେ ପଦ୍ମନାଭ ନାରାୟଣ ଦେବଙ୍କ ଅନ୍ତର୍ଦ୍ଧାନ ସମଗ୍ର ଉତ୍କଳଭାଷୀ ପ୍ରଦେଶରେ ଯେଉଁ ମହାକ୍ଷତ ସଂଘଟନ କଲା, ତାହା ସହଜରେ ପୂର୍ଣ୍ଣ ହେବାର ନୁହେଁ । ଆଜି ଗଞ୍ଜାମ ଆକାଶରୁ (ଗୋଟିଏ) ସମୁଜ୍ଜ୍ୱଳ ନକ୍ଷତ୍ର ଅସ୍ତହେବାର ଦେଖି କେବଳ ଯେ ଗଞ୍ଜାମବାସୀ ଦୁଃଖିତ ଅଛନ୍ତି, ଏମନ୍ତ ନୁହେଁ, ସମଗ୍ର ଉତ୍କଳ ପ୍ରଦେଶ ସବିଶେଷ ମନୋବେଦନା ଲାଭ କରିଅଛି । ପଦ୍ମନାଭ ନାରାୟଣ ଦେବଙ୍କ ରୂପ ଯେପରି କମନୀୟ ଥିଲା ତାହାଙ୍କର ସୁଧାମୟ ବଚନ ଓ ସଦ୍‌ଗୁଣରାଶି ତତୋଽଧିକ ମନୋମୁଗ୍ଧକର ହୋଇ ଆମ୍ଭମାନଙ୍କର ଜୀବନକୁ ଉନ୍ନତ ଶିକ୍ଷାଦାନ କରାଇଥିଲା । ଯେଉଁମାନେ ତାଙ୍କ ସହିତ ଥରେ ସାକ୍ଷାତ୍ କରିଅଛନ୍ତି, ସେମାନେ ଏହା ମୁକ୍ତ କଣ୍ଠରେ ସ୍ୱୀକାର କରିବେ ।*

*ଈଶ୍ୱରଙ୍କ ଇଚ୍ଛାଠାରେ ବଳ କାହାର । ଯାହା ହେବାର ଥିଲା ହୋଇଗଲା । ଆମ୍ଭେମାନେ ଏହି ସମ୍ବାଦରେ କିଂ କର୍ତ୍ତବ୍ୟ ବିମୂଢ଼ ହୋଇ ରହିଅଛୁଁ । (ଭା-୧୫/୨୭)*

ପୁଣି ତା୨୪।୨।୧୯୦୪ ସଂଖ୍ୟାରେ ରାଜକୁମାରଙ୍କ ସ୍ମୃତିଚାରଣା କରି ଏହାର ସମ୍ପାଦକ **ଶ୍ରୀଯୁକ୍ତ ବ୍ରଜବନ୍ଧୁ ମିଶ୍ର ସ୍ୱର୍ଗୀୟ ପଦ୍ମନାଭ ନାରାୟଣ ଦେବ** ଶିରୋନାମାରେ ଲେଖିଛନ୍ତି -

*ପାରଳାର ସେକେଣ୍ଡ ପ୍ରିନ୍‌ସ ଜଗଜ୍ଜନାଦରଣୀୟ ଶ୍ରୀମାନ୍ ପଦ୍ମନାଭ ନାରାୟଣ ଦେବ ଆଉ ଇହଜଗତରେ ନାହାଁନ୍ତି । ନିଷ୍ଠୁର କାଳ ସେହି ଉଜ୍ଜ୍ୱଳ ନକ୍ଷତ୍ରକୁ ଆମ୍ଭମାନଙ୍କ ନୟନ ପଥରୁ ଅନ୍ତର୍ଦ୍ଧାନ କରିଦେଲାଣି । ଆହା ଆଉ ସେ ମନୋହର ରୂପ, ସେ ଅମୃତୋପମ ସୁମଧୁର ବଚନ ସେବନରେ ନୟନ ଶ୍ରବଣର ଆନନ୍ଦ ବର୍ଦ୍ଧନ କରିବ ନାହିଁ ।*

*ଆମ୍ଭେମାନେ ଯେତେବେଳେ ଉତ୍କଳବନ୍ଧୁ ପରିଚାଳନା କରୁଥିଲୁ ସେହି ସମୟରେ ପାରଳାର ଅନୁଗ୍ରହ ଲାଭକରି ରାଜକୁମାରଙ୍କ ଦର୍ଶନାର୍ଥ ଗଞ୍ଜାମ ଗମନ କରିଥିଲୁଁ । ଖଲ୍ଲିକୋଟରେ କିଛିଦିନ ରହିଲା ପରେ ପାରଳା ଯାତ୍ରା କଲୁ । ପାରଳାର ଏହି ମହାନୁଭବଙ୍କ ଅନୁଗ୍ରହରେ ପ୍ରାୟ ଦୁଇମାସ ଅବସ୍ଥାନ କରିଥିଲୁ । ପାରଳାର ସୁଶିକ୍ଷିତ ମାନ୍ୟଗଣ୍ୟ ମହାତ୍ମାମାନଙ୍କର ଏବଂ ରାଜକୁମାରଙ୍କ ଅନୁଗ୍ରହ ଆମ୍ଭେମାନେ ଏ ଜୀବନରେ ବିସ୍ମୃତ ହେବୁ ନାହିଁ । ରାଜକୁମାର ନିରହଂକାରୀ, ସଦାଳାପୀ ଓ ସୁଶିକ୍ଷିତ ଥିଲେ । ଯେକୌଣସି ସତ୍‌କାର୍ଯ୍ୟ ନିମନ୍ତେ ଯେ କେହି ତାଙ୍କ ନିକଟରେ ଉପସ୍ଥିତ ହେଲା ବା ପ୍ରାର୍ଥନା କରି ପଠାଇଲେ ପଦ୍ମନାଭ ଦେବ ଯଥାଯଥ ରୂପରେ ସେମାନଙ୍କ ଅଭିଳାଷ ପୂର୍ଣ୍ଣ କରୁଥିଲେ । ମାତୃଭାଷା ପରିଚାଳିତ ସବୁ ସମ୍ବାଦପତ୍ର ଓ ପୁସ୍ତକର ସେ ଗ୍ରାହକ ଥିଲେ । ନ ଜାଣି ଜାଣତା ଆଡ଼ମ୍ବର ପାରଳାରେ ନାହିଁ । ରାଜପୁତ୍ରଙ୍କ କଥା ବା ଆଉ ଅଧିକା କ'ଣ କହିବୁଁ । ତାହାଙ୍କ ଗର୍ବଶୂନ୍ୟ ହୃଦୟରେ ବିନୟ ବାସ କରି ସେ ସୁପବିତ୍ର ଜୀବନକୁ ଅଧିକତର ଗୌରବାନ୍ୱିତ କରିଥିଲା (ଲେ) । କୌଣସୀ (କୌଣସି) ଉତ୍କଳୀ କବି ପଦ୍ମନାଭ ନାରାୟଣ ଦେବଙ୍କ ଯୋଗରୁ ପାରଳାକୁ ଉଜ୍ଜୟିନୀ ବୋଲି କହିଯାଇଅଛନ୍ତି । କେବଳ ପାରଳା କାହିଁକି ଏହାଙ୍କ ହେତୁ ସମଗ୍ର ଗଞ୍ଜାମ ଆମ୍ଭମାନଙ୍କ ନିକଟରେ ଗୌରବାନ୍ୱିତ । ପଦ୍ମନାଭ ନାରାୟଣ ଦେବ ଲେଖକ*

*ଥିଲେ, ତାହାଙ୍କ ରଚିତ ପୁସ୍ତକ ଓ କବିତାବଳୀ ଉତ୍କଳରେ ସୁପରିଚିତ । ଦିବସର ପ୍ରାୟ ଅଧିକାଂଶ ସମୟ ସେ ମାତୃଭାଷା ସେବାରେ ରତ ଥିଲେ ଏବଂ ସର୍ବଦା ଦେଶ ହିତକର ବିଷୟ ପ୍ରଭୃତି ଚର୍ଚ୍ଚା କରୁଥିଲେ ।*

*ବହୁ ଦିବସରୁ ତାହାଙ୍କ ପୀଡ଼ା ସମ୍ବାଦ ମିଳୁଥିଲା । ସେ ଦାରୁଣପୀଡ଼ା କଲିକତା ଗମନ କଲେ ହେଁ ଉପଶମ ହେଲା ନାହିଁ । ପୀଡ଼ା କ୍ରମେ କ୍ରମେ ବୃଦ୍ଧିଲାଭ କରି ଶେଷରେ ଏହି ଦୁର୍ଦ୍ଦଶା ଘଟାଇଲା ।*

*ଈଶ୍ୱରଙ୍କ ଇଚ୍ଛା ଅଲଂଘ୍ୟ । ଯାହା ହେବାର ଥିଲା ହୋଇଗଲା । କେବଳ ସେହି ମହାତ୍ମାଙ୍କ ସଦ୍‌ଗୁଣ ରାଶି ନିତିଦିବସ ଆମ୍ଭମାନଙ୍କୁ ଝୁରାଇବ ।*

*ଜଗଦୀଶ୍ୱର ତାହାଙ୍କ ଆତ୍ମାର ସଦ୍‌ଗତି ବିଧାନ କରନ୍ତୁ । (ଭା-୧୫/୨୮)*

**ଉତ୍କଳ ସାହିତ୍ୟ** ପତ୍ରିକାର ସମ୍ପାଦକ ବିଶ୍ୱନାଥ କର ଥିଲେ ପଦ୍ମନାଭ ଦେବଙ୍କ ଗୁଣଗ୍ରାହୀ ଓ ପ୍ରଶଂସକ । **ସାହିତ୍ୟ** ରାଜକୁମାରଙ୍କ ଦ୍ୱାରା ଉପକୃତ ହେଉଥିଲା । ତାଙ୍କ ବିୟୋଗରେ ଏଥିରେ ଯେଉଁ ଶୋକ ସମ୍ବାଦ ପ୍ରକାଶ ପାଇଥିଲା, ତାହା ଥିଲା-

*ଆଜି କି ନିଦାରୁଣ ସମ୍ବାଦ ଦେବାକୁ ପଡ଼ିଲା ! ଉତ୍କଳର ସମୁଜ୍ଜଳ ରତ୍ନଟିଏ କେଉଁଆଡ଼େ ଅନ୍ତର୍ହିତ ହୋଇଗଲା । ଲେଖିବା ବେଳକୁ ହୃଦୟ ବିଦୀର୍ଣ୍ଣ ହୋଇ ଯାଉଅଛି, ଲେଖନୀ ସ୍ତମ୍ଭିତ ହେଉଅଛି, ପାରଳାର ରାଜକୁମାର ପଦ୍ମନାଭ ନାରାୟଣ ଦେବ ଆଉ ଏ ସଂସାରରେ ନାହାନ୍ତି ! ଗତ ୪ ତାରିଖ ଗୁରୁବାର ପ୍ରାତଃକାଳରେ ଉତ୍କଳର ମାୟାମମତା ଛଡ଼ାଇ ପରିବାର ପରିଜନଙ୍କୁ, ନିକଟସ୍ଥ ଓ ଦୂରସ୍ଥ ବହୁ ସଂଖ୍ୟକ ବନ୍ଧୁବାନ୍ଧବଙ୍କୁ ଶୋକ ସାଗରରେ ଭସାଇ ଅମର ଧାମକୁ ଚାଲିଗଲେ । ପଦ୍ମନାଭ ପାରଳା ରାଜଗୃହରେ ଜନ୍ମିଥିଲେ ସତ୍ୟ, କିନ୍ତୁ ସେ ଯଥାର୍ଥରେ ଉତ୍କଳମାତାର ସନ୍ତାନ ଥିଲେ-ତାଙ୍କର ହୃଦୟ କୋଟି ସଂଖ୍ୟକ ଉତ୍କଳସନ୍ତାନଙ୍କ ସଙ୍ଗରେ ନିତ୍ୟ ବାସ କରୁଥିଲା-ମାତୃଭୂମିର ସୁଖ ଦୁଃଖକୁ ସେ ନିଜର ସୁଖ ଦୁଃଖ ଅପେକ୍ଷା ଅଧିକ ପରିମାଣରେ ଅନୁଭବ କରୁଥିଲେ । ହାଃ ଦୁର୍ଭାଗ୍ୟ ଉତ୍କଳ ! ତୁ ଆଜି କି ଅମୂଲ୍ୟ ମଣି ହରାଇଲୁ ! ତୋ ପାଇଁ ଏପରି ନୀରବରେ ଅଶ୍ରୁପାତ ଆଉ କିଏ କରିବ ? ତୋର ଅଗଣ୍ୟ ଦୀନଦୁଃଖୀ ସନ୍ତାନଙ୍କୁ ଏପରି ହୃଦୟର ନିଭୃତ ସ୍ଥଳରେ କିଏ ସ୍ଥାନ ଦେବ ? କିଏ ଦିବାନିଶି ସେମାନଙ୍କ ଚିନ୍ତାରେ ମଗ୍ନ ରହିବ ? କର୍ମବୀର ସୁଜ୍ଞଳ ଦେବଙ୍କ ଶୋକାଗ୍ନି ନିର୍ବାପିତ ନ ହେଉଣୁ ଆଜି ତୋର ପରମ ଆଦରର ଧନ ପଦ୍ମନାଭ ତୋର କୋଡ଼ ଶୂନ୍ୟ*

*କରି ଚାଲିଗଲେ ! ଯଥାର୍ଥରେ ପଦ୍ମନାଭଙ୍କୁ ଯେଉଁମାନେ ସାକ୍ଷାତ୍ ଭାବରେ ଜାଣିନାହାନ୍ତି, ସେମାନେ ବୁଝିପାରିବେ ନାହିଁ, ଆଜି ଉତ୍କଳରୁ କି ରତ୍ନ ଅନ୍ତର୍ହିତ ହୋଇଗଲା । ପଦ୍ମନାଭ କିପରି ଦେବୋପମ ଗୁଣରାଶିରେ ବିଭୂଷିତ ଥିଲେ, ତାହା ଦେଖାଇବାର ସମୟ ଆଜି ଆମ୍ଭମାନଙ୍କର ନାହିଁ । ତାଙ୍କ କଥା ଯେତିକି ଭାବୁ ଅଛି, ସେତିକି ହୃଦୟ ପୂର୍ଣ୍ଣ ହୋଇଯାଉଅଛି, ପ୍ରବଳ ଶୋକାଗ୍ନି ପ୍ରାଣକୁ ଗ୍ରାସ କରି ପକାଉଅଛି । ସେ ପ୍ରଶାନ୍ତ ସୌମ୍ୟମୂର୍ତ୍ତି, ସେ ମଧୁର ହାସ୍ୟପୂର୍ଣ୍ଣ ସମ୍ଭାଷଣ, ସେ ସୌଜନ୍ୟ ଓ ବିନୟନମ୍ର ବ୍ୟବହାର, ସେ ବନ୍ଧୁବତ୍ସଳତା, ସେ ଅମାୟିକତା, ସେ ଗୁଣଗ୍ରାହିତା ଓ ହୃଦୟବତ୍ତା, ସ୍ୱଦେଶର ଓ ସ୍ୱଜାତିର ହିତକାମନାରେ ସେ ଆତ୍ମବିସ୍ମୃତି, ଜ୍ଞାନାନୁଶୀଳନରେ ସେ ତନ୍ମୟତା, ସାହିତ୍ୟ ସେବାରେ ସେ ଐକାନ୍ତିକ ଅନୁରାଗ ଓ ନିଷ୍ଠା, ଧର୍ମ ବିଷୟରେ ସେ ଉଦାରତା, ରାଜନୈତିକ ବ୍ୟାପାରରେ ସେ ନିର୍ଭୀକତା, ସେ ପରଦୁଃଖକାତରତା ଓ ଦୀନଦୁଃଖିର ଅଭାବମୋଚନରେ ମୁକ୍ତହସ୍ତତା ଏକାଧାରରେ ଆଉ କେଉଁଠି ଦେଖିବୁ ? ପଦ୍ମନାଭଙ୍କ ଅଭାବରେ ପାରଳାର ଦଶା ଆଜି କ'ଣ ହେଲା, ତାହା କ'ଣ ଲେଖିବୁଁ ? ପାରଳାର ଉନ୍ନତିପିପାସୁ ଯୁବକଦଳ ଆଜି କର୍ଣ୍ଣଧାରବିହୀନ ହୋଇପଡ଼ିଲେ । ସେପରି କୌଶଳରେ ଆଉ ସେମାନଙ୍କୁ କିଏ ଚଳାଇ ନେବ ? ଛାତ୍ରବୃନ୍ଦ ଅଭିଭାବକ ଶୂନ୍ୟ ହେଲେ । କିଏ ଆଉ ସେମାନଙ୍କ ଗୁହାରୀ ଶୁଣିବାକୁ ସେପରି କର୍ଣ୍ଣ ଡେରିବ ? ଉତ୍କଳର ବହୁ ସାହିତ୍ୟ ସେବକ ଆଜି ଜଣେ ପ୍ରକୃତ ପୃଷ୍ଠପୋଷକ ଓ ଉତ୍ସାହଦାତା ହରାଇଲେ ! ବ୍ୟକ୍ତିଗତ ଭାବରେ ଆମ୍ଭେମାନେ ପଦ୍ମନାଭଙ୍କ ନିକଟରେ କି ପରିମାଣରେ ଋଣୀ, ତାହା ଆଜି କ'ଣ କହିବୁଁ ? ସେ ସ୍ନେହମମତା ଆଉ କିଏ ଦେଖାଇବ ? ସେ ଉତ୍ସାହବାଣୀ କିଏ ଶୁଣାଇବ ? ଆଜି ଆଉ ଶୋକାକୁଳ ଚିତ୍ତରେ ତାଙ୍କର ଜୀବନକାହାଣୀ କଣ ଶୁଣାଇବୁ ? ବିଧାତାଙ୍କ ଇଚ୍ଛା ତାଙ୍କ ଜୀବନରେ ପୂର୍ଣ୍ଣ ହେଲା । ସେହି ବିଧାତାଙ୍କ କରୁଣାରେ ତାଙ୍କ ଜୀବନର ସାଧୁ ଦୃଷ୍ଟାନ୍ତ ଦୀନ ଉତ୍କଳରେ ପ୍ରତିଷ୍ଠିତ ହେଉ, ତାଙ୍କ ଅମର ଆତ୍ମା ଅମରଧାମରେ ସ୍ୱର୍ଗୀୟ ଆନନ୍ଦ ଓ ଶାନ୍ତି ସମ୍ଭୋଗ କରୁ । (ଭା-୭/୧୦)*

ପଦ୍ମନାଭ ଦେବଙ୍କଠାରୁ ଓଡ଼ିଆ ଜାତି ଓ ସାହିତ୍ୟ ନିମିତ୍ତ ବହୁତ କିଛି ଆଶା କରିଥିବା **ଫକୀରମୋହନ ସେନାପତି** ତାଙ୍କ ଅକାଳ ବିୟୋଗରେ ବ୍ୟଥିତ ହୋଇପଡ଼ିଛନ୍ତି, ସ୍ୱର୍ଗତ ଆତ୍ମାପ୍ରତି ପ୍ରଣତି ଜ୍ଞାପନ କରି ସେ ଯେଉଁ କ୍ଷୁଦ୍ର କବିତାଟ ଲେଖିଛନ୍ତି, ତାହାଥିଲା-

ପଦ୍ମନାଭ ନାରାୟଣ ଦେବ ମହାମତି,
ତୁମ୍ଭ ଆତ୍ମା ଉଦ୍ଦେଶ୍ୟରେ କରୁଛି ପ୍ରଣତି ।
ଗଜପତି ଉଚ୍ଚବଂଶେ ଜନମ ତୁମ୍ଭର,
ସୁଶୀଳ, ବିଦ୍ୱାନ ସାଧୁ ସର୍ବଗୁଣ ଧର ।
କରିଯାଇଅଛ ଯେଉଁ ନାଟକ ରଚନା,
କବିତ୍ୱ, ପାଣ୍ଡିତ୍ୱ, ଯଶ, କରିବ ଘୋଷଣା ।
ଯୌବନ, ପ୍ରଭୁତ୍ୱ, ଧନ, ଅନର୍ଥ-ଆଧାର,
ଜନ୍ମାଇ ନଥିଲା ତୁମ୍ଭ ମନରେ ବିକାର ।
ଆପ୍ୟାୟିତ ହୋଇଥାନ୍ତି ଅଭ୍ୟାଗତ ଗଣ,
ଶୁଣି ତୁମ୍ଭ ସବିନୟ ମିଷ୍ଟ ସମ୍ଭାଷଣ ।
ଥିଲ କବି, କରୁଥିଲ, କବିଙ୍କୁ ସମ୍ମାନ,
ଅପୂର୍ବ ସୁଦୃଶ୍ୟ ତୁମ୍ଭ ନାଟକ ଆଖ୍ୟାନ ।
କାହାକୁ ମୁଁ ଦେବି ତୁମ୍ଭ ସହିତ ଉପମା,
ଉତ୍କଳ ଆକାଶୁଁ ଖସି ପଡ଼ିଛି ଚନ୍ଦ୍ରମା ।.

ସେହିପରି ଭଦ୍ରକ ଦୋଳସାହିରୁ ଅନ୍ୟଜଣେ ବ୍ୟଥାତୁର ଦେଶସେବକ **ପଦ୍ମଚରଣ ନାୟକ ସମ୍ବଲପୁର ହିତୈଷିଣୀର** ତା’ ୨୪।୨।୧୯୦୪ ସଂଖ୍ୟାରେ ଯେଉଁ ଶୋକ ଗୀତିଟି ପ୍ରକାଶ କରିଥିଲେ, ତାହା-

x x x x

କରିଥିଲ ତୁମ୍ଭେ ଆତ୍ମପ୍ରାଣ ଦାନ ।
ପଡ଼ି ଚିର ରାହୁ କରାଳ କବଳେ,
ଅନ୍ଧାରିତ କରି ସମଗ୍ର ଉତ୍କଳେ ।
ବିସର୍ଜି ପର୍ଯ୍ୟଙ୍କ ହେଲ ଧରାଶାୟୀ,
କହ ଦେବ ଭଲା ଅକାଳେ କିପାଂଇ ।

ମାତା ହିତ ବ୍ରତେ ତବ ଅନୁକ୍ଷଣ,
ଥିଲ ଯେଣୁ ଦେବ ! ଭାବଇ ଏସନ ।
ଶୋକେ ଅଭିଭୂତ ପାରଳା ନିବାସୀ,
ବିଷାଦ ସାଗରେ-ଯିବେ ନିଶ୍ଚେ ଭାସି ।
ଉତ୍କଳ ସନ୍ତାନେ କାନ୍ଦିବେ ବିଷାଦେ,
ତଟିନୀ ନିକର କଳ କଳ ନାଦେ ।
କାନ୍ଦିବେ ପାଦପେ ଶାଖା ଦୋହଲାଇ,
ପ୍ରିୟବନ୍ଧୁ ଯେତେ ମୁଖକୁ ଶୁଖାଇ ।
କାନ୍ଦିବେ ପକ୍ଷୀଏ ବୃକ୍ଷ ଛାୟା ତଳେ,
ଦରୀ ଗୁମ୍ଫା ଆଦି ପ୍ରତିଧ୍ୱନି ଛଳେ ।
ସର୍ବଶେଷେ ଆହା !! ଦୁଃଖିନୀ ଉତ୍କଳ,
ବୋହାଇ ନୟନୁ ଶୋକ ଅଶ୍ରୁଜଳ ।
କାନ୍ଦିବ ସତତ ଦୁଃଖ ଜର୍ଜରିତ,
କାନ୍ଦୁଥିବି ମୁହିଁ ଯାବତ୍ ଜୀବିତ । (ଭା-୧୫/୨୮)

**ଅପର୍ଣ୍ଣା ପଣ୍ଡା** ଥିଲେ ରାଜକୁମାରଙ୍କ ସହଯୋଗୀ, ସହଯାତ୍ରୀ, ବନ୍ଧୁ, ସହକର୍ମୀ ଏବଂ ସୁଖଦୁଃଖର ସାଥୀ । ପାରଳାବାସୀଙ୍କ ପୁଞ୍ଜୀଭୂତ ବେଦନାକୁ ଗୋଟିଏ କବିତା ମାଧ୍ୟମରେ ସେ ପ୍ରକାଶ କରିଛନ୍ତି । ତାହା **ସମ୍ବଲପୁର ହିତୈଷିଣୀ** (ଭା-୧୫/୨୮) **ଓଡ଼ିଆ ଓ ନବ ସମ୍ବାଦ** (ଭା-୧୮/୬) ଏବଂ **ବାଲେଶ୍ୱର ସମ୍ବାଦବାହିକା** (ଭା-୩୬/୭)ରେ ପ୍ରକାଶ ପାଇଥିଲା ।

ସର୍ବଗୁଣ ବିଶାରଦ କବି ଚୂଡ଼ାମଣି,
ତବ ହେତୁ ପାରଳାର ନାମ ଉଜ୍ଜୟିନୀ ।
ହୋଇଥିଲା ଉତ୍କଳର ସର୍ବଦିଗେ ଖ୍ୟାତ,
ହରାଇ ତୁମ୍ଭଙ୍କୁ ଏବେ ପାରଳା ଦୁଃଖିତ ।
ଗୁଣିଗୁଣଗଣା କର୍ଷେ ଚୁମ୍ବକ ପ୍ରସ୍ତର,
ବୋଲାଇଲ ଉତ୍କଳରେ ବିକ୍ରମାଧୀଶ୍ୱର ।

ଅଳ୍ପକାଳେ କଳ୍ପବୃକ୍ଷ ପୃଥିବୀ ମଧ୍ୟରେ,
ସ୍ଥାପନ ଯେ କରିଗଲ ଅତି ଚମତ୍କାରେ ।
କଳ୍ପନା କଳପ-ବୃକ୍ଷେ ଅଛି ପଞ୍ଚଶାଖା,
ଶେଷ ଶାଖା ନାମ ଅଟେ ଯେ ଦାନ ପରୀକ୍ଷା ।
ସ୍ତବକ ଯେ, ପ୍ରହଲ୍ଲାଦ, ବାଣ-ଦର୍ପହର,
ଅହଲ୍ୟା-ଶାପ ମୋଚନ ନାଟକ ତୁମ୍ଭର ।
ସର୍ବଜନ ପ୍ରଶଂସିତ ପ୍ରିୟ ଉତ୍କଳର,
ଅନ୍ୟ ଜାତି ଦେଖି ସଦା କର ସମାଦର ।
ସମୁଦ୍ର ମନ୍ଥନ ବିଷ ହର କରି ପାନ,
ବିଷଜ୍ୱାଳା ହେତୁ ତାଙ୍କ ବ୍ୟଥିତ ଯେ ମନ ।
ତାହାଙ୍କ ମସ୍ତକ ପରେ ଥାଇ କେତେ କାଳ,
ଶାନ୍ତିଦାନ ଦେଲ ତୁମ୍ଭେ ଅସଂଖ୍ୟ ଅପାର ।
ହରଙ୍କ ମଉଳିଦେଶେ ଯେବେ ଗଙ୍ଗାଧାର,
ପତିତ ହୋଇଲା, ତେବେ ହୋଇଲା ଅନ୍ତର ।
ପାରଳାରେ ଗଙ୍ଗବଂଶେ ହୋଇଲ ଜନମ,
ଉତ୍କଳରେ ଚନ୍ଦ୍ରରାଜା ହେଲା ତୁମ୍ଭ ନାମ ।
ଶୁକ୍ଳପକ୍ଷ ଚନ୍ଦ୍ରପରି ଜନ୍ମାବଧି ଜ୍ୟୋତି,
ପ୍ରକାଶିଲା ସର୍ବଦିଗେ ବିରାଜିଲା ଖ୍ୟାତି ।
ପୂର୍ଣ୍ଣିମା ଦିନରେ ତୁମ୍ଭେ ସଂପୂର୍ଣ୍ଣ କଳାରେ,
କବିପଦେ ପ୍ରତିଷ୍ଠିତ ପଣ୍ଡିତ ସଭାରେ ।
ଦେଖୁ ଦେଖୁ କୃଷ୍ଣପକ୍ଷ ହୋଇଲା ଅକାଳେ,
ତୁମ୍ଭର ଶ୍ରୀମୁଖ ଶିରୀ ତୁଟିଲା କ୍ରମରେ ।
ଅମାବାସ୍ୟା ତିଥି ଯେବେ ହୋଇଲା ପ୍ରବେଶ,
ତତ୍‌କ୍ଷଣେ ଭୂତଳରୁ ହୋଇଲା ଅଦୃଶ୍ୟ ।

ଚାହିଁ ଚାହିଁ ନ ଦେଖିଣ ପାରଳାର ଜନ,
ଆବାଳ ବନିତା ବୃଦ୍ଧ କରନ୍ତି କ୍ରନ୍ଦନ ।
"ତୁମ୍ଭ ବିନା ଉତ୍କଳର ସରିଲା ଗାରିମା,
ଦେଖାଦିଅ ସ୍ୱପ୍ନେ ଆହୋ ଉତ୍କଳ ଚନ୍ଦ୍ରମା ।
ଉତ୍କଳ ଆକାଶେ ଏବେ ଅନ୍ଧାର ଘୋଟିଲା,
ଉତ୍କଳ ପୁଅଙ୍କ ଚକ୍ଷୁ ଆଉ ନ ଦିଶିଲା ।
ଦୁଃଖିଙ୍କର ଦୁଃଖ ଆଉ କେ କର୍ଣ୍ଣେ ଶୁଣିବ ?
ଦୀନଜନ ଦୀନତାକୁ କେ ଚାଣ୍ଡେ ହରିବ ?
ଗୁଣିଜନ ଗୁଣ ଆଉ କିଏ ପରଖିବ ?
ପଣ୍ଡିତଙ୍କ ଗଉରବ କିଏ ବଢ଼ାଇବ ?
ଉତ୍କଳ ଛାତ୍ରଙ୍କୁ କିଏ ବିଦ୍ୟାଦାନ ଦେବ ?
ଉତ୍କଳ ସାହିତ୍ୟ ଚର୍ଚ୍ଚା ଆଉ କେ କରିବ ?
ସରିଲା ଉତ୍କଳ ଶିରୀ ତୁମ୍ଭ ସଙ୍ଗେ ସଙ୍ଗେ
ଏହା ଏକା ଲେଖାଥିଲା ଉତ୍କଳର ଭାଗ୍ୟେ "
ଆହେ ଜଗଦୀଶ ପ୍ରଭୁ ଚିଦାନନ୍ଦମୟ,
ଶାନ୍ତିପଦ, ଜ୍ୟୋତିର୍ମୟ ମଙ୍ଗଳ ଆଳୟ ।
କୃତାଞ୍ଜଳି ପୁଟେ ଏବେ ପ୍ରଭୁଙ୍କ ଛାମୁରେ,
ନିବେଦନ କରୁଛନ୍ତି ଉତ୍କଳ କୁମରେ ।
"ଶାନ୍ତିଦାନ ଦିଅ ତୁମ୍ଭେ ଶ୍ରୀ ଚନ୍ଦ୍ର ରାଜାଙ୍କୁ ।
ଯାଇଛନ୍ତି ମହାନନ୍ଦେ ତୁମ୍ଭ ନିକଟକୁ ।

-ଶ୍ରୀ ଅପର୍ଣ୍ଣା ପଣ୍ଡା-

**ସମ୍ବଲପୁର ହିତୈଷିଣୀର** ତା୨୩ା୩ା୧୯୦୪ ସଂଖ୍ୟାରେ (ଭା୧୫/୩୧) **ଶୋକୋଚ୍ଛ୍ୱାସ** ଶିରୋନାମାରେ ପାରଳାଖେମୁଣ୍ଡିର **ଶ୍ରୀ ପ୍ୟାରୀମୋହନ ପାଣିଗ୍ରାହୀଙ୍କ** ଅନ୍ୟ ଏକ ଦୀର୍ଘ ଶୋକଗୀତି ପ୍ରକାଶ ପାଇଥିଲା-

କି ଦାରୁଣ ମର୍ମଭେଦୀ ବିଷବାର୍ତ୍ତା ଏହି
ସ୍ୱପ୍ନ କିମ୍ବା ଜାଗ୍ରତରେ ଶୁଣୁଅଛି ମୁହିଁ ।
ଏ ତ ବାର୍ତ୍ତା ବିପରୀତ ଈଶ ନିୟମର
ବିନା ମେଘେ ଶୁଭଇ କି ଅଶନୀ ଘର୍ଘର ।
ପରତେ ନ ହୁଏ ଆହା ସତ୍ୟ କି ସମ୍ବାଦ
ବିଧି ହୋଇ ଅବିଧି ପଥେ କି ଦେଲା ପାଦ ।
ସତେ କି ଉତ୍କଳାକାଶ ସୌଭାଗ୍ୟ ମିହିର
ପ୍ରାତଃ କାଳେ ଆରୋହିଲେ ଅସ୍ତାଚଳ ଶିର ।
ଉତ୍କଳ ରାଜନକୁଳ ଶରତ ଚନ୍ଦ୍ରମା ।
ଭାଙ୍ଗିଲେକ ଉତ୍କଳ କୁମୁଦ ଗାରିମା ।
ସତେ କି ପାରଳାପୁର ଉଜ୍ଜ୍ୱଳ ପ୍ରଦୀପ
ଲିଭାଇଲେ ଆଜ ପଦ୍ମନାଭ ଦେବ ଭୂପ ।
ହେ ରାଜନ ! ଗୁଣମଣି କ୍ଷମାରତ୍ନ ସାର
କାହିଁ ଛାଡ଼ିଗଲ ପ୍ରଭୋ ! ପାରଳା ନଗର ।
ଆଉ କେ ନାଶିବ ଉତ୍କଳର ଘୋରତମ
ନାମ ଅନୁରୂପ ଥିଲ ଏକମାତ୍ର ସୋମ ।
ଆହେ ଚନ୍ଦ୍ର ମହାରାଜ ପବିତ୍ର ପୁରୁଷ
କ୍ଷତ୍ରିୟ ହୋଇ ଆମିଷ ମଣୁଥିଲ ବିଷ ।
ନିରନ୍ତର ଧର୍ମ ପଥେ ହୋଇଣ ପଥିକ
ତ୍ରିଂଶ ଏକ ବର୍ଷେ ବାସ କଲ ପରଲୋକ ।
ତବ ଲାଗି ସିନା ପ୍ରଭୋ ପାରଳାର ଟେକ
ଓଡ଼ିଆଏ ଚାଲୁଥିଲେ ସଲଖିଣ ବେକ ।
ନିଦାରୁଣ ବଜ୍ରାଘାତ ଅକସ୍ମାତେ ଆସି
ଖର୍ବ କରି ଦେଲା ଓଡ଼ିଆଙ୍କ ଗର୍ବରାଶି ।

କାହିଁ ଅଛ ହେ ରାଜନ କିପାଁ ଏ ଭବନ
ଶ୍ମଶାନରୁ ବଳି ହୋଇଅଛି ଶୋଭାହୀନ ।
ସତେ କି ଗଲ ହେ ଛାଡ଼ି ଚିରକାଳପାଇଁ
ଆଉ କି ଶ୍ରୀମୁଖ ବାରେ ଦେଖିବାକୁ ନାହିଁ ।
ଆଉ କି ନ ହେବ ଦଗ୍ଧ ହୃଦୟ ଶୀତଳ
ଲଭି ସେ କଟାକ୍ଷ ଦୃଷ୍ଟି ନିଶ୍ଚୁତ ସଲୀଳ ।
ନିଃସହାୟ ଓଡ଼ିଆ ଛାତ୍ରଙ୍କ ନିବେଦନ
କେ ଶୁଣି କରିବ ତାଙ୍କ ଦୁଃଖ ବିମୋଚନ ।
ବିତରିବ କେହି ତାଙ୍କ ଉନ୍ନତି ସକାଶେ
ଅକୁଣ୍ଠିତେ ପଞ୍ଚଶତ ମୁଦ୍ରା ପ୍ରତିମାସେ ।
ଆହେ ପ୍ରଭୋ ! ଆଜି ଆଉ କାହାରେ ଶରଣ
ପଶିବେ ଅର୍ଦ୍ଧଶିକ୍ଷିତ ଦୀନ ଛାତ୍ରଗଣ ।
କାହିଁ ଗଲ ପ୍ରଭୋ ଏବେ ନ କହିଣ ଭାଷା
ସ୍ଥାପି ରାଜ୍ୟେ ଥିଏଟର କି ହେବ ତା ଦଶା ।
କେ ଲେଖିବ ଅଭିନୟଯୋଗ୍ୟ ସୁନାଟକ
କେ ଗୁନ୍ଥିବ ବାବୁ ବସି ସଙ୍ଗୀତ ସ୍ତବକ ।
ଆହେ ବାଳକବି କାହିଁଗଲ ନାହିଁ ଜଣା
ସଂଗ୍ରହ କରିଛ କେତେ ପୁସ୍ତକ ପୁରୁଣା ।
ଅପ୍ରକାଶିତ ସେହିକୁ (ସେହିସବୁ) ପ୍ରକାଶ କେ କରି
ମାତୃଭାଷାର ରଖିବ ଗୌରବ ଉଦ୍ଧରି ।
ହେ ରାଜନ କେତେ କଥା ପଡ଼ିଥିଲା ମନେ
ଭଞ୍ଜ କବି ନାମେ ପୁସ୍ତକାଳୟ ସ୍ଥାପନେ ।
ଏପ୍ରେଲ ମାସରେ ପରା ଜାତୀୟ ସମିତି
ପାରଳାକୁ ଡାକିବାରେ ବଳିଥିଲା ମତି ।

ସେସବୁର ଭାର ଏବେ କା କରେ ଅର୍ପିଣ
କାହିଁ ନିଶ୍ଚିନ୍ତରେ ରହିଗଲ କବିରାଣ ।
ତବ ଅନୁରୋଧବଳେ ହୋଇ ବଳବାନ
ଶାରୀରିକ ଯନ୍ତ୍ରଣାରେ ନ ଦେଇ ଧିଆନ ।
ଲାଗିଥିଲେ ସଂଗ୍ରହେ ଯେ କବିଙ୍କ ଜୀବନୀ
ଆଉ କି ଚଳିବ ଏବେ ତାହାଙ୍କ ଲେଖନୀ ।
ଆହେ ପାରଳା ନୃପତି ନନ୍ଦନ ଉତ୍ତମ
ଗଂଗବଂଶ ଅବତଂସ ମହା ବିଚକ୍ଷଣ ।
ସଦାଥିଲ କର୍ମକ୍ଷେତ୍ରେ ସତ୍ପଥେ ପଥିକ
ପ୍ରୟାସୀ କରଣେ ମାତୃଭୂମି ମୁଖାଲୋକ ।
ଭ୍ରମିଲ ଆବାଲ୍ୟ ଯାଇ ସମସ୍ତ ଭାରତ
ଦେଖିଲ ଉତ୍କଳବାସୀ ଅତି ପଶ୍ଚାତ୍‌ପଦ ।
କରୁଥିଲ ତେଣୁ କେତେ କେତେ ସଦୁପାୟ
ଯେ ଭାବେ ହୁଅନ୍ତା ତାଙ୍କ ଦୁଃଖ ଅ(ପ)ଚୟ ।
କାହିଁଗଲା ସେ ଉତ୍ସାହ ସେହି କାର୍ଯ୍ୟାବଳୀ
ଅମୃତ ଉଜାଡ଼ି ବିଞ୍ଚିଦେଇଗଲ ଧୂଳି ।
ମୃଚ୍ଛି ନ ପାରୁଛୁ ପ୍ରଭୋ ସେ ରୂପ ଡୁମ୍ବର
କାହିଁ ଲୁଚି ଅଛ ଶୀଘ୍ର ବାରେ କୃପାକର ।
ଅଶନେ ବସନେ ସଦା ନିଦ୍ରା ଜାଗରଣେ
ସେ ଆନନ୍ଦମୟ ମୂର୍ତ୍ତି ନାଚୁଛି ନୟନେ ।
ମାତ୍ର ହୃଦୟର ଜ୍ୱାଳା ବଢୁଅଛି କ୍ରମେ
ଯେଣୁ ମୁଁ ଶୁଣୁଛି ତବ ସ୍ଥିତି ମରଧାମେ ।
ହୃଦୟରୁ ଲିଭିନାହିଁ ସେହି ଦାବାନଳ
ଢାଳି ଦେଇ ଗଲେ ଯାହା ନୃପତି ସୁଢ଼ଳ ।

ରହିନାହିଁ ଅଶ୍ରୁଧାର ଉତ୍କଳ ନୟନୁ

x x x x

x x x x

ସମସ୍ତ ଉତ୍କଳବାସୀ କାନ୍ଦନ୍ତି ସୁମରି ।

ଦୀନଦୁଃଖ ଦେଖି ପରା ଟଳୁଥିଲା ଧୃତି

ଏବେ କି ପଥର ପାଲଟିଲା ସେହି ଛାତି ।

କି ଦାରୁଣ ବିଧି ଏବେ କି କଲୁରେ ସତେ

କୋମଳ କଳପଲତା କାଟି ନିଜ ହାତେ ।

କି ଯଶ ଅର୍ଜିଲୁ ସାଧି ଏ ଘୋର କରମ

ବିଧି ବୋଲନ୍ତି ଜଗତେ ତୋତେ ବୁଦ୍ଧିବାମ ।

ଆହେ ଦୟାମୟ ଅବଶେଷେ ଏ ଜଣାଣ

ନିରନ୍ତର ସେବୁଥିଲେ ଯେ ତମ ଚରଣ ।

ସେହି ପଦ୍ମନାଭ ଦେବ ଆଜି ତବ ଧାମେ

ସର୍ବେ ଶୁଭ ମନାସନ୍ତି ଆଜି ତାଙ୍କ ନାମେ ।

ଦିଅ ପ୍ରଭୁ ସ୍ଥାନ ତାଙ୍କୁ ପଦ୍ମପାଦ ତଳେ

ସ୍ୱର୍ଗ ସୁଖ ଭୁଞ୍ଜନ୍ତୁ ସେ ଦେବଙ୍କର ମେଳେ ।

ଶ୍ରୀ ପ୍ୟାରୀମୋହନ ପାଣିଗ୍ରାହୀ

ପାରଳାଖେମୁଣ୍ଡି

ଏସବୁ ବ୍ୟତୀତ ସେ ସମୟର ଅନ୍ୟାନ୍ୟ ପତ୍ରିକାରେ ମଧ୍ୟ ଏହି ଦୁଃଖଦ ସମ୍ବାଦ ସହିତ ଦିବଂଗତ ରାଜକୁମାରଙ୍କ ବ୍ୟକ୍ତିତ୍ୱ ସମ୍ପର୍କରେ ସମ୍ବାଦ ପରିବେଷିତ ହୋଇଥିଲା । ଏହି ମହାନ୍ ବ୍ୟକ୍ତିତ୍ୱର ଅକାଳ ବିୟୋଗରେ ଜ୍ୟେଷ୍ଠଭ୍ରାତା ଗୌରଚନ୍ଦ୍ର ଦକ୍ଷିଣ ହସ୍ତ ହରାଇ ବସିଥିଲେ । ଗୋଟିଏ ବର୍ଷ ବ୍ୟବଧାନରେ ତାଙ୍କର ମଧ୍ୟ ଦେହାବସାନ ଘଟିଥିଲା । ଛାତ୍ର, ବନ୍ଧୁ ଏବଂ ପୃଷ୍ଠପୋଷକଙ୍କ ମୃତ୍ୟୁ ଶ୍ୟାମସୁନ୍ଦର ରାଜଗୁରୁଙ୍କୁ ଏକ ପ୍ରକାର ନିଷ୍କ୍ରିୟ କରିଦେଇଥିଲା । ପଦ୍ମନାଭ ରଙ୍ଗାଳୟର କୋଳାହଳ କିଛିଦିନ ପାଇଁ ନୀରବି ଯାଇଥିଲା ।

(୧୦)

ପ୍ରସ୍ତୁତ ସୀମିତ ପୃଷ୍ଠା ମଧ୍ୟରେ ପଦ୍ମନାଭ ନାରାୟଣ ଦେବଙ୍କ ଆକାଶଚୁମ୍ବୀ ବ୍ୟକ୍ତିତ୍ୱର ପରିଚୟ ଦେବା ସମ୍ଭବ ହୋଇପାରିନାହିଁ । ତାଙ୍କ ଜୀବନ ଓ କୃତିତ୍ୱର ଅନ୍ୟାନ୍ୟ ଦିଗ ଅନାଲୋଚିତ ରହିଯାଇଛି । ରଚନାବଳୀରେ ପ୍ରକାଶିତ ପୁସ୍ତକ ଆଧାରରେ ଆଗାମୀ ସମୟର ଗବେଷକମାନେ ଏହି ମହାନ୍ ଦେଶ ଓ ସାହିତ୍ୟ ସେବକଙ୍କ ଉପରେ ଅଧିକ ଆଲୋକପାତ କରିବେ ବୋଲି ବିଶ୍ୱାସ । ଏ ଦିଗରେ ମୁଁ କୃତଜ୍ଞତାର ସହିତ ସାହାଯ୍ୟ ନେଇଥିବା ଲେଖକମାନଙ୍କ ରଚନାବଳୀ ସେମାନଙ୍କୁ ସାହାଯ୍ୟ କରିପାରେ । ଯଥା- ଅପର୍ଣ୍ଣା ପଣ୍ଡାଙ୍କ 'ଶ୍ରୀପଦ୍ମନାଭ ନାରାୟଣ ଦେବଙ୍କ ଜୀବନୀ' (୧୯୧୫), ଶ୍ୟାମସୁନ୍ଦର ରାଜଗୁରୁଙ୍କ 'ପ୍ରବନ୍ଧାବଳୀ (୧୯୧୭), ପୂର୍ଣ୍ଣଚନ୍ଦ୍ର ମହାପାତ୍ରଙ୍କ 'ଇତିହାସର ପୃଷ୍ଠଭୂମିରେ ପାରଳାର ପରିଚ୍ଛା ମଠ ଓ ଜାତିପ୍ରାଣ ଆପନ୍ନା ପରିଚ୍ଛା' (୨୦୦୭), ଡ. ସତ୍ୟନାରାୟଣ ରାଜଗୁରୁଙ୍କ 'History of the Gangas' Part-II (1972), ଦେବେନ୍ଦ୍ର କୁମାର ଦାଶଙ୍କ 'ଉତ୍କଳ ସମ୍ମିଳନୀ' (୧୯୦୩-୩୬) (୨୦୦୫), ଶିବରାମ ପାତ୍ରଙ୍କ ଅପ୍ରକାଶିତ ଏମ.ଫିଲ୍, ସନ୍ଦର୍ଭ 'ନାଟ୍ୟକାର ପଦ୍ମନାଭ ନାରାୟଣ ଦେବ' ଏବଂ ସମସାମୟିକ ସମ୍ବାଦ ଓ ସାହିତ୍ୟ ପତ୍ରିକା ଉତ୍କଳ ସାହିତ୍ୟ, ଉତ୍କଳ ଦୀପିକା, ସମ୍ବଲପୁର ହିତୈଷିଣୀ, ଓଡ଼ିଆ ଓ ନବସମ୍ବାଦ ଇତ୍ୟାଦି ।

ପ୍ରକାଶଥାଉକି ଆଲୋଚନା ଅବସରରେ ଆବଶ୍ୟକତା ଦୃଷ୍ଟିରୁ କେତେକ ବିଷୟର ପୁନରାବୃତ୍ତି କରିବାପାଇଁ ଆମେ ବାଧ ହୋଇଛୁଁ । ଆଶାକରୁ ସହୃଦୟ ପାଠକମାନେ ଏହି ପୁନରୁକ୍ତିଜନିତଦୋଷପାଇଁ କ୍ଷମା ଦେବେ ।

*ସୁଦର୍ଶନ ଆଚାର୍ଯ୍ୟ*

●

# ପ୍ରାକ୍‌ସୂଚନା

**ତାଳ ସର୍ବସାର ସଂଗ୍ରହ** ପଦ୍ମନାଭ ନାରାୟଣ ଦେବଙ୍କ ପ୍ରଥମ ପ୍ରକାଶିତ ରଚନା । ଏହାକୁ ରାଜକବିଙ୍କ ମୌଳିକ ରଚନା ଅପେକ୍ଷା ଏକ ସଂଗ୍ରହ ଗ୍ରନ୍ଥ କହିବା ଅଧିକ ସମୀଚୀନ । ତେଣୁ ପ୍ରଚ୍ଛଦରେ ଶ୍ରୀ ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ ଦ୍ୱାରା 'ରଚିତ' ଲେଖା ନ ଯାଇ 'ସଙ୍କଳିତ' ବୋଲି ଉଲ୍ଲେଖ କରାଯାଇଛି । ବିଭିନ୍ନ ଗ୍ରନ୍ଥରୁ ତାଳର ଜନ୍ମ, ପ୍ରାଣ, କଳା, ଜାତି, ଯତି, ପ୍ରସ୍ତାର, ତାଳ, ମାର୍ଗ, ପ୍ରାଣ, ଅଙ୍ଗ, ମାତ୍ରା, ଜନ୍ମ ଲକ୍ଷଣ, ଗ୍ରହ, ଜ୍ୟୋତି, ଧ୍ୟାନ ଇତ୍ୟାଦି ସମ୍ପର୍କୀୟ ଶ୍ଳୋକମାନ ସଂଗ୍ରହ କରି ସେ ସବୁକୁ ଲେଖକ ଓଡ଼ିଆରେ ଅନୁବାଦ କରିଛନ୍ତି ମାତ୍ର ।

ନିଜେ ରଚୟିତା ଥିଲେ ଜଣେ ବିଶିଷ୍ଟ ସଙ୍ଗୀତଜ୍ଞ । ପାରଳାଖେମୁଣ୍ଡିରେ ସଙ୍ଗୀତ ଚର୍ଚ୍ଚାର ଏକ ସୁଦୀର୍ଘ ପରମ୍ପରା ରହିଛି । ସପ୍ତଦଶ ଶତାବ୍ଦୀର ମଧ୍ୟ ଭାଗରେ ଯମକ ଭାଗବତମ୍, ନୀଳାଦ୍ରୀ ନାଥ ଶତକମ୍, ରାମଚନ୍ଦ୍ରୋଦୟ, ବାଳ ରାମାୟଣ, ରାମାଭ୍ୟୁଦୟ, ଅନର୍ଘରାଘବର ଟୀକା, ହଂସଦୂତର ଟୀକା, ସୁବନ୍ତ ପ୍ରଦୀପିକା ପ୍ରଭୃତି ଗ୍ରନ୍ଥର ପ୍ରଣେତା କବିରତ୍ନ ପୁରୁଷୋତ୍ତମ ମିଶ୍ର ସ୍ୱୀୟ ପୃଷ୍ଠପୋଷକ ପଦ୍ମନାଭ ଦେବଙ୍କ ପୁତ୍ର ନାରାୟଣ ଗଜପତି ଦେବଙ୍କ ନାମରେ ରଚନା କରିଥିଲେ **ସଙ୍ଗୀତ ନାରାୟଣ** । ତାଙ୍କ ପୁତ୍ର ନାରାୟଣ ମିଶ୍ର ମଧ୍ୟ 'ସଙ୍ଗୀତ ସରଣୀ' ନାମରେ ଅନ୍ୟ ଏକ ସଙ୍ଗୀତ ଗ୍ରନ୍ଥ ରଚନା କରିଥିବା ଡକ୍ଟର ଭି. ରାଘବନ୍ ସ୍ୱୀୟ **ଭୋଜସ୍ ଶୃଙ୍ଗାର ପ୍ରକାଶ** ସନ୍ଦର୍ଭରେ ଜଣାଇଛନ୍ତି । ଏ ଉଭୟ ଗ୍ରନ୍ଥରେ ଲେଖକମାନେ ଯେଉଁସବୁ ସଙ୍ଗୀତ ଗ୍ରନ୍ଥର ନାମୋଲ୍ଲେଖ କରିଛନ୍ତି ସେଗୁଡ଼ିକ ସେ ସମୟରେ ପାରଳା ରାଜପାଣ୍ଡୁଲିପିଗ୍ରନ୍ଥାଗାରରେ ଥିବା ସମ୍ଭବପର । ସେଗୁଡ଼ିକ ହେଲା-ସଙ୍ଗୀତାର୍ଣ୍ଣବ, ସଙ୍ଗୀତସାର, ସଙ୍ଗୀତ ରତ୍ନମାଳା, ସଙ୍ଗୀତ ଦାମୋଦର, ସଙ୍ଗୀତ କଳାଙ୍କୁର, ସଙ୍ଗୀତ ଚନ୍ଦ୍ରିକା, ସଙ୍ଗୀତ କୌମୁଦୀ, ଗୀତ ପ୍ରକାଶ, ସଙ୍ଗୀତ କଳ୍ପତରୁ, ରାଗବିବେକ, ତାଳାର୍ଣ୍ଣବ, ସଂଗୀତ ଚୂଡ଼ାମଣି, ସଙ୍ଗୀତ ଶିରୋମଣି ଇତ୍ୟାଦି । କବିରତ୍ନ ପୁରୁଷୋତ୍ତମ ମିଶ୍ର **ତାଳ ସଂଗ୍ରହ** ନାମରେ ଅନ୍ୟ ଏକ ସ୍ୱତନ୍ତ୍ର ଗ୍ରନ୍ଥ ମଧ୍ୟ ରଚନା କରିଥିବା

'ସଙ୍ଗୀତ ନାରାୟଣ ଗ୍ରନ୍ଥ'ର୍ ଜଣାଯାଏ । ଏହି ପରମ୍ପରାର ଅନୁସରଣରେ କବି ଭୂଷଣ ଗୋପୀନ୍ନାଥ ପାତ୍ର ନିଜର ଅଳଙ୍କାର ଗ୍ରନ୍ଥ 'କବି ଚିନ୍ତାମଣି'ରେ ସଙ୍ଗୀତ ପର୍ଯ୍ୟାଲୋଚନା କରିଥିବା ଉଲ୍ଲେଖଯୋଗ୍ୟ । ଏଥିରୁ ଏବଂ ପରବର୍ତ୍ତୀ ସମୟରେ ରଚିତ ଲୀଳା, ସଙ୍ଗୀତ, ନାଟକ ଇତ୍ୟାଦିରୁ ପାରଳାଖେମୁଣ୍ଡି ଯେ ସଙ୍ଗୀତ୍ ଓ ଲୀଳାର ପବିତ୍ର ପୀଠସ୍ଥଳୀ ଥିଲା କହିବା ନିଷ୍ପ୍ରୟୋଜନ । ମନ୍ଦିରମାଳିନୀ ପାରଳା ସକାଳ ଓ ସଞ୍ଜରେ ଭଜନ, ଜଣାଣ, କୀର୍ତ୍ତନ ସ୍ୱର ଲହରୀରେ ମୁଖରିତ ହୋଇ ଉଠୁଥିଲା । ସଙ୍ଗୀତ ଶାସ୍ତ୍ର ଓ ଗାୟନରେ ନିଜର ଉତ୍କର୍ଷ ପ୍ରଦର୍ଶନପାଇଁ ଭାରତ ବର୍ଷର ବିଭିନ୍ନ ଅଞ୍ଚଳରୁ ସଙ୍ଗୀତଜ୍ଞମାନେ ପାରଳାରେ ପଦାର୍ପଣ କରୁଥିଲେ । ସଂଗୀତ ଚର୍ଚ୍ଚା ଅବ୍ୟାହତ ଥିଲା । ସଂଗୀତର ସେହି ପବିତ୍ର ପୀଠରେ ଜନ୍ମଗ୍ରହଣ କରି ପଦ୍ମନାଭ ନାରାୟଣ ଦେବ ସଂଗୀତ ପ୍ରତି ଆକୃଷ୍ଟ ହେବା ଏକାନ୍ତ ସ୍ୱାଭାବିକ । କୈଶୋରରୁ ସେ ସଙ୍ଗୀତ ଶିକ୍ଷା କରିଛନ୍ତି । ଗୁରୁ ଥିଲେ ପ୍ରସିଦ୍ଧ ସଙ୍ଗୀତଜ୍ଞ ଦାମୋଦର ପାଠୀ । ବେହେଲା ବାଦନରେ ସେ ଶ୍ରୋତାମାନଙ୍କୁ ମୁଗ୍ଧ କରୁଥିବା ପୂର୍ବରୁ ଉଲ୍ଲେଖ ଅଛି । ମୃଦଙ୍ଗ ବାଦନରେ ତାଙ୍କ ଗୁରୁ ଥିଲେ ମୃଦଙ୍ଗରାୟ ଲଛମନ୍ । ପାରଳାଖେମୁଣ୍ଡିର ଗାୟକମାନେ ସାଧାରଣତଃ ଦାକ୍ଷିଣାତ୍ୟ ପଦ୍ଧତିର ଅନୁଗାମୀ । ଆଜିର ଓଡ଼ିଶୀ ସଙ୍ଗୀତ ଏହିଠାରୁ ହିଁ ଜନ୍ମ ନେଇଥିବା କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ ମଧ୍ୟ ସ୍ୱୀକାର କରନ୍ତି ।

ଦାକ୍ଷିଣାତ୍ୟ ପଦ୍ଧତି ଅନୁସରଣରେ ଓଡ଼ିଶୀ ଗାୟକମାନଙ୍କପାଇଁ ଓଡ଼ିଆରେ କୌଣସି ଗ୍ରନ୍ଥ ନ ଥିବା ଦେଖି ଅନ୍ୟ ଭାଷାଭାଷୀ ସଙ୍ଗୀତଜ୍ଞମାନେ ରାଜକୁମାରଙ୍କୁ ଏ ସମ୍ପର୍କରେ ସୂଚନା ଦେଇଥିଲେ । ଏହାହିଁ ଥିଲା ସ୍ୱାଭିମାନୀ ଓଡ଼ିଆ ରାଜସନ୍ତାନର 'ତାଳ ସର୍ବସାର ସଂଗ୍ରହ' ରଚନାର ପ୍ରତ୍ୟାଶିତ କାରଣ । ପୁସ୍ତକଟିର ମୁଖବନ୍ଧରେ ନିଜେ ପଦ୍ମନାଭ ଏ ସମ୍ପର୍କରେ ସୂଚନା ଦେଇଛନ୍ତି ।

ପ୍ରାଥମିକ ଉଦ୍ୟମର ଅଭାବ ସମ୍ପର୍କରେ ପ୍ରାପ୍ତି ସ୍ୱୀକାର କରି **ଉତ୍କଳ ଦୀପିକାର** ସଙ୍ଗୀତ ପ୍ରବୀଣ ସମ୍ପାଦକ ଗୌରୀଶଙ୍କର ରାୟ ଜଣାଇଥିଲେ-

> *ପାରଳାଖେମୁଣ୍ଡିର ଶ୍ରୀ ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ ଦ୍ୱାରା ବିରଚିତ ଏବଂ ସେହି ସ୍ଥାନର ଗଜପତି ଯନ୍ତ୍ରାଳୟରେ ମୁଦ୍ରିତ । ଏ ପର୍ଯ୍ୟନ୍ତ ସଙ୍ଗୀତ ଶାସ୍ତ୍ରର କୌଣସି ପୁସ୍ତକ ଓଡ଼ିଆ ଭାଷାରେ ପ୍ରକାଶିତ ହୋଇ ନଥିବାର ଦେଖି ଗ୍ରନ୍ଥକାର ସ୍ୱଦେଶାନୁରାଗବଶତଃ ସଂସ୍କୃତ ନାନା ପୁସ୍ତକରୁ ତାଳ ସମ୍ବନ୍ଧୀୟ ସାରକଥାମାନ ସଂଗ୍ରହ କରି ଉତ୍କଳ ଅନୁବାଦ ସହିତ ଏ ପୁସ୍ତକ ପ୍ରକାଶ କରିଅଛନ୍ତି । ଗୀତ, ବାଦ୍ୟ ଓ ନୃତ୍ୟର ଏକମାତ୍ର ଆଧାର*

*ତାଳ ଅଟେ । ତାଳ ସେ ସମସ୍ତର ମାନଦଣ୍ଡ ଏବଂ ତାଳବିନା କାହାରି ଗତି ନାହିଁ । ଏଥିପାଇଁ ଗ୍ରନ୍ଥକାର ପ୍ରଥମେ ଲୋକ ସମାଜରେ ପ୍ରଚାର କରିବା ଅଭିପ୍ରାୟରେ ଏ ପୁସ୍ତକ ପ୍ରକାଶ କରି ସର୍ବସାଧାରଣଙ୍କ ଧନ୍ୟବାଦର ପାତ୍ର ହୋଇଅଛନ୍ତି । ତାଳ ବୁଝିବାର ଅତ୍ୟାବଶ୍ୟକୀୟ ପ୍ରାୟ ସକଳ କଥା ଏଥିରେ ଲେଖାଅଛି ଏବଂ ଦାକ୍ଷିଣାତ୍ୟ ପ୍ରଧାନ ସାତ ତାଳର ବିଶେଷ ପରିଚୟ ସହିତ ଏକଶତ ଦଶ ତାଳର ସଂକ୍ଷେପ ପରିଚୟ ମଧ ଦିଆହୋଇଅଛି । ଏହି ୧୧୦ ତାଳ ବର୍ତ୍ତମାନ ଓଡ଼ିଶାରେ ପ୍ରଚଳିତ ଅଛି କି ନାହିଁ ଗ୍ରନ୍ଥରୁ ଜଣାପଡୁ ନାହିଁ । ସମ୍ଭବତଃ ଧ୍ରୁବାଦି ପ୍ରଧାନ ସାତତାଳ ଉପରେ ବ୍ରହ୍ମ ରୁଦ୍ରାଦି ଆଉ କେତୋଟି ତାଳରୁ ଅଧିକାଂଶ ତାଳ ବ୍ୟବହାରରେ ଆସିବାର ଦେଖାଯାଏ ନାହିଁ । ଅଥଚ ସେହି ସମସ୍ତର ସଂକ୍ଷେପ ପରିଚୟରେ ପୁସ୍ତକର ତିନିଭାଗ ବାହାରି ଯାଇଅଛି । ପରନ୍ତୁ କେବଳ ତାଳଜ୍ଞାନ ବ୍ୟବହାର ପ୍ରତି ଯଥେଷ୍ଟ ନୁହେଁ । ସାଧନ ଆବଶ୍ୟକ । ମୃଦଙ୍ଗ ବାଦନ ଶିକ୍ଷା ସାଧନର ଉପାୟ ଅଟେ । ବାଦ୍ୟ ଶିକ୍ଷା ବିଷୟରେ ଗ୍ରନ୍ଥକାର ଅବା ସମୟାନ୍ତରେ ଅନ୍ୟପୁସ୍ତକ ବାହାର କରିବା ଇଚ୍ଛା କରିଥିବେ । ମାତ୍ର ଆମ୍ଭେମାନେ ଅନୁମାନ କରୁଁ କି ଏହି ପୁସ୍ତକର ଅନ୍ୟ ସଂସ୍କରଣରେ ଅନାବଶ୍ୟକୀୟ ବାହୁଲ୍ୟତା ପରିତ୍ୟାଗ ପୂର୍ବକ ସଚରାଚର ପ୍ରଚଳିତ ତାଳମାନଙ୍କର ସାଧନା ପ୍ରଣାଳୀ କହିଦେଲେ ବିଶେଷ ଉପକାର ହେବ । ଆପତତଃ ଏ ପୁସ୍ତକରୁ ଖଣ୍ଡେ ଖଣ୍ଡେ ପ୍ରାପ୍ତ କରି ଗ୍ରନ୍ଥକାରଙ୍କୁ ଉତ୍ସାହ ଦେବା ନିମନ୍ତେ ସଙ୍ଗୀତାନୁ-ରାଗୀମାନଙ୍କୁ ବିଶେଷ ଅନୁରୋଧ କରୁ ଅଛୁଁ ।*

ତ୍ରୌର୍ଯ୍ୟତ୍ରିକ ସଂପର୍କୀୟ ଅନ୍ୟାନ୍ୟ ଗ୍ରନ୍ଥ ରଚନା କରିବା କିମ୍ବା ଏହି ପୁସ୍ତକଟିର ପରିମାର୍ଜନା କରି ରହିଯାଇଥିବା ତ୍ରୁଟି ବିଚ୍ୟୁତିକୁ ବିଦୂରିତ କରିବାର ଅବସର ପାଇବା ପଦ୍ମନାଭଙ୍କ ଭାଗ୍ୟରେ ସମ୍ଭବ ହୋଇନାହିଁ । ସଂଗୀତଶାସ୍ତ୍ର ଜ୍ଞାନରେ ପରିପକ୍ୱତା ଆସିବା ବେଳକୁ ସେ ଅକାଳରେ ଇହଲୀଳା ସମ୍ବରଣ କରିଛନ୍ତି ।

●

ଏ ମହାତ୍ମା ଗଞ୍ଜାମ ଜିଲ୍ଲାନ୍ତର୍ଗତ ପାରଳାଖେମୁଣ୍ଡି ରାଜ୍ୟର ପୂର୍ବ ରାଜାଙ୍କ କନିଷ୍ଠ ଭ୍ରାତା ଥିଲେ । ସେ ଗଞ୍ଜାମରେ ଚନ୍ଦ୍ର ମହାରାଜା ନାମରେ ସୁପରିଚିତ ଏବଂ ଅଳ୍ପ ବୟସରେ ସ୍ୱର୍ଗାରୋହଣ କରିଥିଲେ ସୁଦ୍ଧା ଉତ୍କଳ ସାହିତ୍ୟର ବିଶେଷ ଉନ୍ନତି ସାଧନ କରିଯାଇଛନ୍ତି । ସେ ଜଣେ ସଂଗୀତ ଶାସ୍ତ୍ରାଭିଜ୍ଞ ବ୍ୟକ୍ତି ଥିଲେ । କବି ନୂତନ ଧରଣର କେତେଗୁଡ଼ିଏ ଓଡ଼ିଆ ନାଟକ ଲେଖିଅଛନ୍ତି । ତାହାଙ୍କ ରଚିତ ପଦ୍ୟଗୁଡ଼ିକରେ ସଙ୍ଗୀତ ମାତ୍ରା ବିଶେଷ ଦେଖାଯାଏ । ଏହାଙ୍କ ଯୋଗୁଁ ଦକ୍ଷିଣ ଗଞ୍ଜାମରେ ଉତ୍କଳ ଭାଷାର ପୁନରୁଦ୍ଧାର ହୋଇଛି ଓ ଅନେକ ଉତ୍କଳୀୟଙ୍କର ସାହିତ୍ୟ ପ୍ରତି ଶ୍ରଦ୍ଧା ଜନ୍ମିଛି । ଏ ସମ୍ବନ୍ଧରେ ସ୍ୱର୍ଗୀୟ ଶ୍ୟାମସୁନ୍ଦର ରାଜଗୁରୁଙ୍କ ନାମ ଉଲ୍ଲେଖଯୋଗ୍ୟ । ଏ ମହାଶୟ କବିଙ୍କୁ ସାହିତ୍ୟ ସେବାରେ ବହୁ ସାହାଯ୍ୟ କରୁଥିଲେ । ଏ ଉଭୟଙ୍କ ବିଶେଷ ଯତ୍ନରେ ପାରଳାଖେମୁଣ୍ଡି ରାଜଧାନୀରେ ଗୋଟିଏ ନାଟକାଳୟ ସ୍ଥାପିତ ହୋଇଅଛି । ସେଥିରେ କବିଙ୍କ ରଚିତ ନାଟକମାନ ସେହି ଦିନାବଧି ଅଭିନୀତ ହୋଇଆସୁଅଛି । ଉତ୍କଳର ରୁଚି ଅନୁଯାୟୀ ନାଟକାଭିନୟର ଏହାଙ୍କ ଦ୍ୱାରା ସର୍ବପ୍ରଥମେ ସୂତ୍ରପାତ ହୋଇଅଛି । ପଦ୍ମନାଭ ଜଣେ ବଡ଼ ଦେଶହିତୈଷୀ ଥିଲେ । ଦେଶୀୟ ସାହିତ୍ୟ ପ୍ରତି ତାହାଙ୍କର ପ୍ରଗାଢ଼ ଅନୁରାଗ ଥିଲା ।

ସ୍ୱର୍ଗତ ତାରିଣୀ ଚରଣ ରଥ

# ଜ୍ଞାନସର୍ବସାରସଂଗ୍ରହ

ଶ୍ରୀ ଶ୍ରୀ ପଦ୍ମନାଭନାରାୟଣଦେବଙ୍କ ଦ୍ୱାରା

ସଙ୍କଳିତ ହୋଇ

ପ୍ରଥମବାର

ପ୍ରକାଶିତହେଲା ।

*Printed at the Gajapathy Press,*

*Parlakimedi.*

18୯୧

price 0-8-0

# ଭୂମିକା

ବିଦେଶାଗତ ଶିକ୍ଷିତ ବନ୍ଧୁମାନେ ଉତ୍କଳରେ ସଙ୍ଗୀତ ଗ୍ରନ୍ଥର ଅଭାବ ଥିବାର ଦେଖି ମୋଠାରେ ପୁନଃ ପୁନଃ ପ୍ରକାଶ କରିଅଛନ୍ତି କି-ଯଦି କେହି ଜଣେ ଓଡ଼ିଆ ଦାକ୍ଷିଣାତ୍ୟ ସଙ୍ଗୀତ ଧାରାଗୁଡ଼ିକ ଓଡ଼ିଆ ଭାଷାରେ ପ୍ରଚାର କରି ଉତ୍କଳର ଅଭାବ ଦୂର କରିବ, ତେବେ ଜାତୀୟ ସଙ୍ଗୀତ ସଂସ୍କୃତ ଓ ଉନ୍ନତ ହେବ । ବାସ୍ତବିକ ଏ ଏକ ଶୋଚନୀୟ ଅଭାବ । ଏହି ଅଭାବ ଦୂର କରିବା ହେତୁ ଏହି ପୁସ୍ତକଟିର ଅବତରଣ ବୋଲି ରଚନା କରିବା ନିତାନ୍ତ ଭ୍ରମ ମାତ୍ର । ପ୍ରକୃତ କଥା ଏହି ଯେ ମୁ ଏହି ଅଭାବ ପୂରଣ କରିବାକୁ ଅସମର୍ଥ ଅଟେ । ଏହାର ଉତ୍ପତ୍ତିର କାରଣ ଏହିକି ଶିକ୍ଷିତ ଉତ୍କଳ ତନୟ ମାନେ ଏହି କ୍ଷୁଦ୍ରାବୟବ ପୁସ୍ତକକୁ ଦୃକ୍‌ପାତ କରି ଉତ୍ସାହିତ ହୋଇ ଉପରୋକ୍ତ ଅଭାବକୁ ଦୂର କରିବାଲାଗି ଅଗ୍ରସର ହେବେ-ଯେପରି ସମଗ୍ର ଉତ୍କଳ ସଙ୍ଗୀତର ଗୌରବ ବୃଦ୍ଧି ହେବ ଓ ନିଖିଳ ଜନମନ ବିମୋହିନୀ ଦାକ୍ଷିଣାତ୍ୟ ସଙ୍ଗୀତ ଉତ୍କଳରେ କ୍ରମେ ଆଧିପତ୍ୟ ସଂସ୍ଥାପନ କରି, ନିଜ ଶିଶୁ-ପଶୁ-ଫଣୀମୋଦି ଗୁଣର ପରିଚୟ ଉତ୍କଳ ସନ୍ତାନମାନଙ୍କଠାରେ ଅଚିରେ ପ୍ରଦାନ କରିବ ।

ଭୂପୃଷ୍ଠରେ ଯେ ଯେ ଶାସ୍ତ୍ରମାନେ ଅଛନ୍ତି ସେମାନଙ୍କରୁ ସଂଗୀତ ଶାସ୍ତ୍ରର ସୌନ୍ଦର୍ଯ୍ୟ ବିନା ପରିଶ୍ରମରେ ସର୍ବସାଧାରଣ ଅନୁଭବ କରନ୍ତି । କାରଣ, ସଙ୍ଗୀତ ହଠାତ୍ ବିପୁଳ ଆନନ୍ଦ ସଂଦାୟକ ଓ ଅନୁପମ ପ୍ରେମ ଉତ୍ପାଦକ ଅଟେ । ସଙ୍ଗୀତ କେବଳ କର୍ଣ୍ଣକୁ ମାତ୍ର ଆନନ୍ଦ ଦିଏ ତାହା ନୁହେ ପରମ କାରୁଣିକ ଜଗଦୀଶ୍ୱରଙ୍କ ଅତି ଆଶ୍ଚର୍ଯ୍ୟମୟ ସୃଷ୍ଟି ପାଷାଣବତ୍ ହୃଦୟକୁ ମଧ ଦ୍ରବୀଭୂତ କରିପକାଏ । ସଙ୍ଗୀତ ମନୁଷ୍ୟ ବା କୌଣସି ବସ୍ତୁଦ୍ୱାରା କୃତ ସାଧାରଣ ଧ୍ୱନି ବିଶେଷ ମାତ୍ର ନୁହେ । ତାହା ବିବିଧ ଧ୍ୱନି ବା ସ୍ୱରମାନଙ୍କର ଯୌକତିକ ସମ୍ମୀଳନ । ସଙ୍ଗୀତକୁ ଧାରା ଯୁକ୍ତ କରିବା ଲାଗି ଆରାଧ ଆର୍ଯ୍ୟ ଋଷିଗଣ ତିନି ଭାଗରେ ବିଭକ୍ତ କରିଅଛନ୍ତି । ଭାବ ବା ଅଭିନୟ, ରାଗ ଓ ତାଳ । ଏହା ଯଥାକ୍ରମେ ନୃତ୍ୟ, ଗୀତ ଓ ବାଦ୍ୟର ଉପାଦାନ ଏହି ହେତୁ ସଙ୍ଗୀତକୁ ତୌର୍ଯ୍ୟତ୍ରିକ କୁହାଗଲା ।

ତାଳ ବିଭାଗ ଶେଷରେ ଥିଲେ ମଧ୍ୟ ତାହା ଆମ୍ଭେମାନେ ଆଦୌ ଶିକ୍ଷା କରିବା ନିତାନ୍ତ ଆବଶ୍ୟକ । ବିନା ତାଳରେ ଗାନ କିମ୍ବା ନୃତ୍ୟର ସୁଶୃଙ୍ଖଳତା ରହିବାର ଅସମ୍ଭବ । ଏଥିସକାଶୁ ମୁ ସର୍ବାଦୌ ଏହି 'ତାଳ ସର୍ବସାରସଂଗ୍ରହ' ମୁଦ୍ରଣ ଭାର ଗ୍ରହଣ କଲି ।

ଏହି ପୁସ୍ତକ ପ୍ରାରମ୍ଭରେ ପାଠକମାନଙ୍କ ସୁବିଧା ନିମନ୍ତେ ଶୁଦ୍ଧିପତ୍ର ଓ ଅନୁକ୍ରମଣିକା ଦିଅଯାଇଅଛି ।

କୃତଜ୍ଞତା ସହିତ ସ୍ୱୀକାର କରୁଅଛି ଯେ ମୋର ପ୍ରିୟବନ୍ଧୁ ଶ୍ରୀ ରାଧାଚରଣ ଦେଉ ଏହି ପୁସ୍ତକ ସଂକଳନ ବିଷୟରେ ଯଥେଷ୍ଟ ସାହାଯ୍ୟ ପ୍ରଦାନ କରିଅଛନ୍ତି ।

ଭକ୍ତିଭାଜନ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ବି.ଏ ଓ ପ୍ରିୟ ଶ୍ରୀ ଅପର୍ଣ୍ଣା ପଣ୍ଡା ପ୍ରୁଫ୍ ସଂଶୋଧନ ବିଷୟରେ ଶ୍ରମ ସ୍ୱୀକାର ପୂର୍ବକ ଯେ ସାହାଯ୍ୟ କରିଅଛନ୍ତି ସେଥିଲାଗି ମୁ ସେମାନଙ୍କଠାରେ ଚିର ଋଣୀ ହୋଇଅଛି ।

ଶ୍ରୀଗୁରୁଦନ୍ତି ଚେଲମୟା ଶାସ୍ତ୍ରୀ ଶ୍ଳୋକମାନଙ୍କୁ ସଂଶୋ(ସୋ)ଧନ କରି ମୋର ଆନ୍ତରୀକ ଧନ୍ୟବାଦର ପାତ୍ର ହୋଇଅଛନ୍ତି ।

ପରିଶେଷରେ ବକ୍ତବ୍ୟ ଏହି ଯେ ପୁରାତନ ସଙ୍ଗୀତ ଗ୍ରନ୍ଥମାନେ ଯଥା ସଙ୍ଗୀତ ଲୋଚନ, ସଙ୍ଗୀତ ସର୍ବାର୍ଥସାରସଂଗ୍ରହ ଓ ଲକ୍ଷଣଗ୍ରନ୍ଥ ତାଳପତ୍ରରେ ଲେଖା ହୋଇଥିବା ଯୋଗୁଁ ଓ ଉକ୍ତ ପୁସ୍ତକମାନେ ଆଦ୍ୟରୁ ପ୍ରାନ୍ତପର୍ଯ୍ୟନ୍ତ ଅଶୁଦ୍ଧରେ ପୂର୍ଣ୍ଣ ହେବା ହେତୁ ଏହି ପୁସ୍ତକ ସଂଶୋଧନରେ ବିଶେଷ କଷ୍ଟ ସହ୍ୟ କରିବାକୁ ପଡ଼ିଲା । ତଥାପି ସ୍ଥାନେ ୨ ଭୁଲ ରହିଯାଇଥିବାର ସମ୍ଭାବନା । ପାଠକମାନଙ୍କଠାରେ ପ୍ରାର୍ଥନା ଏହି ଯେ ଯଦି କୌଣସି ଭୁଲ ସେମାନଙ୍କ ନୟନପଥାରୁଢ଼ ହେବ, ଦୟାପୂର୍ବକ ମତେ ଜଣାଇଦେଲେ ଦ୍ୱିତୀୟ ସଂସ୍କରଣରେ ତାହା ସଂଶୋ(ସୋ)ଧନ କରାଯିବ । ଇତି ।

**ପାରଳାଖିମୁଣ୍ଡି** **ଶ୍ରୀ ଶ୍ରୀ ପଦ୍ମନାଭ ନାରାୟଣଦେବ**

ଏ ସାହିତ୍ୟ ଚର୍ଚ୍ଚା, ପଦ୍ୟ, ନାଟକ, ପ୍ରବନ୍ଧଲେଖା ଓ ନାଟ୍ୟକଳାରେ ରତ ଥିଲେ ଓ ସାହିତ୍ୟ ସେବକମାନଙ୍କୁ ନାନା ପ୍ରକାର ସାହାଯ୍ୟ କରି ଉତ୍ସାହିତ କରୁଥିଲେ । ଏହାଙ୍କର ଆଚରଣ ଅତି ବିଶୁଦ୍ଧ ଥିଲା । ଏ ଅତ୍ୟନ୍ତ ଦୟାଳୁ, ମିଷ୍ଟଭାଷୀ ଓ ଶାନ୍ତପ୍ରକୃତିକ ଥିଲେ । ସ୍ୱର୍ଗୀୟ ଶ୍ୟାମସୁନ୍ଦର ରାଜଗୁରୁ ଏହାଙ୍କର ବାଲ୍ୟକାଳର ଶିକ୍ଷକ ଥିଲେ । ଏହାଙ୍କ ଅକାଳ ମୃତ୍ୟୁରେ ଉତ୍କଳାକାଶ ଗୋଟିଏ ଉଜ୍ଜ୍ୱଳ ଗ୍ରହ ହରାଇଲା ।

**ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜ**

# ତାଳ ସର୍ବସାରସଙ୍ଗ୍ରହ

## ମଙ୍ଗଳାଚରଣଂ

ଶ୍ଳୋକଃ

ବନ୍ଦେ ଶମ୍ଭୁମୁମାପତିଂ ସୁରଗୁରୁଂ ବନ୍ଦେ ଜଗତ୍କାରଣଂ ।।
ବନ୍ଦେ ପନ୍ନଗଭୂଷଣଂ ମୃଗଧରଂ ବନ୍ଦେ ପଶୂନାଂପତିଂ ।।
ବନ୍ଦେ ସୂର୍ଯ୍ୟଶଶାଙ୍କବହ୍ନିନୟନଂ ବନ୍ଦେ ମୁକୁନ୍ଦପ୍ରିୟଂ ।।
ବନ୍ଦେ ଭକ୍ତଜନାଶ୍ରୟଂ ଚ ବରଦଂ ବନ୍ଦେ ଶିବଂ ଶଙ୍କରଂ ।
ପ୍ରାରମ୍ଭକାଳେଦେବତା ।
ସରସ୍ୱତ୍ୟୈବ ବୀଣାଦେରଭ୍ୟାସେସ୍ମର୍ଯତାଂ ଜନୈଃ ।
ମର୍ଦଳାଦିତବାଦ୍ୟାନାଂ ଗଣେଶଂଭାବୟେଚ୍ଛୁଧୀଃ ।
ସୂର୍ଯ୍ୟୋଧେୟୋମନ୍ତ୍ରତାଳେ ତ୍ୱଧକାରୋବିଧୀୟତେ ।
ସର୍ବନାଟ୍ୟସମାଚାରେ ଶଙ୍କରଃ ପରିକୀର୍ତ୍ତିତଃ ।।

ଶ୍ଳୋକଃ

କୈଳାସ ଶିଖରେ ରମ୍ୟେ ଉତ୍ସର୍ଗେ ରତ୍ନମଣ୍ଡପେ ।।
ତକାରଶ୍ଚଶିବଃପ୍ରୋକ୍ତୋ ଲକାରଂ ଶକ୍ତିରାହ ଚ ।୧।

ଅର୍ଥ - କୈଳାସଶିଖରେ ମନୋରମ ହେବା ସ୍ଥାନରେ ଉଚ୍ଚ ମଣ୍ଡପରେ ।
ଶିବ ତକାର ଉଚ୍ଚାରଣ କଲେ । ପାର୍ବତୀ ଲକାର ଉଚ୍ଚାରଣ କଲେ ।

ଶ୍ଳୋକଃ- ତକାରଃ ପୁରୁଷୋଜ୍ଞେୟୋ ଲକାରୋଲଲନାପି ଚ ।
ଦ୍ୱୟୋରକ୍ଷରୟୋର୍ଯୁକ୍ତୌ ତାଳୋସୌ ସୋପଜାୟତେ ।୨।

ଅର୍ଥ - ତକାର ପୁରୁଷ ଲକାର ସ୍ତ୍ରୀ, ତ ଓ ଲ ଦୁହିଁଙ୍କର ସଂଯୋଗରୁ ତାଳ ଉପୁଜିଲା ।

ତାଳସ୍ଥଳ ପ୍ରତିଷ୍ଠାୟା ମିତିଧାତୁଗଣ ସ୍ମୃତଃ ।

ଶ୍ଲୋକଃ- ତଳୟୋରୁଭୟୋର୍ଯାତସ୍ତାଳଶ୍ଚେତ୍ୟେବ ବା ପୁନଃ ।୩।

ଅର୍ଥ - ତାଳ ବା ସ୍ଥଳଧାତୁ ପ୍ରତିଷ୍ଠା ଅର୍ଥରେ ତଳରୁ ତାଳ ହେଲା ।

ଶ୍ଲୋକଃ - ତତସ୍ତାଳାଭବେତ୍‌କାଳଃ କାଳଶ୍ଚ ଲୟଆଗତଃ ।।

ଲୟାଦନଧୃତଂ ତସ୍ମାତ୍ ବିନ୍ଦୁରତ୍ରୋପଜାୟତେ ।୪।

ଅର୍ଥ - ତାଳରୁ କାଳ, କାଳରୁ ଲୟ, ଲୟରୁ ଅନୁଧୃତ ଓ ଅନୁଧୃତରୁ ବିନ୍ଦୁ ଜାତ ।

"ତ" ରବର୍ଣ୍ଣ ।।

ଶ୍ଲୋକଃ - ତକାରଶ୍ଚାମ୍ପକୋବର୍ଣ୍ଣଃ । ବ୍ରହ୍ମାବିଷ୍ଣୁଶିବାର୍ଚ୍ଚିତଃ ।।

ଅର୍ଥ- ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କଦ୍ୱାରା ଅର୍ଚ୍ଚିତ ତକାର ବର୍ଣ୍ଣ ଚମ୍ପକ ପୁଷ୍ପ ବର୍ଣ୍ଣପ୍ରାୟ ଅଟେ ।

"ଲ" ର ବର୍ଣ୍ଣ

ଶ୍ଲୋକଃ- ଲକାର ସ୍ୱର୍ଣ୍ଣବର୍ଣ୍ଣେତି । ଶିବ ପାର୍ବତୀ ଭାଷିତଂ ।

ଅର୍ଥ - ଲକାର ସ୍ୱର୍ଣ୍ଣବର୍ଣ୍ଣ ବୋଲି ଶିବ ପାର୍ବତୀ କହିଅଛନ୍ତି ।

ଶ୍ଲୋକଃ- ତାଳଂଲତା ଗତିଂକୃତ୍ୱା-ନୁଧୃତଂ ଚ ଧୃତଂଲଘୁ ।।

ଧୃବାଦ୍ୟା ସପ୍ତତାଳାସ୍ତୁ ରଚିତାଃ ଶିବତାଣ୍ଡବେ ।।

ଅର୍ଥ - ତାଳକୁ ଲତାଗତିକରି, ଅନୁଧୃତ ଧୃତ ଓ ଲଘୁ ଅଙ୍ଗରେ ଧୃବାଦି କରି ସପ୍ତତାଳକୁ ଶିବ ତାଣ୍ଡବ କାଳରେ ରଚନା କରିଅଛନ୍ତି ।

ଶ୍ଲୋକଃ - ଶିବତାଣ୍ଡବକାଳେବୈ ସର୍ବଦେବ ସମୂହଗେ ।।

ଶଙ୍କରେନର୍ତ୍ତୁମାରବ୍ଧେ ରାବଣସ୍ତାଳମାବହତ୍ ।।

ମୁମୂର୍ଚ୍ଛ ବିବଶଃପଶ୍ଚାଦ୍‌ଦଧୌତାଳଂ ହରିର୍ଯଦା ।।

ବ୍ରହ୍ମା ଚ ମର୍ଦଳଂ ନୃର୍ତାତ୍‌ଶୟୋର୍ଦେବାମୁଦଂ ଯଯୁଃ (ଜୟୁଃ) ।।

ଅର୍ଥ - ଶିବ ତାଣ୍ଡବ କାଳରେ, ସର୍ବଦେବତାସମୂହରେ, ନାଚିବାକୁ ଆରମ୍ଭ କରିବାରୁ, ରାବଣ ତାଳଧରି ମୋହିତ ହୋଇ ପଡ଼ିଗଲା । ତତ୍‌ପରେ

ଶ୍ରୀହରି ତାଳ ଓ ବ୍ରହ୍ମା ମର୍ଦ୍ଦଳ ଧରିବାରୁ ଈଶ୍ୱର ନାଚିଲେ । ଦେବତାମାନେ ସଂତୁଷ୍ଟ ହେଲେ ।

ଶ୍ଳୋକଃ - ସପ୍ତତାଳବିଧିଶ୍ଚାହ ନୃତ୍ୟାନ୍ତେବ୍ରହ୍ମଣେଶିବଃ ॥
ବାଗ୍‌ପତିର୍ପଠନଂକୃତ୍ୱା ଦଦୌକୃଷ୍ଣାୟତଂ ପୁନଃ ॥
କୃଷ୍ଣଶ୍ଚ ତାଳବାହୁଲ୍ୟଂ ବିରାମଂ ଚ ଗୁରୁଂପ୍ଲୁତଂ ॥
କୃତ୍ୱାକାକପଦଂଚୈତେ ବୈନତେୟାୟ ସୋଦଦତ୍ ॥
ବୈନତେୟାଚ୍ଚମୁନୟୋ ମୁନିଭ୍ୟଶ୍ଚନରାବିଦୁଃ ॥

ଅର୍ଥ - ଶିବତାଣ୍ଡବ ନୃତ୍ୟ ସମାପ୍ତ ହେଲା ବାଦ ସପ୍ତତାଳ ବ୍ରହ୍ମାଙ୍କୁ ଦେଲେ, ବ୍ରହ୍ମା ପାଠ କରି କୃଷ୍ଣଙ୍କୁ ଦେଲେ, କୃଷ୍ଣ ବାହୁଲ୍ୟ କରି ବିରାମ, ଗୁରୁ,ପ୍ଲୁତ, କାକପଦ, ଏହି ଚାରି ଅଙ୍ଗକରି ଗରୁଡ଼ଙ୍କୁ ଦେଲେ । ଗରୁଡ଼ ମୁନିମାନଙ୍କୁ ଦେଲେ । ମୁନିମାନେ ଭୂତଳକୁ ଆଣି ମନୁଷ୍ୟମାନଙ୍କୁ ଦେଲେ ।

ଶ୍ଳୋକଃ - ନରାଣାଂ ବଦନେସ୍ଥିତ୍ୱା ଜିହ୍ୱାଗ୍ରାଦ୍‌ଦନ୍ତମୂଳତଃ ॥
ତଳୌଯାତୌ ବିଜାନୀୟତ୍ ତାଳୟୋର୍ଲକ୍ଷଣଂବ୍ରୁତଂ ॥

ଅର୍ଥ - ମନୁଷ୍ୟମୁଖସ୍ଥିତ ଜିହ୍ୱାଗ୍ର ଓ ଦନ୍ତମୂଳରୁ ତାଳ ଜାତ ହେଲା ।

ଶ୍ଳୋକ - ଗୀତଂ ବାଦ୍ୟଂ ଚ ନୃତ୍ୟଂ ଚ ତ୍ରିଭିଃ ସଙ୍ଗୀତମୁଚ୍ୟତେ ॥
ତାଳଂତୌର୍ଯ୍ୟତ୍ରିକାଧାରଂ ତାଳପ୍ରାଣାଦଶାତ୍ମିକା ।୧୧।

ଅର୍ଥ- ଗୀତ, ବାଦ୍ୟ ଓ ନୃତ୍ୟ ଏ ତିନିଙ୍କୁ କେବଳ ତାଳ ଆଧାର । ତାଳ ଦଶପ୍ରାଣାତ୍ମିକ ଅଟେ ।

ଶ୍ଳୋକ- ଗୀତଂବାଦ୍ୟଂଚନୃତ୍ୟଂଚ । ତାଳହୀନେ ନଶୋଭତେ ॥
ତୌର୍ଯ୍ୟତ୍ରିକଂ ତାଳହୀନଂ । ଚାଳୟେ ପୁରୁଷାଧମଃ ।୧୨।

ଅର୍ଥ- ଗୀତ, ବାଦ୍ୟ, ନୃତ୍ୟ ତାଳହୀନରୁ ଶୋଭାପାଏ ନାହିଁ । ଏହି ତିନିଙ୍କରେ ତାଳ ଯେ ନ ଚାଳିପାରେ ତାହାକୁ ପୁରୁଷାଧମ ବୋଲି ॥

### ଦଶପ୍ରାଣ ।

ଶ୍ଳୋକଃ- କାଳମାର୍ଗାକ୍ରିୟାଙ୍ଗାନି ଗ୍ରହଜାତି କଳାଲୟାଃ ॥
ଯତି ପ୍ରସ୍ତାରକଶ୍ଚେତି ତାଳପ୍ରାଣାଦଶାତ୍ମିକାଃ ।।୧୩।।

ଅର୍ଥ- (୧) କାଳ, (୨) ମାର୍ଗ, (୩) କ୍ରିୟା, (୪) ଅଙ୍ଗ, ୫) ଗ୍ରହ, (୬) ଜାତି, (୭) କଳା, (୮) ଲୟ, (୯) ଯତି, (୧୦) ପ୍ରସ୍ତାର । ତାଳର ଏହି ଦଶପ୍ରାଣ ।।

ଶ୍ଳୋକଃ- ଉପର୍ଯ୍ୟୁପରିବିନ୍ୟସ୍ୟ ପଦ୍ମପତ୍ର ଶତେକୃତେ ।।
ବିପରାକାଳତସ୍ୟୂତେ ସୂଚ୍ୟଗ୍ରେ କ୍ଷଣମୀରିତଂ ।
ଲବଃ କ୍ଷଣାଷ୍ଟଭିର୍ଶ୍ଚୈବ କାଷ୍ଠାପ୍ୟଷ୍ଟଲବାମ୍ବିକା ।।
ଅଷ୍ଟକାଷ୍ଠାନିମେଷସ୍ତୁ ନିମେଷାଷ୍ଟାମ୍ବିକାକଲା ।।
କଳାଦ୍ୱୟେ ବିରାମଂ ଚ ବିରାମୌଦ୍ୱାବନୁଧ୍ରୁତଂ ।।
ଅନୁଧ୍ରୁତେଦ୍ୱେବିନ୍ଦୁସ୍ୟାଦ୍ ବିନ୍ଦୁଭ୍ୟାଂଚ ଲଘୁର୍ଭବେଦ୍ ।।
ଲଘୁଦ୍ୱୟଂ ଗୁରୁର୍ଶ୍ଚୈବ ତ୍ରିଲଘୁପ୍ଲୁତମୁଚ୍ୟତେ ।
ଚତୁର୍ଲଘୁଃ କାକପଦଂ କଥିତଂ ପୂର୍ବସୂରିଭିଃ ।।୧୪।।

ଅର୍ଥ- ଶ(ସ)ହେ ପଦ୍ମପତ୍ର ଗୋଟିକପରେ ଗୋଟିଏ ରଖି, ବିପରାଗତିରେ ସୂଚିଭେଦନ କଲେ ତାକୁ କ୍ଷଣବୋଲି । ଏହିପରି ଆଠଗୋଟି କ୍ଷଣରେ ଏକ ଲବ, ଆଠଗୋଟି ଲବରେ ଏକ କାଷ୍ଠା, ଆଠ କାଷ୍ଠାରେ ଏକ ନିମିଷ, ଆଠ ନିମିଷରେ ଏକ କଳା, ଦୁଇ କଳାରେ ଏକ ବିରାମ, ଦୁଇ ବିରାମରେ ଏକ ଅନୁଧ୍ରୁତ, ଦୁଇ ଅନୁଧ୍ରୁତରେ ଧ୍ରୁତ, ଦୁଇଧ୍ରୁତରେ ଏକ ଲଘୁ, ଦୁଇ ଲଘୁରେ ଏକ ଗୁରୁ, ତିନି ଲଘୁରେ ଏକ ପ୍ଲୁତ, ଚାରି ଲଘୁରେ ଏକ କାକପଦ, ଏହିପରି ହୁଏ ।୧୪।

କାଳ ।।

ଶ୍ଳୋକଃ- ଆଦିମାଙ୍ଗପ୍ରମାଣେନ । କାଳସ୍ୟ ନାମକଥ୍ୟତେ ।।

ଅର୍ଥ- ତାଳର ଆଦ୍ୟରେ ବିରାମ ଥିଲେ ବିରାମକାଳ, ଆଦ୍ୟରେ ଧ୍ରୁତ ଥିଲେ ଧ୍ରୁତକାଳ, ଅନୁଧ୍ରୁତ ଥିଲେ ଅନୁଧ୍ରୁତକାଳ, ଲଘୁ ଥିଲେ ଲଘୁକାଳ, ଗୁରୁଥିଲେ ଗୁରୁକାଳ, ପ୍ଲୁତ ଥିଲେ ପ୍ଲୁତକାଳ, ଆଦ୍ୟରେ କାକପଦ ନ ଥିବାରୁ କାକପଦ ଲେଖାଗଲା ନାହିଁ ।

## ମାର୍ଗ ॥

ଶ୍ଳୋକଃ- ଦକ୍ଷିଣାବାର୍ତ୍ତିକାଚିତ୍ରା । ତଥାଚିତ୍ରତରାସ୍ମୃତା ॥
ତଥାଚିତ୍ରତମାସୌଞ୍ଝା । ହ୍ୟତିଚିତ୍ରତମାମତା ॥
ଷଡ଼େବ କଥିତାମାର୍ଗା । ତସ୍ବରୂପଂନିରୂପ୍ୟତେ ॥୧୬॥

ଅର୍ଥ- ଦକ୍ଷିଣ, ଅବାର୍ତ୍ତିକା, ଚିତ୍ରା, ଚିତ୍ରତରା, ଚିତ୍ରତମା, ଅତିଚିତ୍ରା ଏପରି ଛ ଗୋଟି ମାର୍ଗ ।

ଶ୍ଳୋକଃ- ପୂର୍ବମଙ୍ଗବିଧ୍ୟଂକୃତ୍ୱା । ମାର୍ଗସ୍ୟ ନାମକଥ୍ୟତେ ।

ଅର୍ଥ- ମାର୍ଗ ଆଦ୍ୟ ଅଙ୍ଗାନୁଯାୟୀ ଅଟେ ଯଥା ଆଦ୍ୟରେ ଗୁରୁଥିଲେ ଦକ୍ଷିଣାମାର୍ଗ ଲଘୁଥିଲେ ଅବାର୍ତ୍ତିକା, ଧୃତ ଥିଲେ ଚିତ୍ରା, ଅନୁଧୃତ ଥିଲେ ଚିତ୍ରତରା, ବିରାମ ଥିଲେ ଚିତ୍ରତମା, ପ୍ଲୁତକୁ ଅତିଚିତ୍ର କହନ୍ତି । ଆଦ୍ୟରେ କାକପଦ ନଥିବାରୁ ମାର୍ଗ କୁହାଗଲା ନାହିଁ ।

ଶ୍ଳୋକଃ- ତତୋ ଦକ୍ଷିଣମାର୍ଗେଚ । ମାତ୍ରାଅଷ୍ଟପ୍ରସନ୍ତି ହି ॥
ଚତୋସ୍ରୋବାର୍ତ୍ତିକେମାତ୍ରା । ଚିତ୍ରାମାତ୍ରାଦ୍ୱୟଂଭବେତ୍ ॥
ଏକାଚିତ୍ରତରାମାତ୍ରା । ପ୍ୟର୍ଦ୍ଧଚିତ୍ରତମାମତା ॥
ଅତିଚିତ୍ରତମାମାର୍ଗୋ । ପ୍ଲୁତାଦେର୍ଣ୍ଣେବସମ୍ଭବଃ ॥୧୮॥

ଅର୍ଥ- ଦକ୍ଷିଣମାର୍ଗକୁ ଆଠମାତ୍ରା ପ୍ରବର୍ତ୍ତଇ । ଅବାର୍ତ୍ତିକାମାର୍ଗକୁ ଚାରି ମାତ୍ରା,ଚିତ୍ର(-) ତମା ମାର୍ଗକୁ ଦୁଇମାତ୍ରା, ଚିତ୍ରତରା ମାର୍ଗକୁ ଏକମାତ୍ରା, ଚିତ୍ରତମା ମାର୍ଗକୁ ଅର୍ଦ୍ଧମାତ୍ରା, ଅତିଚିତ୍ର ମାର୍ଗକୁ ଦ୍ୱାଦଶମାତ୍ରା ପ୍ରବର୍ତ୍ତଇ ।

## କ୍ରିୟା ॥

ଶ୍ଳୋକଃ- ଧ୍ରୁବକାସର୍ପଣୀକୃଷ୍ୟା । ପଦ୍ମନାଚ ବିସର୍ଜ୍ଜିତା ।
ବିକ୍ଷେପଂଚ ପତାକାଚ । ପତିତାନାମଚାଷ୍ଟଧା ।୧୯।

ଅର୍ଥ- ଧ୍ରୁବକା, ସର୍ପଣୀ, କୃଷ୍ୟା, ପଦ୍ମନା, ବିସର୍ଜ୍ଜିତା, ବିକ୍ଷେପପତାକା, ପତିତା ଏପରି କ୍ରିୟା ଆଠ ପ୍ରକାର ।

ଶ୍ଳୋକଃ- ଧ୍ରୁବକାବଳୟାଦ୍ୟୋନ । ଦୀର୍ଘମାୟୁଷ୍ଟସର୍ପଣୀ ॥

ଆଦ୍ୟେତୁବ୍ୟାପକଃକୃଷ୍ୟା । ସମ୍ଭବେ ପଦ୍ମଦୀପ୍ତକଂ ।।
ବିସର୍ଜ୍ଜିତାବିରାମଂଚ । ବିକ୍ଷେପୋହିତ୍ୟନୁଧୃତଂ ।।
ଗୁରୁପୂର୍ବାତ୍ କାକପଦଂ । ପତାକା ନାମ କଥ୍ୟତେ ।।
ପ୍ଳୁତପୂର୍ବାତ୍‌ହଂସପଦଂ । ପତିତାତତ୍ରତୂଚ୍ୟତେ ।।
ଆଦ୍ୟେନ ଲିଖିତାଙ୍ଗେନ । କ୍ରିୟା ଅଷ୍ଟ ପ୍ରକୀର୍ତ୍ତିତାଃ ।୨୦।

ଅର୍ଥ- ଧୃତ ଆଦ୍ୟରେ ଥିଲେ ଧୃବକା, ଗୁରୁ ଆଦ୍ୟରେ ଥିଲେ ସର୍ପିଣୀ, ଆଦ୍ୟରେ ଲଘୁଥିଲେ କୃଷ୍ୟା, ପ୍ଳୁତ ଆଦ୍ୟରେ ଥିଲେ ପଦ୍ମନା, ଆଦ୍ୟରେ ବିରାମ ଥିଲେ ବିସର୍ଜ୍ଜିତା, ଆଦ୍ୟରେ ଅନୁଧୃତ ଥିଲେ ବିକ୍ଷେପ, ଗୁରୁ ଶେଷେ କାକପଦ ଥିଲେ ପତାକା, ପ୍ଳୁତଶେଷେ ହଂସପଦ ଥିଲେ ପତିତା ବୋଲି ।

ଅଙ୍ଗ ।।

ଶ୍ଲୋକଃ- ବିରାମାନୁଧୃତେଚୈବ । ଧୃତଂ ଲଘୁ ଗୁରୁପ୍ଳୁତୌ ।।
ତଥା କାକପଦଂଚୈବ । କୀର୍ତ୍ତିତାନ୍ୟ(ନ୍ୱ)ଙ୍ଗସଂଜ୍ଞୟା ।୨୧।

ଅର୍ଥ- ବିରାମ, ଅନୁଧୃତ, ଧୃତ, ଗୁରୁ, ଲଘୁ, ପ୍ଳୁତ, କାକପଦ ଏମାନଙ୍କୁ ଅଙ୍ଗ କହି ।

ଶ୍ଲୋକଃ- ଗୁରୋରେକଗକାରସ୍ତୁ । ଲକାର ଲଘୁରେକକଃ ।।
ପ୍ଳୁତଃ ପକାରଇତ୍ୟେବଂ । ଦଧୃତଶ୍ଚ ପ୍ରକୀର୍ତ୍ତତା ।।
ବକାରୈବବିରାମସ୍ୟ । ଅକାରସ୍ୟାଦନୁଧୃତଂ ।।
କକାରେଚ କାକପଦ । ମଙ୍ଗସଞ୍ଜ୍ଞାସ୍ତୁସପ୍ତଧା ।୨୨।

ଅର୍ଥ- ଗ ଥିଲେ ଗୁରୁ, ଲ ଥିଲେ ଲଘୁ, ପ ଥିଲେ ପ୍ଳୁତ, ଦ ଥିଲେ ଧୃତ, ବ ଥିଲେ ବିରାମ, ଅ ଥିଲେ ଅନୁଧୃତ, କ ଥିଲେ କାକପଦ ଏହି ଅକ୍ଷରସଂଜ୍ଞାରୁ ଅଙ୍ଗ ଜାଣିବ ।

ଶ୍ଲୋକଃ- ଅତୀତାନାଗତେଚୈବ । ସମଶ୍ଚବିଷମୋଽପିବା ।।

ଅର୍ଥ- ଅତୀତ, ଅନାଗତ, ସମ, ବିଷମ ଏପରି ଚାରି ଗ୍ରହ ।।

ଶ୍ଲୋକଃ- ଆଦ୍ୟମନୁଧୃତଂଯତ୍ର । ଅନାଽଗତଶ୍ଚକଥ୍ୟତେ ।।
ଅତୀତଂ ବଳୟାଦ୍ୟେନ । ବିରାମବିଷମସ୍ମୃତଃ ।।

ଲଘୁର୍ଗୁରୁଃପ୍ଲୁତଶ୍ଚୈବ । ଆଦ୍ୟେତେ ଲିଖିତା ଯଦି ॥
ସମଗ୍ରହ ଇତିଖ୍ୟାତ । ପୂର୍ବୈସ୍ତୈର୍ମୁନିପୁଙ୍ଗବୈଃ ।୨୪।

ଅର୍ଥ- ଆଦ୍ୟରେ ଅନୁଧୃତ ଅଙ୍ଗ ଥିଲେ ଅନାଗତ, ଧୃତ ଥିଲେ ଅତୀତ, ବିରାମ ଥିଲେ ବିଷମ, ଲଘୁ ଗୁରୁ ପ୍ଲୁତ ଆଦ୍ୟରେ ଥିଲେ ସମ ।୨୪

ଜାତି ॥

ଶ୍ଳୋକଃ- ଚତୁସ୍ରଂ ତିସ୍ରମିଶ୍ରଂ ଚ । ଖଣ୍ଡସଂକୀର୍ଣ୍ଣକୋ ତଥା ॥
ପଞ୍ଚଧା ଜାତିରାଖ୍ୟାତା । ତସ୍ବରୂପଂ ନିରୂପ୍ୟତେ ॥୨୫॥

ଅର୍ଥ- ଚତୁସ୍ର, ତିସ୍ର, ମିଶ୍ର, ଖଣ୍ଡ, ସଂକୀର୍ଣ୍ଣ, ଏପରି ତାଳର ପାଞ୍ଚ ଜାତି ।

ଶ୍ଳୋକଃ- ଚତ୍ୱାରନୁଧୃତାନ୍ୟାହୁ । ଚତୁରସ୍ରଂ ତ୍ରିତୟଂ ତତ୍ ॥
ତିସ୍ରଂତତ୍ସପ୍ତକଂ ମିଶ୍ରଂ । ଖଣ୍ଡଂ ତତ୍ପଞ୍ଚକଂ ସ୍ମୃତଂ ॥
ନବାନାଂଧୃତକଂଚୈବ । ସଂକୀର୍ଣ୍ଣଃ କଥିତୋ ବୁଧୈଃ ।୨୬।

ଅର୍ଥ- ଅନୁଧୃତ ଚାରିରେ ଚତୁରସ୍ର, ତିନିରେ ତିସ୍ର, ସାତରେ ମିଶ୍ର, ପାଞ୍ଚରେ ଖଣ୍ଡ ଓ ନରେ ସଂକୀର୍ଣ୍ଣ ଏହିପରି ପାଞ୍ଚ ଜାତିର ବିବରଣ ।

କଳା ॥

ଶ୍ଳୋକଃ- ଏକକଳା ଦ୍ୱିକଳାଚ । ତ୍ରିକଳାଚ ଚତୁଷ୍କଳା ॥
ପଞ୍ଚ ଷଷ୍ଠ କଳେଚୈବ । ତସ୍ବରୂପଂ ନିରୁପ୍ୟତେ ।୨୭।

ଅର୍ଥ- ଏକକଳା, ଦ୍ୱିକଳା, ତ୍ରିକଳା, ଚତୁଷ୍କଳା, ପଞ୍ଚକଳା, ଷଷ୍ଠକଳା, ଏହିପରି ଛ'ଗୋଟି କଳା ।

ଶ୍ଳୋକଃ- ଏକ କଳା ବିରାମଂଚ ॥ ଦ୍ୱିକଳେଚତ୍ୱନୁଧୃତଂ ॥
ତ୍ରିକଳାଷ୍ଟ ଧୃତଶ୍ଚୈବ । ବ୍ୟାପକଂ ଚ ଚତୁଷ୍କଳାଃ ।
ପଞ୍ଚକଳାମତଂ ବକ୍ତ୍ରଂ । ଦୀପ୍ତଂ ଷଷ୍ଠକଳା ଭବେତ୍ ।୨୮।

ଅର୍ଥ- ତାଳର ଆଦ୍ୟରେ ବିରାମ ଥିଲେ ଏକ କଳା, ଅନୁଧୃତ ଥିଲେ ଦ୍ୱିକଳା, ଧୃତ ଥିଲେ ତ୍ରିକଳା, ଲଘୁ ଥିଲେ ଚତୁଷ୍କଳା, ଗୁରୁଥିଲେ ପାଞ୍ଚକଳା, ପ୍ଲୁତ ଥିଲେ ଷଷ୍ଠ କଳା, ଏପରି କଳାନିର୍ଣ୍ଣୟ । କାକପଦ ଆଦ୍ୟରେ ନ ଥିବାରୁ କଳା କୁହାଗଲା ନାହିଁ ।

ଲୟ ॥

ଶ୍ଳୋକଃ- ବିଲିପ୍ତା ଦଶମଧ୍ୟେତୁ । ଏକମାତ୍ରାପ୍ରବର୍ତ୍ତତେ ॥
ବିଳମ୍ବ ଲୟନାମାସୌ । ଦ୍ୱିମାତ୍ରା ମଧ୍ୟମୋଲୟଃ ॥
ଲୟୋଧୃତଶ୍ଚତୁର୍ମାତ୍ରାଃ । ଲୟାନାଂ ତ୍ରିବିଧାଗତିଃ ॥୨୯॥

ଅର୍ଥ- ବିଲିତା ଦଶମଧ୍ୟରେ ଏକାକ୍ଷର ରହିଲେ ବିଳମ୍ବ ଲୟ । ଦୁଇ ଅକ୍ଷର ରହିଲେ ମଧ୍ୟମ ଲୟ । ଚାରି ଅକ୍ଷର ରହିଲେ ଧୃତଲୟ ଏହିପରି ଲୟ କ୍ରମରେ ଜାଣିବ ॥

ଶ୍ଳୋକଃ- ପିପୀଲିକା କୀଟପତଙ୍ଗକାଦ୍ୟାଃ । ଭୁବିସ୍ଥିତା ଯେ ଖିଳଭୂତ ସଂଘାଃ ।
ଚରାଚରାଃ ଖେଚର ବିଶ୍ୱସାରାଃ । ସତାଳ କାଳାଲୟଗାଶ୍ଚ ସର୍ବେ ॥୩୦॥

ଅର୍ଥ- ପିପୀଲିକା, କୀଟ, ପତଙ୍ଗ, ଏମାନଙ୍କୁ ଆଦିକରି, ଚରାଚର, ଖେଚର, ବିଶ୍ୱସାର, ସମସ୍ତେ, ତାଳ, କାଳ ଲୟରେ ଚଳନ୍ତି ।

ଯତି ॥

ଶ୍ଳୋକଃ- ସମସ୍ରୋତ ଯତିଖ୍ୟାତେ । ଗୋପୁଚ୍ଛା ଚ ପିପୀଲିକା ॥
ମୃଦଙ୍ଗିକାଚ ବିଷମା । ଯତିଷଷ୍ଠବିଧା ସ୍ମୃତା ।୩୧।

ଅର୍ଥ- ସମଯତି, ସ୍ରୋତଯତି, ଗୋପୁଚ୍ଛାଯତି, ପିପୀଲିକାଯତି, ମୃଦଙ୍ଗିକାଯତି, ବିଷମଯତି, ଏପରି ଛ ଗୋଟିଯତି ।୩୧।

ଶ୍ଳୋକଃ- ଆଦ୍ୟେ ବିରାମୋ ଯତ୍ରସ୍ୟାତ୍ । ସମଖ୍ୟାଯତିରୁଚ୍ୟତେ ॥
ଅନୁଧୃତଂ ଦିଶେଦାଦ୍ୟେ । ଯତିଶ୍ଚସ୍ରୋତନାମିକା ॥
ଆଦ୍ୟେଚଧୃତସଂଯୋଗାତ୍ । ଗୋପୁଚ୍ଛେତି ଚ କଥ୍ୟତେ ॥
ପିପିଲୀକାଯତିଖ୍ୟାତା । ଆଦ୍ୟେ ଲଘୁସମନ୍ୱିତା ॥
ଗୁରୁରାଦ୍ୟେ ମୃଦଙ୍ଗୀଚ । ପ୍ଲୁତାଦ୍ୟାବିଷମାଭବେତ୍ ।୩୨।

ଅର୍ଥ- ଆଦ୍ୟେ ବିରାମ ଥିଲେ ସମ, ଅନୁଧୃତ ଥିଲେ ସ୍ରୋତ, ଧୃତ ଥିଲେ ଗୋପୁଚ୍ଛା, ଲଘୁ ଥିଲେ ପିପୀଲିକା, ଗୁରୁ ଥିଲେ ମୃଦଙ୍ଗିକା, ପ୍ଲୁତ ଥିଲେ ବିଷମା । ଏହି ଛ ଗୋଟି ଯତିର ଲକ୍ଷଣ ।

## ପ୍ରସ୍ତାର ॥

ଶ୍ଳୋକଃ- ବିରମାନୁଧ୍ରୁତେଚୈବ । ଧ୍ରୁତଂ ଲଘୁଗୁରୁପ୍ଳୁତାଃ ।
ଭବେୟୁରାଦୟୋ ଯେଷାଂ । ତେ ତଦ୍ ପ୍ରସ୍ତାରସୌଞ୍ଜିକାଃ ॥

ଅର୍ଥ ॥ ବିରାମ, ଅନୁଧ୍ରୁତ, ଧ୍ରୁତ, ଲଘୁ, ଗୁରୁ, ପ୍ଳୁତ, ଏହି ଅଙ୍ଗମାନଙ୍କର ଯେଉଁ ଅଙ୍ଗ ଆଦ୍ୟରେ ଥାଏ ତାହାକୁ ସେହି ପ୍ରସ୍ତାର କହନ୍ତି ।

## ଜାତି ବିଭାଗଲକ୍ଷଣ ॥

| ତାଳର ନାମ | ଅଙ୍ଗ | | | ଜାତି | | |
|---|---|---|---|---|---|---|
| | | ଚତୁସ୍ର | ତିସ୍ର | ମିଶ୍ର | ଖଣ୍ଡ | ସଂକୀର୍ଣ୍ଣ |
| ଧ୍ରୁବତାଳ | । ॥ | ୧୪ | ୧୧ | ୨୩ | ୧୭ | ୨୯ |
| ମଠାତାଳ | ।୦। | ୧୦ | ୮ | ୧୬ | ୧୨ | ୨୦ |
| ରପକତାଳ | ୦। | ୬ | ୫ | ୯ | ୭ | ୧୧ |
| ଝମ୍ପାତାଳ | ୦୦। | ୭ | ୬ | ୧୦ | ୮ | ୧୨ |
| ତ୍ରିପୁଟାତାଳ | ।୦୦ | ୮ | ୭ | ୧୧ | ୯ | ୧୩ |
| ଅଟତାଳ | ॥୦୦ | ୧୨ | ୧୦ | ୧୮ | ୧୪ | ୨୨ |
| ଏକତାଳ | । | ୪ | ୩ | ୭ | ୫ | ୯ |

ଶ୍ଳୋକଃ ॥ ଲଘୂନାଂବର୍ଦ୍ଧତେତାଳଂ । ତିସ୍ରମିଶ୍ରଞ୍ଚଖଣ୍ଡକଂ ॥
ଚତୁଃ ସଂକୀର୍ଣ୍ଣକଂ ସର୍ବେ । ର୍ଜାତିଭିଃ ପଞ୍ଚଭିଃ ସ୍ମୃତଂ ।୩୪॥

ଅର୍ଥ- ଲଘୁଭେଦରେ ଜାତିଭେଦ ।

ଶ୍ଳୋକଃ- ଅନୁଧ୍ରୁତଂ ବିରାମଂ ଚ । ଧ୍ରୁତଂ ଗୁରୁପ୍ଳୁତୌ ତଥା ।
କାକପଦସ୍ୱଜାତୀୟା । ନ ଭବେ ଚ କଦାଚନ ॥୩୫॥

ଅର୍ଥ- ଲଘୁ ଛାଡ଼ି ଅନ୍ୟ ଅଙ୍ଗଦ୍ୱାରା ଜାତିଭେଦ ହୋଇନପାରେ ।

## ଜାତି ନିର୍ଣ୍ଣୟ ଲକ୍ଷଣ

ଶ୍ଳୋକଃ- ଚତୁରସ୍ର ତଥା ବ୍ରହ୍ମ । ତିସ୍ରଂ କ୍ଷତ୍ରିୟମୁଚ୍ୟତେ ॥
ମିଶ୍ରୋବୈଶ୍ୟସ୍ତଥାଖଣ୍ଡଂ । ଶୂଦ୍ରସ୍ୟାଦ୍ ଜାତିନିର୍ଣ୍ଣୟଃ ॥
ଜାରତ୍ୱ ଜାତିରାଖ୍ୟାତା । ସଂକୀର୍ଣ୍ଣସ୍ତୈବପଣ୍ଡିତୈଃ ॥୩୬॥

ଅର୍ଥ- ଚତୁରସ୍ର ବ୍ରହ୍ମ, ତିସ୍ର କ୍ଷତ୍ରିୟ, ମିଶ୍ର ବୈଶ୍ୟ, ଖଣ୍ଡ ଶୂଦ୍ର, ସଂଙ୍କୀର୍ଣ୍ଣ ଜାରତ୍ୱ, ଏ ପାଞ୍ଚ ଜାତି ତାଳ ହୁଅନ୍ତି । ସଂକୀର୍ଣ୍ଣ ଜାତି ଚତୁରସ୍ର ଜାତି ହେବା ଲକ୍ଷଣ ।

ଶ୍ଲୋକ- ଜନ୍ମନା ଜା(ୟ)ତେଶୂଦ୍ରଃ । କର୍ମଣା ଜାୟତେ ଦ୍ୱିଜଃ ॥
ବେଦପାଠେନବିପ୍ରାଣ୍ଟ । ବ୍ରହ୍ମଜାନାତିବ୍ରାହ୍ମଣଃ ।୩୭॥

ଅର୍ଥ- ଜନ୍ମରେ ଶୂଦ୍ର, କର୍ମରେ ଦ୍ୱିଜ, ବେଦପଢ଼ିଲେ ବିପ୍ର, ବ୍ରହ୍ମକୁ ଜାଣିଲେ ବ୍ରାହ୍ମଣ, ଏହି ରୀତିରେ ସଂକୀର୍ଣ୍ଣ ଚତୁରସ୍ର ହୁଅଇ ।

ତାଳରଅଙ୍ଗଲକ୍ଷଣ ॥

| ବିରାମ | ଅନୁଧୃତ | ଧୃତ | ଲଘୁ | ଗୁରୁ | ପ୍ଲୁତ | କାକପଦ |
|---|---|---|---|---|---|---|
| L | U | O | \| | 8 | 8' | + |
| ୳ ଅକ୍ଷର | ୧ ଅକ୍ଷର | ୨ଅକ୍ଷର | ୪ଅକ୍ଷର | ୮ ଅକ୍ଷର | ୧୨ ଅକ୍ଷର | ୧୬ ଅକ୍ଷର |

ଶ୍ଲୋକଃ- ଅନୁଧୃତଂ ଚାର୍ଦ୍ଧଚନ୍ଦ୍ର । ବିରାମଂ ପ୍ଳବରୂପକଂ ॥
ଧୃତସ୍ତୁ ବଳୟାକାରୋ । ଲଘୁଶ୍ଚାର୍ଦ୍ଧଶରାକୃତି ॥
ଗୁରର୍ବକ୍ରଧନୁର୍ଜ୍ଞେୟୋ । ପ୍ଲୁତଶ୍ଚସଶିଖୋଗୁରୁଃ ॥
କାକପଦେ କ୍ରିୟାଜ୍ଞେୟା । ନିଃଶବ୍ଦୋଲଚତୁଷ୍ଟୟଂ ।।୩୮।।

ଅର୍ଥ- ଅନୁଧୃତ ଅର୍ଦ୍ଧଚନ୍ଦ୍ର ଆକାର, ବିରାମ ନାବ ଆକାର, ଧୃତ ବଳୟାକାର, ଲଘୁ ଶରାକାର, ଗୁରୁ ବକ୍ରଧନୁଆକାର, ପ୍ଲୁତ ଗୁରୁ ମୁର୍ଦ୍ଧନିରେ ବକ୍ରରେଖା, କାକପଦ ଚତୁଷ୍କୋଣାକାର ।

ମାତ୍ରାନିର୍ଣ୍ଣୟ ॥

ଶ୍ଲୋକଃ - ବିରାମମର୍ଦ୍ଧମାତ୍ରଂସ୍ୟା- । ଦେକମାତ୍ରମନୁଧୃତଂ ॥
ଧୃତଂ ଦ୍ୱିମାତ୍ରକଂ ଜ୍ଞେୟଂ । ଚତୁର୍ମାତ୍ରୋ ଲଘୁର୍ଭବେତ୍ ॥

ମାତ୍ରାଷ୍ଟକଂ ଗୁରୁଂବୟା- । ନ୍ମାତ୍ରାଦ୍ୱାଦଶକଂପ୍ଲୁତଂ ॥
କାକପଦଞ୍ଚବିଜ୍ଞେୟଂ । ମାତ୍ରା ଷୋଡ଼ଶକଂ ତଥା ॥

ଅର୍ଥ- ବିରାମ ଅର୍ଦ୍ଧାକ୍ଷର, ଅନୁଧୃତ ଏକାକ୍ଷର, ଧୃତ ଦୁଇ ଅକ୍ଷର, ଲଘୁ ଚାରି ଅକ୍ଷର, ଗୁର୍ ଆଠ ଅକ୍ଷର, ପ୍ଳୁତ ବାର ଅକ୍ଷର, କାକପଦ ଷୋଳ ଅକ୍ଷର ।

ଅଙ୍ଗନାମ ॥

ଶ୍ଳୋକଃ- ବିରାମାନୁଧୃତେଚୈବ । ଧୃତଂଲଘୁଗୁରପ୍ଳୁତାଃ ॥
କାକପଦଞ୍ଚ ସପ୍ତୈତେ ଜ୍ଞେୟାନ୍ୟଙ୍ଗାଂ ନସଂଜ୍ଞେୟା ।୪୦।

ଅର୍ଥ- ବିରାମ । ଅନୂଧୃତ । ଧୃତ । ଲଘୁ । ଗୁର । ପ୍ଳୁତ । କାକପଦ । ଏହି ସାତ ଗୋଟି ଅଙ୍ଗ ।

ବିରାମ ॥

ଶ୍ଳୋକଃ- ଅନୁଧୃତାର୍ଦ୍ଧଂବିରାମେ । ଦ୍ୱିକଳା ତୁଲ୍ୟବାଚକାଃ ॥୪୧॥

ଅର୍ଥ- ଅନୁଧୃତାର୍ଦ୍ଧ, ବିରାମ, ଦ୍ୱିକଳା ବୋଲି ତିନି ଗୋଟି ବିରାମର ନାମ ।

ଅନୁଧୃତ ॥

ଶ୍ଳୋକଃ- ଅନୁଧୃତଂ ଚାର୍ଦ୍ଧଚନ୍ଦ୍ର- । ମବ୍ୟକ୍ତଂ ଚାନୁନାଶିକଂ ॥
ବିରାମଦ୍ରୁତିପଂଚୈତ- । ନ୍ନାମାଖ୍ୟାତମନୁଧୃତଂ ॥୪୨॥

ଅର୍ଥ- ଅନୁଧୃତ, ଅର୍ଧଚନ୍ଦ୍ର, ଅବ୍ୟକ୍ତ, ଅନୁନାଶିକ, ବିରାମଦ୍ରୁତି, ଏ ପାଞ୍ଚ ଅନୁଧୃତର ନାମ ।

ଧୃତ ॥

ଶ୍ଳୋକଃ- ଅର୍ଦ୍ଧମାତ୍ରଂ ଧୃତଂ ବ୍ୟୋମ । ବିନ୍ଦୁକଂ ବଳୟସ୍ତଥା ॥୪୩॥

ଅର୍ଥ- ଅର୍ଦ୍ଧମାତ୍ରା, ଧୃତ, ବ୍ୟୋମ, ବିନ୍ଦୁକ, ବଳୟ, ଏ ପାଞ୍ଚନାମ ଧୃତର ॥୪୩॥

ଲଘୁ ॥

ଶ୍ଳୋକଃ- ମାତ୍ରକଂ ସରଳଂ ହର୍ଷଂ । ଲଘୁବ୍ୟାପକମିତ୍ୟପି ॥୪୪॥

ଅର୍ଥଃ- ମାତ୍ରକ, ସରଳ, ହର୍ଷ, ଲଘୁ, ବ୍ୟାପକ, ଏ ପାଞ୍ଚ ଲଘୁର ନାମ ।

ଗୁରୁ ॥

ଶ୍ଳୋକଃ- ଦ୍ୱିମାତ୍ରକଂଗୁରର୍ବକ୍ରଂ । ଦୀର୍ଘାୟୁଶ୍ଚୁଳଂ ତଥା ॥୪୫॥

ଅର୍ଥ- ଦ୍ୱିମାତ୍ର, ଗୁର, ବକ୍ର, ଦୀର୍ଘାୟୁ, ଚୁଳ, ଏ ପାଞ୍ଚ ଗୁରର ନାମ ॥

ପ୍ଳୁତ ॥

ଶ୍ଳୋକଃ- ପ୍ଳୁତଂ ତ୍ରିମାତ୍ରକଂ ଦୀପ୍ତଂ । ତ୍ୱଙ୍ଗନାଚୋତ୍ତମଂତଥା ॥୪୬॥

ଅର୍ଥ- ପ୍ଳୁତ, ତ୍ରିମାତ୍ରକ, ଦୀପ୍ତ, ଅଙ୍ଗନା, ଉତ୍ତମ, ଏ ପାଞ୍ଚ ପ୍ଳୁତରନାମ ।

କାକପଦ ॥

ଶ୍ଳୋକଃ- ହଂସକାକପଦେଚୈବ । ଚତୁର୍ମାତ୍ରା ତଥୈବଚ ॥
ନିଃଶବ୍ଦହସ୍ତସଂଜ୍ଞେଚ । ନାମପଞ୍ଚଭିରୁଚ୍ୟତେ ॥୪୭॥

ଅର୍ଥ- ହଂସପଦ, କାକପଦ, ଚତୁର୍ମାତ୍ରା, ନିଃଶବ୍ଦ, ହସ୍ତସଂଜ୍ଞା, ଏ ପାଞ୍ଚ କାକପଦର ନାମ ।

ଅଙ୍ଗର ଅଧିଦେବତା ॥

ଶ୍ଳୋକଃ- ଧୃତସ୍ୟ ଦେବତା ଶମ୍ଭୁ । ର୍ଲଘୋଶ୍ଚଶିଖରିଣଃସୁତା ॥
ଅନୁଧୃତେଶିବାବୁଭୌ । ପ୍ଲୁତେବ୍ରହ୍ମାନସଂଶୟଃ ॥
ହରିର୍ବିରାମକସ୍ୟୈବ । ଲକ୍ଷ୍ମୀ କାକପଦେତଥା ॥
ଗୁରୋଶ୍ଚବୈନତେୟସ୍ୟା- । ଦଙ୍ଗାଧୀନାସ୍ୱଦେବତାଃ ॥୪୮॥

ଅର୍ଥ- ଧୃତର ଅଧିଦେବତା ଶମ୍ଭୁ, ଲଘୁର ପାର୍ବତୀ, ଅନୁଧୃତର ଶିବ ପାର୍ବତୀ, ପ୍ଲୁତର ବ୍ରହ୍ମା, ବିରାମର ହରି, କାକପଦର ଲକ୍ଷ୍ମୀ, ଗୁରର ଗରୁଡ଼ ।

ଅଙ୍ଗରକାନ୍ତି ॥

ଶ୍ଳୋକଃ- ବିରାମଂ ବୈଦୃମଂବର୍ଣ୍ଣଂ । ମଣିବର୍ଣ୍ଣମନୁଧୃତଂ ॥
ପୂର୍ଣ୍ଣଚନ୍ଦ୍ରନିଭୋ ବିନ୍ଦୁ । ସ୍ୱର୍ଣ୍ଣବର୍ଣ୍ଣୋଲଘୁର୍ଭବେତ୍ ॥
ଶୁକ୍ଳବର୍ଣ୍ଣୋ ଗୁରୁଶ୍ଚୈବ । ଶ୍ୟାମବର୍ଣ୍ଣଂ ପ୍ଲୁତଂ ତଥା ॥
ନିଃଶବ୍ଦଶ୍ଚ ଭବେତ୍ ବକ୍ରଂ । ବର୍ଣ୍ଣାଶ୍ଚୈତେପ୍ରକୀର୍ତ୍ତିତା ।୪୯।

ଅର୍ଥ- ବିରାମ ବିଦ୍ରୁମବର୍ଣ୍ଣ, ଅନୁଧୃତ ମଣିବର୍ଣ୍ଣ, ଧୃତ ଚନ୍ଦ୍ରବର୍ଣ୍ଣ, ଲଘୁ ସ୍ୱର୍ଣ୍ଣବର୍ଣ୍ଣ, ଗୁରୁ ଶୁକ୍ଳବର୍ଣ୍ଣ, ପ୍ଲୁତ ଶାମବର୍ଣ୍ଣ, କାକପଦ ହୀରା ବର୍ଣ୍ଣ ।

କାକପଦ ॥

ଶ୍ଳୋକଃ- ଦ୍ୱିକଳା ବିନ୍ଦୁମାତ୍ରଞ୍ଚ । ଲଘୁଗୁରୁପ୍ଲୁତଂ ତଥା ॥
ସର୍ବଶେଷେ କାକପଦଂ । ମୁନିଭିଃ କଥିତଂ କ୍ରମାତ୍ ॥୫୦॥

ଅର୍ଥ- ବିରାମ, ଅନୁଧୃତ, ଧୃତ, ଲଘୁ, ଗୁରୁ, ପ୍ଲୁତ, ସମସ୍ତ ଶେଷରେ କାକପଦ ରହଇ ବୋଲି ମୁନିମାନେ କହିଅଛନ୍ତି ।

ତାଳର ଉପସର୍ଗାଙ୍ଗୁଳି ॥

ଶ୍ଳୋକଃ- ଏକାଙ୍ଗୁଳି ବିରାମଞ୍ଚ । ଦ୍ୱିତୟଞ୍ଚେଦନୁଧୃତଂ ॥
ଧୃତମଙ୍ଗୁଳିଚତୁଷ୍କେଚ । ଲଘୁରଷ୍ଟାଙ୍ଗୁଳିସ୍ମୃତଃ ।'

ଗୁରୁ ଷୋଡ଼ଶକଣ୍ଚୈବ । ଚତୁର୍ବିଂଶେ ପ୍ଳୁତୋଭବେତ୍ ॥
ଦ୍ୱାତ୍ରିଂଶଦଙ୍ଗୁଳିଃକାକ- । ପଦେଚ କଥ୍ୟତେବୁଧୈଃ ॥୫୧॥

ଅର୍ଥ- ବିରାମକୁ ଅର୍ଦ୍ଧ ଅଙ୍ଗୁଳ, ଅନୁଧୃତକୁ ଦୁଇ ଅଙ୍ଗୁଳ, ଧୃତକୁ ଚାରି ଅଙ୍ଗୁଳ, ଲଘୁକୁ ଆଠ ଅଙ୍ଗୁଳ, ଗୁରୁକୁ ଷୋଳ ଅଙ୍ଗୁଳ,ପ୍ଳୁତକୁ ଚବିଶ ଅଙ୍ଗୁଳ, କାକପଦକୁ ବତିଶ ଅଙ୍ଗୁଳ ଉଚ୍ଚରେ ଟେକି ପକାଇବ । ଏହିପରି ପଣ୍ଡିତମାନେ କହିଅଛନ୍ତି ।

### ତାଳପକାଇବାକ୍ରମ ॥

ଶ୍ଳୋକଃ- ଦ୍ୱିକଳା ନାଶିକାବିନ୍ଦୁ । ବକ୍ରଂ ଚ ଦୀପ୍ତସଂଜ୍ଞକଂ ॥
ଲଘୋର୍ଜ୍ଜାତିକ୍ରମେଣୈବ । ସର୍ବେ ତେ ଲୟଗାସ୍ମୃତାଃ ॥୫୨॥

ଅର୍ଥ- ବିରାମ ଆଦି କରି ଅନୁଧୃତ ଗୁରୁ ପ୍ଳୁତ କାକପଦ ଲଘୁ ଜାତି ବିଭାଗ କ୍ରମରେ ସର୍ବେ ଲୟରେ ନିର୍ଭର ।

### ସପ୍ତତାଳ ଲକ୍ଷଣ ॥

ଶ୍ଳୋକଃ- ଧୃବୋମଠାରୂପକଶ୍ଚ । ଝମ୍ପାତ୍ରିପୁଟ ଏବ ଚ ॥
ଅଟତାଳୈକତାଳଶ୍ଚ । ସପ୍ତତାଳଃ ପ୍ରକୀର୍ତ୍ତିତାଃ ॥୫୩॥

ଅର୍ଥ- ଧୃବ, ମଠା, ରୂପକ, ଝମ୍ପା, ତ୍ରିପୁଟା, ଅଟତାଳ, ଏକତାଳ, ଏପରି ସପ୍ତତାଳ

### ଧୃବତାଳର ଜନ୍ମଲକ୍ଷଣ ॥

ଶ୍ଳୋକଃ- ଭାନୁବାରେ ପୁଷ୍ୟରୁକ୍ଷେ । ଧୃବତାଳ ସମୁଦ୍‌ଭବଃ ॥
ଶ୍ୱେତବର୍ଣ୍ଣ ବିଶାଳାକ୍ଷୋ । ଲଧୃତଂ ଲଲଶୋଭିତଃ ॥୫୪॥

ଅର୍ଥ- ରବିବାରେ ପୁଷ୍ୟାନକ୍ଷତ୍ରେ, ଧୃବନାମକ ତାଳର ଜାତ, ଶୁକ୍ଳବର୍ଣ୍ଣ, ଦୀର୍ଘନେତ୍ର, ଆଦ୍ୟେ ଲଘୁ, ମଧ୍ୟେ ଧୃତ, ପ୍ରାନ୍ତେ ଦ୍ୱିଲଘୁ ଦ୍ୱାରା ଶୋଭାପାଏ ।

### ମଠାତାଳର ଜନ୍ମଲକ୍ଷଣ ॥

ଶ୍ଳୋକଃ- ସୋମବାରେ ହସ୍ତାରୁକ୍ଷେ । ମଠାତାଳ ସମୁଦ୍‌ଭବଃ ॥
ଶ୍ୟାମମର୍ଣ୍ଣ ବିଶାଳାକ୍ଷ । ନାନାଭରଣଶୋଭିତଃ ॥
ଉର୍ଦ୍ଧରୀ ବୃହତୀଛନ୍ଦ । କାମସ୍ୱାଧିନଦେବତା ॥
ପ୍ଲକ୍ଷଦ୍ୱୀପଂ ଚ ବାସସ୍ତୁ । ବୃଷଲଗ୍ନଂ ପ୍ରକୀର୍ତ୍ତିତଂ ॥୫୫॥

ଅର୍ଥ- ସୋମବାରେ, ହସ୍ତା ନକ୍ଷତ୍ରେ, ମଠା ତାଳର ଜାତ, ଶ୍ୟାମବର୍ଣ୍ଣ, ଦୀର୍ଘନେତ୍ର, ନାନା ଅଳଙ୍କାରରେ ଶୋଭିତ । ଏହାର ଉର ଅତ୍ୟନ୍ତ ଚମତ୍କାର । କାମ ସ୍ୱାଧୀନଦେବତା, ପ୍ଲକ୍ଷଦ୍ୱୀପରେ ନିବାସ । ଏ ବୃଷ ଲଗ୍ନରେ ଜାତ ।

### ରୂପକତାଳର ଜନ୍ମଲକ୍ଷଣ ॥

ଶ୍ଳୋକଃ- କୁଜବାରେ ମଘାରୁକ୍ଷେ । ରୂପକଶ୍ଚୋପଯାୟତେ ॥
ଯୁଗ୍ମଲଗ୍ନମିତିକ୍ଷାତଂ । ରୂପକେତୁ ଧୃତଂ ଲଘୁଃ ॥୫୬॥

ଅର୍ଥ- ମଙ୍ଗଳବାରେ ମଘା ନକ୍ଷତ୍ରେ, ରୂପକ ତାଳର ଜାତ । ଏହାର ଲଗ୍ନମିଥୁନ, ଏହାର ରୂପ ଧୃତ ଲଘୁରେ ଶୋଭିତ ।

### ଝମ୍ପାତାଳର ଜନ୍ମଲକ୍ଷଣ ॥

ଶ୍ଳୋକଃ- ବୁଧବାରେ ପୂର୍ବଭାଦ୍ରେ । ଝମ୍ପାତାଳ ସମୁଦ୍‌ଭବଃ
କ୍ରୋଞ୍ଚଦୀପେ ନିବାସସ୍ତୁ । କର୍କଟଲଗ୍ନ ସମ୍ଭବଃ ॥୫୭॥

ଅର୍ଥ- ବୁଧବାରେ ପୂର୍ବଭାଦ୍ର ନକ୍ଷତ୍ରରେ ଝମ୍ପାତାଳର ଜାତ । କ୍ରୋଞ୍ଚ ଦ୍ୱୀପରେ ନିବାସ, ଜନ୍ମ କାଳକୁ କର୍କଟ ଲଗ୍ନ ।

### ତ୍ରିପୁଟାତାଳର ଜନ୍ମଲକ୍ଷଣ

ଶ୍ଳୋକଃ- ଗୁରୁବାରେ ଜ୍ୟେଷ୍ଠାରୁକ୍ଷେ । ତିପୁଟସ୍ୟ ସମୁଦ୍‌ଭବଃ ॥
କୀଟଲଗ୍ନମିତି ଖ୍ୟାତ-। ମୀଶ୍ୱରାଦ୍ ପଂଣିତଂ ତଥା ॥୫୮॥

ଅର୍ଥ- ଗୁରୁବାରେ ଜ୍ୟେଷ୍ଠା ନକ୍ଷତ୍ରେ, ତିପୁଟା ତାଳର ଜାତ । ଏହାର ଲଗ୍ନ ବିଛା ବୋଲି ଈଶ୍ୱର କହିଅଛନ୍ତି ।

### ଅଟତାଳ ॥

ଶ୍ଳୋକଃ- ଶୁକ୍ରବାରେ ଚିତ୍ରର୍କ୍ଷେ । ଦ୍ୱଟତାଳ ସମୁଦ୍‌ଭବଃ ॥
ଧନୁର୍ଲଗ୍ନ ମିତିଖ୍ୟାତଂ । ଲଘୁଦ୍ୱନ୍ଦ ଧୃତଦ୍ୱୟଂ ॥୫୯॥

ଅର୍ଥ- ଶୁକ୍ରବାରେ ଚିତ୍ରା ନକ୍ଷତ୍ରରେ, ଅଟତାଳର ଜାତ । ଏହାର ଧନୁଲଗ୍ନ । ଦୁଇ ଲଘୁ ଦୁଇ ଧୃତରେ ଶୋଭିତ ଅଟେ ।

### ଏକତାଳ ॥

ଶ୍ଳୋକଃ- ମନ୍ଦବାରେ ସ୍ୱାତିରୁକ୍ଷେ । ଏକତାଳସମୁଦ୍‌ଭବଃ ॥
ବଜ୍ରବର୍ଣ୍ଣୋ ରକ୍ତନେତ୍ର- । ସ୍ତୁଳାଲଗ୍ନପ୍ରକୀର୍ତ୍ତିତଂ ॥୬୦॥

ଅର୍ଥ- ଶନିବାରେ ସ୍ୱାତି ନକ୍ଷତ୍ରରେ, ଏକତାଳର ଜାତ । ଏହାର ହୀରାପରି ବର୍ଣ୍ଣ, ଆରକ୍ତନୟନ, ଜନ୍ମକାଳକୁ ତୁଳ ଲଗ୍ନ ।

### ତାଳମାନଙ୍କ ରୁଷି ॥

ଶ୍ଳୋକଃ- କଶ୍ୟପ ଧ୍ରୁବତାଳସ୍ୟ । ମଠାୟାଶ୍ଚାତ୍ରିରିଷ୍ୟତେ ॥
ରୂପକସ୍ୟ ଭରଦ୍ୱାଜ- । ଝମ୍ପାୟାଃ କୌଶିକସ୍ତଥା ॥

ଗୌତମଂତ୍ରିପୁଟସ୍ୟାସୀତ୍ ବଶିଷ୍ଠୋଦ୍ଭୂଃ ଦଟଶତୁ ॥
ଯମଦଗ୍ନିର୍ଶ୍ଚୈକତାଳେ । ଋଷୟଃକଥିତାବୁଧୈଃ ॥୬୧॥

ଅର୍ଥ- ଧ୍ରୁବତାଳର ଋଷି କଶ୍ୟପ, ମଠାର ଅତ୍ରି, ରୂପକର ଭରଦ୍ୱାଜ, ଝମ୍ପାର କୌଶିକ, ତ୍ରିପୁଟାର ଗୌତମ, ଅଟତାଳର ବଶିଷ୍ଠ, ଏକ ତାଳର ଋଷି ଯମଦଗ୍ନି ॥

ତାଳମାନଙ୍କ ଜନ୍ମ ଦ୍ୱୀପ

ଶ୍ଳୋକଃ- ଧ୍ରୁବତାଳମୁଦ୍‌ଭୂତୋ ଜମ୍ବୁଦ୍ୱୀପେଚ କଥ୍ୟତେ ॥
ପ୍ଲକ୍ଷଦ୍ୱୀପେ ମଠାତାଳୋ । ରୂପକଂ କୁଶଦ୍ୱୀପକେ ॥
ଝମ୍ପକଃ କ୍ରୌଞ୍ଚଦ୍ୱୀପେତୁ । ତ୍ରିପୁଟା ଜନ୍ମକଥ୍ୟତେ ।
ସାକଲ୍ୟ ଦ୍ୱୀପମଧ୍ୟେତୁ । ଶାଲ୍ମଳୀ ଚାଟତାଳିକେ ॥
ଏକତାଳ ସମଦ୍‌ଭୂତିଃ । ପୁଷ୍କରେ କଥିତା ବୁଧୈଃ ॥ ୬୨॥

ଅର୍ଥ- ଜମ୍ବୁଦ୍ୱୀପେ ଧ୍ରୁବତାଳର ଜନ୍ମ । ପ୍ଲକ୍ଷଦ୍ୱୀପେ ମଠାତାଳ । କୁଶଦ୍ୱୀପେ ରୂପକତାଳ । କ୍ରୌଞ୍ଚଦ୍ୱୀପେ ଝମ୍ପାତାଳ । ଶାକଲ୍ୟଦ୍ୱୀପେ ତ୍ରିପୁଟା । ଶାଲ୍ମଳୀଦ୍ୱୀପେ ଅଟତାଳ । ପୁଷ୍କରଦ୍ୱୀପେ ଏକତାଳ ।୬୨।

ତାଳର ଅଧୀନ ଗ୍ରହ ॥

ଶ୍ଳୋକଃ- ଧ୍ରୁବତାଳେ ସହସ୍ରାଂଶୁ- । ର୍ମଠାୟାଂ ଚନ୍ଦ୍ରଦେବତା ॥
ରପକେଭୌମଖେଟଶ୍ଚ । ଝମ୍ପାତାଳେ ନିଶେଶଜଃ ॥
ତ୍ରିପୁଟେ ବାକ୍‌ପତିର୍ଶ୍ଚୈବ । ଭାର୍ଗବଶ୍ଚାଟତାଳକେ ॥
ଏକତାଳେ ଶନିପ୍ରୋକ୍ତୋ । ଗ୍ରହାଣାଂସ୍ୱାମିତେରିତା ॥୬୩॥

ଅର୍ଥ- ଧ୍ରୁବତାଳର ସୂର୍ଯ୍ୟ, ମଠାତାଳର ଚନ୍ଦ୍ର, ରପକତାଳର ମଙ୍ଗଳ, ଝମ୍ପାତାଳର ବୁଧ, ତ୍ରିପୁଟାର ବୃହସ୍ପତି, ଅଟତାଳର ଶୁକ୍ର, ଏକତାଳର ଶନିଶ୍ଚର ।

ତାଳମାନଙ୍କ ଜ୍ୟୋତି

ଶ୍ଳୋକଃ- ଧ୍ରୁବୋ ମାଣିକ୍ୟଦୀପ୍ତଶ୍ଚ । ମଠା ବୈଡୁର୍ଯ୍ୟୋସପ୍ରଭଃ ॥
ରପକଂ ବିଦ୍ରୁମାଭଞ୍ଚ । ଝମ୍ପାମରକତପ୍ରଭା ॥
ତ୍ରିପୁଟା ପୁଷ୍ୟରାଗାଚ । ନୀଳବର୍ଣ୍ଣୋଟତାଳକଃ ॥
ଏକତାଳସ୍ତ କଥିତଂ । ବ୍ରହ୍ମବଜ୍ର ସମପ୍ରଭଃ ॥୬୪॥

| | |
|---|---|
| ଅର୍ଥ- | ଧ୍ରୁବତାଳର ମାଣିକ୍ୟ ଜ୍ୟୋତି, ମଠାତାଳର ବୈଡୁର୍ଯ୍ୟ ଜ୍ୟୋତି, ରପକର ପ୍ରବାଳ ଜ୍ୟୋତି, ଝମ୍ପାର ମରକତ ଜ୍ୟୋତି, ତ୍ରିପୁଟାର ପୁଷ୍ୟରାଗଜ୍ୟୋତି, ଅଟତାଳର ନୀଳାଭଜ୍ୟୋତି, ଏକତାଳର ବ୍ରହ୍ମଜ୍ୟୋତି ହୀରାର ଜ୍ୟୋତି । |

ତାଳମାନଙ୍କର ଅଙ୍ଗଭେଦ ॥

| | |
|---|---|
| ଶ୍ଳୋକଃ- | ଆଦ୍ୟେଲଘୁ ଧୃତଂମଧ୍ୟେ । ପ୍ରାନ୍ତେଲଘୁ ଯୁଗଂଯଦି ॥<br>ଧ୍ରୁବତାଳ ଇତିଖ୍ୟାତଃ । ଭରତାଦିବିଶାରଦୈଃ ॥୬୫॥ |
| ଅର୍ଥ- | ଆଦ୍ୟେ ଲଘୁ, ଧୃତ ମଧ୍ୟେ, ପ୍ରାନ୍ତେ ଦୁଇ ଲଘୁ ଥିଲେ ତାହାକୁ ଧ୍ରୁବ ତାଳ ବୋଲି, ଭରତାଦି ମୁନିମାନେ କହିଅଛନ୍ତି । |
| ଶ୍ଳୋକଃ- | ଆଦ୍ୟେ ପ୍ରାନ୍ତେ ଲଘୁସ୍ୟାତାଂ । ମଧ୍ୟେ ଧୃତ ସମନ୍ୱିତଃ ।<br>ମଠାତାଳ ଇତି ଖ୍ୟାତୋ । ଦେବାନାଂ ବଚନଂ ତଥା ॥୬୬॥ |
| ଅର୍ଥ- | ଆଦ୍ୟେ ପ୍ରାନ୍ତେ ଲଘୁ, ମଧ୍ୟେ ଧୃତ ସଂଯୁକ୍ତ ହେଲେ ତାହାକୁ ମଠାତାଳ ବୋଲି ଦେବତାମାନେ କହିଅଛନ୍ତି । |
| ଶ୍ଳୋକଃ- | ଧୃତଂଚୈକଂ ଲଘୁଶ୍ଚୈକୋ । ଶାସ୍ତ୍ରେଦୃଷ୍ଟୋ ଯଥାତଥା ॥<br>ରପତାଳ ଇତିଖ୍ୟାତୋ । ମୁନିଭିଃ ସକଳୈରପି ॥୬୭॥ |
| ଅର୍ଥ- | ଧୃତ ଏକ, ଲଘୁ ଏକ, ଏହିପରି ଥିଲେ ତାହାକୁ ରୂପକ ତାଳ ବୋଲି ମୁନିମାନେ କହିଅଛନ୍ତି । |
| ଶ୍ଳୋକଃ- | ଅନୁଧୃତଂ ଧୃତଞ୍ଚୈକଂ । ଲଘୁରେକଃ ପ୍ରଣିର୍ମିତଃ ॥<br>ଝମ୍ପାତାଳ ଇତିଖ୍ୟାତଃ । କଥିତଂ ଭରତାଦିଭିଃ ॥୬୮॥ |
| ଅର୍ଥ- | ଆଦ୍ୟେ ଅନୁଧୃତ, ମଧ୍ୟରେ ଧୃତ, ପ୍ରାନ୍ତରେ ଲଘୁଥିଲେ ଏହାକୁ ଝମ୍ପାତାଳ ବୋଲି ଭରତାଦି ମୁନିମାନେ କହିଅଛନ୍ତି । |
| ଶ୍ଳୋକଃ- | ଆଦ୍ୟେ ଲଘୁ ଧୃତଂ ଦ୍ୱନ୍ଦଂ । ତ୍ରିପୁଟା ତାଳ ଲକ୍ଷଣଂ ॥ |
| ଅର୍ଥ- | ଆଦ୍ୟେ ଲଘୁ, ମଧ୍ୟେ ପ୍ରାନ୍ତେ ଧୃତଥିଲେ ତ୍ରିପୁଟା ବୋଲି ॥୬୯॥ |
| ଶ୍ଳୋକଃ- | ଲଘୁର୍ଦ୍ୱୟଂ ଧୃତଦ୍ୱନ୍ଦ୍ୱ । ମଟତାଳଃ ପ୍ରକୀର୍ତ୍ତିତଃ ॥ |
| ଅର୍ଥ- | ଆଦ୍ୟେ ଦୁଇ ଲଘୁ, ପ୍ରାନ୍ତେ ଦୁଇ ଧୃତ ଥିଲେ ଅଟତାଳ ବୋଲି ॥୭୦॥ |
| ଶ୍ଳୋକଃ- | ଲଘୁରେକ ଶ୍ଚୈକତାଳେ । ତ୍ୱଙ୍ଗମେକଂପ୍ରକୀର୍ତ୍ତିତଂ ॥୭୧॥ |
| ଅର୍ଥ- | ଲଘୁ ଏକରେ ଏକତାଳ ବୋଲି । |

ତାଳମାନଙ୍କର ଧ୍ୟାନ ।।

ଶ୍ଲୋକଃ- ହଂସାରୂଢ଼ଂ ପୁରୋଭାଗେ । ତ୍ରୟୋଦଶ ସତୀଯୁତଂ ।
ଏକସ୍ତ୍ରୀ ଯୁକ୍ତବାମାଂକଂ । ରତ୍ନକେୟୁରଧାରଣଂ ।।
ଶ୍ୱେତବସ୍ତ୍ରଧରଂ ଶାନ୍ତଂ । ମୁକ୍ତାହାରବିଭୂଷିତଂ ।।
ଧୃବତାଳ ସଦାଧ୍ୟାୟେ । ଶଙ୍ଖଚକ୍ରଗଦାଧରଂ ।।୭୨।।

ଅର୍ଥ- ହଂସୋପବିଷ୍ଟ, ତ୍ରୟୋଦଶନାରୀ ପରିବେଷ୍ଟିତ, ରତ୍ନାଙ୍ଗଦ ଶ୍ୱେତ ବସ୍ତ୍ର-ମୁକ୍ତା-ହାର ବିଭୂଷିତ, ଏକସ୍ତ୍ରୀଯୁକ୍ତ ବାମାଙ୍କ, ଶଙ୍ଖ, ଚକ୍ର, ଗଦାଧାରୀ, ଶାନ୍ତମୂର୍ତ୍ତି ଯେ ଧୃବତାଳ ତାହାକୁ ଧ୍ୟାନ କରୁଅଛି ।

ମଠାତାଳ ।।

ଶ୍ଲୋକଃ- ମୟୂର ବାହିନୀଂ ବୀଣାଂ । ଚାକ୍ଷମାଳା ଧରାଂ ପରାଂ ।।
ଦଶସ୍ତ୍ରିସେବିତାଂରତ୍ନ- । ଭୂଷଣାଞ୍ଚ ଚତୁର୍ଭୁଜାଂ ।।
ଧ୍ୟାୟେ ଶ୍ରୀମଠିକା ବିପ୍ର । ମାତୃକା ଭୁବନେଶ୍ୱରୀଂ ।।୭୩।।

ଅର୍ଥ- ମୟୂରବାହିନୀ, ବୀଣାକ୍ଷମାଳାଧାରିଣୀ, ରତ୍ନାଳଂକାର ବିଭୂଷିତା, ଦଶସ୍ତ୍ରୀ ପରିବେଷ୍ଟିତା, ଚାତୁର୍ଭୁଜା ଦୁର୍ଗାସ୍ୱରୂପା ମଠା ତାଳକୁ ଧ୍ୟାନ କରୁଅଛି ।

ରପକତାଳ ।।

ଶ୍ଲୋକଃ- ଗଜାଦିରୂଢ଼ଂ ସ୍ତ୍ରିଷଟ୍‌କ- । ଯୁତଂ ବୀରରସାନ୍ୱିତଂ ।।
ହରିଦ୍ରାଭଂ ହରିଦ୍ୱସ୍ତ୍ର- । ଧରଂହାର ବିଭୂଷିତଂ ।।
ଧ୍ୟାୟେରୂପକତାଳାଖ୍ୟାଂ । ରତ୍ନକେୟୁରଭୂଷିତଂ ।।୭୪।।

ଅର୍ଥ- ଷଟ ସ୍ତ୍ରୀସହ ଗଜାଦି ବାହନୋପବିଷ୍ଟ, ବୀରରସାନ୍ୱିତ, ହାରିଦ୍ରବର୍ଣ୍ଣ, ପୀତାମ୍ବରଧାରୀ, ରତ୍ନାଙ୍ଗଦ, ନାନାହାର ବିମଣ୍ଡିତ ଯେ ରୂପକ ତାଳ, ତାହାକୁ ଧ୍ୟାନ କରୁଅଛି ।

ଝମ୍ପାତାଳ ।।

ଶ୍ଲୋକଃ- ସିଂହାସନେ ସମାରୂଢ଼ଂ । ଦଶସ୍ତ୍ରୀ ପରିବେଷ୍ଟିତାଂ ।।
ପୁରୁଷାଙ୍କସ୍ଥିତାଂ ସ୍ୱର୍ଣ୍ଣ- । ପ୍ରବାଳ ମଣିଭୂଷିତାଂ ।।
ରକ୍ତାମ୍ବରଧରାଂ ଝମ୍ପା । ଧ୍ୟାୟେସବୈଶ୍ୟମାତୃକାଂ ।।୭୫।।

ଅର୍ଥ- ସିଂହାସନୋପବିଷ୍ଟା, ଦଶସ୍ତ୍ରୀ ପରିବେଷ୍ଟିତା, ସ୍ୱର୍ଣ୍ଣ ପ୍ରବାଳ ମଣି ଭୂଷିତା, ପୁରୁଷାଙ୍କସ୍ଥିତା ରକ୍ତାମ୍ବରଧାରିଣୀ, ବୈଶ୍ୟଜାତି ଯେ ଝମ୍ପାତାଳ ତାହାକୁ ଧ୍ୟାନ କରୁଅଛି ।

ତ୍ରିପୁଟା ।।

ଶ୍ଳୋକଃ- ହରିମାରୂଢ଼ମାନନ୍ଦ । ରୂପଞ୍ଚ ସ୍ଫଟିକାକୃତିଂ ।।
ଖଡ଼ଗଖେଟଧରଂବାଣଂ । ଶରାସନ ସମନ୍ୱିତଂ ।।
ସମସ୍ତ ଭୂଷଣଂଧରଂ । ସପ୍ତସ୍ତ୍ରୀ ପରିବେଷ୍ଟିତଂ ।।
ଧ୍ୟାୟେ ତ୍ରିପୁଟତାଳମ୍ନେ । ହୃଦି ଶ୍ରୀ ରାଜବଲ୍ଲଭଂ ।।୭୬।।

ଅର୍ଥ- ସିଂହୋପବିଷ୍ଟ, ସ୍ଫଟିକାକୃତି, ଖଡ଼ଗଖେଟଧନୁର୍ବାଣଧାରୀ, ସପ୍ତସ୍ତ୍ରୀ ପରିବେଷ୍ଟିତ, ସମସ୍ତାଳଙ୍କାର ବିଭୂଷିତ ତ୍ରିପୁଟା ତାଳକୁ ଧ୍ୟାନ କରୁ ଅଛି ।

ଅଟତାଳ ।।

ଶ୍ଳୋକଃ- ସତୀଯୁକ୍ତଂ ବୃଷାରୂଢ଼ଂ । ଚାମର ସ୍ତ୍ରୀ ଯୁଗୋଜ୍ଜ୍ୱଳଂ ।।
ପଞ୍ଚପଞ୍ଚଯୁତଂଚାଙ୍ଗ । ତାଳରାଜଂ ନମାମ୍ୟହଂ ।।୭୭।।

ଅର୍ଥ- ସତୀସହବୃଷାରୂଢ଼ ଚାମର ଓ ସ୍ତ୍ରୀଯୁଗ୍ମରେ ଜାଜ୍ୱଲ୍ୟମାନ ପଞ୍ଚ ପଞ୍ଚାକ୍ଷରଯୁତ ତାଳରାଜା ଅଟତାଳକୁ ଧ୍ୟାନ କରୁଅଛି ।

ଏକତାଳ ।।

ଶ୍ଳୋକଃ- ରଥାରୂଢ଼ଂ ଶଙ୍ଖହସ୍ତଂ । ଚତୁସ୍ତ୍ରୀ ପରିବେଷ୍ଟିତଂ ।।
ଗୌରବସ୍ତ୍ରଧରଂଜ୍ଞାନ- । ମୁଦ୍ରାଃଽଭୟକରଦ୍ୱୟଂ ।।
ବ୍ରହ୍ମବଂଶୋଦ୍‌ଭବଂଚୈକ । ତାଳଂଧ୍ୟାୟାମି ମେ ହୃଦି ।।୭୮।।

ଅର୍ଥ- ରଥାରୂଢ଼, ଚତୁସ୍ତ୍ରୀ ପରିବେଷ୍ଟିତ, ଶଙ୍ଖହସ୍ତ ଜ୍ଞାନମୁଦ୍ରାବିଭୂଷିତକରଦ୍ୱୟଯୁତ, ଶୁକ୍ଳାମ୍ବରଧାରୀ, ବ୍ରହ୍ମବଂଶଜାତ ଏକତାଳକୁ ଧ୍ୟାନ କରୁଅଛି ।

ସ୍ତ୍ରୀ ତାଳଲକ୍ଷଣ ।।

ଶ୍ଳୋକଃ- ଆଦ୍ୟେ ପ୍ରାନ୍ତେର୍ଲଘୁସ୍ୟାତାଂ । ମଧ୍ୟେ ଧୃତ ସମନ୍ୱିତଂ ।।
ତତସ୍ତ୍ରୀତାଳନାମେତି । କଥିତଂ ପୂର୍ବସୂରିଭିଃ ।।୭୯।।

ଅର୍ଥ- ଆଦ୍ୟେ ପ୍ରାନ୍ତେ ଲଘୁ, ମଧ୍ୟରେ ଧୃତ, ଏହିପରି ଅଙ୍ଗଥିଲେ ସ୍ତ୍ରୀତାଳ ବୋଲି ପୂର୍ବରେ ଦେବତାମାନେ କହିଅଛନ୍ତି ।

ପୁରୁଷ ତାଳଲକ୍ଷଣ ।।

ଶ୍ଳୋକଃ- ଆଦ୍ୟେ ପ୍ରାନ୍ତେ ଲଘୁନସ୍ତୋ । ମଧ୍ୟେନାସ୍ତି ତୁ ବିନ୍ଦୁକଂ ।।
ତତ୍ତାଳ ନାମପୁରୁଷୋ । ମୁନିଭିଃ କଥିତଂପୁରା ।।୮୦।।

ଅର୍ଥ- ଆଦ୍ୟେ ପ୍ରାନ୍ତେ ଲଘୁ ନ ଥିବ, ମଧ୍ୟରେ ଧ୍ରୁତଥିବ, ଏପରି ତାଳକୁ ପୁରୁଷ ବୋଲି ମୁନିମାନେ କହିଅଛନ୍ତି ।

ନପୁଂଷକ ତାଳଲକ୍ଷଣ

ଶ୍ଳୋକଃ- ନ ସନ୍ତି ଲଘବୋଯତ୍ର । ତତ୍ତାଳଂକ୍ଳୀବନାମକଂ ॥୮୧॥

ଅର୍ଥ- ଲଘୁ ଯେ ତାଳରେ ନ ଥାଏ ସେ ତାଳକୁ ନପୁଂଷକ କହି ।

ଗଣବିଷୟ

ଶ୍ଳୋକଃ- ଚନ୍ଦ୍ରସୂର୍ଯ୍ୟାଗ୍ନିନେତ୍ରଶ । ଶଙ୍କରସ୍ୟ ମୁଖାମ୍ବୁଜାତ୍ ॥
ଗୁରୁବସ୍ତ୍ର ୟଏବୈତେ । ଜାତା ମ ଗଣତାଂଯୟୁଃ ॥
ଯାତା ସପ୍ତଗଣାସ୍ତସ୍ମା- । ନ୍ମଗଣାଦ୍ୟ ଗଣାଦୟଃ ॥
ଯରୋସତୌଜଭୌନାନ୍ତା । ସ୍ତେ୍ୟବନ୍ତେ କଥିତାଃ କ୍ରମାତ୍ଃ ॥୮୨॥

ଅର୍ଥ- ଚନ୍ଦ୍ର ସୂର୍ଯ୍ୟ ଅଗ୍ନିନେତ୍ର ଯାହାଙ୍କର ଏବଂ ଭୂତ ଶଙ୍କର, ତାହାଙ୍କ ନେତ୍ରରୁ ଗୁରୁତ୍ରୟ ଜାତ ହେଲେ, ସେ ମଗଣ ନାମକୁ ପ୍ରାପ୍ତ ହେଲେ । ସେ ମଗଣରୁ ଯ ଗଣାଦି ସପ୍ତଗଣ କ୍ରମରେ ଜାତ ହେଲେ । ପ୍ରଥମରେ ମଗଣରୁ ଯଗଣ ଜାତ ହେଲା, ଯଗଣରୁ ରଗଣ, ରଗଣରୁ ସଗଣ, ସଗଣରୁ ତଗଣ, ତଗଣରୁ ଜଗଣ, ଜଗଣରୁ ଭଗଣ ଓ ଭଗଣରୁ ନଗଣ ଏପରି ଜାତ ହେଲେ ।

| ୧ | ୨ | ୩ | ୪ | ୫ | ୬ | ୭ | ୮ |
|---|---|---|---|---|---|---|---|
| ମଗଣ | ଯଗଣ | ରଗଣ | ସଗଣ | ତଗଣ | ଜଗଣ | ଭଗଣ | ନଗଣ |
| ऽऽऽ | ।ऽऽ | ऽ।ऽ | ।।ऽ | ऽऽ। | ।ऽ। | ऽ।। | ।।। |
| ଗଗଗ | ଲଗଗ | ଗଲଗ | ଲଲଗ | ଗଗଲ | ଲଗଲ | ଗଲଲ | ଲଲଲ |

ଶ୍ଳୋକଃ- ମସ୍ତ୍ରିଗୁରୁସ୍ତ୍ରିଲଘୁଶ୍ଚନକାରୋ । ଭାଦିଗୁରୁଃପୁନରାଦିଲଘୁର୍ଯ୍ୟ ॥
ଜୋଗୁରୁମଧ୍ୟଶ୍ଚରୋଲଘୁମଧ୍ୟଃ । ସୋନ୍ତଗୁରୁଃ କଥିତୋଽନ୍ତଲଘୁସ୍ତଃ ॥୮୩॥

ଅର୍ଥ- ତିନୋଟି ଗୁରୁରେ ମଗଣ, ତିନିଗୋଟି ଲଘୁରେ ନଗଣ, ଗୁରୁ ଆଦ୍ୟେ ଥାଇ ଦୁଇ ଲଘୁଥିଲେ ଭଗଣ, ଆଦ୍ୟେ ଲଘୁ ପ୍ରାନ୍ତେ ଦୁଇ ଗୁରୁ ଥିଲେ ଯଗଣ ଆଦ୍ୟେ ଲଘୁ ମଧ୍ୟେ ଗୁରୁ ପ୍ରାନ୍ତେ ଲଘୁ ଥିଲେ ଜଗଣ, ଆଦ୍ୟେ ଗୁରୁ ମଧ୍ୟେ ଲଘୁ ପ୍ରାନ୍ତେ ଗୁରୁ ଥିଲେ ରଗଣ, ଆଦ୍ୟେ ଲଘୁ ମଧ୍ୟେ ଲଘୁ ପ୍ରାନ୍ତେ ଗୁରୁ ଥିଲେ ସଗଣ, ଆଦ୍ୟେ ଗୁରୁ ମଧ୍ୟେ ଗୁରୁ ପ୍ରାନ୍ତେ ଲଘୁଥିଲେ ତଗଣ । ଏହିପରି ଗଣମାନଙ୍କ ନିର୍ଣ୍ଣୟ ।

ଧ୍ରୁବାଦି ସପ୍ତତାଳମାନଙ୍କ ଗୀତ

ରାଗ ସାବେରି ॥

ଜୟ ଜୟ ବ୍ରଜପୁର ନର ନାୟକ । ଧ୍ରୁବ ॥ ଆଶ୍ରିତ ଜନ ପୋଷକ । ମଠ ॥
ଚନ୍ଦ୍ରକଧର ॥ ରପକ ॥ ପରମାନନ୍ଦମୟ ॥ ଝମ୍ପା ॥ ମଣି ମୁକୁଟଧର ॥ତ୍ରିପୁଟା ॥
ସଂନ୍ତତେହଂବନ୍ଦେ ॥ ଅଟତାଳ ॥ ତବ ପୁରତେ ॥ ଏକତାଳ ॥
ଏହି ଗୀତକୁ ସପ୍ତତାଳରେ ଗାଇବ ଓ ଭିନ୍ନ ଭିନ୍ନ ତାଳରେ ଗାଇବ ।

ଶହେଦଶତାଳ

ଶ୍ଳୋକଃ-

ଚଂଚପୁଟଚାଚପୁଟ । ସ୍ୱଟିକାପୁତ୍ରକୋଽସ୍ତଥା ॥
ସମ୍ପର୍କେଷ୍ଟକଉଦ୍‌ଘାଟ । ଆଦିତାଳଶ୍ଚଦର୍ପଣଃ ॥
ଚର୍ଚ୍ଚରିସିଂହଲୀଳଶ୍ଚ । କନ୍ଦର୍ପସିଂହବିକ୍ରମଃ ॥
ଶ୍ରୀରଙ୍ଗ ରଙ୍ଗଲୀଳଶ୍ଚ । ରଙ୍ଗତାଳ ପରିକ୍ରମଃ ॥
ପ୍ରତ୍ୟଙ୍ଗେ ଗଜଲୀଳଶ୍ଚ । ତ୍ରିଭିନ୍ନବୀରବିକ୍ରମଃ ॥
ହଂସଲୀଳା ବର୍ଣ୍ଣଭିନ୍ନା । ରାଜଚୂଡ଼ାମଣିସ୍ତଥା ॥
ରଙ୍ଗଦ୍ୟୋତରାଜତାଳ । ସିଂହ ବିକ୍ରୀଡ଼ିତୋସ୍ତଥା ॥
ବନମାଳୀ ବର୍ଣ୍ଣତାଳ । ମିଶ୍ରରଙ୍ଗ ପ୍ରଦୀପକଃ ॥
ହଂସନାଦଃ ସିଂହନାଦ । ମଲ୍ଲିକାମୋଦସଞ୍ଜ୍ଞକଂ ॥
ତାରାବଳିଶର୍ଭଲୀଳେ । ରଙ୍ଗାଭରଣୟେବଚ ॥
ତତଃତୁରଙ୍ଗଲୀଳେଚ । ତସ୍ୱାଜସିଂହନନ୍ଦନଃ ॥
ଜୟଶ୍ରୀ ବିଜୟାନନ୍ଦ । ପ୍ରତିତାଳଃଦ୍ୱିତୀୟକ ॥
ମକରନ୍ଦଃକୀର୍ତ୍ତିତାଳ । ବିଜୟଜୟମଙ୍ଗଳଃ ॥
ରାଜବିଦ୍ୟାପଞ୍ଚମଠା । ଜୟତାଳଃସୁଦୁର୍ବଳ ॥
ତତୋନିସ୍ୱାରିକାକ୍ରୀଡ଼ା । ତ୍ରିଭଙ୍ଗିକୋକିଳପ୍ରିୟଃ ॥
ଶ୍ରୀକୀର୍ତ୍ତିବିନ୍ଦୁମାଳିଶ୍ଚ । ସମତାଳଶ୍ଚନନ୍ଦନ ॥
ଭଦିକ୍ଷଣୋମଣୀକାଚଃ । ଡେକିଂକାବର୍ଣ୍ଣମଠିକା ॥
ଅଭିନନ୍ଦସ୍କନ୍ତରାଳ । ଲଘୁତାଳବିନାୟକଃ ॥
ଅନଙ୍ଗତାଳବିଷମୋ । ନାନ୍ଦିକୁନ୍ଦମୁକୁନ୍ଦକେ ॥
ବ୍ରହ୍ମତାଳରୁଦ୍ରତାଳ । ଚତୁସ୍ତାଳଶ୍ଚଖୁଂଖୁଡ଼ି ॥

| | | | |
|---|---|---|---|
| ଅଭଙ୍ଗରାଜଝଂକାର | । | ଷଟ୍‌ତାଳଲଘୁଶେଖରଃ | ॥ |
| ପ୍ରତାପଶେଖରଶ୍ଚାନ୍ୟୋ | । | ଗଜଝମ୍ପାଚତୁର୍ମୁଖଃ | ॥ |
| ଝଂକାରପ୍ରତିମଠଶ୍ଚ | । | ସ୍ତଥାତାଳତୃତୀୟକଃ | ॥ |
| ବାଦକାନଳକୁବେର | । | ବସନ୍ତଲଳିତଂଶଶି | ॥ |
| କରଶାଖାରବ୍‌ଲମଠ | । | ବର୍ଦ୍ଧବର୍ଣ୍ଣୋଯତିସ୍ତଥା | ॥ |
| ରାଜନାରାୟଣସ୍ତସ୍ମାତ୍ | । | କଂକାଳ ଚଂଚତାଳକେ | ॥ |
| ରତିମଦନୋ ବିଜ୍ଞେୟୌ | । | ପାର୍ବତୀ ଲୋଚନସ୍ତଥା | ॥ |
| ତତଃସାରଙ୍ଗତାଳଶ୍ଚ | । | ତତଃ ଶ୍ରୀନନ୍ଦର୍ଦ୍ଧନଃ | ॥ |
| ଲୀଳାବିଲୋକିତାଶ୍ଚାନ୍ୟୋ | । | ଲଳିତପ୍ରିୟଯେବଚ | ॥ |
| ଜନକର୍ଣ୍ଣେବଲକ୍ଷ୍ମିଶ୍ଚ | । | ରାଜବର୍ଦ୍ଧନମଣ୍ଡକେ | ॥ |
| ଉତ୍ସବଶ୍ଚେତିତାଳାନାଂ | । | ଦଶାଧିକଶତଂମତଂ | ॥ |
| ୟେତେକୃଷ୍ଣେନନିର୍ଣ୍ଣୀତା | । | ରାସକ୍ରୀଡ଼ାଦିପକ୍ଷତୌ | ॥ |

ଏହି ତାଳମାନେ ଶ୍ରୀକୃଷ୍ଣ ରାସଲୀଳା ସମୟେ କରିଅଛନ୍ତି ॥

| ସଂଖ୍ୟା | ତାଳର ନାମ | ସଂଖ୍ୟା | ତାଳର ନାମ |
|---|---|---|---|
| ୧ | ଚଞ୍ଚତ୍ପୁଟ | ୧୪ | ରଙ୍ଗତାଳ |
| ୨ | ଚାଚତ୍ପୁଟ | ୧୫ | ପରିକ୍ରମ |
| ୩ | ସଟୀକାପୁତ୍ର | ୧୬ | ପ୍ରତ୍ୟଙ୍ଗ |
| ୪ | ସମ୍ପର୍କେଷ୍ଟା | ୧୭ | ଗଜଲୀଳା |
| ୫ | ଉଦ୍‌ଘାଟ | ୧୮ | ତ୍ରିଭିନ୍ନ |
| ୬ | ଆଦିତାଳ | ୧୯ | ବୀରବିକ୍ରମ |
| ୭ | ଦର୍ପଣ | ୨୦ | ହଂସଲୀଳା |
| ୮ | ଚର୍ଚ୍ଚରି | ୨୧ | ବର୍ଣ୍ଣଲୀଳା |
| ୯ | ସିଂହଲୀଳା | ୨୨ | ରାଜଚୂଡ଼ାମଣି |
| ୧୦ | କନ୍ଦର୍ପ | ୨୩ | ରଙ୍ଗଦ୍ୟୋତ |
| ୧୧ | ସିଂହବିକ୍ରମ | ୨୪ | ରାଜତାଳ |
| ୧୨ | ଶ୍ରୀରଙ୍ଗ | ୨୫ | ସିଂହବିକ୍ରୀଡ଼ିତ |
| ୧୩ | ରଙ୍ଗଲୀଳା | ୨୬ | ବନମାଳି |

| ସଂଖ୍ୟା | ତାଳର ନାମ | ସଂଖ୍ୟା | ତାଳର ନାମ |
|---|---|---|---|
| ୨୭ | ବର୍ଣ୍ଣତାଳ | ୫୩ | କୋକିଳପ୍ରିୟ |
| ୨୮ | ମିଶ୍ର | ୫୪ | ଶ୍ରୀକାନ୍ତ |
| ୨୯ | ରଙ୍ଗପ୍ରଦୀପକ | ୫୫ | ବିନ୍ଦୁମାଳି |
| ୩୦ | ହଂସନାଦ | ୫୬ | ସମତାଳ |
| ୩୧ | ସିଂହନାଦ | ୫୭ | ନନ୍ଦନ |
| ୩୨ | ମଲ୍ଲିକାମୋଦ | ୫୮ | ଉଦିକ୍ଷଣ |
| ୩୩ | ତାରାବଳି | ୫୯ | ମଣିକାଚ |
| ୩୪ | ଶରଭଲୀଳେ | ୬୦ | ଢେକିଂକା |
| ୩୫ | ରଙ୍ଗାତରଣ | ୬୧ | ବର୍ଣ୍ଣମଠିକା |
| ୩୬ | ତୁରଙ୍ଗଲୀଳା | ୬୨ | ଅଭିନନ୍ଦ |
| ୩୭ | ସିଂହନନ୍ଦନ | ୬୩ | ଅନ୍ତରାଳ |
| ୩୮ | ଜୟଶ୍ରୀ | ୬୪ | ଲଘୁତାଳ |
| ୩୯ | ବିଜୟାନନ୍ଦ | ୬୫ | ବିନାୟକତାଳ |
| ୪୦ | ପ୍ରତିତାଳ | ୬୬ | ଅନଙ୍ଗ |
| ୪୧ | ଦ୍ୱିତୀୟକ | ୬୭ | ବିଷମ |
| ୪୨ | ମକରନ୍ଦ | ୬୮ | ନନ୍ଦି |
| ୪୩ | କୀର୍ତ୍ତିତାଳ | ୬୯ | କୁନ୍ଦ |
| ୪୪ | ବିଜୟ | ୭୦ | ମୁକୁନ୍ଦ |
| ୪୫ | ଜୟମଙ୍ଗଳ | ୭୧ | ବ୍ରହ୍ମତାଳ |
| ୪୬ | ରାଜବିଦ୍ୟା | ୭୨ | ରୁଦ୍ରତାଳ |
| ୪୭ | ପଞ୍ଚମଠା | ୭୩ | ଚଉତାଳ |
| ୪୮ | ଜୟତାଳ | ୭୪ | ଖୁଂଖୁଡ଼ି |
| ୪୯ | ସୁଦୁର୍ବଳ | ୭୫ | ଅଭଙ୍ଗ |
| ୫୦ | ନିସ୍ୱାରିକା | ୭୬ | ରାଜଝଙ୍କାର |
| ୫୧ | କ୍ରୀଡ଼ାତାଳ | ୭୭ | ଷଟତାଳ |
| ୫୨ | ତ୍ରିଭଙ୍ଗ | ୭୮ | ଲଘୁଶେଖର |

| ସଂଖ୍ୟା | ତାଳର ନାମ | ସଂଖ୍ୟା | ତାଳର ନାମ |
|---|---|---|---|
| ୭୯ | ପ୍ରତାପଶେଖର | ୯୫ | ରାଜନାରାୟଣ |
| ୮୦ | ଗଜଝମ୍ପା | ୯୬ | କଂକାଳ |
| ୮୧ | ଚତୁର୍ମୁଖ | ୯୭ | ଚଣ୍ଡତାଳ |
| ୮୨ | ଝଙ୍କାର | ୯୮ | ରତିତାଳ |
| ୮୩ | ପ୍ରତିମଠା | ୯୯ | ମଦନ |
| ୮୪ | ତୃତୀୟକ | ୧୦୦ | ପାର୍ବତୀଲୋଚନ |
| ୮୫ | ବାଦକା | ୧୦୧ | ସାରଙ୍ଗ |
| ୮୬ | ନଳ | ୧୦୨ | ନନ୍ଦବର୍ଦ୍ଧନ |
| ୮୭ | କୁବେର | ୧୦୩ | ଲୀଳା |
| ୮୮ | ବସନ୍ତ | ୧୦୪ | ବିଲୋକିତ |
| ୮୯ | ଲଳିତ | ୧୦୫ | ଲଳିତପ୍ରିୟେ |
| ୯୦ | ଶଶି | ୧୦୬ | ଜନକ |
| ୯୧ | କରଶାଖା | ୧୦୭ | ଲକ୍ଷ୍ମୀ |
| ୯୨ | ରତ୍ନମଠା | ୧୦୮ | ରାଜବର୍ଦ୍ଧନ |
| ୯୩ | ବର୍ଦ୍ଧବର୍ଣ୍ଣ | ୧୦୯ | ମଣ୍ଡକ |
| ୯୪ | ଯତିତାଳ | ୧୧୦ | ଉତ୍ସବ |

ଶ୍ରୀକୃଷ୍ଣଙ୍କର ରାସ ସମୟେ, ସଖିମାନଙ୍କ ଉକ୍ତି ପ୍ରତିଉକ୍ତି ॥

ଶ୍ଳୋକଃ- ରାସଲୀଳାସୁସମୟେ । ସଂଖ୍ୟା ଚ ପୃଚ୍ଛତେ ସଖୀ ॥
ତାଳନାମାନି ବଦ ମେ । ଚାଦିତସ୍ତ୍ୱନ୍ତତସ୍ଫୁଟଂ ॥

ଅର୍ଥ- ଶ୍ରୀକୃଷ୍ଣଙ୍କର ରାସ ଲୀଳା ସମୟରେ ଏକ ସଖି ଅନ୍ୟ ସଖିକି ପଚାରୁଅଛି ତାଳ ମାନଙ୍କ ନାମ ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତେ ସ୍ପଷ୍ଟରେ କହ ।

ଚଂଚପୁଟତାଳ ॥୧॥

| ଗୁ | ଗୁ | ଲ | ପ୍ଲୁ |
|---|---|---|---|
| ଃ | ଃ | । | ଃ |

ପ୍ରଥମତାଳର ପ୍ରସଙ୍ଗ ଏ ॥

ଶ୍ଳୋକଃ- ଆଦ୍ୟୌଗୁରୁ ଲଘୁପ୍ଲୁତୋ । ଚଂଚର୍ପୁଟସ୍ୟକଥ୍ୟତେ ॥

ଅର୍ଥ- ଆଦ୍ୟରେ ଦୁଇ ଗୁରୁ, ମଧ୍ୟରେ ଲଘୁ, ପ୍ରାନ୍ତରେ ପ୍ଲୁତ ଥିଲେ ଚଞ୍ଚର୍ପୁଟତାଳ ॥

ଗୀତ ॥ ରାଗ ଶଂଙ୍କରାଭରଣ ॥

ତଗଣ ପ୍ଲୁତ ହୋଇଛି ଯୁତ କହତ ଜୀବବନ୍ଧୁରେ । ଚଞ୍ଚର୍ପୁଟ ତାଳ ଏଟି ଶୁଣ ଶୁଣ ରସସିନ୍ଧୁରେ । ଦୁଇ ଆବୃତ ।

ଚାଚର୍ପୁଟ ତାଳ ॥୨॥

| ଗୁ | ଲ | ଲ | ଗୁ |
|---|---|---|---|
| 8 | । | । | 8 |

ଶ୍ଳୋକଃ- ଗୁରୁର୍ଲଘୁର୍ଲଘୁଶ୍ଚୈବ । ଗୁରୁଶ୍ଚାଚ ପୁଟେମତଃ ॥

ଅର୍ଥ- ଆଦ୍ୟପ୍ରାନ୍ତରେଗୁରୁ ମଧ୍ୟେ ଦୁଇ ଲଘୁ ଥିଲେ ଚାଚର୍ପୁଟତାଳବୋଲି ।

ରାଗ ଶଙ୍କରାଭରଣ ॥

ବର ସଙ୍ଗିନିରେ । ଭଗଣ ଗୁରୁକୁ କହ ରସରଙ୍ଗିନିରେ । ଚାଚର୍ପୁଟ ଗତିଏ ଶୁଣ ତୁ ସହି ଆରେ । ଏକ ଆବୃତ ।

ସ୍ୱଟିକାପୁତ୍ର କତାଳ ॥୩॥

| ପ୍ଲୁ | ଲ | ଗୁ | ଗୁ | ଲ | ପ୍ଲୁ |
|---|---|---|---|---|---|
| 8 | । | 8 | 8 | । | 8 |

ଶ୍ଳୋକଃ- ପ୍ଲୁତୋଲଘୁ ର୍ଗୁରୁଶ୍ଚୈକ । ଗୁରୁର୍ଲଘୁ ପ୍ଲୁତଂତଥା ।
ସ୍ୱଟୀକାପୁତ୍ରକଂ ତାଳଂ । କଥିତଂ ପୂର୍ବି ଶୂରଭିଃ ।

ଅର୍ଥ- ପ୍ଲୁତ, ଲଘୁ, ଦୁଇ ଗୋଟି ଗୁରୁ, ଲଘୁ ପ୍ଲୁତ ଥିଲେ ସ୍ୱଟିକାପୁତ୍ରକ ତାଳ ବୋଲି ।

ଗୀତ ।। ରାଗବେହାଗ ।।

ପଗଲଗଗଲପ କହ ରସବତି ଗୋରି । ଦୟାବହି ବାରେ ସ୍ୱତିକାପୁତ୍ରଟି ଯେ ଶୁଣି ଗୁଣି ଚିତ୍ତେ ରଖରେ ।

ସମ୍ପର୍କେଷ୍ଟତାଳ ।।୪।।

| ପ୍ଲୁ | ଗୁ | ଗୁ | ଗୁ | ପ୍ଲୁ |
|---|---|---|---|---|
| ଃ | ଃ | ଃ | ଃ | ଃ |

ଶ୍ଳୋକଃ- ପଗଗଗ ପ୍ଲୁତାଶ୍ଚୈବ । ସଂପଷ୍ଟ ତାଳଲକ୍ଷଣଂ ।।

ଅର୍ଥ- ଆଦ୍ୟେ ପ୍ଲୁତ ମଧ୍ୟେ ତିନି ଗୁରୁ ପ୍ରାନ୍ତେ ପ୍ଲୁତ ଥିଲେ ସମ୍ପର୍କେଷ୍ଟକ ତାଳ ବୋଲି ।

ଗୀତ ।। ରାଗସେନା ।।

ପଗଗଗପ କିପରି କହ । କହ ହେମଜିତବରନି । ଗୁଣମୋହିନି ସଂମ୍ପ୍ରକେଷ୍ଟ ଏହା ମନ ରଖ ତୁହି ଅନୁମାନି ।।

ଉଦ୍ଘାଟ ତାଳ ।।୫।।

| ଗୁ | ଗୁ | ଗୁ | ବିରାମ |
|---|---|---|---|
| ଃ | ଃ | ଃ | L |

ଶ୍ଳୋକଃ- ଉଦ୍‌ଘାଟ ତାଳମାକ୍ଷାତଂ । ବିରାମାନ୍ତଗୁରୁତ୍ରୟଂ ।।

ଅର୍ଥ- ଆଦ୍ୟେତିନିଗୁରୁପ୍ରାନ୍ତେ ବିରାମ ।। ଥିଲେ ଉଦ୍ଘାଟତାଳ ହୋଇ ।

ରାଗ ।। ଖରହରପ୍ରିଆ ।।

ମଗଣ ବାଳି ବିରାମ ଭାଳି କହ ଗୋରି ରେ । ଉଦ୍‌ଘାଟ ନାମ ତାର ନବୀନ କିଶୋରି ରେ ।

ଆଦିତାଳ ।।୬ ।।

| ଧ୍ରୁ | ଧ୍ରୁ | ଲ |
|---|---|---|
| ୦ | ୦ | । |

ଶ୍ଲୋକଃ - ଧୃତଦ୍ୱୟଂ ଲଘୁଶ୍ଚୈକ । ଆଦି ତାଳ ପ୍ରକୀର୍ତ୍ତିତା ॥
ଅର୍ଥ- ଆଦ୍ୟେ ଦୁଇ ଧୃତ, ପ୍ରାନ୍ତେ ଲଘୁ ଥିଲେ ଆଦିତାଳ ।

ଗୀତ ॥ ରାଗତୋଡ଼ି ॥

ଧୃତ ଦୁଇ ଲଘୁ ଏକି କହ ସଜନି । ଆଦିତାଳ ଏ ଶୁଣ ଶଶିବଦନି ।

ଦର୍ପଣତାଳ ॥୭॥

| ଧୃ | ଧୃ | ଗୁ |
|---|---|---|
| ୦ | ୦ | ୪ |

ଶ୍ଲୋକଃ- ଧୃତଦ୍ୱନ୍ଦ୍ୱଂ ଗୁରୁଶ୍ଚୈକ । ଦର୍ପଣ ନାମ କଥ୍ୟତେ ॥
ଅର୍ଥ- ଆଦ୍ୟେ ଦୁଇ ଧୃତ ପ୍ରାନ୍ତେ ଗୁରୁ ଥିଲେ ଦର୍ପଣ ତାଳ ବୋଲି ।

ଗୀତ । ରାଗବେହାଗ ॥

ଧୃତ ଧୃତ ଗୁରୁ ନୋହେ ଜାଣି । ଦର୍ପଣ ତାଳ ଏ ରମଣି ॥

ଚର୍ଚ୍ଚରି ତାଳ ॥୮॥

| ଧୃ | ,, | ,, | ,, | ,, | ,, | ,, | ,, | ,, | ,, | ,, | ,, | ,, | ,, | ,, | ,, | ବି |
|---|---|---|---|---|---|---|---|---|---|---|---|---|---|---|---|---|
| ୦ | ୦ | ୦ | ୦ | ୦ | ୦ | ୦ | ୦ | ୦ | ୦ | ୦ | ୦ | ୦ | ୦ | ୦ | ୦ | ୦ |

ଶ୍ଲୋକଃ- ସର୍ବାନ୍ତେ ତୁ ବିରାମାଞ୍ଚ । ଚର୍ଚ୍ଚରି ଷୋଡ଼ଶଧୃତଂ ॥
ଅର୍ଥ- ଷୋଳ ଧୃତ ଶେଷରେ ବିରାମ ଥିଲେ ଚର୍ଚ୍ଚରି ତାଳ ବୋଲି ।

ଗୀତ ॥ ରାଗ ମୋହନା ॥

ସପ୍ତ ନବ ବିନ୍ଦୁ ରସି ବନ୍ଧୁ କହ । ତୋଷ ବହି ଏକ ବିରାମ ଏକାନ୍ତରେ ବାରିରେ । ହେମଜିତକାନ୍ତି- । ତନୁ ଚନ୍ଦ୍ରବିଧୁହାସି । ଅନୁମାନ କର । ଚାରୁତର ଚର୍ଚ୍ଚରି-ତାଳରେ ।

ସିଂହଲୀଳା ତାଳ ॥୯॥

| ଲ | ଧୃ | ଧୃ | ଧୃ | ଲ |
|---|---|---|---|---|
| । | ୦ | ୦ | ୦ | । |

ଶ୍ଳୋକଃ- ଆଦ୍ୟେପ୍ରାନ୍ତେର୍ଲଘୁର୍ଯୁକ୍ତା । ତ୍ରିଧୃତଂ ସିଂହଲୀଳକେ ॥
ଅର୍ଥ- ଆଦ୍ୟେ ପ୍ରାନ୍ତେ ଲଘୁ, ମଧ୍ୟେ ତିନିଧୃତ ଥିଲେ ସିଂହ ଲୀଳା ।

ଗୀତ ॥ ରାଗ ହରିକାମ୍ଭୋଜି ॥

ଲଘୁଧୃତ ତିନିଲଘୁ କହରେ । ସିଂହଲୀଳା ଏ ତୁ ଶୁଣରେ ।

କନ୍ଦର୍ପତାଳ ॥୧୦॥

| ଧୃ | ଧୃ | ଗୁ | ଗୁ | ଗୁ |
|---|---|---|---|---|
| ୦ | ୦ | ଃ | ଃ | ଃ |

ଶ୍ଳୋକଃ- ଧୃତଦ୍ୱନ୍ଦ୍ୱଂ ଗୁରୁତ୍ରୈକ । କନ୍ଦର୍ପ ତାଳମୁଚ୍ୟତେ ॥
ଅଥ- ଧୃତ ଦୁଇ, ଗୁରୁତିନି ଥିଲେ କନ୍ଦର୍ପ ତାଳବୋଲି ।

ଗୀତ ॥ ରାଗଶ୍ରୀ ॥

ଧୃତ ଧୃତ ତିନିଗୁରୁ କହ ସହିରେ । ଏହାକୁଟି କନ୍ଦରପ କହିରେ ।

ସିଂହବିକ୍ରମତାଳ ॥୧୧॥

| ଗୁ | ଗୁ | ଗୁ | ଲ | ପ୍ଳୁ | ଲ | ଗୁ | ଗୁ |
|---|---|---|---|---|---|---|---|
| ଃ | ଃ | ଃ | । | ଃ | । | ଃ | ଃ |

ଶ୍ଳୋକଃ- ଗୁରୁ ତ୍ରୟଂ ଲପଲଗ । ଗୁରୁସ୍ୟାଦ୍ ସିଂହବିକ୍ରମେ ॥
ଅର୍ଥ- ଗୁରୁ ତିନି, ଲଘୁ, ପ୍ଳୁତ, ଲଘୁ, ଦୁଇ ଗୁରୁ ଥିଲେ ସିଂହବିକ୍ରମତାଳ ବୋଲି ।

ଗୀତ ॥ ରାଗ ଭୈରବ ॥

ମଗଣ ଲଘୁ ପ୍ଳୁତ ଲଘୁ ଗୁରୁ ଗୁରୁ । କହ ଭୀରୁ ଶୋଭିନିବାଳା ସୁନ୍ଦର
ମନ୍ଦରଉରଜା ତୁରେ ପଙ୍କଜବାସିନି ଶୁଣ ଶୁଣ ସିଂହବିକ୍ରମ ଏହି ଟିରେ

ଶ୍ରୀରଙ୍ଗତାଳ ॥୧୨॥

| ଲ | ଲ | ଗୁ | ଲ | ପ୍ଳୁ |
|---|---|---|---|---|
| । | । | ଃ | । | ଃ |

ଶ୍ଲୋକଃ- ଲଘୁଦ୍ୱୟଂ ଗୁରୁର୍ଣ୍ଣେକ । ଲପଶ୍ରୀରଙ୍ଗତାଳକେ ॥
ଅର୍ଥ- ଲଘୁ ଦୁଇ, ଗୁରୁ, ଲଘୁ, ପ୍ଲୁତ ଥିଲେ ଶ୍ରୀରଙ୍ଗତାଳ ବୋଲି

ଗୀତ ॥ ରାଗ କଲ୍ୟାଣି ॥

ସଗଣଲପକୁ କହଟିରେ । ପ୍ରାଣସଜନି । ଶ୍ରୀରଙ୍ଗତାଳ ଏହି ଶୁଣଟି ରେ ॥

ରଙ୍ଗଲୀଳା ॥୧୩॥

| ଲ | ଲ | ଗୁ | ଗୁ |
|---|---|---|---|
| । | । | ଌ | ଌ |

ଶ୍ଲୋକଃ- ଲଘୁଦ୍ୱନ୍ଦ୍ୱ ଗୁରୁଦ୍ୱନ୍ଦ୍ୱ । ରଙ୍ଗଲୀଳା ପ୍ରକୀର୍ତ୍ତିତା ॥
ଅର୍ଥ- ଲଘୁ ଦୁଇ, ଗୁରୁ ଦୁଇ ଥିଲେ ରଙ୍ଗଲୀଳା ହୋଇ ।

ଗୀତ ॥ ରାଗ ସୁରଟ ॥

ସଗଣ ଗଲ୍ଲିସ । କହ ପିକମୃଦୁବଚନା ବାରେ ଶୁଣତୁ ମାନସରେ ରଖ
ରଙ୍ଗଲୀଳା ଏ ବିଧୁବଦନା ରେ ॥

ରଙ୍ଗତାଳ ॥୧୪॥

| ଧ୍ରୃ | ” | ” | ” | ଗୁ |
|---|---|---|---|---|
| ୦ | ୦ | ୦ | ୦ | ଌ |

ଶ୍ଲୋକଃ- ଚତୁଃଧ୍ରୃତଂ ଗୁରୁର୍ଣ୍ଣେକ । ରଙ୍ଗତାଳଃ ପ୍ରକୀର୍ତ୍ତିତା ॥
ଅର୍ଥ- ଧ୍ରୃତ ଚାରି, ଗୁରୁ ଏକ ଥିଲେ ରଙ୍ଗତାଳ ବୋଲି ।

ଗୀତ ॥ ରାଗ ବିଳାହରି ॥

ଚାରି ଧ୍ରୃତ ଗୁରୁ କିସ କହ ସହିରେ । ଶୁଣ ତୁ ରଙ୍ଗତାଳ ଏହି ରେ ॥

ପରିକ୍ରମତାଳ ॥୧୫॥

| ଧ୍ରୃ | ଧ୍ରୃ | ଲ | ଗୁ | ଗୁ |
|---|---|---|---|---|
| ୦ | ୦ | । | ଌ | ଌ |

ଶ୍ଳୋକଃ- ଦଦଲଗ ଗୁରୁଣ୍ଣୈକଂ । ତାଳସ୍ୟାର୍ଦ୍ଧ ପରିକ୍ରମଃ ॥

ଅର୍ଥ- ଧୃତ ଦୁଇ ଲଘୁ ଏକ ଗୁରୁ ଦୁଇ ଥିଲେ ପରିକ୍ରମତାଳ ବୋଲି ।

ଗୀତ ॥ ରାଗ ରେଗୁପ୍ତି ॥

ଧୃତ ଧୃତ ଲଘୁ ଗୁରୁ ଗୁରୁ କହରେ । ଏହିଟି ପରିକ୍ରମ ତାଳ ତୁ ଶୁଣରେ

ପ୍ରତ୍ୟଙ୍ଗତାଳ ॥୧୬॥

| ଗୁ | ଗୁ | ଗୁ | ଲ | ଲ |
|---|---|---|---|---|
| ଃ | ଃ | ଃ | । | । |

ଶ୍ଳୋକଃ- ପ୍ରତ୍ୟଙ୍ଗ ସଂଜ୍ଞକସ୍ତାଳୋ । ମଗଣାଣ୍ଟ ଲଘୁଦ୍ୱୟଂ ॥

ଅର୍ଥ- ତିନି ଗୁରୁ ଦୁଇ ଲଘୁ ଥିଲେ ପ୍ରତ୍ୟଙ୍ଗତାଳ ବୋଲି ।

ଗୀତ ॥ ରାଗ ମାଧବମନୋହାରୀ ॥

ବନଜାନନି ଗଜଗାମିନି । ମ ଗଣ ଦ୍ୱିଲଘୁ ଏ କିସରେ ॥

ପ୍ରତ୍ୟଙ୍ଗ ତାଳ ଏ ଶୁଣ ରସବତି । ସନ୍ତତରେ ରଖ ମାନସରେ ॥

ଗଜଲୀଳା ॥୧୭ ॥

| ଲ | ,, | ,, | ,, | ଅ |
|---|---|---|---|---|
| । | ,, | ,, | ,, | ◡ |

ଶ୍ଳୋକଃ- ଗଜଲୀଳେ ବନୁଧୃତଂ । ଜ୍ଞେୟାଲଘୁ ଚତୁଷ୍ଟୟଂ ॥

ଅର୍ଥ- ଚାରି ଲଘୁ ପ୍ରାନ୍ତେ ଅନୁଧୃତ ଥିଲେ ଗଜଲୀଳାତାଳ ହୋଇ ।

ଗୀତ ॥ ରାଗ ନଟକୁରଞ୍ଜୀ ॥

ନବହ ନିରାଶ(ସ)କୁ କହ କହରେ ତୁସହି ।ଗଜଲୀଳାଟିଏ ଶୁଣ ଶୁଣରେ ସୁମୁହିଁ ॥

ତ୍ରିଭିନ୍ନ ତାଳ ॥୧୮॥

| ଲ | ଗୁ | ପ୍ଲୁ |
|---|---|---|
| । | ଃ | ଃ |

ଶ୍ଳୋକଃ- ଲଘୁର୍ଗୁରୁ ପ୍ଳୁତଶ୍ଚୈକଃ । ତ୍ରିଭିନ୍ନ ତାଳ ଉଚ୍ୟତେ ॥

ଅର୍ଥ- ଲଘୁ ଗୁରୁ ପ୍ଳୁତ ଥିଲେ ତ୍ରିଭିନ୍ନତାଳ ବୋଲି ।

ଗୀତ ॥ ରାଗ ହଂସଧ୍ୱନି ॥

ଲଘୁ ଗୁରୁ ପ୍ଳୁତ ଭାଳରେ । ଏହି ତ୍ରିଭିନ୍ନ ତାଳରେ ॥

ବୀରବିକ୍ରମତାଳ ॥୧୯॥

| ଲ | ଧୃ | ଧୃ | ଗୁ |
|---|---|---|---|
| । | ୦ | ୦ | ଌ |

ଶ୍ଳୋକଃ- ଲଘୁରାଦ୍ୟେ ଧୃତଦ୍ୱନ୍ଦ୍ୱଂ । ଗୁରୁସ୍ୟାତ୍ ବୀରବିକ୍ରମେ ॥

ଅର୍ଥ- ଆଦ୍ୟେ ଲଘୁ ମଧ୍ୟେ ଦୁଇ ଧୃତ ପ୍ରାନ୍ତେ ଗୁରୁଥିଲେ ବୀର ବିକ୍ରମ ତାଳ ବୋଲି ।

ଗୀତ ॥ ରାଗ ହିନ୍ଦୁସ୍ତାନିକାଫି ॥

ଲଘୁ ଧୃତ ଧୃତ ଗୁରୁ ଏ କିସ କହରେ । ବୀରବିକ୍ରମଟି ଏହି ତୁ ଶୁଣରେ ।

ହଂସଲୀଳା ॥୨୦॥

| ଲ | ଲ | ଅ |
|---|---|---|
| । | । | ◡ |

ଶ୍ଳୋକଃ- ଲଘୁଦ୍ୱନ୍ଦ୍ୱଂମନୁଧୃତଂ । ହଂସଲୀଳା ବିନିର୍ଣ୍ଣୟଃ ॥

ଅର୍ଥ- ଆଦ୍ୟେ ଦୁଇ ଲଘୁ, ପ୍ରାନ୍ତେ ଅନୁଧୃତ ଥିଲେ ହଂସଲୀଳା ତାଳ ବୋଲି ।

ଗୀତ ॥ ରାଗ ନାଟ୍ୟ ॥

ଦୁଇ ଲଘୁ ଅନୁଧୃତ କିସ କହ ସଖି । ହଂସଲୀଳା ତାଳ ଏହି ଶୁଣରେ ସୁମୁଖି ॥

ବର୍ଣ୍ଣଭିନ୍ନ ॥୨୧॥

| ଧୃ | ଧୃ | ଲ | ଗୁ |
|---|---|---|---|
| ୦ | ୦ | । | ଌ |

ଶ୍ଳୋକଃ- ଧୃତଦ୍ୱନ୍ଦ୍ୱଂଲଘୁର୍ଣ୍ଣୈକୋ । ଗୁରୁସ୍ୟାଦ୍ ବର୍ଣ୍ଣଭିନ୍ନକେ ॥

ଅର୍ଥ- ଧୃତ ଦୁଇ ଲଘୁ ଗୁରୁ ଥିଲେ ବର୍ଣ୍ଣ ଭିନ୍ନତାଳ ବୋଲି ।

ଗୀତ ॥ ରାଗ ଝଞ୍ଜୋଟ ।

ଧୃତ ଦୁଇ ଲଘୁ ଗୁରୁ କିପରି ତୁ କହ । ବର୍ଣ୍ଣଭିନ୍ନ ତାଳ ଏହି ଶୁଣି ଶ୍ରଦ୍ଧା ବହ ॥

ରାଜଚୂଡ଼ାମଣି ॥୨୨॥

| ଧୃ | ଧୃ | ଲ | ଲ | ଲ | ଧୃ | ଧୃ | ଲ | ପ୍ଲୁ |
|---|---|---|---|---|---|---|---|---|
| O | O | । | । | । | O | O | । | 8 |

ଶ୍ଳୋକଃ- ଧୃତଦ୍ୱନ୍ଦ୍ୱଂ ଲଘୁତ୍ରିକଂ । ଧୃତଯୁଗ୍ମା ଲଘୁ ପ୍ଲୁତଃ ॥
ରାଜଚୂଡ଼ାମଣି ତାଳେ । କଥିତାଂ ବିବୁଧୈରପି ॥

ଅର୍ଥ- ଧୃତ ଦୁଇ ଲଘୁ ତିନି ଧୃତ ଦୁଇ ଲଘୁ ପ୍ଲୁତ ଥିଲେ ରାଜଚୂଡ଼ାମଣି ତାଳ ବୋଲି ।

ଗୀତ ॥ ରାଗ କେଦାରଗୌଳା ॥

ଧୃତ ଦୁଇ ତିନି ଲଘୁ ଦଦଲପକୁ କହରେ ସହି । କେତକିବରନି ଚିତ୍ତେ ରଖ ରାଜଚୂଡ଼ାମଣି ଏହି ॥

ରଙ୍ଗଦୌତ ॥୨୩ ॥

| ଗୁ | ଗୁ | ଗୁ | ଲ | ପ୍ଲୁ |
|---|---|---|---|---|
| 8 | 8 | 8 | । | 8 |

ଶ୍ଳୋକଃ- ଗୁରୁତ୍ରୟଂ ଲଘୁ ପ୍ଲୁତୋ । ରଙ୍ଗଦୌତ ପ୍ରକୀର୍ତ୍ତିତା ।

ଅର୍ଥ- ଗୁରୁ ତିନି ଲଘୁ ପ୍ଲୁତ ଥିଲେ ରଙ୍ଗଦୌତ ତାଳ ବୋଲି ॥

ଗୀତ ॥ ରାଗ ଆନନ୍ଦଭୈରବ ॥

ମଗଣ ଲପକୁ କହତୁରେ । ରଙ୍ଗଦୌତ ତାଳ ଏହି ଶୁଣ ଧୀରେ ॥

ରାଜତାଳ ॥୨୪॥

| ଗୁ | ପ୍ଲୁ | ଧୃ | ଧୃ | ଗୁ | ଲ | ପ୍ଲୁ |
|---|---|---|---|---|---|---|
| 8 | 8 | O | O | 8 | । | 8 |

ଶ୍ଲୋକଃ- ଗପଧୃତୈ ଗଲପଶ୍ଚ । ରାଜତାଳଃ ପ୍ରକୀର୍ତ୍ତିତାଃ ॥

ଅର୍ଥ- ଗୁରୁ ପ୍ଲୁତ ଦୁଇ ଧୃତ ଗୁରୁ ଲଘୁ ପ୍ଲୁତ ଥିଲେ ରାଜତାଳ ବୋଲି ॥

ଗୀତ ॥ ରାଗ ମେଘରଞ୍ଜି ॥

ଗୁରୁ ପ୍ଲୁତ ଦୁଇ ଧୃତ ଗୁରୁ ଲଘୁ ପକୁ କହରେ ନବବାଳି । ଶୁଣି ଚିତ୍ତେ ରଖ । ରାଜ ତାଳ ଏହି । ଘେନରେ ଜୀବସଙ୍ଗାଳି ॥

ସିଂହବିକ୍ରୀଡିତ ॥୨୫॥

| ଲ | ଲ | ପ୍ଲୁ | ଲ | ଲ | ଗୁ | ପ୍ଲୁ | ଲ | ପ୍ଲୁ | ପ୍ଲୁ |
|---|---|---|---|---|---|---|---|---|---|
| । | । | ୫ | । | । | ୫ | ୫ | । | ୫ | ୫ |

ଶ୍ଲୋକଃ- ଲଘୁପଲୌଗୁରୁପୌଲା । ସିଂହବିକ୍ରୀଡିତେ ପ୍ଲୁତୌ ॥

ଅର୍ଥ- ଦୁଇ ଲଘୁ ପ୍ଲୁତ ଦୁଇ ଲଘୁ ଗୁରୁ ପ୍ଲୁତ ଲଘୁ ପ୍ଲୁତ ଦୁଇ ଥିଲେ ସିଂହବିକ୍ରୀଡ଼ିତ ତାଳ ବୋଲି ।

ଗୀତ ॥ ରାଗ ଭୂପାଳ ॥

ଲଘୁ ଲଘୁ ପ୍ଲୁତ ଲଘୁ । ଲଘୁ ଗୁରୁ ପ୍ଲୁତ ଲଘୁ ପ୍ଲୁତ ପ୍ଲୁତକୁ । କହ ଖଞ୍ଜନାକ୍ଷି କରି ସତ । ଗଜଗାମିନି ମନ ଦେଇ ଶୁଣ ଏହି ସିଂହବିକ୍ରୀଡ଼ିତ ।

ବନମାଳି ॥୨୬ ॥

| ଧୃ | ,, | ,, | ,, | ଲ | ଲ | ଧୃ | ,, | ଗୁ |
|---|---|---|---|---|---|---|---|---|
| O | ,, | ,, | ,, | । | । | O | ,, | ୫ |

ଶ୍ଲୋକଃ- ଚତୁର୍ଦ୍ଧୃତାନି ଲଦ୍ୱୌଚ । ଦ୍ରୁ ଗୁରୁସ୍ୟାଦ୍ ବନମାଳିନେ ॥

ଅର୍ଥ- ଚାରି ଧୃତ ଦୁଇ ଲଘୁ ଦୁଇ ଧୃତ ଗୁରୁ ଥିଲେ ବନମାଳି ତାଳ ବୋଲି ।

ଗୀତ ॥ ରାଗ ବସନ୍ତ ॥

କହ କହ ଚାରି ଧୃତ ॥ ଲଘୁ ଲଘୁ ଧୃତ ଧୃତ ॥ ଗୁରୁ ଏବେ ପ୍ରିୟ ସହିଭାଳି । ଶୁଣ ଶୁଣ ଗଜଗତି ରସବତି ନିରନ୍ତରେ ମନ ରଖ । ଏହି ବନମାଳି ॥

ବର୍ଣ୍ଣତାଳ ॥୨୭॥

| ଗୁ | ଲ | ଧୃ | ଧୃ | ଗୁ |
|---|---|---|---|---|
| 8 | । | O | O | 8 |

ଶ୍ଳୋକଃ- ଗୁରୁ ଲଘୁ ଧୃତଦ୍ୱନ୍ଦ୍ୱଂ । ଗୁରୁସ୍ୟାତ୍ ବର୍ଣ୍ଣତାଳକଃ ॥

ଅର୍ଥ- ଗୁରୁ ଲଘୁ ଧୃତ ଦୁଇ ଗୁରୁ ଥିଲେ ବର୍ଣ୍ଣତାଳ ବୋଲି ।

ଗୀତ ॥ ରାଗ ମଳୟମରୁତ ॥

ଗୁରୁ ଲଘୁ ଧୃତ ଧୃତ ଗୁରୁରେ କି ନାମ କହି । ଶୁଣ ଶୁଣ ରସବତି ବର୍ଣ୍ଣ ତାଳ ସ୍ନେହ ବହି ॥

ମିଶ୍ରତାଳ ॥୨୮॥

| ଧୃ | ,, | ,, | ,, | ,, | ,, | ,, | ,, | ,, | ,, | ,, | ,, | ଅ |
|---|---|---|---|---|---|---|---|---|---|---|---|---|
| O | ,, | ,, | ,, | ,, | ,, | ,, | ,, | ,, | ,, | ,, | ,, | ◡ |

ଶ୍ଳୋକଃ- ସର୍ବ ପ୍ରାନ୍ତେ ମନୁଧୃତଂ । ବିନ୍ଦୁ ଦ୍ୱାଦଶ ମିଶ୍ରକେ ॥

ଅର୍ଥ- ଦ୍ୱାଦଶ ଧୃତ ପ୍ରାନ୍ତେ ଅନୁଧୃତ ଥିଲେ ମିଶ୍ର ତାଳ ବୋଲି ।

ଗୀତ । ରାଗ ଚକ୍ରବାକ ॥

ସପ୍ତ ପଞ୍ଚ ବିନ୍ଦୁ ଭାବି କହ ସହି ପ୍ରାନ୍ତେ ଅନୁଧୃତ ଅଛି ରହି । ଶୁଣ ପ୍ରାଣବନ୍ଧୁ କେତକିବରନି ମିଶ୍ରତାଳ ବୋଲି ଏହି ॥

ରଙ୍ଗ ପ୍ରଦୀପକ ॥୨୯॥

| ଗୁ | ଗୁ | ଲ | ଗୁ | ପ୍ଲୁ |
|---|---|---|---|---|
| 8 | 8 | । | 8 | 8 |

ଶ୍ଳୋକଃ- ତଗଣ ଗୁରୁତସଂଯୁକ୍ତା । ପ୍ଲୁତଂ ରଙ୍ଗପ୍ରଦୀପକେ ॥

ଅର୍ଥ- ଦୁଇ ଗୁରୁ, ଲଘୁ, ଗୁରୁ, ପ୍ଲୁତ ଥିଲେ ରଙ୍ଗ ପ୍ରଦୀପକ ତାଳବୋଲି ।

ଗୀତ ।। ରାଗ ମୁଖାରି ।।

ଢଗଣ ଗୁରୁ ପ୍ଳୁତ କିସ କହ କୁରଙ୍ଗିନୟନି ତୁହି ।। ଶୁଣ ଶୁଣ ସହି ରଙ୍ଗ ପ୍ରଦୀପକ ବୋଲନ୍ତି ରେ ଶଶିମୁହିଁ ।।

ହଂସନାଦ ।। ୩୦ ।।

| ଲ | ପ୍ଳୁ | ଧ୍ରୁ | ଧ୍ରୁ | ପ୍ଳୁ |
|---|---|---|---|---|
| । | ଽ | ଠ | ଠ | ଽ |

ଶ୍ଳୋକଃ- ଲଘୁ ପ୍ଳୁତ ଧ୍ରୁତଦ୍ୱନ୍ଦ୍ୱଂ । ପଣ୍ଟାପୋ ହଂସନାଦକଃ ।।

ଅର୍ଥ- ଲଘୁ, ପ୍ଳୁତ, ଧ୍ରୁତ, ଦୁଇ ପ୍ଳୁତ ଥିଲେ ହଂସନାଦ ତାଳ ବୋଲି ।

ଗୀତ ।। ରାଗ ସୌରାଷ୍ଟ୍ର ।।

ଲଘୁ ପ୍ଳୁତ ଧ୍ରୁତ ଦୁଇ ପ୍ଳୁତ କହବାରେ । ଶୁଣ ଗଜଗତି । ଚିତେ ଭାବିରଖ ଏହିଟି ହଂସନାଦରେ ।।

ସିଂହନାଦ ।।୩୧।।

| ଲ | ଗୁ | ଗୁ | ଲ | ଗୁ |
|---|---|---|---|---|
| । | ଽ | ଽ | । | ଽ |

ଶ୍ଳୋକଃ- ଆଦ୍ୟେ ଲଘୁର୍ଗୁରୁଦ୍ୱୟଂ । ଲଗୌସ୍ୟାତ୍‌ସିଂହନାଦକେ ।।

ଅର୍ଥ- ଲଘୁ ଦୁଇଗୁରୁ ଲଘୁ ଗୁରୁଥିଲେ ସିଂହନାଦ ତାଳ ବୋଲି ।

ଗୀତ । ରାଗ ସାବେରି ।।

ଲଘୁ ଗୁରୁ ଗୁରୁ ଲଘୁ ଗୁରୁ କିସ କହ ବରସ୍ନେହିଂ । ପଙ୍କଜଆନନି ଶୁଣ ତୁହି । ସିଂହନାଦ ଏହି ।।

ମଲ୍ଲିକାମଦା ।।୩୨।।

| ଲ | ଲ | ଧ୍ରୁ | ,, | ,, | ,, |
|---|---|---|---|---|---|
| । | । | ଠ | ଠ | ଠ | ଠ |

ଶ୍ଲୋକଃ- ଲଘୁଦ୍ୱନ୍ଦ୍ୱଂଧୃତାସ୍ୱଷ୍ଟେ । ଚତ୍ୱାରୋମଲ୍ଲିକାମଦା ॥

ଅର୍ଥ- ଦୁଇ ଲଘୁ ଚାରି ଧୃତ ଥିଲେ ମଲ୍ଲିକାମଦା ତାଳ ବୋଲି ॥

ଗୀତ ॥ ରାଗ ମାରୁଆ ॥

ଲଘୁ ଲଘୁ ଚାରି ଧୃତ କହ ପରମଦା ॥ ଶୁଣ ଆରେ ନବ ବାଳି ॥ ଏହି ମଲ୍ଲିକାମଦା ।

ତାରାବଳି ॥ ୩୩ ॥

| ବି | ଲ | ଗୁ | ଲ | ବି |
|---|---|---|---|---|
| L | I | 8 | I | L |

ଶ୍ଲୋକଃ- ଲଘୁଗୁରୁ ଲଘୁଶ୍ଚୈକ ॥ ପୂର୍ବାପରବିରାମିକା ॥
ତାଳଂ ତାରାବଳିନାମଂ । କଥିତଂ ମୁନିପୁଙ୍ଗବୈଃ ॥

ଅର୍ଥ- ଲଘୁ ଗୁରୁ ଲଘୁ, ଆଦ୍ୟ ପ୍ରାନ୍ତରେ ବିରାମ ଥିଲେ ତାରାବଳି ତାଳ ବୋଲି ।

ଗୀତ ॥ ରାଗ ଏରିକଲାକାମୋଦି ॥

ଆଦ୍ୟ ପ୍ରାନ୍ତ ବିରାମ ଲଘୁ ଗୁରୁ ଲଘୁ କର ସଜନି । ତାରାବଳି ଏହି ॥ ଶୁଣ ଶଶି ବଦନି ॥

ଶରଭଲୀଳା ॥୩୪॥

| ଲ | ଧୃ | ,, | ,, | ,, | ଲ |
|---|---|---|---|---|---|
| I | O | ,, | ,, | ,, | I |

ଶ୍ଲୋକଃ- ଆଦ୍ୟେ ପ୍ରାନ୍ତେ ଲଘୁର୍ଯୁକ୍ତା । ମଧ୍ୟେ ଚତୁର୍ଧୃତସ୍ଥିତଂ ।
ତାଳଂ ଶରଭଲୀଳେଷ୍ଟ । କଥିତଂ ପୂର୍ବସୁରିଭି ॥

ଅର୍ଥ- ଆଦ୍ୟେ ପ୍ରାନ୍ତେ ଲଘୁ, ମଧ୍ୟେ ଚାରି ଧୃତ ଥିଲେ ଶର୍ଭଲୀଳା ତାଳ ବୋଲି ।

ଗୀତ ॥ ରାଗ ନାଟ୍ୟ ॥

ଆଦ୍ୟେ ପ୍ରାନ୍ତେ ଲଘୁ ମଧ୍ୟେ ଚାରି ଧୃତ କହ ସହିରେ ॥ ତାଳ ଶର୍ଭଲୀଳା ଏହିରେ ॥

## ରଙ୍ଗାଭରଣ ।।୩୫।।

| ଗୁ | ଗୁ | ଲ | ଲ | ପ୍ଲୁ |
|---|---|---|---|---|
| ଽ | ଽ | । | । | ଽ |

ଶ୍ଳୋକଃ- ଗୁରୁଦ୍ୱନ୍ଦ୍ୱଂ ଲଘୁଦ୍ୱନ୍ଦ୍ୱଂ । ପୋରଙ୍ଗାଭରଣତାଳକଃ ।।

ଅର୍ଥ- ଦୁଇ ଗୁରୁ ଦୁଇ ଲଘୁ ପ୍ଲୁତ ଥିଲେ ରଙ୍ଗାଭରଣ ତାଳ କହି ।

ଗୀତ ।। ରାଗ ମାଳବ ।।

ତଗଣ ଲଘୁ ପ୍ଲୁତ କହ କହ ମିତ । ବୋଧ କର ତୁ ମୋଚିତ୍ତରେ ।।
ହେତୁ କର ପଙ୍କଜମୁଖି ଏ ରଙ୍ଗାଭରଣ ତାଳରେ ।।

## ତୁରଙ୍ଗଲୀଳା ।।୩୬।।

| ଧ୍ରୁ | ,, | ,, | ,, | ବି |
|---|---|---|---|---|
| O | ,, | ,, | ,, | L |

ଶ୍ଳୋକଃ- ତୁରଙ୍ଗାନ୍ତେ ବିରାମଶ୍ଚ । ଧ୍ରୁତଦ୍ୱନ୍ଦ୍ୱଂଧ୍ରୁତଦ୍ୱୟଂ ।।

ଅର୍ଥ- ଚାରି ଧ୍ରୁତପ୍ରାନ୍ତେ ବିରାମଥିଲେ ତୁରଙ୍ଗ ଲୀଳା ତାଳ ବୋଲି ।।

ଗୀତ ।। ରାଗ ଇମନ୍ ।।

ସର୍ବଅନ୍ତେ ବିରାମ । ଚାରି ଧ୍ରୁତ କହ । ତୁରଙ୍ଗ ତାଳଏ ଚିତ୍ତେ ଶ୍ରଦ୍ଧା ବହ ।।

## ସିଂହନନ୍ଦନ ।।୩୭।।

| ପ୍ଲୁ | ପ୍ଲୁ | ଲ | ଲ | ଧ୍ରୁ | ଧ୍ରୁ | ଗୁ | ଗୁ | ଲ | ପ୍ଲୁ | ଲ | ପ୍ଲୁ | ଗୁ | ଲ | ଲ | କା |
|---|---|---|---|---|---|---|---|---|---|---|---|---|---|---|---|
| ଽ̇ | ଽ̇ | । | । | O | O | ଽ | ଽ | । | ଽ̇ | । | ଽ̇ | ଽ | । | । | + |

ଶ୍ଳୋକଃ- ତପୌଲଘୈ ଧ୍ରୁତୌଗୌଲା । ପାଲ୍ୟାଗାଶ୍ଚେଲାଦ୍ୱୟଂ ।।
ନିଶବ୍ଦଲଚତୁଷ୍କାଞ୍ଚ । ତାଳୌସ୍ୟାଦ୍ ସିଂହନନ୍ଦନେ ।।

ଅର୍ଥ- ପ୍ଲୁତ ଦୁଇ, ଲଘୁ ଦୁଇ, ଧୃତ ଦୁଇ, ଗୁରୁ ଦୁଇ, ଲଘୁ ପ୍ଲୁତ ଲଘୁ, ପ୍ଲୁତ ଗୁରୁ ଲଘୁ, ଲଘୁ କାକପଦ ଥିଲେ ସିଂହନନ୍ଦନ ତାଳ ବୋଲି ।

ଗୀତ ॥ ରାଗ କଲ୍ୟାଣି ॥

ପ୍ଲୁତ ପ୍ଲୁତ ଲଘୁ ଲଘୁ ଧୃତ ଧୃତ । ତଗଣକୁ । ପୁଣି ପ୍ଲୁତ ଲଘୁ ପ୍ଲୁତ ଭଗଣ କାକପଦକୁ । କହରେ ଶଙ୍କରମୋହିନି । ପଙ୍କଜ ଚାରୁବଦନି ଧନି । ମନକୁ ରିଝାଇ । ଶୁଣତୁ ସୁନ୍ଦରି ମନ୍ଦରଉରଜା । ସ୍ୱାନ୍ତେ ସଂତତେ କରହେଜା । ସରସୀଜବାସିନି ମଞ୍ଜୁଳ ସିଂହନନ୍ଦନ ଏହି ॥

ଜୟଶ୍ରୀ ॥୩୮॥

| ଗୁ | ଲ | ଗୁ | ଲ | ଗୁ |
|---|---|---|---|---|
| ଌ | । | ଌ | । | ଌ |

ଶ୍ଳୋକଃ- ଗଲଗୁରୁ ଲଘୁଶାଶ୍ଚେ । ଜୟଶ୍ରୀ ତାଳରୁଚ୍ୟତେ ॥
ଅର୍ଥ- ଗୁରୁ ଲଘୁ ଗୁରୁ ଲଘୁ ଗୁରୁ ଥିଲେ ଜୟଶ୍ରୀ ତାଳ ବୋଲି ॥

ଗୀତ ॥ ରାଗ ଶୁଦ୍ଧ ସାବେରି ॥

ଗୁରୁ ଲଘୁ ଗୁରୁ ଲଘୁ ଗୁରୁ ଏ କିପରି କହ କହ ସଜନି ।
ଶୁଣ ଚନ୍ଦ୍ରମୁଖି ମନେ ରଖ । ଜୟଶ୍ରୀ ତାଳ ଏହି ଘେନି ॥

ବିଜୟାନନ୍ଦ ॥୩୯॥

| ଲ | ଲ | ଗୁ | ଗୁ | ଗୁ |
|---|---|---|---|---|
| । | । | ଌ | ଌ | ଌ |

ଶ୍ଳୋକଃ- ଲଘୁଦ୍ୱନ୍ଦ୍ୱଂ ଗୁରୁତ୍ରୈକଂ । ବିଜୟା ତାଳଲକ୍ଷଣଂ ॥
ଅର୍ଥ- ଦୁଇ ଲଘୁ, ତିନି ଗୁରୁ ଥିଲେ ବିଜୟାନନ୍ଦତାଳ ବୋଲି ।

ଗୀତ ॥ ରାଗ ଗୌଳା ॥

ସଗଣ ଗୁରୁ ଗୁରୁକୁ କହ କହ ସହିରେ । ବିଜୟାନନ୍ଦକୁ ଶୁଣ ହିତ ବହିରେ ॥

ପ୍ରତିତାଳ ।।୪୦।।

| ଲ | ଧୃ | ଲ | ଧୃ |
|---|---|---|---|
| । | ୦ | । | ଲ |

ଶ୍ଳୋକଃ- ଲଘୁର୍ଦ୍ଧୃତଂ ଲଘୁର୍ଦ୍ଧୃତଂ । ପ୍ରତିତାଳସ୍ୟ କଥ୍ୟତେ ।।

ଅର୍ଥ- ଲଘୁ ଧୃତ, ଲଘୁ ଧୃତ ଥିଲେ ପ୍ରତିତାଳ ବୋଲି ।।

ଗୀତ ।। ରାଗ ବରାଳି ।।

ଲଘୁ ଧୃତ ଲଘୁ ଧୃତ କହ କହ ସଖି । ପ୍ରତିତାଳ ଏହି ଶୁଣ ଶୁଣ ଶଶିମୁଖି ।

ଦ୍ବ୍ୟତୀୟକ ।। ୪୧ ।।

| ଅ | ଧୃ | ଧୃ | ଲ | ଲ |
|---|---|---|---|---|
| ∪ | ୦ | ୦ | । | । |

ଶ୍ଳୋକଃ- ଅନୁଧୃତଂଧୃତଦ୍ୱନ୍ଦ୍ୱଂ । ଲଘୁଦ୍ୱୟଂଦ୍ୱିତୀୟକେ ।।

ଅର୍ଥ- ଆଦ୍ୟେ ଅନୁଧୃତ, ଧୃତ ଦୁଇ, ଲଘୁ ଦୁଇ ଥିଲେ ଦୁତୀୟକ ତାଳ ବୋଲି ।

ଗୀତ ।। ରାଗ ଆରିଭି ।।

ଅନୁଧୃତ ଧୃତ ଦୁଇ ଲଘୁ ଦୁଇ ଏ କିସ କହ ସଖି । ଦୁତୀୟ ତାଳ ଏହି ଶୁଣରେ ସୁମୁଖି ।।

ମକରନ୍ଦ ।।୪୨।।

| ଧୃ | ଧୃ | ଲ | ଲ | ଲ | ଗୁ |
|---|---|---|---|---|---|
| ୦ | ୦ | । | । | । | ୫ |

ଶ୍ଳୋକଃ- ଧୃତଦ୍ୱନ୍ଦ୍ୱଂ ଲଘୁତ୍ରୈକଂ । ଗୁରୁସ୍ୟାତ୍ ମକରନ୍ଦକେ ।।

ଅର୍ଥ- ଧୃତ ଦୁଇ, ଲଘୁ ତିନି, ଗୁରୁ ଥିଲେ ମକରନ୍ଦତାଳ ବୋଲି ।

ଗୀତ ।। ରାଗ ଦରବାର ।।

ଧୃତ ଦୁଇ ଲଘୁତିନି ଗୁରୁ କହ କହ । ଶୁଣ ଆରେ ମକରନ୍ଦତାଳ ଶ୍ରଦ୍ଧାବହ ।।

କୀର୍ତ୍ତିତାଳ ।। ୪୩ ।।

| ଲ | ଗୁ | ପ୍ଲୁ | ଗୁ | ଲ | ପ୍ଲୁ |
|---|---|---|---|---|---|
| । | 8 | 8 | 8 | । | 8 |

ଶ୍ଳୋକଃ- ଲଗପାଗଲପାଶ୍ଚୈବ । କୀର୍ତ୍ତିତାଳ ପ୍ରକୀର୍ତ୍ତିତାଃ ।।

ଅର୍ଥ- ଲଘୁ ଗୁରୁ ପ୍ଲୁତ ଗୁରୁ ଲଘୁ ପ୍ଲୁତ ଥିଲେ କୀର୍ତ୍ତିତାଳ ବୋଲି ।।

ଗୀତ ।। ରାଗ ଖମାଚ ।।

ଲଘୁ ଗୁରୁ ପ୍ଲୁତ ଗୁରୁ ଲଘୁ ପ୍ଲୁତ କହ କହରେ । ମୋହିନି ମୋ ଧନି
କୀର୍ତ୍ତିତାଳ ଏହି ଚିତ୍ତେ ଶ୍ରଦ୍ଧା ବହରେ ।।

ବିଜୟ ।।୪୪।।

| ପ୍ଲୁ | ଗୁ | ପ୍ଲୁ | ଗୁ |
|---|---|---|---|
| 8 | 8 | 8 | 8 |

ଶ୍ଳୋକଃ- ପ୍ଲୁତ ଗୁରୁ ପ୍ଲୁତଶ୍ଚୈକ । ଗୁରୁ ବିଜୟତାଳକେ ।।

ଅର୍ଥ- ପ୍ଲୁତ ଗୁରୁ ପ୍ଲୁତ ଗୁରୁଥିଲେ ବିଜୟତାଳ ବୋଲି ।।

ଗୀତ ।। ରାଗ ପାନ୍ତୁବରାଳି ।।

ପ୍ଲୁତ ଗୁରୁ ପ୍ଲୁତ ଗୁରୁ କହ କହ ସହି । ବିଜୟତାଳଟି ଏହି ଶୁଣ ପ୍ରାଣସହି ।

ଜୟମଙ୍ଗଳ ।।୪୫।।

| ଲ | ଲ | ଗୁ | ଲ | ଲ | ଗୁ |
|---|---|---|---|---|---|
| । | । | 8 | । | । | 8 |

ଶ୍ଳୋକଃ- ଲଘୁଦ୍ୱୟଂ ଗୁରୁଶ୍ଚୈକ । ଲଲଗା ଜୟମଙ୍ଗଳେ ।।

ଅର୍ଥ- ଦୁଇ ଲଘୁ ଗୁରୁ ଦୁଇ ଲଘୁଗୁରୁ ଥିଲେ ଜୟମଙ୍ଗଳତାଳ ବୋଲି ।।

ଗୀତ ॥ ରାଗ କାନ୍ନଡ଼ା ॥

ସଗଣ ଲଘୁ ଦୁଇ ଗୁରୁକୁ କହ କୁଞ୍ଚିତକେଶି । ଜୟମଙ୍ଗଳ ଶୁଣ ଏ ବିଧୁହାସି ।

ରାଜବିଦ୍ୟା ॥ ୪୬ ॥

| ଲ | ଗୁ | ଧୃ | ଧୃ |
|---|---|---|---|
| । | ଃ | ୦ | ୦ |

ଶ୍ଳୋକଃ- ଲଘୁ ଗୁରୁ ଧୃତଦ୍ୱନ୍ଦଃ । ରାଜବିଦ୍ୟାଧରଂ ବିଦୁଃ ॥

ଅର୍ଥ- ଲଘୁ ଗୁରୁ ଦୁଇ ଧୃତ ଥିଲେ ରାଜବିଦ୍ୟାତାଳ ବୋଲି ॥

ଗୀତ ॥ ରାଗକୁରଞ୍ଜ ॥

ଲଘୁ ଗୁରୁ ଧୃତ କହବାରେ । ରାଜବିଦ୍ୟାଧରଟିଏ ଶୁଣ ଶରଧାରେ ॥

ପଞ୍ଚମଠା ॥ ୪୭ ॥

| ଅ | ,, | ,, | ,, | ,, | ବି |
|---|---|---|---|---|---|
| ◡ | ,, | ,, | ,, | ,, | ( |

ଶ୍ଳୋକଃ- ଅନୁଧୃତାଷ୍ଟ ପଞ୍ଚାନ୍ତେ । ବିରାମଃ ପଞ୍ଚମଠିକଃ ॥

ଅର୍ଥ- ପାଞ୍ଚ ଅନୁଧୃତ ପ୍ରାନ୍ତେ ବିରାମ ଥିଲେ ପଞ୍ଚମଠାତାଳ ବୋଲି ।

ଗୀତ ॥ ରାଗ ମଧ୍ୟମାବତି ॥

ପାଞ୍ଚ ଅନୁଧୃତ ପ୍ରାନ୍ତରେ ବିରାମ ଏ କିସ କହ ସଜନି । ଶୁଣ ପଙ୍କଜାକ୍ଷି ଏହାକୁ କହନ୍ତି ପଞ୍ଚମଠିକ ଭାବିନି ॥

ଜୟତାଳ ॥ ୪୮ ॥

| ଲ | ଗୁ | ଲ | ଲ | ଧୃ | ଧୃ | ପ୍ଲୁ |
|---|---|---|---|---|---|---|
| । | ଃ | । | । | ୦ | ୦ | ଃ |

ଶ୍ଳୋକଃ- ଜୟତାଳେତୁଜଗଣ । ଲଦୌପ୍ଲୁତ ପ୍ରକୀର୍ତ୍ତିତା ॥

ଅର୍ଥ- ଲଘୁ ଗୁରୁ ଦୁଇ ଲଘୁ ଦୁଇ ଧୃତ ଧୃତ ପ୍ଲୁତ ଥିଲେ ଜୟତାଳ ବୋଲି ।

ଗୀତ ॥ ରାଗ ପୂରିକଲ୍ୟାଣି ॥

ଲଘୁ ଗୁରୁ ଦୁଇ ଲଘୁ ଧୃତ ଧୃତ ପ୍ଲୁତକୁ କହ କହ ସହିରେ । ଜୟ ତାଳକୁ ଶୁଣ ବିଧୁଜିତ ମୁହିଁରେ ॥

ଦୁର୍ବଳ ॥୪୯॥

| ଲ | ଧୃ | ଧୃ | ଲ |
|---|---|---|---|
| I | O | O | I |

ଶ୍ଳୋକଃ- ଆଦ୍ୟେ ଲଘୁ ଧୃତଦ୍ୱନ୍ଦ୍ୱଂ । ଲଘୁଃ ଦୁର୍ବଳରୁଚ୍ୟତେ ॥

ଅର୍ଥ- ଆଦ୍ୟେ ପ୍ରାନ୍ତେ ଲଘୁ ମଧ୍ୟେ ଦୁଇ ଧୃତଥିଲେ ଦୁର୍ବଳତାଳ ବୋଲି ।

ଗୀତ ॥ ରାଗ ନବରୋଜୁ ॥

ଲଘୁ ଧୃତ ଧୃତ ଲଘୁ କହରେ ସଜନି । ଦୁର୍ବଳତାଳଟି ଏହି ମୋ ପ୍ରାଣସଙ୍ଗିନି ॥

ନିସାରିକା ॥୫୦॥

| ଲ | ଧୃ | ବି |
|---|---|---|
| I | O | L |

ଶ୍ଳୋକଃ- ଲଘୁ ଧୃତୋ ବିରାମାନ୍ତେ । ନିସାରି ପରିକୀର୍ତ୍ତିତା ॥

ଅର୍ଥ- ଲଘୁ ଧୃତ ବିରାମଥିଲେ ନିସାରିକା ତାଳବୋଲି ।

ଗୀତ ॥ ରାଗ ଆଭୋଗି ॥

ଲଘୁ ଧୃତ ବିରାମ ଏ କିସ କହ । ନିସାରିକା ତାଳକୁ ଶୁଣିମନେ ଶ୍ରଦ୍ଧାବହ ॥

କ୍ରୀଡ଼ା ॥୫୧॥

| ଧୃ | ଧୃ | ଲ | ଲ | ଅ |
|---|---|---|---|---|
| O | O | I | I | ◡ |

ଶ୍ଲୋକଃ- ଧୃତ ଦ୍ୱନ୍ଦ୍ୱଂ ଲଘୁ ଦ୍ୱନ୍ଦ୍ୱଂ । କ୍ରୀଡ଼ାନ୍ତେ ଚାନୁନାଷ୍ଟିକଂ ॥

ଅର୍ଥ- ଧୃତ ଦୁଇ ଲଘୁ ଦୁଇ ପ୍ରାନ୍ତେ ଅନୁଧୃତ ଥିଲେ କ୍ରୀଡ଼ା ତାଳ ବୋଲି ।

ଗୀତ ॥ ରାଗ ସାବେରି ॥

ଦୁଇ ଧୃତ ଲଘୁ ଲଘୁ ଅନୁଧୃତ କହ ସହି । ମୋ ପ୍ରାଣ ସଜନି ଚିତ୍ତେ ରଖି ଘେନ କ୍ରୀଡ଼ାତାଳ ଏହି ॥

ତ୍ରିଭଙ୍ଗି ॥୫୨॥

| ଲ | ଗୁ | ଲ | ଗୁ |
|---|---|---|---|
| । | ଣ | । | ଣ |

ଶ୍ଲୋକଃ- ଲଘୁ ଗୁରୁ ଲଘୁର୍ଶ୍ଚୈକ । ଗୁରୁତ୍ରିଭଙ୍ଗିତାଳକେ ॥

ଅର୍ଥ- ଲଘୁ ଗୁରୁ ଲଘୁ ଗୁରୁଥିଲେ ତ୍ରିଭଙ୍ଗି ତାଳବୋଲି ।

ଗୀତ ॥ ରାଗ ଗୀତିଗୌଳା ॥

ଲଘୁ ଗୁରୁ ଲଘୁ ଗୁରୁ କହ ନବବାଳି । ତ୍ରିଭଙ୍ଗିତାଳ ଏ ଶୁଣ ମୋ ପ୍ରାଣ ସଂଙ୍ଗାଳି ॥

କୋକିଳପ୍ରିୟ ॥୫୩॥

| ଗୁ | ଲ | ପ୍ଲୁ |
|---|---|---|
| ଣ | । | ଣ |

ଶ୍ଲୋକଃ- ଗୁରୁଲଘୁ ପ୍ଲୁତଶ୍ଚୈବ । ତାଳୋସୌ କୋକିଳପ୍ରିୟ ॥

ଅର୍ଥ- ଗୁରୁ ଲଘୁ ପ୍ଲୁତ ଥିଲେ କୋକିଳପ୍ରିୟ ତାଳ ବୋଲି ॥

ଗୀତ ॥ ରାଗ ବସନ୍ତ ॥

ଗୁରୁ ଲଘୁ ପ୍ଲୁତ ଏ କିସ କହକହ. ସହି । ଶୁଣ ପ୍ରାଣ ସଜନିରେ କୋକିଳପ୍ରିୟ ଏହି ॥

ଶ୍ରୀକୀର୍ତ୍ତି ॥୫୪॥

| ଗୁ | ଗୁ | ଲ | ଲ |
|---|---|---|---|
| ଌ | ଌ | । | । |

ଶ୍ଳୋକଃ- ଗୁରୁଦ୍ୱନ୍ଦ୍ୱଂ ଲଘୁଦ୍ୱନ୍ଦ୍ୱଂ । ଶ୍ରୀକୀର୍ତ୍ତି ତାଳ ଉଚ୍ୟତେ ॥

ଅର୍ଥ- ଗୁରୁ ଦୁଇ ଲଘୁ ଦୁଇଥିଲେ ଶ୍ରୀକୀର୍ତ୍ତି ତାଳ ବୋଲି ॥

ଗୀତ ॥ ରାଗ ଭୂପାଳ ॥

ତଗଣ ଲଘୁକୁ କହ କହ ପ୍ରାଣସହି । ହେମଜିତବରନି ଚିତ୍ତେରଖ ଶ୍ରୀକୀର୍ତ୍ତି ତାଳଟି ଏହି ।

ବିନ୍ଦୁମାଳି ॥୫୫॥

| ଗୁ | ଧୃ | ,, | ,, | ,, | ଗୁ |
|---|---|---|---|---|---|
| ଌ | O | ,, | ,, | ,, | ଌ |

ଶ୍ଳୋକଃ- ଗୁରୁଶ୍ଚତୁ ଧୃତାନ୍ୟେବଂ । ଗୁରୁସ୍ୟାଦ୍ ବିନ୍ଦୁମାଳିକଃ ॥

ଅର୍ଥ- ଆଦ୍ୟେ ଗୁରୁ ମଧ୍ୟେ ଚାରି ଧୃତ ପ୍ରାନ୍ତେ ଗୁରୁ ଥିଲେ ବିନ୍ଦୁମାଳି ତାଳ ବୋଲି ॥

ଗୀତ ॥ ରାଗ ମେଘରଞ୍ଜି ॥

ଆଦ୍ୟେ ପ୍ରାନ୍ତେ ଗୁରୁ ମଧ୍ୟେ ଚାରିଧୃତ । କହରେ ପ୍ରାଣସଜନି ॥
ମୋ ପ୍ରାଣସଂଘାତ ଚିତ୍ତେ ଗୁଣି ରଖ । ନାମ ଏ ବିନ୍ଦୁମାଳିନୀ ।

ସମତାଳ ॥ ୫୬ ॥

| ଲ | ଲ | ଧୃ | ଧୃ | ଅ |
|---|---|---|---|---|
| । | । | O | O | ᑌ |

ଶ୍ଳୋକଃ- ଲଘୁଦ୍ୱନ୍ଦ୍ୱଂ ଧୃତଂଦ୍ୱନ୍ଦ୍ୱଂ । ମଦ୍ୟନ୍ତାନ୍ତେସମସ୍ତତଃ ॥

ଅର୍ଥ- ଲଘୁ ଦୁଇ ଧୃତ ଦୁଇ ଅନୁଧୃତ ଥିଲେ ସମତାଳ ବୋଲି ॥

ରାଗ ମୁଖାରି ॥

କହ ଦ୍ଵି ଲଘୁଧୃତ ଦୁଇ ଅନ୍ତେ ଅନୁଧୃତ ଅଛି ରହି । ଶୁଣି ସେ କହିଲା ଶୁଣ ଆରେ ସଖି ସମତାଳ ଅଟେ ଏହି ॥

ନନ୍ଦନ ॥୫୭॥

| ଲ | ଲ | ଧୃ | ଧୃ | ପ୍ଲୁ |
|---|---|---|---|---|
| । | । | ୦ | ୦ | ୪ |

ଶ୍ଳୋକଃ- ଲଘୁଦ୍ଵନ୍ଦ୍ଵଂ ଧୃତଂଦ୍ଵନ୍ଦ୍ଵଂ । ପ୍ଲୁତ ନନ୍ଦନଉଚ୍ୟତେ ॥

ଅର୍ଥ- ଲଘୁ ଦୁଇ ଧୃତ ପ୍ଲୁତଥିଲେ ନନ୍ଦନତାଳ ବୋଲି ॥

ଗୀତ ॥ ରାଗ ଧନାଶ୍ରୀ ॥

ଲଘୁ ଲଘୁ ଧୃତ ଧୃତ ପ୍ଲୁତକୁ । କହ ଶରଧା ବହିବାରେ । ନନ୍ଦନ ତାଳକୁ ଗଜଗତି ଚିତ୍ତେ । ଧର ତୁହି ଧୀରେ ॥

ଉଦିକ୍ଷଣ ॥୫୮॥

| ଲ | ଲ | ଗୁ |
|---|---|---|
| । | । | ୪ |

ଶ୍ଳୋକଃ- ଲଘୁର୍ଲଘୁ ଗୁରୁଶ୍ଚୈକ । ଉଦିକ୍ଷଣ ଇତିସ୍ମୃତଃ ॥

ଅର୍ଥ- ଲଘୁ ଲଘୁ ଗୁରୁଥିଲେ ଉଦିକ୍ଷଣତାଳ ବୋଲି ॥

ଗୀତ ॥ ରାଗ ଶ୍ରୀ ॥

ଲଘୁ ଲଘୁ ଗୁରୁ ଏ କିସ କହ । ଶୁଣରେ ପ୍ରାଣସଖି । ଉଦିକ୍ଷଣ ଏହି ସନ୍ତୋଷ ବହ ।

ମଣିକାଚ ॥୫୯॥

| ଗୁ | ଗୁ | ପ୍ଲୁ |
|---|---|---|
| ୪ | ୪ | ୪ |

ଶ୍ଲୋକଃ- ଗୁରୁଦ୍ୱନ୍ଦଂ ପ୍ଳୁତଶ୍ଚୈକଃ । ମଣିକାଚ ଇତିସ୍ମୃତଃ ।।

ଅର୍ଥ- ଗୁରୁ ଦୁଇ ପ୍ଳୁତଥିଲେ ମଣିକାଚତାଳ ବୋଲି ।

ଗୀତ ।। ରାଗ ନାଟ୍ୟ ।।

ଗୁରୁ ଗୁରୁ ପ୍ଳୁତ ପ୍ଳୁତ କହ କହ ମିତ । ମଣିକାଚତାଳ ଏହି ଗୁଣରେ ସଂଘାତ ।।

ତେକିଂକା ।।୬୦।।

| ଗୁ | ଲ | ଗୁ |
|---|---|---|
| ୫ | । | ୫ |

ଶ୍ଲୋକଃ- ଗୁରୁର୍ଲଘୁ ଗୁରୁଶ୍ଚୈବ ତେକିଂକା ତାଳ ଲକ୍ଷଣଂ ।।

ଅର୍ଥ- ଗୁରୁ ଲଘୁ ଗୁରୁ ଥିଲେ ଢେକିଂକା ବୋଲି ।

ଗୀତ ।। ରାଗ ସାବେରି ।।

ଗୁରୁ ଲଘୁ ଗୁରୁକି କହ ପଙ୍କଜାକ୍ଷି । ଢେଂକିକାତାଳଟି ଏହି ଶୁଣ ଶଶିମୁଖି ।

ବର୍ଣ୍ଣମଠିକା ।। ୬୧ ।।

| ଲ | ଲ | ଧୃ | ଧୃ | ଲ | ଧୃ | ଧୃ |
|---|---|---|---|---|---|---|
| । | । | ୦ | ୦ | । | ୦ | ୦ |

ଶ୍ଲୋକଃ- ଲଦୌଧୃତୌ ଲଦଦସ୍ୟା । ତାଳେ ସୌବର୍ଣ୍ଣମଠିକା ।।

ଅର୍ଥ- ଦୁଇ ଲଘୁ ଧୃତଦୁଇ ଲଘୁ ଦୁଇ ଧୃତ ଥିଲେ ବର୍ଣ୍ଣମଠିକା ତାଳ ବୋଲି ।।

ଗୀତ ।। ରାଗ ଝଞ୍ଜଟ ।।

ଦ୍ୱିଲଘୁ ଦ୍ୱିଧୃତ ଲଘୁ ଧୃତ ଧୃତକୁ ଏ କିସ କହ ସଜନି । ଏ ବର୍ଣ୍ଣମଠିକାତାଳଟି ନିଶ୍ଚୟେ ଘେନ ତୁ ଚନ୍ଦ୍ରବଦନି ।।

ଅଭିନନ୍ଦନ ।।୬୨।।

| ଲ | ଲ | ଧୃ | ଧୃ | ଗୁ |
|---|---|---|---|---|
| । | । | ୦ | ୦ | ୫ |

ଶ୍ଳୋକଃ- ଲଘୁଦ୍ୱୟଂ ଧୃତଦ୍ୱନ୍ଦ୍ୱଂ । ଗୁରୁସ୍ୟାଦଭିନନ୍ଦକଃ ॥
ଅର୍ଥ- ଲଘୁ ଦୁଇ ଧୃତଦୁଇ ଗୁରୁଥିଲେ ଅଭିନନ୍ଦତାଳ ବୋଲି ।

ଗୀତ ॥ ରାଗ ଚକ୍ରବାକ ॥

ଲଘୁ ଲଘୁ ଧୃତ ଧୃତ ଗୁରୁ ତୁ କହ କହ ରାମା । ଶୁଣ ଅଭିନନ୍ଦକୁ ମନେରଖ ବରଗୁଣଧାମା ।

ଅନ୍ତରାଳ ॥ ୬୩ ॥

| ଧୃ | ଧୃ | ଧୃ | ବି |
|---|---|---|---|
| O | O | O | L |

ଶ୍ଳୋକଃ- ଧୃତତ୍ରୟଂବିରାମାନ୍ତେ । ଅନ୍ତରାଳସ୍ୟ କଥ୍ୟତେ ॥
ଅର୍ଥ- ତିନି ଧୃତ ବିରାମ ଥିଲେ ଅନ୍ତରାଳତାଳ ବୋଲି ॥

ଗୀତ ॥ ରାଗ ମୁଖାରି ॥

ତିନି ଧୃତ ବିରାମକୁ କହ ବରନାରି ॥ ଅନ୍ତରାଳତାଳ ଏହି ଶୁଣ ଆରେ ଗୋରି ॥

ଲଘୁତାଳ ॥୬୪॥

| ଲ | ଲ | ଲ | ବି |
|---|---|---|---|
| I | I | I | L |

ଶ୍ଳୋକଃ- ଲଘୁତ୍ରୟଂ ବିରାମୈକଂ । ଲଘୁତାଳ ପ୍ରକୀର୍ତ୍ତିତା ॥
ଅର୍ଥ- ଲଘୁ ତିନି ବିରାମ ଥିଲେ ଲଘୁ ତାଳ ବୋଲି ॥

ଗୀତ ॥ ରାଗ ଶୁଦ୍ଧସାବେରି ॥

ତିନି ଲଘୁ ବିରାମକୁ କହ ସୁକୁମାରି । ଲଘୁତାଳ ଏହି ଘେନ ରସବତି ଗୋରି ।

ବିନାୟକ ତାଳ ॥୬୫॥

| ଗୁ | ଗୁ | ଗୁ | ଲ | ଲ | ପ୍ଳୁ | ଗୁ | ଲ | ଲ | ପ୍ଳୁ |
|---|---|---|---|---|---|---|---|---|---|
| 8 | 8 | 8 | I | I | 8 | 8 | I | I | 8 |

ଶ୍ଳୋକଃ- ଗଗଗଲଲପଣ୍ଟୈବ । ଗଲଲପସମନ୍ୱିତଂ ॥
ସର୍ବବିଘ୍ନୋ ପଶାନ୍ତ୍ୟର୍ଥେ । ଭବେତ୍ତାଳୋ ବିନାୟକଃ ॥

ଅର୍ଥ- ତିନିଗୁରୁ ଦୁଇ ଲଘୁ ପ୍ଲୁତ ଗୁରୁ ଦୁଇ ଲଘୁ ପ୍ଲୁତଥିଲେ ବିନାୟକତାଳ ବୋଲି ।

ଗୀତ ॥ ରାଗ ସୌରାଷ୍ଟ୍ର ॥

ନାଗରବର ହରି ପୁରତେ ରହିକରି । ଲଳିତା ପୁଛେ ଶୁଣ ତୁଙ୍ଗବିଦ୍ୟେ ।
ଗଗଗ ଲଲପଗଲଲପ ସହିକି ତାଳତୁ କହରେ । ଶୁଣ ଶୁଣ ସଜନି ।
ବିନାୟକତାଳର ଗତି ଏ । ଦୁଇ ଆବୃତ ॥

ଅନଙ୍ଗତାଳ ॥୬୬॥

| ଲ | ପ୍ଲୁ | ଲ | ପ୍ଲୁ | ଗୁ |
|---|---|---|---|---|
| । | ଌ | । | ଌ | ଌ |

ଶ୍ଳୋକଃ- ଆଦ୍ୟୋଲଘୁପ୍ଲୁତଣ୍ଟୈକ । ଲପଗୋନଙ୍ଗତାଳକେ ॥

ଅର୍ଥ- ଲଘୁପ୍ଲୁତ ଲଘୁ ପ୍ଲୁତ ଗୁରୁଥିଲେ ଅନଙ୍ଗତାଳ ବୋଲି ॥

ଗୀତ ॥ ରାଗ ମାଳବ ॥

ଲଘୁ ପ୍ଲୁତ ଲଘୁ ପ୍ଲୁତ ଗୁରୁକୁ କହ ଭୀରୁ । ମଣ୍ଡନା ତୁ ମୋ ଗୋରି
ଅନଙ୍ଗତାଳକୁ ଶୁଣ ଚନ୍ଦ୍ରବଦନି ବାରି ବାରି ॥

ବିଷମ ତାଳ ॥୬୭॥

| ଧ୍ରୁ | ,, | ,, | ,, | ଅ | ଧ୍ରୁ | ,, | ,, | ,, | ବି |
|---|---|---|---|---|---|---|---|---|---|
| ୦ | ୦ | ୦ | ୦ | ◡ | ୦ | ୦ | ୦ | ୦ | L |

ଶ୍ଳୋକଃ- ଚତ୍ୱାର୍ୟେବ ଧ୍ରୁତାନ୍ୟାଦୌ । ପଶ୍ଚାଦ୍ୟେକୋମନଧ୍ରୁତଂ ॥
ପୁରଣ୍ଟତୁର୍ଦ୍ଧ୍ରୁତାନ୍ୟନ୍ତେ । ବିରାମୋ ବିଷମୋ ମତଃ ॥

ଅର୍ଥ- ଚାରି ଧ୍ରୁତ ମଧ୍ୟେ ଅନୁଧ୍ରୁତ ପ୍ରାନ୍ତେ ଚାରି ଧ୍ରୁତ ଶେଷେ ବିରାମ ଥିଲେ ବିଷମତାଳ ବୋଲି ॥

ଗୀତ ॥ ରାଗ ଗୌଳା ॥

ଚାରି ଧୃତ ଅନୁଧୃତ । ଚାରି ଧୃତ ବିରାମକୁ କହ ବରସ୍ନେହିଁ ଶୁଣ ପ୍ରାଣଧନ ମୋର ବିଷମଟି ଏହି ॥

ନାନ୍ଦିତାଳ ॥୬୮॥

| ଲ | ଧୃ | ଲ | ଲ | ଗୁ |
|---|---|---|---|---|
| । | O | । | । | ଌ |

ଶ୍ଳୋକଃ- ଲଘୁ ଧୃତ ଲଘୁଶ୍ଚୈକ । ଲଗୌନନ୍ଦିରିତୀରିତଃ ॥

ଅର୍ଥ- ଲଘୁ ଧୃତ ଲଘୁ ଲଘୁ ଗୁରୁଥିଲେ ନାନ୍ଦିତାଳ ବୋଲି ॥

ଗୀତ ॥ ରାଗ ବରାଡି ॥

ଲଘୁ ଧୃତ ଲଘୁ ଲଘୁ ଗୁରୁ କିସ କହ ପ୍ରାଣସଖି । ନାନ୍ଦିତାଳଏ ଶୁଣ ଶଶିଜିତମୁଖି ।

କୁନ୍ଦତାଳ ॥୬୯॥

| ଲ | ,, | ,, | ,, | ଗୁ |
|---|---|---|---|---|
| । | ,, | ,, | ,, | ଌ |

ଶ୍ଳୋକଃ- ଆଦ୍ୟେ ଚତୁର୍ଲଘୁଶ୍ଚାନ୍ତେ । ଗୁରୁଶ୍ଚେତ୍ କୁନ୍ଦତାଳକଃ ॥

ଅର୍ଥ- ଚାରି ଲଘୁ ପ୍ରାନ୍ତେ ଗୁରୁ ଥିଲେ କୁନ୍ଦତାଳ ବୋଲି ॥

ଗୀତ ॥ ରାଗ ଆଶାବରି ॥

ନଗଣ ଲଘୁ ଗୁରୁ କିସ ସଙ୍ଗିନିରେ କହ ! କୁନ୍ଦତାଳ ରସବତି ଚିତ୍ତେ ସୁଖବହ ॥

ମୁକୁନ୍ଦ ତାଳ ॥୭୦॥

| ଲ | ଧୃ | ଲ | ଗୁ |
|---|---|---|---|
| । | O | । | ଌ |

ଶ୍ଳୋକଃ- ଲଘୁଧୃତ ଲଘୁଶ୍ଚୈକୋ । ଦ୍ରୁତ୍ରୁ ମୁକୁନ୍ଦତାଳକେ ॥

ଅର୍ଥ- ଲଘୁ ଧୃତ ଲଘୁ ଗୁରୁଥିଲେ ମୁକୁନ୍ଦତାଳ ବୋଲି ॥

ଗୀତ ॥ ରାଗ ରୀତିଗୌଳା ॥

ଲଘୁ ଧୃତ ଲଘୁ ଗୁରୁ । ଏ କିସ କହରେ ଭୀରୁ । ଚିତ୍ତକୁମଳାଇ ।
ଶୁଣ ଆରେ ରସବତି । ମୁକୁନ୍ଦତାଳ ଏହିଟି ମନେରଖ ଆରେ ପ୍ରାଣସହି ॥

ବ୍ରହ୍ମତାଳ ॥୭୧॥

| ଲ | ଧୃ | ଲ | ଧୃ | ଧୃ | ଲ | ଧୃ | ଧୃ | ଧୃ | ଲ |
|---|---|---|---|---|---|---|---|---|---|
| । | ୦ | । | ୦ | ୦ | । | ୦ | ୦ | ୦ | । |

ଶ୍ଳୋକଃ- ଲଘୁ ଦ୍ରୁତ ଲଘୁଶ୍ଚୈବ । ଧୃତଦ୍ୱନ୍ଦ୍ୱଂ ଲଘୁସ୍ତଥା ଧୃତତ୍ରୟଞ୍ଚମାତ୍ରାନ୍ତେ ବ୍ରହ୍ମତାଳ ପ୍ରକୀର୍ତ୍ତିତଃ ॥

ଅର୍ଥ- ଲଘୁ ଧୃତ ଲଘୁ ଦୁଇ ଧୃତ ଲଘୁ ତିନି ଧୃତ ଲଘୁ ଥିଲେ ବ୍ରହ୍ମତାଳ ବୋଲି ॥

ଗୀତ ॥ ରାଗ ଆରଭି ॥

ଲଘୁ ଧୃତ ଲଘୁଦୁଇ ଧୃତ ଲଘୁ ଧୃତତିନି ଲଘୁ କହ ପ୍ରାଣମିତ ॥ ଶୁଣ ରେ ପ୍ରାଣସଜନି । ପଙ୍କଜାକ୍ଷି ଚନ୍ଦ୍ରାନନି ବ୍ରହ୍ମତାଳ ଏହି ॥

ରୁଦ୍ରତାଳ ॥୭୨॥

| ଧୃ | ଲ | ” | ” |
|---|---|---|---|
| ୦ | । | ” | ” |

ଶ୍ଳୋକଃ- ମହାରୁଦ୍ରାକ୍ଷକେତାଳେ । ଧୃତମେକଂ ଲଘୁତ୍ରିକଂ ॥

ଅର୍ଥ- ଧୃତ, ତିନିଲଘୁ ଥିଲେ ରୁଦ୍ରତାଳ ବୋଲି ॥

ଗୀତ ॥ ରାଗ ଦର୍ବାର ॥

ଧୃତ ନଗଣକୁ କହ କହ ସଖି । ରୁଦ୍ରତାଳ ଏ ଶୁଣ ଶଶିଜିତ ମୁଖି ॥

ଚଉତାଳ ॥୭୩॥

| ଗୁ | ଧୃ | ଧୃ | ଧୃ |
|---|---|---|---|
| ୪ | ୦ | ୦ | ୦ |

ଶ୍ଲୋକଃ- ଗୁରୁଶ୍ଚୈକ ଧ୍ରୁତତ୍ରୈକଂ । ଚଉତାଳସ୍ୟକଥ୍ୟତେ ॥

ଅର୍ଥ- ଗୁରୁ ଏକ ଧ୍ରୁତ ତିନିଥିଲେ ଚଉତାଳ ବୋଲି ॥

ଗୀତ ॥ ରାଗ ଖମାଚ ॥

ଗୁରୁ ଧ୍ରୁତ ଧ୍ରୁତ ଧ୍ରୁତ କହ ମିତ ହିତ ଭାବେ । ଚଉତାଳକୁ ମନେରଖ ସଙ୍ଗିନିରେ ଏବେ ।

ଖୁଣ୍ଟୁଡ଼ିତାଳ ॥୭୪॥

| ଲ | ,, | ,, | ,, | ବି |
|---|---|---|---|---|
| । | ,, | ,, | ,, | L |

ଶ୍ଲୋକଃ- ଚତୁର୍ମାତ୍ରା ବିରାମାନ୍ତେ । ଖୁଣ୍ଟୁଡ଼ି ତାଳଲକ୍ଷଣଂ ॥

ଅର୍ଥ- ଚାରି ଲଘୁ ପ୍ରାନ୍ତେ ବିରାମ ଥିଲେ ଖୁଣ୍ଟୁଡ଼ିତାଳ ବୋଲି ।

ଗୀତ ॥ ରାଗ ପାଛବରାଳି ॥

ଚାରି ଲଘୁ ବିରାମକୁ । ଜୀବଧନ କହ । ଖୁଣ୍ଟୁଡ଼ିତାଳଟି ଏହି ଚିତ୍ତେ ଶ୍ରଦ୍ଧା ବହ ।

ଅଭଙ୍ଗତାଳ ॥୭୫॥

| ଲ | ଗୁ |
|---|---|
| । | ଌ |

ଶ୍ଲୋକଃ- ଲଘୁ ରେକଃ ପ୍ଲୁତଶ୍ଚୈକ । ଅଭଙ୍ଗ ତାଳଲକ୍ଷଣଂ ॥

ଅର୍ଥ- ଲଘୁ ପ୍ଲୁତଥିଲେ ଅଭଙ୍ଗ ତାଳ ବୋଲି ।

ଗୀତ ॥ ରାଗ କାନଡ଼ା ॥

ଲଘୁପକୁକହତ ସହି ଶରଧାରେ । ଅଭଙ୍ଗତାଳ ଏହିଟି ଶୁଣ ତୋଷଭରେ ।

ରାଜଝଙ୍କାର ॥୭୬॥

| ଗୁ | ଲ | ଗୁ | ଧ୍ରୁ | ଧ୍ରୁ |
|---|---|---|---|---|
| ଌ | । | ଌ | O | O |

ଶ୍ଳୋକଃ- ରାଜଝଙ୍କାରଉକ୍ତୋସୌ । ରଗଣାଚ୍ଚ ଧୃତଦ୍ୱୟଂ ॥

ଅର୍ଥ- ଗୁରୁ ଲଘୁ ଗୁରୁ, ଦୁଇ ଧୃତ ଥିଲେ ରାଜଝଙ୍କାରତାଳ ବୋଲି ।

ଗୀତ ॥ ରାଗ ଆଭୋଗି ॥

ରଗଣ ଧୃତ ଧୃତକୁ କିସ କହ । ରାଜଝଙ୍କାର ଏ ଶୁଣି ଶ୍ରଦ୍ଧାବହ ॥

ଷଟତାଳ ॥୭୭॥

| ଧୃ | ,, | ,, | ,, | ,, | ,, | ବି |
|---|---|---|---|---|---|---|
| O | ,, | ,, | ,, | ,, | ,, | L |

ଶ୍ଳୋକଃ- ଧୃତ ଷଷ୍ଠ ବିରାମାନ୍ତେ । ଷଟ୍‌ତାଳ ନାମକଥ୍ୟତେ ॥

ଅର୍ଥ- ଷଟ୍‌ଧୃତ ପ୍ରାନ୍ତେ ବିରାମ ଥିଲେ ଷଟତାଳ ବୋଲି ।

ଗୀତ ॥ ରାଗ ତୋଡ଼ି ॥

ଷଟ ଧୃତ ବିରାମକୁକହ ପ୍ରିୟସହି । ଶୁଣରେ ରମଣିମଣି ଷଟତାଳ ଏହି

ଲଘୁଶେଖର ତାଳ ॥୭୮॥

| ଲ | ଅନଧୃତ |
|---|---|
| । | ◡ |

ଶ୍ଳୋକଃ- ଲଘୁମେକୋ ମନୁଧୃତଂ । ତାଳୋସୌ ଲଘୁଶେଖରଃ ॥

ଅର୍ଥ- ଏକ ଲଘୁ ଅନୁଧୃତ ଥିଲେ ଲଘୁଶେଖରତାଳ ବୋଲି ।

ଗୀତ ॥ ରାଗ କୁରଞ୍ଜି ॥

ଲଘୁ ଅନୁଧୃତ କିସ କହ ଜୀବସହି । ଶୁଣ ସଜନି ଏ ଲଘୁଶେଖର ଅଟଇ ॥୭୯॥

ପ୍ରତାପଶେଖର ॥୭୯॥

| ଧୃ | ଧୃ | ଅ |
|---|---|---|
| O | O | ◡ |

ଶ୍ଳୋକଃ- ଧୃତୌପ୍ରତାପଶିଖରେ । ପ୍ରାନ୍ତେ ମନୁଧୃତସ୍ଥିତଂ ॥

ଅର୍ଥ- ଦୁଇ ଧୃତ ପ୍ରାନ୍ତେ ଅନୁଧୃତଥିଲେ ପ୍ରତାପଶେଖରତାଳ ବୋଲି ॥

ଗୀତ ॥ ରାଗ ମଧ୍ୟମାବତୀ ॥

ଦୁଇ ଧୃତ ଅନୁଧୃତ କହରେ ତୁ । ପ୍ରତାପଶେଖରତାଳ କର ହେତୁ ॥

### ଗଜଝମ୍ପା ॥୮୦॥

| ଗୁ | ଧୃ | ଧୃ | ବି |
|---|---|---|---|
| 8 | O | O | L |

ଶ୍ଳୋକଃ- ଗଜଝମ୍ପା ଗୁରୁରେକୋ । ବିରାମାନ୍ତଧୃତଦ୍ୱୟଂ ॥

ଅର୍ଥ- ଗୁରୁ ଦୁଇ ଧୃତ ପ୍ରାନ୍ତେ ବିରାମ ଥିଲେ ଗଜଝମ୍ପାତାଳ ବୋଲି ।

ଗୀତ ॥ ରାଗ ପୂରିକଲ୍ୟାଣି ॥

ଗୁରୁ ଦୁଇ ଧୃତ ବିରାମକୁ କହସଖି । ଗଜଝମ୍ପାଅଟଇ ଏ ପୂର୍ଣ୍ଣଚନ୍ଦ୍ରମୁଖି ॥

### ଚତୁର୍ମୁଖ ॥୮୧॥

| ଲ | ଗୁ | ଲ | ପ୍ଲୁ |
|---|---|---|---|
| \| | 8 | \| | 8 |

ଶ୍ଳୋକଃ- ଲଘୁ ଗୁରୁ ଲଘୁଶ୍ଚେକ । ପ୍ରାନ୍ତେ ପ୍ଲୁତସମନ୍ୱିତଂ ॥

ଅର୍ଥ- ଚତୁର୍ମୁଖ ଇତିକ୍ଷାତାଂ । କଥିତଂ ଭରତୈରପି ।

ଅର୍ଥ- ଲଘୁ ଗୁରୁ ଲଘୁ ପ୍ଲୁତ ଥିଲେ ଚତୁର୍ମୁଖତାଳ ବୋଲି ।

ଗୀତ ॥ ରାଗ ନବରୋଜୁ ॥

ଲଘୁ ଗୁରୁ ଲଘୁ ପ୍ଲୁତ କହ କହ ପ୍ରାଣମିତ । ଚତୁର୍ମୁଖତାଳ ଏହି ଶୁଣରେ ସଂଘାତ ॥

### ଝମ୍ପାରତାଳ ॥୮୨॥

| ପ୍ଲୁ | ପ୍ଲୁ | ଲ | ଗୁ | ଗୁ | ଲ | ଲ | ଧୃ | ଧୃ | ଧୃ | ଧୃ | ପ୍ଲୁ | ଲ | ଗୁ | ଗୁ | ଧୃ | ଧୃ |
|---|---|---|---|---|---|---|---|---|---|---|---|---|---|---|---|---|
| 8 | 8 | \| | 8 | 8 | \| | \| | O | O | O | O | 8 | \| | 8 | 8 | O | O |

ଶ୍ଳୋକଃ- ପ୍ଳୁତୌଲୋଗୌଲଲୌଧୃତୌ । ଧୃତୌପଲଗଗାଧୃତୌ ।
ଝଙ୍କାରତାଳ ଇତ୍ୟକ୍ତୋ । ଭରତାଦିବିଶାରଦୈଃ ॥

ଅର୍ଥ- ପ୍ଳୁତ ଦୁଇ, ଲଘୁ, ଗୁରୁ ଦୁଇ, ଲଘୁ ଦୁଇ, ଧୃତ ଚାରି, ପ୍ଳୁତ ଲଘୁ, ଦୁଇ ଗୁରୁ ଦୁଇ ଧୃତ ଥିଲେ ଝଙ୍କାରତାଳ ବୋଲି ।

ଗୀତ ॥ ରାଗ ନାଟ୍ୟ ॥

ପ୍ଳୁତ ପ୍ଳୁତ ଲଘୁ ଗୁରୁ ଗୁରୁ । ଦୁଇ ଲଘୁ ଚାରି ଧୃତ । ପ୍ଳୁତ ଲଘୁ ଦୁଇ ଗୁରୁ ଧୃତ ଧୃତ । ଏ କିସ ରସବତି କହରେ । ସୁନ୍ଦରମନ୍ଦରଗିରିବରଉରଜା । ଏ ଝଙ୍କାରତାଳକୁ ମନେ ହୋଇ ପରସନ । ନିଶିଦିନରେ କର ହେଜା ॥

ପ୍ରତିମଠାତାଳ ॥୮୩॥

| ଲ | ଲ | ଗୁ | ଲ | ଗୁ | ଲ |
|---|---|---|---|---|---|
| । | । | ଌ | । | ଌ | । |

ଶ୍ଳୋକଃ- ଲଲଗାଲଗଲସ୍ୟାତ । ତାଳସୌ ପ୍ରତିମଠକେ ॥

ଅର୍ଥ- ଦୁଇ ଲଘୁ ଗୁରୁ ଲଘୁ ଗୁରୁ ଲଘୁ ଥିଲେ ପ୍ରତିମଠାତାଳ ବୋଲି ।

ଗୀତ ॥ ରାଗ ଶ୍ରୀ ॥

ସଗଣ ଲଘୁ ଗୁରୁ ଲଘୁ ଏ କିସ କହ ଜୀବବନ୍ଧୁ । ପ୍ରତିମଠାତାଳ ଏହି ଶୁଣ ରସସିନ୍ଧୁ ॥

ତୃତୀୟକ ତାଳ ॥ ୮୪ ॥

| ଧୃ | ,, | ,, | ଅ |
|---|---|---|---|
| ୦ | ,, | ,, | ◡ |

ଶ୍ଳୋକଃ- ଧୃତତ୍ରୟଂମନୁଧୃତଂ । ତାଳସ୍ୟାଦ୍ତୃତୀୟକଃ ॥

ଅର୍ଥ- ତିନି ଧୃତ ପ୍ରାନ୍ତେ ଅନୁଧୃତ ଥିଲେ ତୃତୀୟକତାଳ ବୋଲି ।

ଗୀତ ॥ ରାଗ ଭୈରବି ॥

ଧୃତ ତିନି ପ୍ରାନ୍ତେ ଅନୁଧୃତ କହ କହ ସହି । ଶୁଣରେ ସୁରସବତି ତୃତୀୟକ ଏହି ।

ବାଦକାତାଳ ॥୮୫॥

| ପ୍ଲୁ | ପ୍ଲୁ | ଲ | ଲ | ଲ | ଲ | ଗୁ | ଗୁ | ଗୁ | ଗୁ | ଗୁ | ଗୁ | ଲ | ଲ | ଧୃ | ଧୃ | ଲ | କା |
|---|---|---|---|---|---|---|---|---|---|---|---|---|---|---|---|---|---|
| 8 | 8 | \| | \| | \| | \| | 8 | 8 | 8 | 8 | 8 | 8 | \| | \| | O | O | \| | + |

ଶ୍ଲୋକଃ- ପ୍ଲୁତଦ୍ୱୟଂ ଚତୁର୍ଲଘୁ । ଗୁଷଟ୍କଂ ବିଧୀୟତେ ।
ଲଘୁଦ୍ୱନ୍ଦ୍ୱଂ ଧୃତଦ୍ୱନ୍ଦ୍ୱଂ । ଲଘୁର୍ନିଶବ୍ଦବାଦକେ ॥

ଅର୍ଥ- ପ୍ଲୁତଦୁଇ, ଲଘୁଚାରି, ଗୁରୁଛ, ଲଘୁଦୁଇ, ଧୃତଦୁଇ, ଲଘୁ କାକପଦ ଥିଲେ ବାଦକାତାଳ ବୋଲି ।

ଗୀତ ॥ ରାଗ କଲ୍ୟାଣି ॥

ପ୍ଲୁତ ପ୍ଲୁତକୁ ଚାରି ଲଘୁକୁ । ଛ ଗୁରୁକୁ । ଲଲଦ ଲଘୁକୁ କାକପଦକୁ ଭାଳିଭାଳି । କହତ ବାଳିକାମ କେଳି । ବର୍ଦ୍ଧନି ଗୁଣଶାଳିନି ଶୁଣ । ହେମଗୋରି ରାମନୟନି କୁନ୍ଦରଦନି ବାଦକା ତାଳକୁ ଜାଣ ॥

ନଳତାଳ ॥୮୬॥

| ଗୁ | ଗୁ | ପ୍ଲୁ | ପ୍ଲୁ | ଲ | ଲ |
|---|---|---|---|---|---|
| 8 | 8 | 8 | 8 | \| | \| |

ଶ୍ଲୋକଃ- ଗୁରୁଦ୍ୱୟଂ ପ୍ଲୁତଦ୍ୱୟଂ । ଲଘୁଯୁଗ୍ମଂ ପ୍ରକୀର୍ତ୍ତିତା ।
ନଳତାଳ ଇତି ଖ୍ୟାତା । ମୁନିଭି ସକଳୈ ରପି ॥

ଅର୍ଥ- ଗୁରୁଦୁଇ ପ୍ଲୁତଦୁଇ ଲ ଦୁଇଥିଲେ ନଳତାଳ ବୋଲି ।

ଗୀତ ॥ ରାଗ ନାଟ୍ୟ ॥

ଦୁଇ ଗୁରୁକୁ ଦୁଇ ପ୍ଲୁତକୁ ଦୁଇ ଲଘୁକୁ । କହରେ ସଖି ବିଧୁବଦନି କୁନ୍ଦରଦନି । କୋକିଳଭାଷି ମୃଦୁହାସିରେ ନଳତାଳ ଏ ଶୁଣଶୁଣ । ମୋ ପ୍ରାଣପ୍ରେୟସି ॥

କୁବେର ॥୮୭॥

| ଲ | ଲ | ପ୍ଳୁ | ପ୍ଳୁ | ଗୁ | ଗୁ |
|---|---|---|---|---|---|
| । | । | ଃ | ଃ | ଃ | ଃ |

ଶ୍ଳୋକଃ- ଲଲପାଃ ପଗଗଶ୍ଚୈବ । କୁବେରୋ ତାଳଲକ୍ଷଣଂ ॥
ଅର୍ଥ- ଲଘୁଦୁଇ ପ୍ଳୁତ ଦୁଇ ଗୁରୁ ଦୁଇଥିଲେ କୁବେର ତାଳ ବୋଲି

ଗୀତ ॥ ରାଗ ବିଳାହରି ॥

ଦୁଇ ଲଘୁ ପ୍ଳୁତ ଦୁଇ ଗୁରୁ ଗୁରୁକୁ କହ କହରେ ପ୍ରାଣ ସଙ୍ଗିନି ।
ରସବତିଗୋରି ଚିତ୍ତେ ଅନୁମାନ କର । କୁବେରତାଳ ଏହିରେ ରସରଙ୍ଗିନି ॥

ବସନ୍ତତାଳ ॥୮୮॥

| ଲ | ,, | ,, | ଗୁ | ,, | ,, |
|---|---|---|---|---|---|
| । | ,, | ,, | ଃ | ,, | ,, |

ଶ୍ଳୋକଃ- ଲଘୁତ୍ରୈକଂ ଗୁରୁତ୍ରୈକଂ । ବସନ୍ତ ତାଳଲକ୍ଷଣଂ ॥
ଅର୍ଥ- ତିନି ଲଘୁ ତିନି ଗୁରୁ ଥିଲେ ବସନ୍ତ ତାଳ ବୋଲି ।

ଗୀତ ॥ ରାଗ ଧନାଶ୍ରୀ ॥

ନଗଣଗୁରୁ ତିନି କହ ରମଣି ଅତି ଶରଧାରେ । ବସନ୍ତତାଳକୁ ଶୁଣ ଶୁଣରେ ସଧରେ ।

ଲଳିତ ତାଳ ॥୮୯॥

| ଧ୍ରୁ | ଧ୍ରୁ | ଗୁ | ଲ |
|---|---|---|---|
| ୦ | ୦ | ଃ | । |

ଶ୍ଳୋକଃ- ଧ୍ରୁତଦ୍ୱୟଂ ଗୁରୁରେକୋ । ଲଶ୍ଚୈ ଲଳିତତାଳକଃ ॥
ଅର୍ଥ- ଧ୍ରୁତ ଦୁଇ ଗୁରୁ ଲଘୁ ଥିଲେ ଲଳିତତାଳ ବୋଲି ।

ଗୀତ ।। ରାଗ ମାଧବମନହାରି ।।

ଧ୍ରୁତ ଦୁଇ ଗୁରୁ ଲଘୁକୁ ଏ କିସ କହ ସଜନି । ଶୁଣ ରସବତି ଲଳିତ ତାଳଟି ଚିତ୍ତେ ରଖ ଅନୁମାନି ।

ଶଶିତାଳ ।।୯୦।।

| ଲ | ଗୁ |
|---|---|
| । | ଃ |

ଶ୍ଳୋକଃ- ଆଦ୍ୟେ ଲଘୁ ଗୁରୁର୍ଶ୍ଚୈକୋ । ଶଶିତାଳ ପ୍ରକୀର୍ତ୍ତିତଃ ।।

ଅର୍ଥ- ଲଘୁ ଏକ ଗୁରୁ ଏକ ଥିଲେ ଶଶିତାଳ ବୋଲି ।

ଗୀତ ।। ରାଗ ହଂସଧ୍ୱନି ।।

ଲଘୁ ଗୁରୁ ଏ କିସ କହ ବରସ୍ନେହି । ଶଶିଜିତମୁଖି ଶୁଣ ଶଶି ତାଳ ଏହି ।।

କରଶାଖାତାଳ ।।୯୧।।

| ଧ୍ରୁ | ,, | ,, | ,, | ,, | ବି |
|---|---|---|---|---|---|
| O | ,, | | ,, | ,, | ( |

ଶ୍ଳୋକଃ- ପଞ୍ଚ ଧ୍ରୁତଂ ବିରାମାନ୍ତଂ । କରଶାଖା ପ୍ରକୀର୍ତ୍ତିତଃ ।।

ଅର୍ଥ- ଆଦ୍ୟେ ପାଞ୍ଚ ଧ୍ରୁତ ପ୍ରାନ୍ତେ ବିରାମଥିଲେ କରଶାଖାତାଳ ବୋଲି ।

ଗୀତ ।। ରାଗ ରେଗୁପ୍ତି ।।

ଧ୍ରୁତ ପାଞ୍ଚ ବିରାମ ଏ କିନାମ କହତ । କରଶାଖା ତାଳ ଏହି ଶୁଣ ହିତେମିତ ।।

ରତ୍ନମଠକ ।।୯୨।।

| ଗୁ | ଗୁ | ଲ | ଲ | କା |
|---|---|---|---|---|
| ଃ | ଃ | । | । | + |

ଶ୍ଳୋକଃ- ଗୌଲୌକ କପଦେର୍ଶ୍ଚୈବ । ତାଳଷ୍ଟ ରତ୍ନମଠକଃ ।

ଅର୍ଥ- ଗୁରୁ ଦୁଇ ଲଘୁଦୁଇ କାକପଦ ଥିଲେ ରତ୍ନମଠକ ତାଳ ବୋଲି ।।

ଗୀତ ॥ ରାଗ ଖରହରପ୍ରିୟା ॥

ଦ୍ୱିଗୁରୁ ଦ୍ୱିଲଘୁ କାକପଦକୁ କହ କହ ସଖି । ପଙ୍କଜାକ୍ଷି ବାରିରେ ।
ରବଲମଠତାଳ ତୁ ଶୁଣ ଚିତ୍ତଦେଇ ଚାରୁ ହେମଗୋରିରେ ॥

ବର୍ଦ୍ଧବର୍ଣ୍ଣ ॥୯୩॥

| ଧୃ | ,, | ଲ | ପ୍ଲୁ |
|---|---|---|---|
| ୦ | ,, | । | ୪ |

ଶ୍ଳୋକଃ- ଧୃତଦ୍ୱନ୍ଦ୍ୱଂ ଲଘୁରେକୋ । ପ୍ଲୁତସ୍ୟାତ୍ ବର୍ଦ୍ଧବର୍ଣ୍ଣକଃ ।

ଅର୍ଥ- ଦୁଇ ଧୃତ ଲଘୁ ପ୍ଲୁତ ଥିଲେ ବର୍ଦ୍ଧବର୍ଣ୍ଣତାଳ ବୋଲି ॥

ଗୀତ ॥ ରାଗ ସେନା ॥

ଧୃତ ଦୁଇ ଲଘୁ ପ୍ଲୁତ କହ ପ୍ରିୟସଖି । ଶୁଣି ବର୍ଦ୍ଧବର୍ଣ୍ଣ ଏହି ଶଶିଜିତମୁଖି ॥

ଯତିତାଳ ॥୯୪॥

| ଲ | ଲ | ପ୍ଲୁ | ପ୍ଲୁ |
|---|---|---|---|
| । | । | ୪ | ୪ |

ଶ୍ଳୋକଃ- ଲଘୁଦ୍ୱନ୍ଦ୍ୱଂ ପ୍ଲୁତଦ୍ୱନ୍ଦ୍ୱଂ । ଯତି ତାଳ ପ୍ରକୀର୍ତ୍ତିତାଃ ।

ଅର୍ଥ- ଦୁଇ ଲଘୁ ଦୁଇ ପ୍ଲୁତଥିଲେ ଯତିତାଳ ବୋଲି ।

ଗୀତ ॥ ରାଗ ଭୂପାଳ ॥

ଦୁଇ ଲଘୁ ଦୁଇ ପ୍ଲୁତ କହ ୨ ମିତ । ଯତିତାଳ ଅଟେ ଏହି ଶୁଣରେ ସଂଘାତ ॥

ରାଜନାରାୟଣ ॥୯୫॥

| ଧୃ | ଧୃ | ଲ | ଗୁ | ଲ | ଗୁ |
|---|---|---|---|---|---|
| ୦ | ୦ | । | ୪ | । | ୪ |

ଶ୍ଳୋକଃ- ଧୃତଦ୍ୱନ୍ଦ୍ୱଂ ଲଗୌଲୋଗୋ । ରାଜନାରାୟଣସ୍ମୃତଃ ॥

ଅର୍ଥ- ଧୃତ ଦୁଇ ଲଘୁ ଗୁରୁ ଲଘୁ ଗୁରୁଥିଲେ ରାଜନାରାୟଣତାଳ ବୋଲି ।

ରାଗ ବସନ୍ତ ॥

କହ ଦଦ ଲଘୁଗୁରୁ ଲଘୁଗୁରୁ ବାରେ ରାଜନାରାୟଣ ତାଳଶୁଣ ଶରଧାରେ ॥

କଙ୍କାଳ ॥୯୬॥

| ଲ | ଲ | ଲ | ଗୁ | ଲ |
|---|---|---|---|---|
| । | । | । | 8 | । |

ଶ୍ଳୋକଃ- ଲଘୁତ୍ରୟଂ ଗୁରୁଶ୍ଚୈକ । ର୍ଲଘୁ କଙ୍କାଳତାଳକେ ॥

ଅର୍ଥ- ଲଘୁ ତିନି ଗୁରୁ ଲଘୁଥିଲେ କଙ୍କାଳ ତାଳ ବୋଲି ।

ଗୀତ ॥ ରାଗ ମାରୁଆ ॥

ଲଘୁ ତିନି ଗୁରୁ ଲଘୁ କହ ନବବାଳି । କଙ୍କାଳ ତାଳ ଯେ ଶୁଣ ମୋ ପ୍ରାଣସଙ୍ଗାଳି ॥

ଚଞ୍ଚତାଳ ॥୯୭॥

| ଧୃ | ,, | ,, | ଲ | ଲ |
|---|---|---|---|---|
| O | ,, | ,, | । | । |

ଶ୍ଳୋକଃ- ଧୃତତ୍ରୟଂ ଲଘୁଦ୍ୱନ୍ଦ୍ୱଂ । ଚଞ୍ଚତାଳ ପ୍ରକୀର୍ତ୍ତିତଃ ॥

ଅର୍ଥ- ଧୃତ ତିନି ଲଘୁ ଦୁଇଥିଲେ ଚଞ୍ଚତାଳ ବୋଲି ।

ଗୀତ ॥ ରାଗ ହରିକାମୋଦି ॥

ମିତ କହ ତିନି ଧୃତ ଲଘୁ ଲଘୁ ଏ କିସ । ଚଞ୍ଚତାଳ ଏହି ବୋଲନ୍ତି ଶୁଣି ହୁଅ ତୋଷ ।

ରତିତାଳ ॥୯୮॥

| ଲ | ଗୁ | ବି |
|---|---|---|
| । | 8 | L |

ଶ୍ଳୋକଃ- ଲଘୁରେକୋ ଗୁରୁଶ୍ଚୈକ । ବିରାମ ରତିତାଳକେ ॥

ଅର୍ଥ- ଲଘୁ ଏକ ଗୁରୁ ଏକ ପ୍ରାନ୍ତେ ବିରାମ ଥିଲେ ରତିତାଳ ବୋଲି ।

ଗୀତ ॥ ରାଗ ବେଗଡ଼ା ॥

ଲଘୁ ଗୁରୁ ବିରାମ ଏ କିସ କହ । ରତିତାଳ ଶୁଣି ସନ୍ତୋଷ ବହ ॥

ମଦନତାଳ ॥୯୯॥

| ଧୃ | ଧୃ | ଗୁ |
|---|---|---|
| ୦ | ୦ | ୫ |

ଶ୍ଳୋକଃ- ଧୃତଂଦ୍ୱନ୍ଦ୍ୱଂ ଗୁରୁର୍ଣ୍ଣେକ । ମଦନତାଳ ଉଚ୍ୟତେ ॥

ଅର୍ଥ- ଧୃତ ଦୁଇ ଗୁରୁ ଏକ ଥିଲେ ମଦନତାଳ ବୋଲି ।

ଗୀତ ॥ ରାଗ ସେନା ॥

ଧୃତ ଧୃତ ଗୁରୁ କହ କନକଦେହା । ମଦନତାଳ ଶୁଣ ଗୁରୁସ୍ନେହା ।

ପାର୍ବତିଲୋଚନତାଳ ॥୧୦୦॥

| ଧୃ | ଧୃ | ଲ | ଲ | ଧୃ | ଧୃ | ଗୁ | ଗୁ | ଲ | ଲ | ଲ | ଲ | ଗୁ | ଲ | ଲ |
|---|---|---|---|---|---|---|---|---|---|---|---|---|---|---|
| ୦ | ୦ | । | । | ୦ | ୦ | ୫ | ୫ | । | । | । | । | ୫ | । | । |

ଶ୍ଳୋକଃ- ଧୃତଂଦ୍ୱନ୍ଦ୍ୱଂଲଘୁଦ୍ୱନ୍ଦ୍ୱଂ । ଧୃତଦ୍ୱୟଂସମନ୍ୱିତଂ ॥
ଗୁରୁଦ୍ୱୟଂ ଲଘୁର୍ଲୌଚ । ଗଲୌ ପାର୍ବତିଲୋଚନେ ॥

ଅର୍ଥ- ଧୃତ ଦୁଇ, ଲଘୁ ଦୁଇ, ଧୃତ ଦୁଇ, ଗୁରୁ ଦୁଇ, ଲଘୁ ଚାରି, ଗୁରୁ ଏକ, ଲଘୁ ଦୁଇଥିଲେ ପାର୍ବତିଲୋଚନ ତାଳ ବୋଲି ।

ଗୀତ ॥ ରାଗ ବସନ୍ତ ॥

ଧୃତ ଧୃତ ଲଘୁ ଲଘୁ । ଧୃତ ଦୁଇ ଗୁରୁ । ଗୁରୁ ଚାରି ଲଘୁ ଗୁରୁ ଲଘୁ ।
ଲଘୁକୁ କହରେ ପ୍ରେୟସି । ରାଜହଂସଗତି ରସବତି ବିଧୁମୁଖି ପ୍ରିୟସଖି
ପିକ କଳଭାଷି । ପାର୍ବତିଲୋଚନ ତାଳକୁ ଶୁଣ ଘନକେଶି ।

ସାରଙ୍ଗତାଳ ॥୧୦୧॥

| ଅ | ଧୃ | ଧୃ | ଧୃ | ଧୃ |
|---|---|---|---|---|
| ‿ | ୦ | ୦ | ୦ | ୦ |

ଶ୍ଳୋକଃ- ସାରଙ୍ଗେନୁଧୃତଂର୍ଣ୍ଣେକ । ମନ୍ତେଧୃତଚତୁଷ୍ଟୟଂ ॥

ଅର୍ଥ- ଆଦ୍ୟେ ଅନୁଧୃତ ଚାରି ଧୃତ ଥିଲେ ସାରଙ୍ଗତାଳ ବୋଲି ।

ଗୀତ ॥ ରାଗ କାମୋଦି ॥

ଅନୁଧୃତ ଧୃତଚାରି ସତକହ ବାରି । ସାରଙ୍ଗତାଳକୁ ତୁ ହେତୁ କର ଗୋରି ॥

ଶ୍ରୀନନ୍ଦବର୍ଦ୍ଧନତାଳ ॥୧୦୨॥

| ଗୁ | ଲ | ଲ | ପ୍ଲୁ |
|---|---|---|---|
| ୪ | । | । | ୪ |

ଶ୍ଳୋକଃ- ଗୁରୁରେକଲଘୁଦ୍ୱନ୍ଦ୍ୱଂ । ପ୍ଲୁତଶ୍ରୀନନ୍ଦବର୍ଦ୍ଧନଂ ॥

ଅର୍ଥ- ଗୁରୁ ୧ ଲଘୁ ୨ ପ୍ଲୁତ ୧ ଥିଲେ ଶ୍ରୀନନ୍ଦବର୍ଦ୍ଧନତାଳ ବୋଲି ।

ଗୀତି ॥ ରାଗ ମେଘରଞ୍ଜି ॥

ଗୁରୁ ଏକ ଲଘୁଦୁଇ ପ୍ଲୁତ ଏକ କହ ସହି । ଶ୍ରୀନନ୍ଦବର୍ଦ୍ଧନ ଏହି ଶୁଣ ପ୍ରିୟସହି ॥

ଲୀଳାତାଳ ॥ ୧୦୩ ॥

| ଅ | ଧୃ | ଲ | ପ୍ଲୁ |
|---|---|---|---|
| ◡ | ୦ | । | ୪ |

ଶ୍ଳୋକଃ- ଆଦ୍ୟେବ୍ରନଧୃତଂଶ୍ଚୈକଂ । ଲୀଳାତାଳେଦଲପ୍ଲୁତଃ ॥

ଅର୍ଥ- ଅନୁଧୃତ, ଧୃତ, ଲଘୁ, ପ୍ଲୁତଥିଲେ ଲୀଳାତାଳ ବୋଲି ।

ଗୀତ ॥ ରାଗ ମଳୟମରୁତ ॥

ଅନୁଧୃତ ଧୃତ ଲଘୁ ପ୍ଲୁତକୁ କହତ । ଲୀଳାତାଳ ଶୁଣ ଶୁଣ ଆଗୋ ପ୍ରାଣମିତ ॥

ବିଲୋକିତତାଳ ॥୧୦୪॥

| ଲ | ଗୁ | ଧୃ | ଧୃ | ପ୍ଲୁ |
|---|---|---|---|---|
| । | ୪ | ୦ | ୦ | ୪ |

ଶ୍ଳୋକଃ- ଲଘୁର୍ଗୁରୁ ର୍ଦ୍ଧୃତଦ୍ୱନ୍ଦ୍ୱଂ । ପ୍ଲୁତସ୍ୟାଷ୍ଟବିଲୋକିତଃ ॥

ଅର୍ଥ- ଲଘୁ ୧ ଗୁରୁ ୧ ଧୃତ ୨ ପ୍ଲୁତ ଥିଲେ ବିଲୋକିତତାଳ ବୋଲି ।

ଗୀତ ॥ ରାଗ ସୁରଟ ॥

କହ ଲଘୁ ଗୁରୁ ଧୃତ ଧୃତ ପ୍ଲୁତ । ଗୁଣରୁ ବିଲୋକିତତାଳରେ ସଂଘାତ ॥

ଲଳୀତପ୍ରିୟତାଳ ॥୧୦୫॥

| ଲ | ଲ | ଗୁ | ଲ | ଗୁ |
|---|---|---|---|---|
| । | । | ଌ | । | ଌ |

ଶ୍ଲୋକଃ- ଲଦ୍ୱୌଗଲ ଗୁରୁଶ୍ଚୈକ । ସ୍ତାଳସୌଲଳିତପ୍ରିୟେ ॥

ଅର୍ଥ- ଲଘୁ ଦୁଇ, ଗୁରୁ ଏକ, ଲଘୁ ଏକ, ଗୁରୁ ଏକ ଥିଲେ ଲଳିତପ୍ରିୟତାଳ ବୋଲି ।

ଗୀତ ॥ ରାଗ ତୋଡ଼ି ॥

ଲଲଗଲ ଗୁରୁ କିସ କହ ସଖି ବାରେ । ଶୁଣ ଶୁଣ ଲଳିତପ୍ରିୟକୁ ତୁ ସ୍ନେହରେ ॥

ଜନକତାଳ ॥୧୦୬॥

| ଲ | ଲ | ଲ | ଲ | ଗୁ | ଗୁ | ଲ | ଲ | ଗୁ | ପ୍ଲୁ | ଗୁ |
|---|---|---|---|---|---|---|---|---|---|---|
| । | । | । | । | ଌ | ଌ | । | ଌ | ଌ | ଌ | ଌ |

ଶ୍ଲୋକଃ- ଚତ୍ୱାର ଲଘବୋଯତ୍ର । ଗୁରୁଦ୍ୱନ୍ଦ୍ୱଂଲଘୁଦ୍ୱୟଂ ॥

ଗୁରୁ ପ୍ଲୁତୌ ଗୁରୁଶ୍ଚୈବ । ଜନକତାଳଲକ୍ଷଣଂ ।

ଅର୍ଥ- ଚାରି ଲଘୁ, ଦୁଇ ଗୁରୁ, ଦୁଇ ଲଘୁ, ଏକ ଗୁରୁ, ଏକ ପ୍ଲୁତ, ଏକ ଗୁରୁଥିଲେ ଜନକତାଳବୋଲି ।

ଗୀତ ॥ ରାଗ ପରଜ ॥

ଚାରି ଲଘୁ ଦୁଇ ଗୁରୁ । ଦୁଇ ଲଘୁ ଗୁରୁ ପ୍ଲୁତ ଗୁରୁ କହ ପ୍ରିୟସଖି । ପଙ୍କଜ ବିଧୁମୁଖି ମନକୁ ରିଝାଇ ଶୁଣ ଶୁଣ ମୋହିନି । କୁନ୍ଦରଦନି ଧନି ଜନକତାଳ ଏ ହିତକର ହୋଇ ॥

ଲକ୍ଷ୍ମୀତାଳ ॥୧୦୭॥

| ଲ | ଧୃ | ଲ | ଧୃ | ପ୍ଲୁ | ବି |
|---|---|---|---|---|---|
| । | O | । | O | ଌ | L |

ଶ୍ଳୋକଃ- ଲଦୌ ଲଦୌ ପ୍ଲୁତ ପ୍ରାନ୍ତେ । ବିରାମ ଲକ୍ଷ୍ମିତାଳକେ ॥

ଅର୍ଥ- ଲଘୁ, ଧୃତ, ଲଘୁ, ଧୃତ, ପ୍ଲୁତ, ବିରାମ ଥିଲେ ଲକ୍ଷ୍ମୀତାଳ ବୋଲି ।

ଗୀତ ॥ ରାଗ ଚକ୍ରବାକ ॥

ଲଘୁଧୃତ ଲଘୁ ଧୃତ ପ୍ଲୁତ ବିରାମକୁ କହ ବର ବରନାରେ ।

ଲକ୍ଷ୍ମୀତାଳକୁ ହେତୁକର ସଜପଙ୍କଜମୁଖି ଶୁଣ ବାରେ ।

ରାଜବର୍ଦ୍ଧନତାଳ ॥୧୦୮॥

| ଧୃ | ଧୃ | ବି | ଧୃ | ପ୍ଲୁ |
|---|---|---|---|---|
| O | O | L | O | 8 |

ଶ୍ଳୋକଃ- ବିନ୍ଦୁଦ୍ଵୟଂ ବିରାମାଶ୍ଚ । ଦପ୍ଲୁତୌ ରାଜବର୍ଦ୍ଧନେ ॥

ଅର୍ଥ- ଧୃତ ଦୁଇ, ବିରାମ, ଧୃତ, ପ୍ଲୁତ ଥିଲେ ରାଜବର୍ଦ୍ଧନତାଳ ବୋଲି ।

ଗୀତ ॥ ରାଗ ମାରୁଆ ॥

ଦଦ ବିରାମ ଦ ପ୍ଲୁତ କହ କହ ଆଳି । ରାଜବର୍ଦ୍ଧନ ଗୁଣ ରସବତି ନବବାଳି ॥

ମଣ୍ଡକତାଳ ॥୧୦୯॥

| ଲ | ଲ | ଗୁ | କା |
|---|---|---|---|
| I | I | 8 | + |

ଶ୍ଳୋକଃ- ଲଲୌଗୁରୁଃ କାକପଦଂ । ମଣ୍ଡକତାଳ ଉଚ୍ୟତେ ।

ଅର୍ଥ- ଦୁଇ ଲଘୁ, ଗୁରୁ, କାକପଦଥିଲେ ମଣ୍ଡକତାଳ ବୋଲି ।

ଗୀତ ॥ ରାଗ ଭୂପାଳ ॥

ଏ ସଗଣକୁ କାକପଦକୁ କହତ ନବକିଶୋରି ରେ ॥

ମଣ୍ଡକତାଳଟି ଏହି ଶୁଣ ଶୁଣ ଗୋରିରେ ॥

ଉତ୍ସବତାଳ ॥୧୧୦॥

| ପ୍ଳୁ | ଲ |
|---|---|
| ୫ | । |

ଶ୍ଳୋକଃ- ଆଦ୍ୟେ ପ୍ଳୁତ ଲଘୁଶ୍ଚୈକ । ଉତ୍ସବ ତାଳ ଉଚ୍ୟତେ ॥

ଅର୍ଥ- ପ୍ଳୁତ ଏକ, ଲଘୁ ଏକ ଥିଲେ ଉତ୍ସବତାଳ ବୋଲି ।

ଗୀତ ॥ ରାଗ କଲ୍ୟାଣି ॥

ପ୍ଳୁତ ଲଘୁ ପ୍ରିୟସହି କହ ବାରେ । ଶୁଣ ତୁ ଶଶିମୁଖି ଉତ୍ସବ ଏହିରେ ॥

ପଞ୍ଚଜାତି ଚାପତାଳଙ୍କ ବିଷୟ ॥

| ୧ | ∪ | ∪ | O | ▪ | | ଚତୁରଶ୍ରଜାତି | ୪ |
|---|---|---|---|---|---|---|---|
| ୨ | ∪ | O | | | | ତିଶ୍ରଜାତି | ୩ |
| ୩ | ∪ | ∪ | O | O | ∪ | ମିଶ୍ରଜାତ | ୭ |
| ୪ | ∪ | O | O | | | ଖଣ୍ଡଜାତି | ୫ |
| ୫ | ∪ | O | O | O | O | ସଂକୀର୍ଣ୍ଣଜାତି | ୯ |

ଶ୍ଳୋକଃ- ଅର୍ଦ୍ଧଚନ୍ଦ୍ର ଦ୍ୱୟନ୍ତ୍ୟାଦ୍ୟେ । ଧୃତଂ ପ୍ରାନ୍ତେ ଚତୁସ୍ରକଂ ॥

ଅନୁଧୃତଂବ୍ୟମଚିକଂ । ତିଶ୍ରଷ୍ଣପରିକୀର୍ତ୍ତିତଃ ॥

ଅବ୍ୟକ୍ତଂ ତ୍ର୍ୟର୍ଦ୍ଧଦଦୌଚ । କଥିତଂ ମିଶ୍ରଜାତିକଂ ॥

ଖଣ୍ଡଜାତିରସୌପ୍ରୋକ୍ତାଃ । ବ୍ୟକ୍ତଂଧୃତଯୁଗଂ ଯଦି ॥

ବିରାମଦ୍ୱ୍ୟତିରାଦୌସ୍ୟାଦ୍ । ବଳସ୍ୟଦ୍ୱୟଂଦ୍ୱୟଂ ॥

ସଙ୍କୀର୍ଣ୍ଣଚାପତାଳାନି । କଥିତାନଂ ବୁଧୈରପି ॥

ଅର୍ଥ- ଅନୁଧୃତ ୨, ଧୃତ୧ ଥିଲେ ଚତୁସ୍ରଜାତି ଚାପତାଳବୋଲି ॥

ଅନୁଧୃତ, ଧୃତ ଥିଲେ ତିଶ୍ରଜାତି ଚାପତାଳବୋଲି ॥

ଅନୁଧୃତ ୩, ଧୃତ ୨ ଥିଲେ ମିଶ୍ରଜାତି ଚାପତାଳବୋଲି ॥

ଅନୁଧୃତ ୧, ଧୃତ ୨ ଥିଲେ ଖଣ୍ଡଜାତି ଚାପତାଳବୋଲି ॥

ଅନୁଧୃତ ୧ ଧୃତ ୪ ଥିଲେ ସଙ୍କୀର୍ଣ୍ଣଜାତି ଚାପତାଳବୋଲି ॥

ଉପସଂହାର ॥

ଶ୍ଲୋକଃ- ତାଳବିଦ୍ୟା ନ ଜାନନ୍ତି । ବିନାବିଷ୍ଣୁ ଶିବୌସୁରାଃ ॥

କୋ ବେତ୍ତି ମାନବୋଲୋକେ । ବେଦାନାଂମପିଦୁର୍ଲ୍ଲଭାଂ ॥

ଅର୍ଥ- ବିଷ୍ଣୁ ଶିବଙ୍କ ବିନା ଦେବତାମାନେ ତାଳବିଦ୍ୟାକୁ ନଜାଣନ୍ତି, ଏପରିସ୍ଥଳେ ମନୁଷ୍ୟମାନେ ଅବା କିସ ଜାଣିବେ ।

ତାଳସର୍ବସାରସଂଗ୍ରହ ସଂପୂର୍ଣ୍ଣ ।

# ସୂଚିପତ୍ର

# ପ୍ରାକ୍‌ସୂଚନା

**ଗୀତସ୍ତବକ** ବିଭିନ୍ନ ରାଗ ଓ ତାଳରେ ରଚିତ ଏକାଅଶୀଟି ଚଉପଦୀର ଏକ ସଂକଳନ । ଏହା ୧୮୯୯ ମସିହାରେ ପାରଳାଖେମୁଣ୍ଡି ଗଜପତି ପ୍ରେସ୍‌ରୁ ପ୍ରକାଶିତ ହୋଇ ପ୍ରଚାରିତ ହୋଇଥିଲା । ପ୍ରଚ୍ଛଦ ଉପରେ ଲେଖାଥିବା ବିବରଣୀଟି କୌତୂହଳପ୍ରଦ । ସାଧାରଣତଃ ପ୍ରଚ୍ଛଦରେ ଲେଖକ, ପ୍ରକାଶକ, ପ୍ରକାଶ ସମୟ ଏବଂ ମୁଦ୍ରଣାଳୟର ଉଲ୍ଲେଖ ରହିଥାଏ । କିନ୍ତୁ ଏଥିରେ ଲେଖକ ଓ ପ୍ରକାଶକଙ୍କ ସମ୍ପର୍କରେ ସୂଚିତ ଅଛି **ଶ୍ରୀ ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ ନାମରେ ଅଙ୍କିତ, ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ବି.ଏ.ଙ୍କ ଦ୍ୱାରା ପ୍ରକାଶିତ** 'ରଚିତ' ପରିବର୍ତ୍ତେ 'ଅଙ୍କିତ' ଉଲ୍ଲେଖ କରିବାରେ ଉଭୟ ଲେଖକ ଓ ପ୍ରକାଶକଙ୍କ ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ନିହିତ ଥିବା ଅନୁମିତ ହୁଏ । ଏହାକୁ ଆଧାର କରି ପୁସ୍ତକଟିର ଆଲୋଚକମାନେ ଦ୍ୱନ୍ଦ୍ୱରେ ପଡ଼ିଛନ୍ତି । ଏହାର ପ୍ରାପ୍ତି ସ୍ୱୀକାର କରି **ଉତ୍କଳ ସାହିତ୍ୟ** ପତ୍ରିକାରେ ସମ୍ପାଦକ ଶ୍ରୀଯୁକ୍ତ ବିଶ୍ୱନାଥ କର ଲେଖିଥିଲେ-

> *''ଶ୍ରୀ ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ ନାମରେ ଭଣିତ ଓ ଶାମ ସୁନ୍ଦର ରାଜଗୁରୁଙ୍କ ଦ୍ୱାରା ପ୍ରକାଶିତ । ପୁସ୍ତକରେ ରଚୟିତାଙ୍କ ନାମ ନାହିଁ । ଏ ରୀତି ବର୍ତ୍ତମାନ ସମୟରେ ଶୋଭାପାଏ ନାହିଁ । ସଂଗୀତଗୁଡ଼ିକ ଆଦି ରସାତ୍ମକ । ଏ ଶ୍ରେଣୀର ସଙ୍ଗୀତ ଓଡ଼ିଶାରେ ପ୍ରଚୁର-ବରଂ ପ୍ରଚୁର ଅପେକ୍ଷା ଅତ୍ୟନ୍ତ ଅଧିକ । ପ୍ରାଚୀନ ଓଡ଼ିଆ ସାହିତ୍ୟକୁ ଆଦିରସ ପ୍ଲାବିତ ବୋଲାଯାଇପାରେ । ତା' ଉପରେ ଆଉ କେତେ ହେବ ? ବର୍ତ୍ତମାନ ଆଦି ରସକୁ ସୀମା ମଧ୍ୟକୁ ଆଣିବା ଆବଶ୍ୟକ ହୋଇଅଛି । ସମାଲୋଚନା ପୁସ୍ତକରେ ପ୍ରାଚୀନ ରୀତିର ଅନୁସରଣ ହେଉଥିବାର ଦେଖି ଆମ୍ଭେମାନେ ଦୁଃଖିତ । ମାତ୍ରସଙ୍ଗୀତ ଗୁଡ଼ିକର ରଚନା ପ୍ରଣାଳୀକୁ ଆମ୍ଭେମାନେ ମୁକ୍ତ କଣ୍ଠରେ ପ୍ରଶଂସା*

*କରୁଅଛୁଁ । ବର୍ତ୍ତମାନ ସମୟରେ ଅଧିକାଂଶ ରଚନା ଇଂରାଜୀ ଓ ବଙ୍ଗଳାର ଅନୁବାଦ ପରି ବୋଧହୁଏ । ଏପରି ହେବା କୌଣସି ପ୍ରକାରେ ବାଞ୍ଛନୀୟ ନୁହେଁ । ଗୀତ ସ୍ତବକର ସଙ୍ଗୀତଗୁଡ଼ିକର ରଚନା ସମ୍ବନ୍ଧରେ ପ୍ରାଚୀନ ଉତ୍କୃଷ୍ଟ ଓଡ଼ିଆ ସଙ୍ଗୀତମାନଙ୍କ ସଙ୍ଗରେ ଆସନ ପାଇବାର ଯୋଗ୍ୟ । ଏଠାରେ ଦୁଇଟି ବିଷୟ ଲକ୍ଷ୍ୟ କରିବା କଥା । ପ୍ରଥମତଃ, ନିଜ ରଚନାକୁ ପୃଷ୍ଠପୋଷକଙ୍କ ନାମରେ ଅଙ୍କିତ କରିବାର ରୀତି ଏ ଯୁଗରେ ଆଉ ଶୋଭାପାଏ ନାହିଁ ଏବଂ ଜଣେ ଆଧୁନିକ ଶିକ୍ଷିତଙ୍କ ରଚନାରେ ପ୍ରାଚୀନ ରୀତି ଅନୁସୃତ ହେବା ଦୁଃଖଦାୟକ ।*

ସମ୍ପାଦକ ବିଶ୍ୱନାଥ କରଙ୍କ ଏ ଉଭୟ ମନ୍ତବ୍ୟ ପ୍ରକାଶକଙ୍କୁ ଗୀତଗୁଡ଼ିକର ରଚୟିତାଭାବେ ଗ୍ରହଣ କରିବାପାଇଁ ପରୋକ୍ଷ ଭାବେ ନିର୍ଦ୍ଦେଶ ଦେଉଅଛି ।

ଏ ସମ୍ପର୍କରେ **ସମ୍ବଲପୁର ହିତୈଷିଣୀ**ର ମନ୍ତବ୍ୟ ମଧ୍ୟ ବିଚାରକୁ ନିଆଯାଇପାରେ । ଏଥିରେ କୁହାଯାଇଥିଲା-

*ପାରଳାଖେମୁଣ୍ଡିର ରାଜଭ୍ରାତା ଶ୍ରୀଯୁକ୍ତ ପଦ୍ମନାଭ ନାରାୟଣ ଦେବଙ୍କ ନାମରେ ଅଙ୍କିତ ଏବଂ ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ରାଜଗୁରୁ, ବି.ଏ.ଙ୍କ ଦ୍ୱାରା ପ୍ରକାଶିତ ଗୀତ ସ୍ତବକରେ ଅନେକ ଗୁଡ଼ିଏ ଆଦିରସାତ୍ମକ ନୂତନ ସଙ୍ଗୀତ ସନ୍ନିବେଶିତ ହୋଇଅଛି । ରଚନା ନୂତନ ହେଲେ ହେଁ ଭାବ, ଭାଷା ବିଷୟରେ ପ୍ରାଚୀନ ସାଧାରଣ ସଙ୍ଗୀତ ଅପେକ୍ଷା ହୀନ ନୁହେଁ । ଲେଖାର ଭଙ୍ଗୀରୁ ବୋଧ ହେଉଛି ଏହି ପ୍ରାଚୀନ ରୀତିର କବିତା ପ୍ରାଚୀନ ପଦ୍ଧତି ଅନୁସାରେ ଅପର ବ୍ୟକ୍ତିଙ୍କଦ୍ୱାରା ରଚିତ ହୋଇ ରାଜଭ୍ରାତାଙ୍କ ନାମରେ 'ଭଣତି' କରାଯାଇଅଛି । ଉକ୍ତ ରୀତି ବର୍ତ୍ତମାନ କାଳର ସଭ୍ୟ ଭବ୍ୟମାନଙ୍କଦ୍ୱାରା ଆଦୃତ ହେବାର ଅସମ୍ଭବ ଏବଂ ଉକ୍ତ ରୀତିର ପ୍ରଶ୍ରୟ ଦାନଦ୍ୱାରା ଏହିଫଳ ହେବ ଯେ ସମୟରେ ସ୍ୱରଚିତ ଗ୍ରନ୍ଥ ଅପରର ରଚିତ ବୋଲି ଲୋକେ ସନ୍ଦେହ କରିବେ । ଆଦିରସାତ୍ମକ ସଙ୍ଗୀତର ଅଭାବ ଥିବା ତେଣେ ଆଉ ପ୍ରୟୋଜନାତିରିକ୍ତ ହୋଇ ପଡ଼ିଅଛି । ଏପରି ସ୍ଥଳେ ଅନ୍ୟାନ୍ୟ ରସର ସଙ୍ଗୀତ ସଂଖ୍ୟା ବୃଦ୍ଧିର ଚେଷ୍ଟା କରିବା ପ୍ରତ୍ୟେକ ଶକ୍ତିଶାଳୀ ବ୍ୟକ୍ତିର କର୍ତ୍ତବ୍ୟ ।*

ଉତ୍କଳ ଦୀପିକାର ମନ୍ତବ୍ୟ ମଧ୍ୟ ଅନୁରୂପ ।

*'ନାନା ରାଗରାଗିଣୀ ଏବଂ ତାଳର କେତେଗୁଡ଼ିଏ ଆଦିରସାତ୍ମକ ସଙ୍ଗୀତ ଶ୍ରୀ ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ ନାମରେ ଅଙ୍କିତ ଏବଂ ଶାମସୁନ୍ଦର ରାଜଗୁରୁ ବି.ଏ.ଙ୍କ ଦ୍ୱାରା ପ୍ରକାଶିତ ମାତ୍ର ରଚକ କିଏ ସ୍ପଷ୍ଟ ବୋଲାଯାଇନାହିଁ । ଏ ପୁସ୍ତକ ପାରଳାଖେମୁଣ୍ଡିସ୍ଥ ଗଜପତି ମୁଦ୍ରଣାଳୟରେ ମୁଦ୍ରିତ । ଏହାର ଛାପା ମନ୍ଦ ନୁହେଁ ଏବଂ ବନ୍ଧାଇ ଉତ୍ତମ ଅଟେ । ଓଡ଼ିଶାରେ ଏ ପ୍ରକାର ସଙ୍ଗୀତର ଅଭାବ ନଥିଲେ ହେଁ ନବ ନବ ସଙ୍ଗୀତରେ ଯେଉଁମାନଙ୍କର ଅନୁରାଗ ସେମାନେ ଏ ପୁସ୍ତକ ଲିଖିତ ଗୀତମାନ ଗାଇ ଆନନ୍ଦ ଲାଭ କରିବେ । (ଭା-୩୪/୨୭): (ତା-୮/୭/୧୮୯୯) ।*

ସମ୍ପାଦକମାନଙ୍କର ମନ୍ତବ୍ୟ ଅମୂଳକ ନୁହେଁ । ରାଜା କିମ୍ବା ପୃଷ୍ଠପୋଷକମାନଙ୍କ ନାମରେ ନିଜ ରଚନାକୁ 'ଭଣତି' କରିବା ଭାରତୀୟ ବା ଉତ୍କଳୀୟ ପରମ୍ପରାରେ ଅନନୁସୃତ ନୁହେଁ । କବିସୂର୍ଯ୍ୟ ବଳଦେବ ରଥ, ଯଦୁମଣି ମହାପାତ୍ର, ଗୋପାଳକୃଷ୍ଣ ପଟ୍ଟନାୟକ ପ୍ରମୁଖ ବରିଷ୍ଠ କବିମାନେ ସେମାନଙ୍କ ରଚନାକୁ ପୃଷ୍ଠପୋଷକ ରାଜାଙ୍କ ନାମରେ ଅଙ୍କିତ କରିଛନ୍ତି । ଉପେନ୍ଦ୍ର ଭଞ୍ଜ ତ ସ୍ପଷ୍ଟଭାବେ ତାଙ୍କର ପାଞ୍ଚ ସାତଖଣ୍ଡ କାବ୍ୟ ଅନ୍ୟମାନଙ୍କୁ ଦାନ କରିଥିବା କଥା ଉଲ୍ଲେଖ କରିଯାଇଛନ୍ତି । ପାରଳାଖେମୁଣ୍ଡିରେ ସଙ୍ଗୀତଜ୍ଞଙ୍କ ଅଭାବ ନାହିଁ । ସେମାନଙ୍କ ମଧ୍ୟରୁ ଅନେକେ ଚନ୍ଦ୍ରମହାରାଜାଙ୍କ ଗୁଣମୁଗ୍ଧ, ଅନୁଗତ କିମ୍ବା ସାହାଯ୍ୟ ପ୍ରାପ୍ତ ମଧ୍ୟ ହୋଇଥାଇପାରନ୍ତି । କୃତଜ୍ଞତା ପ୍ରକାଶପାଇଁ ସେମାନେ ଏହି ବାଣୀପୁତ୍ର ରାଜକୁମାରଙ୍କ ନାମରେ ନିଜ ଚଉପଦୀଗୁଡ଼ିକୁ ଅଙ୍କିତ କରିଥିବା ସ୍ୱାଭାବିକ । ଏହି ସମ୍ଭାବନାକୁ ଦୃଢ଼ୀଭୂତ କରେ ପଦ୍ମନାଭ ନାରାୟଣ ଦେବଙ୍କ ଅନ୍ୟତମ ବନ୍ଧୁ, ଅନୁଗତ ଏବଂ ଜୀବନୀକାର ଅପର୍ଣ୍ଣା ପଣ୍ଡାଙ୍କ 'ଗୀତ ସ୍ତବକ' ସମ୍ପର୍କୀୟ ସୂଚନା-

*''ସେ ସଙ୍ଗୀତପ୍ରିୟ ଥିବାରୁ ପ୍ରଥମତଃ ଦାକ୍ଷିଣାତ୍ୟ ରାଗରେ ଅନେକ ସଙ୍ଗୀତମାନ ରଚନା କଲେ । ଇତିପୂର୍ବେ ତାହାଙ୍କ ନାମରେ ପ୍ରକାଶିତ ଥିବା ସଙ୍ଗୀତ ଏବଂ ତାହାଙ୍କ ସ୍ୱରଚିତ ସଙ୍ଗୀତଗୁଡ଼ିକ ସେ ପୁସ୍ତକାକାରରେ ପ୍ରକାଶ କରି ପୁସ୍ତକର ନାମ 'ଗୀତ ସ୍ତବକ' ରଖିଲେ ।'' (ପୃ-୧୨)*

ଏଥିରୁ ସ୍ପଷ୍ଟ ହୁଏ ଯେ, ପୁସ୍ତକଟିର ଏକାଅଶୀଟିଯାକ ଗୀତ ପଦ୍ମନାଭ ନାରାୟଣ ଦେବଙ୍କଦ୍ୱାରା ରଚନା କରାଯାଇନାହିଁ । କିନ୍ତୁ କେଉଁମାନେ ଗୀତଗୁଡ଼ିକର ରଚୟିତା କହିବା ବର୍ତ୍ତମାନ ସମ୍ଭବପର ନୁହେଁ । ହୁଏତ ଶ୍ୟାମସୁନ୍ଦର ରାଜଗୁରୁ, ଅପର୍ଣ୍ଣା ପଣ୍ଡା, ଗଙ୍ଗାଧର ଖାଡ଼ଙ୍ଗା, ବୃନ୍ଦାବନ ପାଣିଗ୍ରାହୀ ଏଥିରୁ କେତୋଟି ଚଉପଦୀ ରଚନା କରିଥାଇପାରନ୍ତି । ଚାଳଶି ସଂଖ୍ୟକ ଚଉପଦୀ ''ଘେନାଇ କହିଲେ ଘେନିବି କି ମୁଁ ଚିତ୍ତେ'' ଏବଂ ତେୟାଳଶି ସଂଖ୍ୟକ ''ସିନ୍ଧୁର ଗମନା । ଆସିଛନ୍ତି ସେ ମୋହନେ ଅନା'' ଚଉପଦୀ ଦୁଇଟି ହରିବନ୍ଧୁ ବେବର୍ତ୍ତାଙ୍କଦ୍ୱାରା ରଚନା କରାଯାଇଛି । ଗଜପତି ପ୍ରେସ୍‌ରୁ ପ୍ରକାଶିତ 'ହରିବନ୍ଧୁ ପଦ୍ୟାବଳୀ'ରେ ଏ ଦୁଇଟି ଚୌପଦୀ ଅନ୍ତର୍ଭୁକ୍ତଥିବା ଦେଖିବାକୁ ମିଳେ । ଅବଶ୍ୟ ଏହା ନିଶ୍ଚିତ ଯେ ସଙ୍କଳନରେ ଥିବା ଏକ, ଦୁଇ, ତିନି, ଚାରି, ପାଞ୍ଚ, ଛଅ, ସାତ, ଏଗାର, ଚଉଦ, ଏକୋଇଶୀ, ଛତିଶି, ଏକଚାଳଶି, ପଞ୍ଚଚାଳଶି, ସତଚାଳଶି, ଛପନ, ଏକଷଠି, ବାଷଠି, ଊଣସ୍ତୋରି, ଛଅସ୍ତୋରି ସଂଖ୍ୟକ ଚଉପଦୀଗୁଡ଼ିକ ପଦ୍ମନାଭ ନାରାୟଣ ଦେବଙ୍କ ସ୍ୱୀୟ ରଚନା ନୁହେଁ । ଏ ସବୁରେ ପଦ୍ମନାଭ ନାରାୟଣ ଦେବଙ୍କୁ ଧରଣୀଧବ, କ୍ଷିତିପତି, ଭୂପତି, ଧରାଧବ ଇତ୍ୟାଦି ଭାବରେ ପରିଚିତ କରାଯାଇଛି । ପଦ୍ମନାଭ କେବେ ପାରଳାଖେମୁଣ୍ଡିର ଧରାଧବ ବା ରାଜା ନଥିଲେ କିମ୍ବା ରାଜପଦ ପାଇଁ ଆଶାୟୀ ନଥିଲେ । ଜ୍ୟେଷ୍ଠଭ୍ରାତା ଗୌରଚନ୍ଦ୍ରଙ୍କ ପ୍ରତି ତାଙ୍କର ସମ୍ମାନ ବା ଆନୁଗତ୍ୟ ଉଦାହରଣୀୟ । ୧୯୦୧ ମସିହାରେ ପ୍ରକାଶିତ ଶ୍ରୀସଙ୍ଗୀତ ପ୍ରହ୍ଲାଦ ନାଟକଟି ଗୌରଚନ୍ଦ୍ର ଗଜପତିଙ୍କୁ ଉତ୍ସର୍ଗ କରାଯାଇଛି । ଜ୍ୟେଷ୍ଠଭ୍ରାତାଙ୍କ ଚିର ସ୍ନେହାନୁରାଗୀ ଶ୍ରୀ ପଦ୍ମନାଭ ନାରାୟଣ ଦେବ ଉତ୍ସର୍ଗ ପତ୍ରରେ ଲେଖିଛନ୍ତି-''ଅଗ୍ରଜ ଶ୍ରୀ ଶ୍ରୀ ଶ୍ରୀ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ ମହାରାଜଙ୍କ କରକମଳେଷୁ'' ଏବଂ ତାଙ୍କ ପ୍ରଶସ୍ତିଗାନ କରି କହିଛନ୍ତି-''ଗଙ୍ଗା ବଂଶ ଅବତଂଶ ଧୀର ବୀରବର । ପାରଳା-ଧର-ମଣ୍ଡନ-ନରେନ୍ଦ୍ର ଶେଖର ।। ପବିତ୍ର ହୃଦୟ ଗୁଣୀଗଣ ଶିରୋମଣି । ପ୍ରଶଂସେ ଗଂଜାମ ସଦା ଅଦ୍ୱିତୀୟ ମଣି ।'' ତେଣୁ ଏପରି ଜଣେ ଭ୍ରାତୃଭକ୍ତ ନିଜକୁ ଭୂପତି ବା ଧରାଧବ ବୋଲି ପରିଚିତ କରାଇବା ଆଦୌ ସମ୍ଭବ ନୁହେଁ । ଅବଶ୍ୟ ଗୌରଚନ୍ଦ୍ର ଯଦି କୋର୍ଟ ଅଫ୍ ୱାଡସ୍‌ଙ୍କଠାରୁ ପାରଳାର ଶାସନଭାର ୧୮୯୮ ବେଳକୁ ଗ୍ରହଣ କରି ନଥାନ୍ତେ ତେବେ ପଦ୍ମନାଭଙ୍କ ତଥାକଥିତ ଆତ୍ମ

ପରିଚିତିର ଯଥାର୍ଥତା ସମ୍ପର୍କରେ ବିଚାର କରିବାର ଅବକାଶ ରହିଥାନ୍ତା, କିନ୍ତୁ ଗୌରଚନ୍ଦ୍ର କୋର୍ଟ ଅଫ୍ ଓ୍ୱାଡର୍ସରୁ ୧୮୯୦ ମସିହାରେ ପାରଳାଖେମୁଣ୍ଡିର ଶାସନଭାର ଗ୍ରହଣ କରିଛନ୍ତି । କେବଳ ସେତିକି ନୁହେଁ, ଅନୁଜଙ୍କ ସମସ୍ତ ସତ୍ ଅଭିଳାଷର ପରିପୂର୍ତ୍ତି ପାଇଁ ଅବିଚାରିତ ଭାବେ ସହାୟକ ହୋଇଛନ୍ତି । ତେଣୁ ତାଙ୍କୁ ଅବଜ୍ଞା କରିବାର ମାନସିକତା ପଦ୍ମନାଭଙ୍କ ଥିବା ଆଦୌ ଗ୍ରହଣଯୋଗ୍ୟ ନୁହେଁ । ଏ ଦୃଷ୍ଟିରୁ ପୂର୍ବସୂଚିତ ଚଉପଦୀଗୁଡ଼ିକର ପିତୃତ୍ୱ ପଦ୍ମନାଭଙ୍କ ଉପରେ ଆରୋପିତ ହୋଇ ନ ପାରେ । ଅନ୍ୟଗୁଡ଼ିକ ମଧ୍ୟରେ ପଦ୍ମନାଭଙ୍କ କବିତ୍ୱ ଓ ସାଙ୍ଗୀତିକତାର ବିଶେଷତ୍ୱ ଅନୁସଂଧାନ କରିବା କଥା ।

ଚୌପଦୀଗୁଡ଼ିକର ସାଙ୍ଗୀତିକ ସୌନ୍ଦର୍ଯ୍ୟ ସମ୍ପର୍କରେ କହିବା ନିଷ୍ପ୍ରୟୋଜନ । ପଦ୍ମନାଭ ନାରାୟଣ ନିଜେ ଥିଲେ ସଙ୍ଗୀତ ପ୍ରବୀଣ । ତାଳ, ମୃଦଙ୍ଗ ଓ ବେହେଲା ବାଦନରେ ସେ ଥିଲେ ନିପୁଣ । ତେଣୁ ରାଗ-ତାଳ ଦିଗରୁ ତ୍ରୁଟି କରିବା ତାଙ୍କପାଇଁ ସମ୍ଭବ ନୁହେଁ । ପୁଣି ତାଙ୍କ ନିଜ ରଚିତ ଏବଂ ଅନ୍ୟମାନଙ୍କ ରଚିତ ଚୌପଦୀଗୁଡ଼ିକ ରାଜଭ୍ରାତାଙ୍କ ସାନ୍ଧ୍ୟ ଆସରରେ ନିଶ୍ଚିତ ଭାବେ ଗାନ କରାଯାଉଥିବ । ଏହି ଆସରରେ ଯୋଗ ଦେଉଥିଲେ ସମୁଦ୍ରପେଟା ହରିବନ୍ଧୁ ବେବର୍ତ୍ତା ପଟ୍ଟନାୟକ, ଶାମସୁନ୍ଦର ରାଜଗୁରୁ, ଗୌରହରି ପରିଚ୍ଛା ପ୍ରଭୃତିଙ୍କପରି ବରିଷ୍ଠ ସଙ୍ଗୀତଜ୍ଞ । ସଙ୍କଳିତ ସଙ୍ଗୀତଗୁଡ଼ିକ ସେମାନଙ୍କଦ୍ୱାରା ପରୀକ୍ଷିତ ହୋଇ ପ୍ରକାଶ ଯୋଗ୍ୟତା ଆହରଣ କରିଛନ୍ତି । ତେଣୁ ସଙ୍ଗୀତ ଦୃଷ୍ଟିରୁ ଏଗୁଡ଼ିକ ନିର୍ଦ୍ଦୋଷ ଓ ସୁଗେୟ ହେବା ସ୍ୱାଭାବିକ ।

କାବ୍ୟାୟନ ଦୃଷ୍ଟିରୁ ଏଗୁଡ଼ିକ ମଧ୍ୟଯୁଗୀୟ ଗୀତିସାହିତ୍ୟର ଅନୁରୂପ । ଶେଷ ଚୌପଦୀଟି ବ୍ୟତୀତ ଅନ୍ୟଗୁଡ଼ିକର ଭାବ ଓ ରସ ସମ୍ପଦ ମଧ୍ୟ ଭିନ୍ନ ନୁହେଁ । କିନ୍ତୁ ଲକ୍ଷ୍ୟ କରିବାର କଥା ଏଗୁଡ଼ିକର ପ୍ରକାଶନ ଶୈଳୀରେ କ୍ଲିଷ୍ଟତା ନାହିଁ କିମ୍ବା ଶୃଙ୍ଗାରରସ ପରିବେଷଣ ବେଳେ ଅଶ୍ଳୀଳତାର ସୀମା ସ୍ପର୍ଶ କରିନାହାନ୍ତି । ବନ୍ଧୁମାନଙ୍କ ଗହଣରେ ହାସ ପରିହାସ ପ୍ରିୟ ଜଣେ ନବବିବାହିତ ରାଜପୁତ୍ରର ପ୍ରଣୟାନୁଭୂତି ସ୍ୱତଃସ୍ଫୂର୍ତ୍ତଭାବେ ଏଗୁଡ଼ିକରେ ରୂପଲାଭ କରିଛି । ପରମ୍ପରାର ଅନୁସରଣରେ ପଦ୍ମନାଭ ଲୌକିକ ଶୃଙ୍ଗାର ଭାବନାକୁ ରାଧାକୃଷ୍ଣଙ୍କ ମାଧ୍ୟମରେ ରୂପାୟନ କରିଛନ୍ତି । ଏଗୁଡ଼ିକରେ ଭକ୍ତିଭାବନା ଅପେକ୍ଷା ଅନୁଭୂତ ପ୍ରଣୟ ଭାବନାରହିଁ ଆଧିକ୍ୟ ସୁସ୍ପଷ୍ଟ । କେବଳ

ପଦ୍ମନାଭ ନାରାୟଣ ନୁହଁନ୍ତି ତାଙ୍କ ସମୟର ପାରଳାନିବାସୀ ଅଧିକାଂଶ ଯୁବକ ଇନ୍ଦ୍ରଧନୁ-ବିଜୁଳି ଆନ୍ଦୋଳନ ସହିତ ପ୍ରତ୍ୟକ୍ଷ ଭାବେ ସଂପୃକ୍ତ । କ୍ଲିଷ୍ଟତା ଓ ଅଶ୍ଳୀଳତାକୁ ଆଧାର କରି ଉପେନ୍ଦ୍ର ସାହିତ୍ୟର ଅପକର୍ଷ ପ୍ରତିପାଦନପାଇଁ ବିଜୁଳି ଗୋଷ୍ଠୀର ଆଲୋଚକମାନେ ପ୍ରୟାସୀ ଥିବା ସମ୍ପର୍କରେ ସେମାନେ ଥିଲେ ସଚେତନ । ଏଣୁ **ଗୀତ ସ୍ତବକ**ର ଚୌପଦୀଗୁଡ଼ିକୁ ଯଥାସାଧ୍ୟ ଏଥିରୁ ମୁକ୍ତ ରଖିବାପାଇଁ ଉଭୟ ଲେଖକ ଓ ପ୍ରକାଶକ ସଯତ୍ନ ପ୍ରୟାସ କରିଛନ୍ତି । ଏଥିରୁ କେତେକ ଚୌପଦୀ **ଇନ୍ଦ୍ରଧନୁ** ପତ୍ରିକାରେ ପ୍ରକାଶ ପାଇଥିବା ମଧ୍ୟ ସମ୍ଭବପର । ପୁରାତନ ଆଙ୍ଗିକରେ ପ୍ରକାଶ ପାଇଥିଲେ ସୁଦ୍ଧା ଏଗୁଡ଼ିକରେ ସମକାଳୀନ ରୁଚି ପରିବର୍ତ୍ତନର ସ୍ୱର ଶୁଣିବା କଷ୍ଟସାଧ୍ୟ ନୁହେଁ । ପୁରାତନକୁ ପରିହାର କରି ଆଧୁନିକତାକୁ ଆଦରି ନେବାର ପ୍ରାରମ୍ଭିକ ସ୍ତରରେ ଏ ପ୍ରକାର ରଚନାର ବାହୁଲ୍ୟ ସ୍ୱାଭାବିକ ।

●

# ଗୀତ ସ୍ତବକ ।

ଶ୍ରୀ ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ

ନାମରେ ଅଙ୍କିତ ।

ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ବି. ଏ. ଙ୍କ

ଦ୍ୱାରା

ପ୍ରକାଶିତ ।

*Printed at the Gajapaty Press.*

PARLAKIMEDI.

1899.

ଗୀତ ସ୍ତବକ ।

( ୧ )

ରାଗ ଖମ୍ମାଚ । ଏକତାଳ ।

କାହିଁକି ଏମାନ । ମୋ ଜୀବଜୀବନ ।
ଗତି ଏ ଜଗତି ତୋ ବିନା କେ ଅନ? । ପଦ ।
କଣ୍ଠଲଗ୍ନ କରେ । ମଣ୍ଡି ଗଣ୍ଡସ୍ଥଳେ ।
ମୋ ଧୃତି ଲତିକା କରୁ କରଭନ । ୧ ।
ଦରଦ୍ୱାଯ ବାରେ ଁ । ପରକାଶ ଅରେ ।
କଣ୍ଠୀରବମଧ୍ୟ ମୋ ଗଣ୍ଡିରତନ । ୨ ।
ଯେବେ ମୋ ମିନତି । ରେ ରତିମୂରତି ।
ନ କର ମଳିନ ନଳିନ ଲପନ । ୩ ।
ଘୃଷେ ଧରାଧବ । ପଦ୍ମନାଭ ଦେବ ।
ଜଗିଲାନ ମାର୍ ଧର ମାରଗଣ । ୪ ।

# ଗୀତ ସ୍ତବକ

(୧)

**ରାଗ ଖମାଚ । ଏକତାଳ ।।**

କାହିଁକି ଏମାନ । ମୋ ଜୀବଜୀବନ ।
ଗତି ଏ ଜଗତି ତୋ ବିନା କେ ଆନ ? ।।ପଦ ।।
କିଶଳୟ କରେ । ମଣ୍ଡି ଗଣ୍ଡସ୍ଥଳେ ।
ମୋ ଧୃତି ଲତିକା କରୁ କରତନ ।।୧।।
ଦରହାସ ବାରେ । ପରକାଶ ଆରେ ।
କଣ୍ଠୀରବମଧ୍ୟା ମୋ ଗଣ୍ଠିରତନ ।।୨।।
ଘେନ ମୋ ମିନତି । ରେ ରତିମୂରତି ।
ନ କର ମଳିନ ନଳିନ ଲପନ ।।୩।।
ଭାଷେ ଧରାଧବ । ପଦ୍ମନାଭ ଦେବ ।
ଜଗିଲାନି ମାର ଧରି ମାରଗଣ ।।୪।।

**ରାଗ ଖମାଚ । ଅଟତାଳ ।**

ଚାହିଁଲା ନାହିଁରେ । ଥରେ ହେଲେ ।
ରମଣୀ, କେଜାଣି, କି ମଣି ।।ପଦ।।
ସରସିଜ ଲପନ । ଲୁଆଁଇ, ଜୀବଧନ ।
କି ଗୁମାନେ, ବସିଲା, ରୁଷିଲା, ସୁଶୀଳା ।।୧।।
ତନୁ ସଢ଼ିଲା ସିନା । ଅନୁସରି ନବୀନା ।
ଅନୁରାଗ, କରି ସେ, ହରଷେ, କି ରୋଷେ ।।୨।।

ଚାରୁ ଚିବୁକ ଧରି । ବିନୟ ହୋଇ କରି ।
ଜଣାଇଲି ମୁ ଯେତେ, କିଂଚିତେ, ନେତ୍ରାନ୍ତେ ।।୩।।
କହେ ଧରଣୀଧବ । ଶ୍ରୀ ପଦ୍ମନାଭ ଦେବ ।
ତେଣେ ଥାଉ, ହସିବା, ରସିବା, ଭାଷିବା ।।୪।।

**ରାଗ ବେହାଗ । ଏକତାଳ ।।**

କାହିଁକି ଏ ରୁଷାଣି । ରସିକା ମଥାମଣି ।
ଜଗିଲାନି ମଦନ ଭାଙ୍ଗିବାକୁ ମୋ ଆଣି ।।ପଦ।।
ତୁ ସିନା ମୋ ସମ୍ପତ୍ତି । ସୁଶୀଳା ଗୁଣବତୀ ।
ବସିଛୁ ଗଣ୍ଡ ଦେଶେ ମଣ୍ଡିପଲ୍ଲବ ପାଣି ।।୧।।
ସରସିଜ ଲପନ । ଦିଶଇ କି ମଳିନ ।
ବାହିନୀ ପରି ହୋଇ ବହେ ନୟନୁ ପାଣି ।।୨।।
ବୀଣାବଚନି ଊଣା । ହେଲା ପରା କରୁଣା ।
ନ ପକାଉ ଶ୍ରବଣେ ମୋର ବିନୟ ବାଣୀ ।।୩।।
ଭାଷେ ଶ୍ରୀପଦ୍ମନାଭ । ଦେବ ଧରଣୀଧବ ।
ନ ନାଶ ମୋ ଉଲ୍ଲାସ ରମଣୀ ପର ମଣି ।।୪।।

**ରାଗ ବେହାଗ । ଏକତାଳ ।।**

ଆଜ ହେଲି ମେଲାଣି । ଛାମରୁ ଗୁଣମଣି ।।ପଦ।।
ନ କର ତୁ ମଳିନ । କଳାକର ଲପନ ।
ମଦନ ମଦାଳସି କହୁଛି ଧରି ପାଣି ।।୧।।
ବିଦେଶୀ ହେବି ବୋଲି । କେଳି କଳପବଲ୍ଲି ।
ଜଣା ନଥିଲା ଏହା ବିହି ବିହିଲା ଆଣି ।।୨।।
କରୁଣା ଥାଉ ଚିତ୍ତେ । ନବିନା ଅବିରତେ ।
ମନେ ମୁ ପଡୁଥିବି ଏହି ଏକା ମାଗୁଣି ।।୩।।
ଭାଷେ ଧରଣୀଧବ । ଶ୍ରୀପଦ୍ମନାଭ ଦେବ
ପାଶେ ମୁ ଥିଲାପରି ଭାବୁ ଥିବୁ ରମଣି ।।୪।।

**ରାଗ ଝଙ୍ଖୋଟି । ତାଳ ରପକ ।।**

ନୋହିଲେ ନୋହୁ ପଛେ । କେତେକେ ସହିବଛେ
ଅନୁସରି ସଡ଼ିଲି । ଥରେତ ସେ ନ ପୁଛେ ।।୦।।
ଅଣ୍ଟିଗଲାନି ପରି । କାଳଯାକ ଏପରି ।
ଘାଣ୍ଟିକେ ହେଉଥିବ । କାରଣ ବିନା ତୁଛେ ।।୧।।
ପୋଡୁ ସେ ପ୍ରୀତି ସଧ । ନ ମାନି ଅପବାଦ ।
କରୁଥିବ କେ କେତେ ସଜନି ସେ ଯାଇଛେ ।।୨।।
କୋଟିଏ କଥାରେତ । ଗୋଟିଏ ନାହିଁ ସତ ।
ମୂଳରୁ ଚୂଳ ଯାଏ ପୂରିତ ଥିବ ମିଛେ ।।୩।।
ଭାଷେ ଶ୍ରୀ ପଦ୍ମନାଭ । ଦେବ ଧରଣୀଧବ ।
ମନଧରି ସଂତତେ ବୁଲିବ କେ ତା ପଛେ ।।୪।।

**ରାଗ ଶାହାନା । ଅଟତାଳ ।**

ବୀଣା-ବଚନି ଉଣା । ହେଲା ପରା କରୁଣା ।
କିଣାଜନରେ ଏଣିକି ।।ପଦ।।
ଯାହାର ଦରଶନ । ଆଶାରେ ନିଶୀଦିନ ।।
ଅଳିନ୍ଦରେ ବସିଥାଉ ।
ଆସି ଏବେ ଶରଣ । ପଶିଲେ ସେ ଚରଣ ।
କମଳେ ମଦାଳସି । ଗୁମାନେ ପେଲି ଦେଉ ।।୧।।
ଯାହାର ସ୍ନେହ ଲୋଡ଼ି । ବଡ଼ ପଣକୁ ଛାଡ଼ି ।
ଦୂତି ପଛେ ବୁଲୁଥାଉ
ଧରି କହୁଛି ପାଣି । ତାର ବିନୟ ବାଣୀ ।
କିଛିତେ ହେଲେ ବନ୍ଧୁ । କାନେ ପକାଉ ନାହୁଁ ।।୨।।
ଲବେ ହେଲେ ଅନ୍ତର । ମଣି ଯୁଗ ଆକାର ।
ଯାହା ହେଉଥାଉଁ ଚିତ୍ତେ ।
ଅନୁସରି ପଛରେ । ତନୁ ସଡ଼ିଲାଠାରେ ।
କୃପା କଟାକ୍ଷେ ଥରେ । ଚାହିଁଲୁ ନାହିଁ ସତେ ।।୩।।

ଭାଷେ ଶ୍ରୀ ପଦ୍ମନାଭ । ଦେବ ଧରଣୀ ଦେବ
ଦୂରକଲୁ କି ଭାଳି ।
କେବା କି ଶିଖାଇଲା । କେ ଜାଣି କେଣେ ଗଲା ।
ପୂରବ ସ୍ନେହ ଯାକ । ପୁରୁଣା ହେଲା ବୋଲି ।।୪।।

**ରାଗ ଘଣ୍ଟାରବ । ତାଳ ଆଦି ।**

ସହି କା ଅଭିମାନ କେ ରଖଇ ।।ପଦ।।
ଯେତେ ହେଲେ ହେ ପର । ହୁଏକି ଆପଣାର ।
ହେଲୁ କି ସଜନି ତୁ ବାଇ ।।୧।।
ତା ଦୁଃଖରେ ତୁ ଦୁଃଖୀ । ତୋ ଦୁଃଖ ଜାଣିଲାକି ।
ତୁଚ୍ଛାକୁ ଘାଣ୍ଟି ହେଉଥାଇ ।।୨।।
ସମୟେ ସ୍ନେହ କରି । କାର୍ଯ୍ୟ ଲଭିଲେ ସରି ।
ଯାର କଥା ସେ ଦେଖୁଥାଇ ।।୩।।
ଭାଷେ ଶ୍ରୀ ପଦ୍ମନାଭ । ଦେବ ଧରଣୀଧବ ।
ପଛ କଲେ କେ କାର ନୋହି ।।୪।।

**ରାଗ ସାବେରୀ । ଅଟତାଳୀ ।।**

ପ୍ରାଣବନ୍ଧୁରେ । ତ୍ରାଣ ନ କଲେ ଭାସିଲି ମଦନ ସିନ୍ଧୁରେ ।ପଦ।
ହସି ରସି ପଦେ କହୁଥିଲେ । ତୋଷି ହେଉଥାଇ ମୋଦ ଭରେ ।
ରସିକାରତନ କାର ଗୀରେ ।।
ରଷି କିପାଁ ନାଶିବାକୁ ସାହାସ ବାନ୍ଧୁରେ ।।୧।।
ଚନ୍ଦ୍ରମୁଖ ତୋର ଦେଖିବାରେ । ଇନ୍ଦ୍ରସଂପଦକୁ ତୁଚ୍ଛକରେ ।
ମନ୍ଦରସ୍ତନା ମୋ ବିନତିରେ
କନ୍ଦରପଦର୍ପହର ବାଣ ନ ବିନ୍ଧୁରେ ।।୨।।
ଦୋଷ କରି ନାହିଁ କିଛି ସହି । ରୋଷ ବହିବାର ହେଲା ନାହିଁ ।
ବିଶାରଦ-ଗୁଣ-ଗଣଗ୍ରାହି ।
ରସାତଳେ ତୋ ଗୁଣକୁ କିଏ ନ ନିନ୍ଦୁରେ ।।୩।।

ବୀର ପଦ୍ମନାଭ ଦେବ ଭଣି । ବରବରନୀ ତା ମନେ ଗୁଣି ।
ବରଜିଲା ମାନ ରାମାମଣି
ସରଜିଲା ପ୍ରୀତି ଚୁମ୍ବି ଶ୍ରୀମୁଖଇନ୍ଦୁରେ ॥୪॥

**ରାଗ ଧନାଶ୍ରୀ । ଅଟତାଳ ।**

କିଛି ତ ଜଣା ଏବେ ନ ଗଲାରେ ।
କେତେ ସରିକି ପ୍ରାଣ ସହିଲାରେ ॥ପଦ॥
ସକଳ ସୁଖ ଦୁଃଖ । ଜାଣଇ ଯେ ବିବେକ ।
କାହିଁକି ନିର୍ଦ୍ଦୟ ସେ ହୋଇଲାରେ ॥୧॥
କହିଲି କେତେଥର । ମନ ମଜ୍ଜାଇ ତାର
ବେଳ ବେଳକୁ ମୁଖ ମୋଡ଼ିଲାରେ ॥୨॥
କାହାକୁ ଯିବି କହି । କେ ଦେବ ସମଜ୍ଜାଇ ।
ନିଶ୍ଚେ ପରାଣ ଘଟୁ ତୁଟିଲାରେ ॥୩॥
ଏପରି ପ୍ରିୟ ଭାବ । ଜଗତେ ନ ମିଳିବ ।
କାଳ କାଳକୁ କଥା ରହିଲାରେ ॥୪॥
ଶ୍ରୀ ପଦ୍ମନାଭ ଦେବ । ଜାଣିଣ ମନୋଭାବ ॥
ସ୍ନେହ ଧର୍ମକୁ ତେବେ ପାଳିଲାରେ ॥୫॥

**ରାଗ ଝଞ୍ଜୋଟି । ଅଟତାଳ ।**

ବାଳା ତ ଶିଶୁ ମେଳାକୁ ଛାଡ଼ିଲାନି
କରାଳ ଉରୁଭୁଜଙ୍ଗ ଖେଳିଲାନି ॥ପଦ॥
ମୁନି-ମାନସ-ମୀନକୁ । ଓଟାରି ନିଶ୍ଚେ ନେବାକୁ ।
ଏବେତ ନେତ୍ର ବଡ଼ସୀ ସଂତତେ ଛାଟିଲାନି ॥୧॥
କଞ୍ଜି କୁମୁଦ ମନ୍ଦାର । ବଦନ ହାସ ଅଧର ।
ଦିଶି ମନୋହର ରସ ପ୍ରସଙ୍ଗ ଭାଷିଲାନି ॥୨॥
ତନୁ ଲତାରେ ମନ୍ଦର । ଯୁଗଳ ରହି ସୁନ୍ଦର ।
ଉନ୍ନତେ ଅମ୍ବର ଫୁଟି ମାନସ କିଣିଲାନି ॥୩॥
ରମ୍ଭା ରତି ଉମା ରମା । ପ୍ରଭାରେ ହେଲେ ଲଘିମା ।
ମନ୍ଦହାସେ ନାସା ପୁଟେ ମୋତିତ ନାଚିଲାନି ॥୪॥
କ୍ଷିତିପତି ପଦ୍ମନାଭ । ବୋଲନ୍ତି ଏ ଯୋଗୀଦମ୍ଭ ।
ତରୁ-ଟଳା ନାରୀମଣି ବିଧାତା ଗଢ଼ିଲାଣି ॥୫॥

### ରାଗ ଝଞ୍ଜୋଟ । ଏକତାଳ ।

ସହି ତେଜ ମନରୁ ତୁ ମାନ ।
ଅଣ୍ଟିଲା ଏଥର ଆଉ ନ କରାଅ ଅପମାନ ॥୦॥
ଅଶେଷ କଦନ । ଦେଉଛି ମଦନ ।
ନବିନାରେ । ତୋ ବିନାରେ
ନାହିଁଟି ମୋ ଗତି ଆନ ॥୧॥
ଅପାର ରଜନୀ । ହେଲା ଗୁଣମଣି ।
ରସେ ରସି । କୋଳେ ବସି ।
ଥରେ କର ଆଲିଙ୍ଗନ ॥୨॥
କରିଥିଲେ ଦୋଷ । ଦାସଠାରେ ରୋଷ
ବହିବାର । ଅବିଚାର ।
ଭାବିକର ପରିତ୍ରାଣ ॥୩॥
ଶୁଣି ରାମାମଣି । ହସି ସେହି କ୍ଷଣି ।
ଧରାଧବ । ପଦ୍ମନାଭ । ଶ୍ରୀମୁଖେ ଦେଲା ଚୁମ୍ବନ ॥୪॥

### ରାଗ ଝଞ୍ଜୋଟି । ଅଟତାଳ ।

ମୋ ଧନ ଶିଶୁ ସଙ୍ଗକୁ ଛାଡ଼ିଲାନି ॥ ପଦ ॥
ମନ୍ଦ ମୃଦୁ ରଜନୀଶ । ହାସ ମୁଖରେ ବିକାଶ ॥
ଛବା ଅଧରେ ରଙ୍ଗିମା ଭଙ୍ଗିତ ପୁରିଲାନି ॥୧॥
ଗତି ଚଞ୍ଚଳ ଅଧୀରେ । ପଳାଇ ରହି ନେତ୍ରରେ
ଶ୍ରୁତି ସୀମା ଲଂଘିବାକୁ ସଂତତ ଇଛିଲାନି ॥୨॥
ଚାରୁ ଭ୍ରୂରୁ ଖେଳା ଲୀଳା । ଶିଖି କୁସୁମ କୋମଳା ।
ସୁରସିକ ମନ ଗଣ୍ଠିଧନକୁ ଲୁଣ୍ଠିଲାନି ॥୩॥
ମଦନ ପ୍ରେମ କୁମ୍ଭକୁ । ବିଚାରି ସେ ଭାଙ୍ଗିବାକୁ
କନକ ମଞ୍ଜୁଳ ଶୈଳ ଯୁଗଳ ଥୋଇଲାନି ॥୪॥
ବଢ଼ି ସୁସମା ତରଙ୍ଗ । ଧରିଣ ନାନା ସୁରଙ୍ଗ ।
ନାଗର ମାନସ ସରେ ଉଲ୍ଲାସି ଖେଳିଲାନି ॥୫॥

କହେ ପଦ୍ମନାଭ ଦେବ । ପୁରୁଷ ସୃଷ୍ଟିନାଶିବ ।
ସୁକୁନ୍ଦ ରଦନେ ବିମ୍ବ ଓଷ୍ଠକୁ ଚାପିଲାନି ॥୬॥

**ରାଗ ପରଜ । ଏକତାଳ ।**

ରାମା ଅଣ୍ଟିଲାନି ଧରାକୁ ଚାହଁନାରେ ॥୦॥
ତୋ ବିନା ନବୀନା । ଅକାରଣ ଜୀବନ ।
ପର ପରି ଆଉ କରନାରେ ॥୧॥
କର ଧରି ତୋର । କହୁଛିରେ ସୁନ୍ଦରି ।
ମାର ହାତେ ମତେ ମରାନାରେ ॥୨॥
କଲେ ଅବହେଳା । ବୁଡ଼ିବଟି ମୋ ଭେଳା ।
ଦୟା ବହ ମୀନନୟନାରେ ॥୩॥
ତେଜିଣ ଗୁମାନ । ପଦ୍ମନାଭ ଦେବଙ୍କୁ ।
କୋଳେ ବସାଇଲା ମୋହନାରେ ॥୪॥.

**ରାଗ ବେଗଡ଼ା । ତାଳ ତ୍ରିପୁଟା**

ଅନାରେ ଏଣୀନୟନା । କାହିଁକି ଏଡ଼େ ବିମନା
ହୋଇ ଅଛୁରେ ନବୀନା । କରୁଣାକର ଅଭିନ୍ନା ॥ପଦ॥
ମୁଖ ଟେକି ଶଶିମୁଖି । କହିଲେ ବଚନ ସୁଖି ।
ହେବି ଆରେ ଖଞ୍ଜନାକ୍ଷି । ନେତ୍ରୁ ଲୋତକ ବୁହାନା ॥୧॥
ମନୁ ମାନ ତେଜି ଧନ । କର ବାରେ ଆଲିଙ୍ଗନ
ଏତିକି ମାଗୁଣି ଘେନ । ଧରାରେ ଗିରା କାଟନା ॥୨॥
ମାର ମାରଇରେ ବାଣ ।ତୋ ବିନାରେ ପରିତ୍ରାଣ
ନାହିଁ ଘନକେଶି ଜାଣ । ଏଣିକି ଆଉ ଦଣ୍ଡନା ॥୩॥
ଧରାଧବ ପଦ୍ମନାଭ । ଦେବ ପଦ୍ମ ମୁଖେ ଚୁମ୍ବ
ଦେଲା ପରିରମ୍ଭ । କେଳି-କୁଶଳା-ମୋହନା ॥୪॥

**ରାଗ ବିଳାହରି । ଏକତାଳ ।**

ଚାହୁଁ ତ ନାହୁଁ କାହିଁକି ଚନ୍ଦ୍ର ବଦନା । ପଦ॥
ସାରସନୟନା । ନିରାଶ କରନା ।
କର ଯା କଲେ ସିନା ॥୧॥

ଆନରେ ନବୀନା । ନାହିଁ ମୋ କାମନା
ହେବି ଏକା ତୋ କିଣା ॥୨॥
ଦାସ ଠାରେ ରୋଷ । ତେଜରେ ନାରୀଶ
ପାଇଲି ମୁଁ ଯାତନା ॥୩॥
ପଦ୍ମନାଭ ଦେବ । ଶ୍ରୀମୁଖ ରାଜୀବ
ଚୁମ୍ବିଲା ସେ ମୋହନା ॥୪॥

**ରାଗ କାମୋଦି । ଆଦିତାଳ ।**

କି ଘେନିଟି କୋପ ମାନସେ ।
ନୀଳ-ନଭ-କୁନ୍ତଳିନୀ । ଜଳଜ-ଦଳ-ନୟନୀ ।
ମଳିନ କଲା ଲପନ । ରେ ସଜନି । ପଦ ।
ପାଶେ ମୁ ହୋଇ ପ୍ରବେଶ । ଦାସେ କିପାଁ ଏ ନିରାସ ।
ରୋଷେ ରସନା ନାରୀଶ । ବୋଲି କହିବାକୁ ମୁହିଁ ।
ନଳିନ ନୟନୁ ସେହି । ସଲିଳ କରି ବର୍ଷଣ ॥୧॥
ଖଣ୍ଡେନ୍ଦୁ ଗଣ୍ଡରେ ପାଣି । ଟାଣ୍ଡେ ନିବେଶି ରମଣୀ ।
ଦଣ୍ଡେ ହୋଇଣ ମଉନି । ମନରେ କିସ ଭାଳିଲା ।
ଘନ ନିଶ୍ୱାସ ମୁଞ୍ଚିଲା । ଧନ କରି ଭ୍ରୂକୁଞ୍ଚନ ॥୨॥
କହେ ପଦ୍ମନାଭ ଦେବ । ଦହେ କ୍ରୂର ରତିଧବ ।
ସହେ କେ ଏ ପରାଭବ । ଏହିକି ତା ବୁଝାବଣା ।
ସହି ନ କଲା କରୁଣା । ବହି ଏଡ଼େ ଅଭିମାନ ॥୩॥

**ରାଗ କାମୋଦି । ଆଦିତାଳ ।**

କି ଘେନିଟି, କୋପ ମାନସେ । କୋପ ମାନସରେ ପାଇ ।
ମଥା ପୋତି ଦେଇ ଚାହୁଁ ।
ନାହିଁ ନବୀନା ମତେ । ରେ ସଜନି । ପଦ ।
ମୁଁ ଆସିବା ବେଳ ଚାହିଁ । କୁସୁମ ସେଜ ସେଜାଇ ।
ଜାଳି ରତ୍ନ ପ୍ରଦୀପାବଳି । ଅତର ଚନ୍ଦନ ଗୋଳି !
ମୋ ଅଙ୍ଗେ ଲେପନ ବାଳି । ସେ ପ୍ରୀତି ତେଜିଲା ଗୋରୀ ॥୧॥

ସୁଆଗ ବଚନ କହି । ମୀନାକ୍ଷୀ ମନ ମିଶାଇ
ରସ ପ୍ରସଙ୍ଗ ଭାଷଇ । ବିଶାରଦ ଗୁଣ-ଗ୍ରାହୀ
ବିଷଧର ପରି ହୋଇ । ନିରତେ ଶ୍ୱାସ ତେଜଇ ।।୨।।
ଅପରାଧ କରିନାହିଁ । ଛାଇପରି ପାଶେ ଥାଇ ।
ଅନୁସରି ଦିନ ନେଇ । ବାସ ସାଜି ବାସ ଜଳେ
ମୁଖ ପଦ୍ମ କୁତୂହଳେ । ମାର୍ଜନେ କି ଦୋଷ ଥାଇ ।।୩।।
ମାର ମାରଇରେ ବାଣ । ନିଶ୍ଚୟେ ନେବ ଜୀବନ
ଏହି କଥା କହି ସଧୀର । ପଦ୍ମନାଭ ଦେବ ତୋର ।
ବୋଲି କହିବୁ ନିକର । ବଞ୍ଚିବି ପାଶେ ଆସିଲେ ।।୪।।

**ରାଗ ନାଟକୁଞ୍ଜରୀ । ଏକତାଳ ।**

ପ୍ରୀତି-ସୁଧା କେ ଜାଣିଛି ଅନୁଭବ ବିନାରେ ।।୦।।
ଦିବାକର ନିଶାକର । କମଳ କୁମୁଦ ସର ।
ଭାବଗ୍ରାହୀ ହୋଇଛନ୍ତି ଜଗତରେ ସିନାରେ ।।୧।।
କ୍ଷୀର ନୀର ଅଗ୍ନି ଠାରେ ରଖିଲେ ହେଲେ ସଧୀରେ ।
ପାବକ ନାଶକ ବାରୀ ବାରି କରେ ମନାରେ ।।୨।।
ପବନ ପାବକ ଜଳ । ନାଶନ୍ତି ହେଲେ ପ୍ରବଳ ।
ବୋଲି କରି କେଉଁ ଜନ ହୁଅନ୍ତି ବିମନାରେ ।।୩।।
ପଦ୍ମନାଭ ଦେବ ରାଜ । ଭଜି ବ୍ରଜଯୁବରାଜ ।
ଭାଷନ୍ତି ଏପରି ଗୋରି ହେବୁଟି ଅଭିନ୍ନାରେ ।।୪।।

**ରାଗ କାଫି । ମିଶ୍ରତାଳ ।**

ପଙ୍କଜଲୋଚନା । ସୁନ୍ଦର କି ଏହା ।
ପରିଜନଙ୍କଠାରେ ପର ପରି ଆଚରଣ ।।୦।।
ପୁରାରି -ରିପୁ । ପରମଦା ତାକୁ ।
ପରାଭବ ଦେଉଛି ବାରେ କର ପରିତ୍ରାଣ ।।୧।।
ପୂରୁବ ପର । ପରସଙ୍ଗ ତାର ।
ପରିବାଦ ଦେଉଛୁ ପରିପନ୍ଥି ନ ଶୁଣିଣ ।।୨।।

ପରିଷଦକୁ । ପର୍ଶିତେଜି ଏବେ ।
ପାଇବୁ କି ତୁ ଯଶ୍ୱୀ ପୁରୁଷ-କୁଳ-ପାବନ ।।୩।।
ପଲ୍ଲବାଧରି । ପ୍ରତିପକ୍ଷ ହୋଇ ।
ପୀରତି ନବ ବଲ୍ଲି ପାଳି ନ କର କର୍ତ୍ତନ ।।୪।।
ପ୍ରତିପତ୍ତିରେ । ପୀୟୁଷବଚନା ।
ପଦ୍ମନାଭ ଦେବଙ୍କୁ ପାଶେ କରରେ ଅଧୀନ ।।୫।।

ରାଗ ଝଞ୍ଜୋଟି । ଏକତାଳ ।

କରନାରେ ଏ ମନ୍ଦ ବିଚାର ।
କାଳେ ହୋଇବ ଜନେ ପ୍ରଚାରରେ ।। ପଦ ।।
ଶାଶୁ ନଣନ୍ଦ, ସଖି ! ଶୁଣିବେ ଯେବେ ।
କୁଳରୁ କରିଦେବେ ବାହାରରେ ।।୧।।
କୁଳଟା ବୋଲି ଯେବେ ଲୋକେ ଜାଣିବେ।
ମରଣୁ ଲାଜ ହେବ ଅପାରରେ ।।୨।।
ନାରୀ କୁଳେ କଳଙ୍କ ଦାଗ ଲଗାଇ ।
ଆଚରିବା ସାହାସ କାହାରରେ ।।୩।।
ପର ପୀରତିରେ ମୋ ମତି ବଳାଇ ।
ନ ଭସା ମତେ ଦୁଃଖ ସାଗରରେ ।।୪।।
ପର ବୋଲି ଭୁଲୁ ଅଛୁ ସଙ୍ଗୀନିରେ ।
ପଦ୍ମନାଭ ଦେବ ଅଟେ ତୋରରେ ।।୫।।

ରାଗ ସେନା । ଅଟତାଳ ।

ଆଜ ତୋହର ଏକି ରୀତି । ରେ ରସବତି ।।୦।।
ଚିତ୍ତେ କିସ ତୁ ମଣି । ନ ଶୁଣୁ ମୋର ବାଣୀ ।
ଗଣ୍ଡରେ ମଣ୍ଡି ପାଣି । ବସିଛୁ ମଥା ପୋତି।।୧।।
ଦେଖି ଏ ଛାର ଦୋଷ । କରିଛୁ ଏଡ଼େ ରୋଷ
ଏଥିକି ପଉରଷ । ଲଭିବୁ ଗଜଗତି ।।୨।।
ଯେ ତୋର ଦାସ ପରି । ସେବୁଥିଲା ନାଗରୀ ।
ତାହାକୁ ପରିହରି । ଲଭିବୁ କି ସମ୍ପତ୍ତି ।।୩।।

ଶ୍ରୀପଦ୍ମନାଭ ଦେବ । ହାସ ରହସ୍ୟ ଭାବ
ଛାଡ଼ି ତୁ ମନେ ଭାବ । ପାରିବୁ କି ବରତି ।।୪।।

**ରାଗ ତୋଡ଼ିପୁନ୍ନାଗ । ଏକତାଳ ।।**

ଗତ କଥା ମନରେ ତୋର ନାହିଁକି ?
ଆଜ ତୁ ନାହିଁ କରୁ କାହିଁକି ? ।।ପଦ।।
ଲାଜ କରୁଣା ମିଶା । ମନ୍ଦ ମଧୁର ହସା ।
ଅଙ୍ଗୀକାର ଭଙ୍ଗି ନୋହିକି ? ।।୧।।
ଚୁମ୍ବ ଲାଳସ ଗୋଜ । ଓଷ୍ଠ କରିଣ ସଜ
ବ୍ୟାଜେ ଚାହୁଁଥାଉ ମହିକି ? ।।୨।।
ଶୁଣି ମୋ ନିବେଦନ । କେତେ ରସ ବଚନ
ଧୀରେ ଭାଷୁଥାଉ ସହିକି ? ।।୩।।
କହେ ଶ୍ରୀ ପଦ୍ମନାଭ । ଦେବ ଧରଣୀ ଧବ ।
ସ୍ନେହ ଧର୍ମ ଅଟେ ଏହିକି ? ।।୪।।

**ରାଗ ଝଞ୍ଜୋଟ । ଏକତାଳ ।**

ଗଜରାଜ ଗମନି ଆଜକିରେ ।।ପଦ।।
ଦିଶେ କେଡ଼େ ମଳିନ । ସଜ କଞ୍ଜ ବଦନ ।
ବଳାଉ ନାହୁଁ ମନ । ବାସରେ, ବେଶରେ, ହାସରେ, ରସରେ ।।୧।।
ପ୍ରିୟକୁ ବରଜିଣ । ରହିବୁ କିରେ ଧନ ।
ଥରେ କର ଚିନ୍ତନ । ସେ ହୀନ ମଦନ, କଦନ, ମାନରେ ।।୨।।
ନିର୍ଦ୍ଦୟ ରତିପତି । ଛାଡି ଦିଏ କରତି ।
ବୋଲି କହେ ମୋ କତି । ରେ ରତି, ମୂରତି, ବିନତି, ଅତିରେ ।।୩।।
ଲବ ଦୋଷକୁ ତାର । ରୁଷାତ ଗୁରୁତର ।
ଜାଣି ଆଚରିବାର । ଉଚିତ, ନୁହେତ, ଭାବ ତୋ ଚିତ୍ତରେ ।।୪।।
ପଦ୍ମନାଭ ଦେବଙ୍କ । ତେଜି ଅଙ୍କପଲଙ୍କ ।
ତଳେ ନ ବସ ରଙ୍କରତନ । ଏ ଦୀନ, ଜଣାଣ, ଘେନରେ ।।୫।।

**ରାଗ ପାନ୍ତୁବରାଳି । ଅଟତାଳ ।**

ଆଜ ଯାଏତ ଜଣା ନ ଗଲା ।
ବନ୍ଧୁ ମନକୁ ଚିହ୍ନି ନୋହିଲା ।। ।।ପଦ।।

କେତେ ଥର ଯାଇ । ଜଣାଇଲେ ମୁହିଁ ।
କର୍ଣ୍ଣ କୁହର ମୁଦି ରହିଲା ॥୧॥
ଦିନେ ସେ ରୁଷଇ । ଦିନେ ସେ ହସଇ
କେବେ ଏ କଥା ଶୁଣା ନଥିଲା ॥୨॥
ଅନୁନୟ ଭାଷା । ରଖି ରସାଭୂଷା
ମତେ ଉତ୍ତର ପଦେ ନ ଦେଲା ॥୩॥
''ନାହିଁ'' କିବା ''ହୋଇ'' । କଷ୍ଟେ ପ୍ରାଣସହି ।
କିସଟି ବିଚାରି ନ କହିଲା ॥୪॥
ଭାଷେ ପଦ୍ମନାଭ । ନାରାୟଣ ଦେବ
ଏତ ଅସହ୍ୟ ଦଣ୍ଡ ହୋଇଲା ॥୫॥

**ରାଗ ହିନ୍ଦୁସ୍ତାନି ଭୈରବି । ଏକତାଳ ।**

ବଞ୍ଚିବି କେମନ୍ତ ସଖି ଏ ବସନ୍ତ ।
କାଳରେ ବିଦେଶେ ରହିଲେ ମୋ କାନ୍ତ ॥୦॥
ମାର ଶର ସାଜି । ଅବସର ଖୋଜି ।
ଗରଜି ସଙ୍ଗିନି । ମାରୁଛି ସଂତତ ॥୧॥
ମନ୍ଦ ସମୀରଣ । ହୋଇଛି ଦାରୁଣ
କି ନ କରିପାରେ । ମଦନ ସଖାତ ॥୨॥
କିରଣ କରତେ । ହୃଦୟ କରତେ
ରାତ୍ରେ ଦୋଷାକର । ଉଗାରି ପରିତ ॥୩॥
ଦୁଃଖ ପରେ ଦୁଃଖ । ଦିଅନ୍ତି ଗୋ ଦେଖ
କରିଣ କାକଳି । ପିକ ମଧୁବ୍ରତ ॥୪॥
ପଦ୍ମନାଭ ଦେବ । ସ୍ନେହସୁଖ ଭାବ
ବିନୁ ଅନ୍ୟ ଗତି । ନାହିଁ ଏ ଜଗତ ॥୫॥

**ରାଗ ଶ୍ରୋଟ । ଏକତାଳ ।।**

ଦୂରତ କଲୁ ମତେ । ଜୀବସଙ୍ଗୀ ॥ପଦ॥
କରିଥିଲି ମନେ । ରହି ସନ୍ନିଧାନେ ।
ଅନୁସରନ୍ତି ସନ୍ତତେ ॥୧॥

ପାଶେ ଥିବା ଆଳି । ସଙ୍ଗେ କରି କଳି
ସେବା କରୁଥାନ୍ତି କେତେ ॥୨॥
ନ ଦେଖି ଅଶନ । ପାନ କି ଶୟନ
ଜଗି ବସିଥାନ୍ତି ତୋତେ ॥୩॥
ତୋ ସେବା ତତ୍ପର । ବିନୁ ମନ ମୋର
ଆନରେ ନ ଥାନ୍ତା ସତେ ॥୪॥
ଭାଷେ ପଦ୍ମନାଭ । ନାରାୟଣ ଦେବ
କାର ଖଚ ଶୁଣି ଚିତ୍ତେ ॥୫॥

**ରାଗ ପାନ୍ତୁବରାଡ଼ି । ଅଟତାଳ ।**

ନାହିଁ ମୋର ଗତି କେହି ତୋ ବିନାରେ ।
କାହିଁକି ଏ ମାନ ଗଜଗମନାରେ ॥ପଦ॥
କେ କିସ କହିଲା ତୋତେ । ଏକି ଭାବ ଧରି ଚିତ୍ତେ
ହକିଗତ ନ ଶୁଣୁ ତୁ ନବୀନାରେ ॥୧॥
କାର ଖଚକଥା ଶୁଣି । ମାର ହାତେ ଦେଉ ହାଣି
ଛାର ଦାସକୁ ନ ନାଶ ମୋହନାରେ ॥୨॥
ଦୋଷାଦୋଷ ବିବେଚନା । ଯୋଷା ନ କରି ଭାବନା ।
ରୁଷା କିପାଁ ମୂଳ କରୁ ଅଭିନ୍ନାରେ ॥୩॥
ମୋର ଯଦି ଥାଏ ଦୋଷ । କର କ୍ଷମା ନାଗରୀଶ
ଧରତ୍ରୀରେ ଉଡୁ ତୋହର ବାନାରେ ॥୪॥
କହେ ପଦ୍ମନାଭ ଦେବ । ସହେ କେତେ ପରାରବ ।
ବହେ ସଦା ଲୋତକ ତୋ ବିମନାରେ ॥୫॥

**ରାଗ ବିଳାହରି । ଏକତାଳ ।**

ଏ ଦୁଃଖ ସହି ବଞ୍ଚିବି କି ମୁ ଜଗତେ ॥ପଦ॥
କାର ଖଚ ଗୀର । ଶୁଣି କାନ୍ତ ମୋର
ନିରାଶ କଲେ ମତେ ॥୧॥
କର ନାହିଁ ଦୋଷ । କିପାଁ ଏଡ଼େ ରୋଷ
ବହି ଅଛନ୍ତି ଚିତ୍ତେ ॥୨॥

ଏହି ଅବସର । ଦେଖି ଛାର ମାର
କାଟିବତ କରତେ ।।୩।।
ପଦ୍ମନାଭ ଦେବ । ଲପନରାଜିବ ।
ଦେଖିବି ଆଉ ସତେ ? ।।୪।।

**ରାଗ ଆଶାବରୀ । ଏକତାଳ ।**

ରମଣୀମଣି । ନ ଶୁଣିଲୁ ଥରେ ମୋ ବାଣୀ ।।୦।।
କପଟ ଯାକର ଖଣି । ସେହି ଶଠଶିରୋମଣି
କୂଟ କଥା ସତ ତୁ ମଣି ।।୧।।
ଯାହାର ଅଟେ ସୁପାତି । ବିଟ ନାରୀଙ୍କର ଛାତି
ତାରେ ଭୁଲି ପ୍ରାଣ ମିତଣି ।।୨।।
ତୋର ଦୁଃଖରେ ମୁ ଦୁଃଖି ।
ତୋର ସୁଖରେ ମୁ ସୁଖି ।
ବୋଲି ତୁହି ଅଛୁତ ଜାଣି ।।୩।।
ବ୍ରଜ ରାଜ ସୁତଙ୍କର । ପ୍ରୀତିକି କରି ଆଦର ।
ଏ ଦୁଃଖକୁ ହେଲୁ କାରଣୀ ।।୪।।
ପଦ୍ମନାଭ ଦେବ ଭାଷେ । ଲଳିତାଙ୍କ ଶ୍ରୁତି ପାଶେ
ହେଟି ଆସିଲେ ବଂଶିପାଣି ।।୫।।

**ରାଗ କାଫି । ଅଟତାଳ ।**

ଥରେ କର ଭାବନା । ମୋରେ ରୋଷ ତୁ ବହନା ।।ପଦ।।
ତା କଥା ଶୁଣି । ସତ ମୁ ମଣି । କହିଲି ଗଜଗମନା ।।୧।।
ନ ଥିଲି ଜାଣି । ସେ, ଶଠାଗ୍ରଣୀ । ବଞ୍ଚକ ବୋଲି ନବୀନା ।।୨।।
ମିଛ କି ସତ । ବୁଝି ସଘାତ । ଏଥର କହିବି ସିନା ।।୩।।
କରିଛି ଦୋଷ । ନୁହ ବିରସ । କର ତୁ କ୍ଷମା ଅଭିନ୍ନା ।।୪।।
ଶ୍ରୀପଦ୍ମନାଭ । କହେ ନ ଭାବ । ହାଜର ହେଲି ମୋହନା ।।୫।।

**ରାଗ ତୋଡ଼ି । ଏକତାଳ ।**

ବରଜ ମାନ । ନୀରଜମୁଖି ଜୀବଜୀବନ ।।୦।।
ସରୋଜନୟନି ମୋର । ସରଜନା ପ୍ରୀତି ତାର ।
କର ଜବାଧରୀ ପ୍ରାଣଧନ ।।୧।।

ରଞ୍ଜନା ତୁ ନ କର । କରଞ୍ଜରେ ଲେଖି ଗାର
ଏ ରଜନୀରେ ତାକୁ ଦଣ୍ଡନ ॥୨॥
ହରିଜ ଦେଉଛି ଦଣ୍ଡ । ବାରିଜଗନ୍ଧାରେ ଖଣ୍ଡ
ମୋର ଜଣାଣ ଏଥର ଘେନ ॥୩॥
ରେ ରଜତହାସି ଶୁଣ । ବିରାଜ ସଙ୍କେତ ସ୍ଥାନ
ଅରଜ ପଦ୍ମନାଭ ମେଳନ ॥୪॥

### ରାଗ ପରଜ । ଏକତାଳ ।

ମୋର ବିଛେଦୁ ଦୁଃଖ ସହି ସହିଲାରେ ॥୦॥
ମେଲାଣି ମୁ ମାଗନ୍ତେ । ପ୍ରାଣଧନ ଅଗ୍ରତେ
କିଛି ନ ଶୁଭଇ ବୋଇଲାରେ ॥୧॥
ଅଶ୍ରୁ ତେଜି ନିରତେ । କଥା ନ କହି ମୋତେ
ଭିଡ଼ି ଜବାଧରୀ ଧରିଲାରେ ॥୨॥
ନବଯୌବନେ ତାର । ବିଦେଶକୁ ଯିବାର
ଅବିବେକି ବିହି ବିହିଲାରେ ॥୩॥
ପାମର ମାର ଶର । କାଟୁଥିଲେ ହେ ଉର
ମତେ ନ ପାସୋରି ସ୍ମରିଲାରେ ॥୪॥
ଶ୍ରୀପଦ୍ମନାଭ ଦେବ । କହେ ମୁଖ ରାଜୀବ
ଦେଖିବି କି ମହୀମହିଳାରେ ॥୫॥

### ରାଗ ଖମାଚ । ତାଳ ଆଦି ।

ଭାଷ ମଧୁର ଗୀର ଗଜଗାମିନି । କିପାଁ ହୋଇଛୁ ମଉନୀ ।
କାରଠାରୁ ଏ ରୁଷା । ଶିଖିଲୁ ରସା ଭୂଷା ।
ତୋ ବିନୁ ଅନ୍ୟଭରସା । ନାହିଁ କେ ମୋତିଦଶନି । ପଦ ।
କେବେ ନ ଥିଲା ଏ ମାନ ।
ଆଜ କାହିଁକି ନଳିନ । ଲପନମଳିନ ।
କରି ବସିଛୁ ମହିକି ଦୃଷ୍ଟି କରି ପତନ ।
ଗଣ୍ଡଦେଶରୁ ପାଣି । ଚାଣ୍ଡେ ଫିଅ ରାମାମଣି ।
ମାନସରୁ ଦୁଃଖକୁ ତେଜି ତୁହି ବରବରନି ॥୧॥

ଦୋଷ ଯଦି କରିଥିବି । ଦଣ୍ଡ ତୁ ପ୍ରାଣ ବାନ୍ଧବି ।
ନିରତେ, ତୁ ମତେ ।
ପର ହାତେ ଦଣ୍ଡିବା ସୁନ୍ଦର ଦିଶେ କି ତୋତେ ।
ଛାର ଦାସକୁ ନାଶି ପାଇବୁ କି ଯଶରାଶି ।
ଭଲେ କର ବିବେଚନା କାମ ଦୁଃଖ ବିନାଶିନି ।।୨।।
ବିନୟେ କହିଲେ ମୁହିଁ । ନ ଶୁଣୁ ତୁ ପ୍ରାଣ ସହି
କି ଘେନି, ସଜନି ।
ରସାରେ ନଖେ ଗାର କାଟୁଛୁ ପିକବଚନି ।
ମାର ମାରିଣ ଶର । ଦୁଃଖ ଦିଏ ରାମାବର ।
ବାରେ କର ପରିତ୍ରାଣ ସୁଦୟା ବହି ଭାମିନି ।।୩।।
ପଦ୍ମନାଭ ଦେବର । ବାଣୀକି ଶୁଣି ସତ୍ୱର
ସୁହାସ, ପ୍ରକାଶ । କରି ଦେଖାଇଲା ହାବ ଭାବ ବିଳାସ ।
ଉଭା ହେଲା ମୋହନା । ଶୁଭାଙ୍ଗି ମୃଦୁ ବଚନା ।
ଆକର୍ଣ୍ଣ-ସୁବିଶାଳ ଲୋଳନିଳୋତ୍ପଳଲୋଚନୀ ।।୪।।

**ରାଗ ବେହାଗ । ତାଳ ରପକ ।**

ପ୍ରାଣସଖି ସପନେ ଯା । ଦେଖିଲି ମୁହିଁ ।
ତା କହି ନୁହଇ ।। ପଦ ।।
ସରସ ହୋଇ ପ୍ରାଣନାଥ ଆସି ସଧୀରେ
ମୋର ପାଶରେ ବସିଲେ ଉରେ କର ଦେଇ ।।୧।।
ଉରରେ ଉର ଭିଡ଼ି ସୁଧା ବଚନ କହି
ସରସେ ଚୁମ୍ବିଲେ କେତେ ଭଙ୍ଗି ଦେଖାଇ ।।୨।।
ମୋଦ ନୟନ ଢାଳି ରଦବାସ ପାନରେ
ସାଦରେ ମତ୍ତହେଲେ ମାଦକି ପରି ହୋଇ ।।୩।।
କାତର ହୋଇ ଉଠି ବସିଲି ମୁଁ ଲାଜରେ
ଅନ୍ତର ହେଲେ କି ତରତରେ କେଣେ ଯାଇ ।।୪।।
ସଦ୍ମ ତେଜି ଗଲା ବେଳେ କି କର୍ମ ମୁ କଲି
ପଦ୍ମନାଭ ଦେବଙ୍କୁ ଯା ଛାଡ଼ିଲି ସହି ।।୫।।

### ରାଗ ବିଳାହରି । ତାଳଆଦି ।

ମୋ ବିନାରେ ବଞ୍ଚିବ କିନା ।
ହିମ କାଳରେ ହେମ ବରନା । ପଦ ।
ହିତ ଶୁକପୋତ ରୁତ ସଦା ଶୁଣି ।
ଚିତ୍ତରେ ମତେ ଝୁରୁଥିବ ରମଣୀ ।
ଶୀତ ମରୁତେ କମ୍ପିତ ହେଉ ଥିବନି ।।୧।।
ଆତୁରେ ସରୋଜିନୀ ମୃଦୁବଚନା ।
ଋତୁହୀନ ହେମନ୍ତେ ହେବାରୁ କ୍ଷୀଣା ।
କୁତୂହଳେ ମାର ଦେଉଥିବ ଯାତନା ।।୨।।
ସ୍ମର ସମରୋଚିତ ବେଶକୁ ଛାଡ଼ି ।
ଧରଣୀରେ ବିରସେ ଥିବ ପହୁଡ଼ି ।
ନୀରଜ ଲପନ ଯାଉଥିବନି ସଡ଼ି ।।୩।।
ରଣରଣ ଶାଣ-ବାଣ ଗଣ ବାଜି ।
ଗଣବଣା ଏଣୀଦୃଶା ଦମ୍ଭ ଭାଜି ।
ଟାଣ ବିବେକ ଯାକ ଯାଉଥିବ ହଜି ।।୪।।
ଭାଷନ୍ତି ପଦ୍ମନାଭ ଦେବ ଦୁଃଖିତେ ।
ରସଲତା ପାଶକୁ ଯାଇ ତ୍ୱରିତେ ।
ହାସ ମିଶା ଭାଷା ଶୁଣିବି କି ସତେ ।।୫।।

### ରାଗ ଖମାଚ । ଏକତାଳ ।

ଶୁଣିଲି ମଧୁର ବାଣି ଏଣୀ ଦୃଶା ମୁଖରୁ ।
ମଣିଲି ମୁ ବଢ଼ିଗଲା ଇନ୍ଦ୍ରପଦ ସୁଖରୁ ।।୦।।
ସୁସ୍ୱାଦୁ ରସ ପୂରିତ । ନାଶେ ସକଳ ଦୁରିତ ।
ଶୀତଳ ଗୁଣେ ବଳିଲା ସେ ସୁଧାମୟୂଖରୁ ।।୧।।
ଦଗ୍ଧ ହୃଦ କ୍ଷେତ୍ରେ ମୋର । ସିଞ୍ଚି ତାର ଗୀର ନୀର ।
ବଞ୍ଚାଇଲା ପ୍ରେମାଙ୍କୁର କାମ ତାପ ଦୁଃଖରୁ ।।୨।।
ତା ବଚନାମୃତ ପାନ । କରି ଯେ ତରେ ମଦନ
ସଂସାରେ କେ ଅଛି ଆଉ । ବଳି ସେ ମୁରୁଖରୁ ।।୩।।

ପଦ୍ମନାଭ ଦେବ ଭାଷେ । ନମଜ୍ଜି ତା କଥାରସେ
ଯାହା ହେଲେ ହେଉ ପଛେ । ନ ଘୁଞ୍ଚିବି ପାଖରୁ ।।୪।।

ରାଗ କାମୋଦି । ଅଟତାଳ ।

କାହିଁକି ରସବତୀ । ବିରସ ହୋଇ ଅତି ।
ବସିଛୁ ମଥା ପୋତି ମହୀ କି ରେ । ପଦ
ରାମାରତନମଣି । ପ୍ରେମ ମଧୁର ବାଣୀ ।
ନ ଶୁଣି ଭଜିଲି ମୁ ଭୀତି କିରେ ।।୧।।
କରି ନାହିଁ ତ ଦୋଷ । ଦାସଠାରେ କି ରୋଷ
ହେବାର ଛଇଲା ଉଚିତ କି ରେ ? ।।୨।।
ଦେଖି ତୋର ସମୟ । ପଞ୍ଚବାଣର ଭୟ
ହେଲାନି ଅଣ୍ଟି ନାହିଁ ଆଉ କି ରେ ? ।।୩।।
ତୋ ବିନାରେ ନବୀନା । ଗତି ନାହିଟି ଅନା
ସରିଲେ ମାନ ମନା କାହିଁକିରେ ।।୪।।
ଭୂପତି ପଦ୍ମନାଭ । ଦେବ ବଚନ ଲଭ୍ୟ
ବସି ସାଜିଲା ବାଳା କେଳିକିରେ ।।୫।।

ରାଗ ବିହାଗ । ତାଳ ଆଦି ।

ଆରେ ପ୍ରୀତିଲାଳସି । ବାରେ ମୋ କୋଳେ ବସି ।
ଥରେ ଅନା ବାମନୟନା ଅଳପ ହସି ।।୦।।
ଚାହିଁ ତୋ ଆଗମନ । କାହିଁ ନ ରହେ ମନ
ଧାଇ ଚନ୍ଦ୍ରବଦନ ବାଇ ହେଲି ନି ଧନ ।।୧।।
ପ୍ରାଣ ସଜନି ମତେ । ତ୍ରାଣ ନ କଲେ ସତେ
ଜାଣ କହୁଛି ମୋର ପ୍ରାଣ ମଦନ ହାତେ ।।୨।।
ବାଳାମଣି ତୁ ମୋର । ଗଳାରେ ନିଜ କର
ମାଳାକୁ ଦେଇ ସ୍ମର ଜାଳାକୁ ଦୂର କର ।।୩।।
ହା ! ମୋ ପ୍ରେମ ପସରା । କାମ ଦୁଃଖ ପାସୋରା
ନାଗରୀ ଅଗ୍ରଗୀରା ତୁ ମୋର ଦିନସରା ।।୪।।
ପଦ୍ମନାଭ ଦେବର । ଛଦ୍ମ ରହିତ ଗୀର
ପଦ୍ମନୀ ଶୁଣି କେଳି ସଦ୍ମେ କଲା ବିହାର ।।୫।।

### ରାଗ ବେହାଗ । ରୂପକ ତାଳ ।

ନ ବୁଝି ମୁ ବୁଦ୍ଧି ହୁଡ଼ି । ଯା କାନ୍ତକୁ ତେଜିଲି ।।୦।।
କେତେ ଦୁଃଖେ କର ଯୋଡ଼ି ।
କହିଲେ ସେ ଯେତେ । ଥରେ ନ ଶୁଣି । ।।୧।।
ବିନୟେ ଧରନ୍ତେ କର । ମୋଡ଼ି ଦେଇ ମୁଖ ।
ଝିଙ୍କି ଆଣି ପାଣି । ।।୨।।
ଦଣ୍ଡେ, ଯାଏ ଉଭା ହୋଇ ।
ଲୁଆଁଇ ଲପନ । ନ ବୋଧି ମୁ ଜାଣି ।।୩।।
ପଦ୍ମନାଭ ଦେବଙ୍କର ।
କଥା ସତ ବୋଲି ସଜନି ନ ମଣି । ।।୪।।

### ରାଗ ଖରହରପ୍ରିୟା । ଏକତାଳ।

ଘେନାଇ କହିଲେ ଘେନିବି କି ମୁ ଚିତ୍ତେ ।
ନିତି ଏହି ପରି ହେଲେ ସହିବି ସେ ଦାଉ କେତେ ।।ପଦ।।
ଅଗାରୁ ଅଣାଇ ମତେ । ଜଗାଇ କୁଞ୍ଜେ ନିଶାନ୍ତେ
ଭଗାରି ହସାଇ ସେହି । ଦଗା କରି ଅଛି ଯେତେ ।।୧।।
ଲେଖ ତା ଦେଖି ନିରତେ । ଦେଖା କରିବାରୁ ପ୍ରତେ
ସୁଖକୁ ଲଭିବା ଥାଉ ଦୁଃଖେ ସଡିଲି ସତତେ ।।୨।।
କେଉଁ କାମିନୀ ସଙ୍ଗତେ । ନେଇ ଯାମିନୀକି ରତେ
ଥାଉ କହିବାର ଆସି । ଶ୍ରୀମୁଖ ଦେଖାଏ ପ୍ରାତେ ।।୩।।
ପଦ୍ମନାଭ ଦେବ ଗୀତେ । ଭାଷନ୍ତି ରାଧେ ସୁଚିତ୍ତେ
ଆସୁଛନ୍ତି ଚାହାଁ ଶାମେ । କୃପା କଟାକ୍ଷେ କିଞ୍ଚିତେ ।।୪।।

### ରାଗ ବିଭାସ । ଅଟତାଳ ।

ଘେନ ମୋର ବିନୟ ଗୀର ।
ଘନକେଶି ମାନେ ଭୁଷନାରେ ।। ଘୋଷା ।।
ବିନା ଦୋଷେ ଦାସକୁ । ବିନାଶିବା ଯଶକୁ ।
ମନ ନବଳା ଝିନ୍ନବସନାରେ । ଆନ ଅଛିଟି ମାନ ।
ଆନନ ଚନ୍ଦ୍ର ମ୍ଲାନ । କରି କନକଗୋରି ବସନାରେ ।।୧।।

ତରୁଣାରୁଣାଧରି । କରୁଣା ଊଣା କରି ।
ଦାରୁଣ ମାର ମନ ତୋଷନାରେ ।
ସରୁମଧ୍ୟମା ଗଜ । ବରଗମନା ନିଜ ।
କରେ ନ ମାରି ପରେ ନାଶନାରେ ।।୨।।
ଶଙ୍କର ଚିତ୍ତମୋହି । ପଙ୍କଜବାସୀ ସହି ।
ନଖ ଲାଗଲେ ମହୀ ଚଷନା ରେ ।
ରଙ୍କରତନ ଆସି । ଅଙ୍କପଲଙ୍କେ ବସି ।
ନିଃଶଙ୍କେ ବନ୍ଧା କଟୀ ରସନାରେ ।।୩।।
କୋକିଳଜିତଭାଷି । ଶେଷ ହେଉଛି ନିଶି
ରସିକାମଣି ଆଉ ରୁଷନାରେ ।
ଭାଷଇ ପଦ୍ମନାଭ । ଶ୍ରୀ ନାରାୟଣ ଦେବ ।
ହାସ ପ୍ରକାଶ ମୋତି ଦଶନାରେ ।।୪।।

**ରାଗ ଶୁଦ୍ଧକାମୋଦୀ । ଅଟତାଳ ।**

ବନ୍ଧୁ ଆଜ କାହିଁକି, ଏଡ଼େ ଗୁରୁ ଗୁମାନ ।।୦।।
କିଶଳୟ କର, ମଣ୍ଡି ଗଣ୍ଡସ୍ଥଳ,
ଧୃତି ବିଟପୀକି କରୁ ମୋର ଖଣ୍ଡନ ।।୧।।
ନିପଟ ନିସ୍ତେଜ, ଦିଶୁଛିତ ଆଜ,
ନିର୍ମଳ ଚାରୁ ଶରଦିନ୍ଦୁ ଲପନ ।।୨।।
ଅଶ୍ରୁ ଧାର ହାର, କରି ରାମାବର,
ମୋ ସୁଖ କନ୍ଦଳିକି କରି ଦେଉ ଦଳନ ।।୩।।
ବିନୟ ଭାବରେ, ଯେତେ ହେଁ କହିଲେ,
କରୁ ନାହିଁ ଶ୍ରବଣ ସୀମା ସ୍ପର୍ଶନ ।।୪।।
ଆରେ ନାଗରୀଶ, ଦେଖି ତୋ ବିରସ,
ଲଗିଲାଣି ମାର ଘେନିବାକୁ ଜୀବନ ।।୫।।
ଭାଷେ ଧରାଧବ । ପଦ୍ମନାଭ ଦେବ ।
ବାଳାମଣି ବାରେ ରଖ ମୋ ସନମାନ ।।୬।।

ରାଗ ବେହାଗ । ରୂପକ।

ସିନ୍ଧୁରଗମନା । ଆସିଛନ୍ତି ସେ ମୋହନେ ଅନା ।
ନୁହ ବିମନା ।।ପଦ।।

ସ୍ୱହସ୍ତେ ଗୁନ୍ଥି ସୁମନ-ମାଳା ସୁ-ମନା
ଲାଗି ହେବୁ ବୋଲିରେ ମୋ ଗଣ୍ଠିର ସୁନା ।।୧।।
କାଶହାସିନି ଚାରୁଶୋଭିନି ନୀଳବସନା
ଗୋପ ପୁରେ ତୋ ପରିରେ କେ ଅଛି ଲଳନା ।।୨।।
କୁସୁମକୋଦଣ୍ଡ କରରେ ଦଣ୍ଡ ତୁ ଦିଅନା
ମଣ୍ଡନ କରରେ ଅଖଣ୍ଡ ଚନ୍ଦ୍ର ବଦନା ।।୩।।
ଆଳି ବଚନେ କେଳି ରଚିଲେ କେତକୀବରନା
ପଦ୍ମନାଭ ଦେବ ସେ ପଦେ କଲେ ରଚନା ।।୪।।

ରାଗ କାମୋଦୀ । ତାଳ ଆଦି ।

ସଜନି, ଲାଜକଲେ କେଡ଼େ ଆଜରେ ।
ରଜନୀରେ ନିଜ ଉଜ୍ୱଳ ଦେଖାଇ
ଉଦେ ହୋଇ ଦ୍ୱିଜରାଜରେ ।। ପଦ।।
ଧ୍ୱାନ୍ତ ଅତିଅନ୍ତ ହୋଇ ପ୍ରବର୍ତ୍ତନ୍ତେ ସ୍ୱାନ୍ତରେ ଉଲ୍ଲାସ ଭରି
କାନ୍ତ ସନିଧିକି ଯିବାକୁ ବିଚାରୁ ହନ୍ତକ ମନରେ ଧରିରେ ।।୧।।
କାଞ୍ଚି କଟୀଦେଶେ ଆଣ୍ଟକରି ଭିଡ଼ି ପାଞ୍ଚି କେଳି ରସଭାବ
କୁଞ୍ଚି ଭାଙ୍ଗି କାଛି ନୀଳାମ୍ବର ବାଛି ରତି ଅଙ୍ଗେ ଥିଲି ଜବରେ ।।୨।।
ବେଶ ହୋଇ ସର୍ବ ଭୂଷଣମାନଙ୍କୁ ଆଶ କରି ସେହି ପ୍ରୀତି
ନିଶବଦ କାଳ ଜାଣି କରୁଥିଲି ନିଃଶଙ୍କରେ ଧୀରେ ଗତିରେ ।।୩।।
ଶୁଣିବେ କେ ବୋଲି ଚରଣ ନୂପୁର କ୍ୱଣିତ ଭୟରେ ଫେଇ
ବାଣୀ ନ ଶୁଭାଇ ମାର ଯୁଦ୍ଧ ପାଁରେ ଆଣି କେତେ ଥିଲି ଥୋଇ ।।୪।।
କଳଙ୍କ କେବଳ ଅଭିସାରିକୁଳଠାରେ ଏ ଅଟଇ ଧ୍ରୁବ ।
ମିଳନ ଶ୍ରୀ ପଦ୍ମନାଭ ଦେବଙ୍କର ବେଳେ କିପରିରେ ହେବ ।।୫।।

ରାଗ ତୋଡ଼ି । ଏକତାଳ ।

କହନା ସଜନି ମତେ । ଜୁହାର ତୋତେ ।
ଯେ ଯାହା ବୋଲୁ ପଛେ ବୁଲୁଥିବି ତା ସଙ୍ଗତେ ।।ପଦ।।

ହେଲେ ହେଉ ଅପଖ୍ୟାତି । ଗଲେ ଯାଉ ଜାତି ନୀତି ।
ଛୀଇଁଥାଉ ତା ପୀରତି । ନ ତେଜିବି କଦାଚିତେ ॥୧॥
ସେହି ଏକା ମୋ ସଂପତ୍ତି । ସେହି ମୋର ସୁଖ ତତି ।
ତାର ବିନା ଆନ ଗତି । କେହି ନାହିଁ ଏ ଜଗତେ ॥୨॥
ପଚାରୁ ବା ନ ପଚାରୁ । ରଖୁ ବା ଜୀବନେ ମାରୁ
ଲଗାଇବା ସ୍ନେହ ତରୁ । କାଟିବି କି ନିଜ ହାତେ ॥୩॥
ପଦ୍ମନାଭ ଦେବଙ୍କର । ସେବା କରି ନିରନ୍ତର ।
ହେଲେ ହେବି ନାରଖାର । ନ ଶୁଣିବି ମୁ କିଛିତେ ॥୪॥

**ରାଗ କାମୋଦୀ । ଏକତାଳ ।**

ଏତିକି କରୁଣା ଥାଉ ରେ । ସଂଘାତ ।୦।
ତନୁ ଥିବା ଯାକ । ସଦା ଅନୁସରି । ଦିନ ମୋର ସରି ଯାଉ ॥୧॥
ଦେଖୁଥିବି ତୋର । ଲଳିତ ଲପନ । ଦରହାସ ପୂରି ଥାଉ ।୨॥
ବଳି ଗଲେ କେବେ-କେବେ ପତ୍ରାବଳୀ । ଲେଖୁଥିବି ଟେକି ବାହୁ ॥୩॥
ଭାଷେ କ୍ଷିତିପତି । ପଦ୍ମନାଭ ଦେବ । ଲୋଡୁ ନାହିଁ କିଛି ଆଉ ॥୪॥

**ରାଗ ଝଞ୍ଜୋଟି । ଅଟତାଳ ।**

ସେପରି ଲପନ । କି ମ୍ଳାନ । ॥୦॥
ଅର୍ଦ୍ଧ ବିକଶିତ । ଶୈବାଳ ଆବୃତ ଯେପରି ନଳିନ ॥୧॥
ପୂର୍ଣ୍ଣ ନିଶାକର । ବାରିଦ ଭିତର । ଯେଢ଼େ ତେଜ ହୀନ ॥୨॥
ପାଦରସ ଭିନ୍ନ । ଆଦରଶ ସମ । ଦିଶେ ଯେ ବରନ ॥୩॥
ଭାଷେ ପଦ୍ମନାଭ । ନାରାୟଣ ଦେବ । ମୋର କି ଦୁର୍ଦ୍ଦିନ ॥୪॥

**ରାଗ ପରଜ । ଏକତାଳ ।**

ତୋର ଶ୍ରୀମୁଖ ଦରଶନ ଲାଗି ରେ ॥୦॥
ତୋର ଯିବା ଆସିବା । ପଥରେ ନିଶି ଦିବା
ନିରେଖି ବସିଥାଏ ଜଗିରେ ॥୧॥
ତେଜି ମାନ ମହତ । ମୋ ପଛେ ଅବିରତ
ଅନୁସରି ଗଲାନି ସାଗରେ ॥୨॥
ବାସ ଅଶନ ପାନ । ମଣେ ବିଷ ସମାନ
ହେବ ନିଷ୍ଟେ ବଇରାଗୀରେ ॥୩॥

ଭାଷେ ଶ୍ରୀପଦ୍ମନାଭ । ଦେବ ଧରଣୀଧବ
ନ କର କାମଦୁଃଖ ଭାଗୀରେ ।।୪।।

### ରାଗ ଦର୍ବାର । ଏକତାଳ ।

ମନ ମୋହିଲାରେ ।
ଚିବୁକେ ତର୍ଜନୀ ଦେଇ । ନୟନ ଘୁମାଇ ।।୦।।
ଚିତ୍ତେ ତାର କିସ ଭାଳିଲା । ଦଣ୍ଡକ ଯାଏ ତୁନି ହେଲା
ଭକ୍ଷ୍ମହୀନ ପକ୍ୱବିମ୍ବୋଷ୍ଠୀ । ଅଧରେ ହାସ ବିଳସାଇ ।।୧।।
ଲାଜ ପ୍ରେମର ରଙ୍ଗ ସ୍ଥଳ । ହେଲା ତା ଗଣ୍ଡ ମଣ୍ଡଳ
ନଚାଇ କମାଣ ଭ୍ରୂଲତା । ଅଙ୍ଗରେ ଲୋମାଞ୍ଚ ପୂରାଇ ।।୨।।
ବଳିଲା କି ତୋର ମାନସ । ସୁର ସମରେ ନାରୀଶ ।
ବୋଲି ପଚାରିବାରୁ ମୁହିଁ । ଭଙ୍ଗିରେ ତା କହିବା ନାହିଁ ।।୩।।
ଭାଷେ ଶ୍ରୀପଦ୍ମନାଭ । ମୋ ମନୁ ପାସୋର ନୋହିବ ।
ମୃଦୁ ବିଳାସ ହାବ ଭାବ । ଯାହା ସବୁମଧ୍ୟା ଦିଶାଇ ।।୪।।

### ରାଗ ସୁରଟ । ଏକତାଳ ।

ସଙ୍ଗିନି ମତେ କହନା ତା ବିନତି ।
ଗଞ୍ଜି ହେଉଥିବ କେ ନିତି । ପଦ ।
ନାହିକି ତୋ ମନରେ । ଦିନେ ନିଶି ଜାଗରେ
କି ପରି ପୁଆଇଲୁ ରାତି ।।୧।।
ସହି ଗୁରୁ ଭର୍ତ୍ସନା । କୁଳ ଜନ ଯାତନା
ଆଉ କେ କରିବ ତା ପ୍ରୀତି ।।୨।।
ଜାଣିଲି ମୁ ନିକର । ତା ସ୍ନେହ କେତେ ଦୂର
ବୃଥାରେ ନ ଭୁଲା ମୋ ମତି ।।୩।।
ଅଣ୍ଟିଲାନି ଏଥର । ପଦ୍ମନାଭ ଦେବର ।
ଅନୁରାଗ ସୁଖ ସମ୍ପତ୍ତି ।।୪।।

### ରାଗ ତୋଡ଼ି । ଏକତାଳ ।

କହନା ସଜନି ମତେ । ଜୁହାର ତୋତେ ।
ତା ପ୍ରୀତି ରୀତି ଭୀତି ଭେଦିଛି ଅନ୍ତର ଗତେ ।।୦।।
ମାନ ମହତ ହରାଇ । ସଙ୍କେତ ସ୍ଥଳକୁ ଯାଇ
ଆସିବା ପଥକୁ ଚାହିଁ । ବସି ନ ପାରେ ନିରତେ ।।୧।।

କପଟେ ଦେଖାଇ ଆଗ । କେତେ ପ୍ରେମ ଅନୁରାଗ
କରେ ପଛେ ଅସରାଗ । ଭସାଇ ଦୁଃଖ ସରିତେ ।।୨।।
ଅଣ୍ଟିଲାନି ସରି ଆଉ । ସହି ନ ପାରେ ସେ ଦାଉ
ଯାହା ପଛେ ହେଲେ ହେଉ । ନ ଶୁଣିବି କଦାଚିତେ ।।୩।।
ପଦ୍ମନାଭ ଦେବଙ୍କର । ସୁଆଗତ ଏତେ ଦୂର
ବୋଲିଣ କେତେ ମାତର । ଜାଣି ମୁ ନ ଥିଲି ସତେ ।।୪।।

ରାଗ ବିହାଗ । ଆଦିତାଳ ।

ଲାଜରେ ମୁଁ ଗଲିଟି ସଡ଼ି । ସଜନି !
କାନ୍ତ ମୋ ଏକାନ୍ତରେ ଯା କଲେରେ ସହି ।।୦।।
ଧରି ମୋ ପାଣିକି । କେତେ ଭଙ୍ଗିରେ ବାଣୀକି
କହି ଅଙ୍କରେ ନିଃଶଙ୍କରେ ବସାଇଲେ ନେଇ ।।୧।।
ଧୀରେ ଚୁମ୍ବି ଗଣ୍ଡେ । ବାହୁ ପ୍ରସାରି ଚାଣ୍ଡେ
ମୋ ଅଙ୍ଗରେ କି ରଙ୍ଗରେ ବେଢ଼ାଇଲେ ସେହି ।।୨।।
ସୁରତେ ମଜାଇ । ରତି ଚିହ୍ନରେ ସଜାଇ
ରାତି ଯାକ ମାତିଲେ କି ଜାତିରେ ମୋହି ।।୩।।
ପଦ୍ମନାଭ ଦେବ । କେଳି ସମ୍ଭେ କି ଭାବ
ଧରି ଜାତିକୁସୁମ ପାତିଲେ ସୁପାତିରେ ଚାହିଁ ।।୪।।

ରାଗ ଭୈରବି । ଆଦିତାଳ ।

ଜୀବବନ୍ଧୁ ମୋଠାରେ ତେଜ ମାନରେ
ଘେନିଛୁ କାହା ଖଟବଚନରେ ।ପଦ।
ତୋ ଚନ୍ଦ୍ରାନନ । ଦେଖି ମଳିନ ।
ହୃଦ ଦହୁଛି ପଞ୍ଚ ବାଣରେ ।।୧।।
ନାରୀରତନ । ଟେକ ଆନନ ।
ରସହୃଦୟା ବାରେ ଘେନରେ ।।୨।।
ହୋଇ ସୁମନ । ବସ ବହନ
ନିଃଶଙ୍କେ ଅଙ୍କ ସିଂହାସନରେ ।।୩।।
ତେଜି ଗୁମାନ । ହୋଇ ଯତନ
ଗଣ୍ଡେ ଦିଅ ତୁ ଚୁମ୍ବନରେ ।।୪।।

ଶ୍ରୀ ପଦ୍ମନାଭ । ବୋଲେ ତୋ ଭାବ
ଦେଖାଇ ଦିଅ କିଣାଇନରେ ।।୫।।

ରାଗ । ଘଣ୍ଟାରବ । ଅଟତାଳ ।

ବିଧୁମୁଖି । ଗୁମାନ ମନୁ ବରଜରେ ।।୦।।
ରଞ୍ଜନ କରି ମୋ ମନ । ସୁନାବରନା ବହନ
ବଞ୍ଚା ମାରତାପୁ ବାରେକ ଆଜରେ ।।୧।।
ନୀଳଘନଜିତକେଶି । ସୁରତରେ ମନ୍ଦେ ହସି
ମଣ୍ଡିଦିଆଅ ଉରଜେ କରଜରେ ।।୨।।
ବିମ୍ବାଧରି ପିକଭାଷି । ଭାଷ ମଧୁରେ ପ୍ରକାଶି
ତୁଳି ଶେଜେ କାମ ସୁଖେ ନିମଜ୍ଜରେ ।।୩।।
ସୁରତ ରସେ ମାତି । ନଚାଇ ନାସାର ମୋତି
ସ୍ନେହ ବଶରେ ମୋଦକୁ ସରଜରେ ।।୪।।
ପଦ୍ମନାଭ ଦେବ ବାଣୀ । ସନମତେ ସେ ରମଣୀ
ହସି ଠାରିଦେଲା ନେତ୍ର ନୀରଜରେ ।।୫।।

ରାଗ କାମୋଦୀ । ଅଟତାଳ ।

କହି ଏତେ । ସହି ମତେ ।
ଆଉ ତା ପ୍ରେମେ ପକାନା ମା ।ପଦ।
ଭାଷିବାରୁ କେତେ ସ୍ନେହ ଭାଷା ।
ବଳାଇ ଥିଲି ମୁଁ ଯେତେ ଆଶା
ନ ବିଚାରି ପରପରି ।
ଏବେ ପାସୋରି ଦେଲାଣି ମା ।।୧।।
କର ଧରି ମୋର ଆନ କେତେ
ପକାଇ କହୁ ଥାଇ ସନ୍ତତେ ।
ତୋର ବିନା ସ୍ନେହାଧୀନା ।
ନାହିଁ ଗତି କେ ଧରଣୀରେ ।।୨।।
ଜାଣିଥିଲେ ତାର କଥା ମୁହିଁ ।
ଏତେ ସରିକି ନ ଥାନ୍ତି ହୋଇ ।
ସେ ଶଠର କୂଟଗୀର ।
ସତ ବୋଲି ଦେଲି ଶୁଣି ମା ।।୩।।

କହିଲେ ସତେ ତୁ ଶଏଥର ।
ଘେନିବି କି କେବେ ମୁ ଏଥର ।
ତା ପ୍ରୀତିର ସାରାସାର ।
କେତେ ଦୂର ବୁଝିଲିଣି ମା ॥୪॥
କହ ପଦ୍ମନାଭ ଦେବ ପାଶ ।
ଯା ରସରେ ହୋଇଅଛ ବଶ
ଏହି ଭାବ ନ କରିବ
ଦେଖି ଆନ କେ ରମଣୀ ମା ॥୫॥

**ରାଗ ଆଶାବରି । ରପକତାଳ ।**

ବରଜି ଅରଜିଲି କଦନ ।
ମରଜି ନ ବୁଝି କରି ବିମନ ॥ପଦ ॥
କର ଯୋଡ଼ି କହିଲେ ଯେତେ ।
ବରବରନି ମୁ ନ ଶୁଣିଣ ॥୧॥
ଲବ ଦୋଷ ତାର ନ ଦେଖି ।
ଗର୍ବରେ ହୋଇ କେଡ଼େ ମଉନ ॥୨॥
ତୋଷେ ଚିବୁକେ ଦେଲେ କର ।
ରୋଷେ ମୁହିଁ ଫେରାଇ ବଦନ ॥୩॥
କର୍ମ ବାମରୁ ଛଳାଞ୍ଜଳି ।
ପ୍ରେମ ଧର୍ମରେ କରି ପ୍ରଦାନ ॥୪॥
ଛଦ୍ମ ବେଶେ ମୁ ଯା ନ କହି ।
ପଦ୍ମନାଭ ଦେବଙ୍କୁ ବଚନ ॥୫॥

**ରାଗ ସାବେରି । ଅଟତାଳ ।**

ପାଳିତ ସ୍ନେହ ନାଶୁ ହଟିକିରେ ॥୦॥
ରତି ପ୍ରେମାଳବାଳ । ସିଞ୍ଚି ସ୍ନେହସଲିଳ ।
ବାଛି ଖଳକୀଟଙ୍କ ସୃଷ୍ଟିକିରେ ।
ଖୋଳାଇ କୂଟଲଟା । ଛଳାଇ ଖଚକଣ୍ଟା
ଫଳାଇଲା ବୃକ୍ଷକୁ କାଟିକିରେ ॥୧॥

ସୁଖେ ପାଦେ ଯାବକ । ଲେଖେ ଯେଉଁ ସେବକ ।
ଦୁଃଖେ ତାକୁ ଗୀର ନ ରଟି କିରେ
ପ୍ରାଣମୀନ ନାଶକୁ । ଧନ ଇଛୁ ଦେବାକୁ ।
ମାନଜୀବ କାମଲାଠିକିରେ ।।୨।।
ଦୋଷ ମୁ ଥିଲେ କରି । ରୋଷ ଚିତ୍ତେ ନ ଧରି ।
ନାଶ ପକାଇ ତୀକ୍ଷ୍ଣ ଦୃଷ୍ଟିକିରେ
ବହି ଏଡ଼େ ଗୁମାନ । ଦେଇ ମତେ କଷଣ ।
ପାଇବୁ ତୁ କେଉଁ ତୁଷ୍ଟି କିରେ ? ।।୩।।
ଭାଷେ ଶ୍ରୀ ପଦ୍ମନାଭ । ତୋଷେ ଦେଇ ବିଭବ
ଲେଶ ତ୍ରୁଟିରେ ତା ଲୁଟିକିରେ ।
ଲବେ କେଣେ ଯିବାକୁ । ତେବେ ନ ଛାଡୁ ଯାକୁ ।
ଏବେ ମୁଖ ତାରେ ଛାଟିକିରେ ।।୪।।

ରାଗ ନାଦନାମକ୍ରିଆ । ଆଦିତାଳ ।

ପୂରୁବ ପରି ମତେ । ପଚାରୁନାହୁଁ କିଞ୍ଚିତେ
ଭାବି କି ଚିତ୍ତେ । ରେ ସଜନି । ପଦ ।
ଆସିଗଲେ ପାଶେ । ବଚନ ସରସେ ।
ଭାଷି ଅଙ୍କପରେ । ବସି ତରତରେ ନାନା ରଙ୍ଗେ
ମୋର ସଙ୍ଗେ । ମାତୁ ଥାଉ ତୁ ଅବିରତେ ।।୧।।
ଅତର ଚନ୍ଦନ । ବାସଫୁଲ ପାନ । ରଖାଇ ଯତନେ
ଭାବୁଥାଉ ମନେ । ପ୍ରାଣବନ୍ଧୁ ରସ ସିନ୍ଧୁ ।
ଆସିଲେ ନାହିଁ କିପାଁ ଏଥେ । ।।୨।।
କେଣେ ଗଲା ସେହି । ସ୍ନେହ ଯାକ ସହି
ଦୁଃଖ ସରିତରେ । ଭାସିଗଲେ ହେଲେ ।
ଦେଖି ଦେଖି ଯା ଉପେଖି ।
ରହୁ ଉଚିତ କି ଏ ତୋତେ ।।୩।।
ଶୁଣି ନୃପମଣି । ପଦ୍ମନାଭ ବାଣୀ ।
ହସ ହସ ହୋଇ । ନିକଟକୁ ଯାଇ ।
ମାର ଗର୍ବ । କିରି ଖର୍ବ ।
କୋଳେ ଧରିଲା ସେ ତ୍ୱରିତେ । ରେ ସଜନି ।।୪।।

### ରାଗ ବିଳାହରି । ଏକତାଳ ।

ଚାହାଁରେ ସୁରଙ୍ଗ ଅଧରି । ମନ ହୁଏ ଘାରି ।
ତୋର ନିଜ ଅଧୀନେ । ଗୁମାନ ପରିହରି ॥୦॥
ଜଣାଣ ଘେନି । ଧରଣୀମଣ୍ଡନି ।
ତୋର କୃପା କଟାକ୍ଷ । ବାରେ ନିକ୍ଷେପ କରି ॥୧॥
କା ଖଚ ବାଣୀ । ସତ ତୁ ନ ମଣି ।
ବିବେକି ସୀମନ୍ତିନି । ଶୁଣି ମୋର ଗୁହାରି ॥୨॥
କ୍ଷମା ଆଚରି । ପ୍ରେମାମୃତ ଭରି ।
କଞ୍ଜ ଗଞ୍ଜ ନୟନ । କୋଣେ ଅଳପଠାରି ॥୩॥
ଶ୍ରୀପଦ୍ମନାଭ । ନାରାୟଣ ଦେବ ।
ଭାଷେ ସ୍ନେହେ ଏଣିକି । ଟେକି ମୁଖ ସୁନ୍ଦରି ॥୪॥

### ରାଗ ବିହାଗ । ରପକତାଳ ।

ନିନ୍ଦି ବିଧୂ ରହରେ ସଜକଞ୍ଜବଦନି । ଚଳାପାଙ୍ଗିନି ॥୦॥
ଦ୍ୱନ୍ଦ୍ୱ ଛନ୍ଦ କଥାରେ ପଡ଼ି ମନ୍ଦଗାମିନି
ନଶୁଣି ମୋର ଗୀର ହେଲୁ ଦୁଃଖକୁ କାରଣୀ ॥୧॥
ଦଣ୍ଡକୁ ଦଣ୍ଡ ତାରେ ମଜ୍ଜି ଗଣ୍ଡଶୋଭିନି
ହେଲୁ ମାର କୁସୁମ କାଣ୍ଡ ଦଣ୍ଡ ଭାଗିନି ॥୨॥
ଟେକି ମୁକୁଟ ରଟେ କୁକ୍କୁଟ ସୁହାସିନି
କାହିଁ ଯାଇ ରହିଲେ ସେ ବିଟରାଟଙ୍କ ମଣି ॥୩॥
ପଦ୍ମନାଭ ଦେବ ଧୀରେ ବୋଲେ ହୁଅ ତୁନି
ଲତାନ୍ତରାଳେ ଲୁଚିଛନ୍ତି ମୁରଲିପାଣି ॥୪॥

### ରାଗ ହିନ୍ଦୁସ୍ଥାନି କାଫି । ଆଦିତାଳ ।

କହିବା କଥା କାହିଁ ରହିଲା ନାହିଁ ।
କହନା ଆଉ ମତେ ସମଜାଇ ॥୦॥
ମହତ ଜନ ଗୀର । ପାଷାଣ ପରେ ଗାର
ବୋଲି ଏ ଜଗତେ ଜଣା ଥିଲା ସହି ॥୧॥

ସୈକତେ ନୀର ରେଖା । ପରାଏ ଗଲାଦେଖା
ପ୍ରେମାନୁରାଗ ଯାକ ବୁଝିଛି ମୁହିଁ ।।୨।।
ଅଣ୍ଟିଲାନି ଏଥର । ତା ପ୍ରୀତିକି ଜୁହାର
ରଜନୀ ଦିବା ଅନୁତାପେ ଝୁରଇ ।।୩।।
ଚାଳିତ ଚରଣରୁ । ଭଲେ ଜଣା ଯିବାରୁ
ମନ ଧିଆନ ସବୁ ଦେଲି ଫେରାଇ ।।୪।।
ପ୍ରଦୀପ ରଖି ସାକ୍ଷୀ । ବୋଲି ତୁ ଥିଲୁ ସଖି
ପଦ୍ମନାଭ ଦେବଙ୍କୁ ଛାଡ଼ିବୁ ନାହିଁ ।।୫।।

**ରାଗ ଭୈରବି । ରୂପକତାଳ ।**

ସତେକି ମୋ ପାପ ନେତ୍ରେ ଦେଖିବି । ଗୋ ସଙ୍ଗିନି ।।୦।।
ଯୁଗ୍ମ ଭୃଙ୍ଗାଙ୍ଗ ସଙ୍ଗତ । ନୀରଜ ଶ୍ରୀ ବଦଳିତ
କାଶ ହାସରେ ପୂରିତ । ଲପନ । ।।୧।।
ଉଚ୍ଚ ବିଶାଳ ସୁଗଠିତ । କୁଞ୍ଚିତ ରୋମାଳୀ ଯୁକତ
ପୁଷ୍ପ ଗୁଞ୍ଜ ମାଳେ ଶୋଭିତ । ହୃଦୟ । ।।୨।।
ପ୍ରେମଭରେ ଉତ୍ତୋଳିତ । କରି କର ବିନିନ୍ଦିତ
ଜାନୁ ପର୍ଯ୍ୟନ୍ତ ଲମ୍ବିତ । ବାହୁକୁ । ।।୩।।
ଚାରୁ ସୁରଙ୍ଗେ କଷାଇତ । ହୀରକ ନଖାଳି ରାଜିତ
ମଦନ ଗର୍ବ ଖର୍ବକୃତ । ଚରଣ । ।।୪।।
ଲଳିତାଙ୍କ ଶ୍ରୁତି ପୁରତ । ପଦ୍ମନାଭ ଦେବ ତ୍ୱରିତ
କହେ ଆସୁଛନ୍ତି ଜଗତ । ମୋହନ । ।।୫।।

**ରାଗ ତୋଡ଼ି । ତାଳ ଝୁଲୁଆ ।**

ତାହା କି କରିବା ଭଳି । ଯାହା ମୁ କଲି ।
କରୁ ଅମୃତ ଏଡ଼ି । ବିଷକୁ ତ ଗିଳିଦେଲି ।ପଦ।
ସୁଧାଂଶୁ ଜିତବଦନା । ଖଞ୍ଜରୀଟ ସୁଲୋଚନା ।
ଆସନ୍ତେ ସଙ୍ଗତେ ମନା । କରି ଯା ବିଦେଶ ଗଲି ।।୧।।
କୋମଳାଙ୍ଗୀ ବିଦ୍ୟାଧରୀ । କହିଲେ ହେ ଅନୁସରି
ନ ଶୁଣିଣ ତା ଗୁହାରି । ବଦନକୁ ମୋଡ଼ିଦେଲି ।।୨।।

ଦୁଃଖ ଭରେ ରାମାମଣି । ନୟନୁ ବୁହାଇ ପାଣି
ପାଦେ ପଡ଼ି ରଖ ଆଣି । ବୋଲୁବୋଲୁ ପେଲିଦେଲି ।।୩।।
କ୍ଷିତିପତି ପଦ୍ମନାଭ । ହୋଇଣ କାତର ଭାବ ।
କହନ୍ତେ ବସିଲା ଲୋଭ । ରସରେ ସେ ଗଲା ଭୁଲି ।।୪।।

### ରାଗ ତୋଡ଼ି । ରୂପକ ତାଳ।

ଆଜ ବରଜରାଜତନୁଜ ମୋ ପୁରତରୁ ଯା ରେ ।
ବ୍ୟାଜ କରି ମନୋଜପରି ମୋ ମାନସ ନ ମଜାରେ ।।ପଦ।।
ଲାଜ ନାହିଁ ରାଜସୁତ ପରା ତୋହର ମଜାରେ ।
ରୋଜ ତୋ ବିରାଜିତ ଗୁଣ ବାଜୁଚି ତ ବଜାରେ ।।୧।।
ତେଜରେ ସରୋଜ ମୁଖ ତୁ ଭାଷନା ହଜାରେ
ସେଜ ସାଜି ସେ ଜଗିଥିବ ସେବିବୁ ତୁ ଯାରେ ।।୨।।
ହେବଟି ବିଟରାଟ ମୁ ଯିବି ଆଜ ସୁର ପୂଜାରେ
ଜାଣିଲେ କୁଳଜା ସମାଜ ବୁଡ଼ିବି ସିନା ଲଜାରେ ।।୩।।
ରାଜକୁଳ ବିରାଜ ପଦ୍ମନାଭ ଯୁବରାଜରେ
ଓଜରେ ସମଜାଇ କହିଲେ କୀର୍ତ୍ତିଦାତ୍ମଜାରେ ।।୪।।

### ରାଗ ହିନ୍ଦୁସ୍ତାନୀ ଭୈରବି । ଏକତାଳ।

କାହିଁ ପାଇଁ ଏଡ଼େ ଗୁମାନ ।୦।
କେ ଅବିବେକି । କହିଅଛି କି ?
ଇତରେ ଅଛି ମୋ ଧିଆନ ।।୧।।
ଦୋଷ ଦେଖିନା ? । ଗଜ ଗମନା ।
ମୁଖ ତୁ କରିଛୁ ମଳିନ ।।୨।।
ଦଣ୍ଡ କି ମଣ୍ଡ । ମଦନ କାଣ୍ଡ ।
ମୁଖେ ପକାନା ମତେ ଧନ ।।୩।।
ଯା ଇଛା କର । ଅଟଇ ତୋର
ପଦ୍ମନାଭ ଦେବ ଅଧୀନ ।।୪।।

ରାଗ ଭୈରବି । ଅଟତାଳ ।

ମୋ ମନ୍ଦ କର୍ମରୁ ଏହା ପାଇଲି ମା ।
କହିଲେ କିହେବ ବୁଦ୍ଧି ହୁଡ଼ିଲି ମା ॥୦॥
ତା କୂଟ ବଚନେ । କି ସରଳ ମନେ
ସକଳ ମହତ ତାହାର ଚରଣେ ।
ସମର୍ପି ଦେଲି ମୁ କି ତ୍ୱରେ ।
ଭ୍ରମ ବଶରେ ସେ ହେତୁ ରଜନୀ ବାସରେ
ନେତ୍ରୁ ନୀର ବୁହାଇଲି ମା ॥୧॥
ତେଜି ବେଶ ଭୂଷା । ଶେଯ୍ୟା କରି ରସା ।
ବିରସେ ଶୋଇଛି ଲଭି ମୁ ଦୁର୍ଦ୍ଦଶା ।
ବିରହିଣୀ ଯମ ମଦନ । ଦିଏ କଦନ ।
ଏଣୁ ଫୁଲ ଅତର ପାନ ।
ଭୋଗ ଯେତେକ ଛାଡ଼ିଲି ମା ॥୨॥
ଜାଣିଥିଲେ ମୁହିଁ । ଏତେ ସରି ହୋଇ ।
ନଥାନ୍ତି କେବେ ମୁ ସତେ ପ୍ରାଣ ସହି ।
ଶତ୍ରୁ ଛଳ ହାସ୍ୟ ବଚନ । ଘେନେ ପରାଣ ।
ସର୍ବ ଆନନ୍ଦ ଅଭିମାନ ।
ସଖି ! ମୁହିଁ ହରାଇଲି ମା ॥୩॥
ଏବେ ମୁ ବୁଝୁଛି । ସାର ନାହିଁ କିଛି ।
ସ୍ନେହ କଲେ ହେଲେ କେତେ ବାଛି ବାଛି ।
ପଦ୍ମନାଭ ଦେବ ପୀରତି । କରିଣ ଗତି ।
ମୋର ସମଗ୍ର ସମ୍ପତ୍ତି । ହୁଡ଼ ପଣେ ହଜାଇଲି ମା ॥୪॥

ରାଗ ଭୈରବି । ଅଟତାଳ ।

ନୀରଜଲୋଚନା । ବରଜି ମାନ ।
ଖେଳ ମୋ ସଙ୍ଗରେ । କରିଣ କରୁଣା । ପଦ॥
କାର ଖଚ ଗୀର । ଶୁଣି ନାରୀବର ।
ବହିଲୁ ଏ ରୋଷ । ନ ବୁଝି ମୋ ଦୋଷ ।

କଲି କି ମୁଁ ଅପରାଧରେ । କିଂପାଁ କ୍ରୋଧରେ ।
କହ ସୁନ୍ଦରୀ ସୁଧୀରରେ । ବ୍ୟର୍ଥେ ନ ନାଶ ମୁ ଦାସରେ ।।୧।।
ସାରସ ଲପନା । ହୀରକ ଦଶନା ।
ହେଲି ମୁ ଅନାଥ । ସତେ ମୋ ଶପଥ
ତୋ ବିନା ମୋ ଗତି ନାହିଁରେ ।
କର ତ୍ରାହିରେ ଭାସିଲି ଦୁଃଖ ସରିତରେ ।
ନ କର ତୁ ଅବହେଳାରେ ।।୨।।
କଲେ ଅନାଦର । ହେଲି ନାରଖାର ।
ମାର ବିନ୍ଧି ବାଣ । ନେଲେ ପଞ୍ଚ ପ୍ରାଣ ।
ଲଭିବୁ ତୁହି କି ଯଶରେ ।
ଏହି ସଂସାରେ ରସବତୀ ଭାବି ସୁସାରେ ।
କହ ରସ ମିଶା ଭାଷାରେ ।।୩।।
ପଦ୍ମନାଭ ଦେବ । ଅନୁନୟ ଭାବ ।
ବିନା କତୁରୀରେ । ମାନ ଗଣ୍ଠି ଧୀରେ ।
କାଟି ନେଲା କି ଉପାୟରେ । ଅତି ସତ୍ୱରେ ।
ବସାଇ ରାମା ଅଙ୍କ ପରେ । ରସାଇଲା ରସ ସାଗରେ ।।୪।।

### ରାଗ ଶଙ୍କରାଭରଣ । ଆଦିତାଳ ।

ସ୍ନେହ ଗଲା କେଣିକି । ମୋ ଜୀବ ସମ୍ପତ୍ତି ।।ପଦ।।
ଲବେ ହେଲେ ଅନ୍ତର । ମଣି ଯୁଗ ପ୍ରକାର
ଡାକି ଦାସୀ ସତ୍ୱର । ପେଶୁ ଧରି ପାଣିକି ।।୧।।
ଦେଖି ମୋ ଆଗମନ । ପାଛୋଟି ଆସୁ ଧନ
ଚାହୁଁ କଲେ ଜଣାଣ । ବସି ତୁ ଧରଣୀକି ।।୨।।
ତୋର ବଚନାମୃତ । କେତେ ଶୁଣେ ସତତ
ରଙ୍କ ହୋଇଲିନିତ । ଏବେ ପଦେ ବାଣୀକି ।।୩।।
ନ ଜାଣି କଲେ ଥରେ । ଅଳପ ଦୋଷ ଠାରେ
ଗୁରୁତର ଭାବରେ । କେବେ ତାହା ଗଣିକି ।।୪।।

ଶ୍ରୀପଦ୍ମନାଭ ଦେବ । କହେ ଅପଯଶ ହେବ
ଦେଉ, ଘେନି କି ଭାବ । ଏବେ ମାର ଫଣୀକି ॥୫॥

ରାଗ ଝଞ୍ଜୋଟି । ଏକତାଳ ।

ମାଗି ଘେନୁଛି ସରି ଏତିକି ।
ତାର ବିନୟ ବଚନ । କହନା ସଖି ମୋ ଆନ ।
ଥରେ ଶୁଣି ପାଇଛି ଏ ଗତିକି ॥ପଦ॥
ନୟନୁ ନୀର ଗଡ଼ାଇ । ମିଛେ ଦେହକୁ ସଡ଼ାଇ
ପୁଆଇ ନ ପାରେ ନିତି ରାତିକି ॥୧॥
ସତତ ମାର ପାମର । ମାରଇ ସୁମନ ଶର
ହଜାଇ ଦିଅଇ ମତି ଧୃତକି ॥୨॥
କାହାର ଆଶା ଭରସା । ବଳିବ ଲଭି ଏ ଦଶା
ଶତ ବାର ଜୁହାର ତା ପ୍ରୀତକି ॥୩॥
ଜୀବ ଥିବା ଯାଏ ମୋର । ନ ଯିବି କେତେ ମାତର
କେଭେ ପଦ୍ମନାଭ ଦେବ କତିକି ॥୪॥

ରାଗ ଭୈରବି । ଏକତାଳ ।

ସହିବ କି ତୋତେ ଧରମ । ପଦ।
ହେଲାନି ହେଉ ଯା ଯା । ଶଠ ଲମ୍ପଟ ରଜା
ନାହିଁ ପରା କିଛି ଲାଜ ସରମ ॥୧॥
ବାସ ଅଳିନ୍ଦ ତେଜିଁ । ନଥିଲା ପ୍ରାଣ ସହି
ଆଣି କଲୁ ସତେ କେଡ଼େ କରମ ॥୨॥
ଦେଖାଇ ସ୍ନେହ ଆଶା । କରି ଭଗାରି ହସା
ବୁଡ଼ାଇ ଦେଲୁତାର ଛାତି ଯା ମ ॥୩॥
ଭାଷେ ଶ୍ରୀ ପଦ୍ମନାଭ । ଦେବ ଧରଣୀ ଧବ
ରହିଲୁ ଲଗାଇ ଦେଇ ଭରମ ॥୪॥

ରାଗ ଆରଭୀ । ତାଳ ଝୁଲୁଆ ।

ପରତେ ମୁ ନ ଯିବି ସଖି କହିଲେ ପକାଇ ଆନ ।
ମିଛେ ମତେ କହୁ ତୁହି ମୋ ବିନୁ ନାହିଁ ତା ଆନ ॥ପଦ॥

କଞ୍ଜ ହୃଦୟ ସଙ୍ଖାଳି । ପ୍ରେମର ଲୋଲୁପ ଅଳି
ଉଡ଼ି ନ ଯାଏ କି ଦେଖି କୁଟଜ୍ଞ ହୀନ ସୁମନ ॥୧॥
ସାଧ୍ୱୀ ରୋହିଣୀ ଅବଳା । କରିଛି ଯାହାକୁ ଭେଳା ।
ସେହି ଦୋଷାକର ଦେଖ କୁମୁଦେ ବଳାଏ ମନ ॥୨॥
ଅଛି ଯେବେ ଅନୁରାଗ । କହୁ ସେ ଭଲା ମୋ ଆଗ
ନ ଯିବ କି କେବେ ଆଉ ଇତର ନାରୀ ଭୁବନ ॥୩॥
ପଦ୍ମନାଭ ଦେବ ଭାଷେ । ଲଳିତାଙ୍କ ଶ୍ରୁତି ପାଶେ
ନିଭେ ସେ କ୍ଷଣାନ୍ତୁ ଏବେ ଆସିଲେ ହେଟି ମୋହନ ॥୪॥

**ରାଗ ଭୈରବି । ଆଦିତାଳ ।**

ମତେ କହରେ ସଙ୍ଗିନି ।
ସେ ନବ ନାଗର ବର ଶଠ ମୂରତି କି ? ॥୦॥
ଯାର ତୁଲେ ପୀରତି । କରି କେଉଁ ଯୁବତୀ
କେବେ କି ନ ଲଭନ୍ତି ଦୁର୍ଗତିକି ? ॥୧॥
କାର୍ଯ୍ୟ ଲଭିବା ଯାଏ । ତାର ସ୍ନେହ କି ରହେ ?
ଜନ ମନକୁ ମୋହେ ତା ନୀତିକି ? ॥୨॥
ଯଦି କୁଳ ତେଜିବି । ତା ରସରେ ମଜ୍ଜିବି
ସତେ କି ନ ପାଇବି ଅକୀର୍ତ୍ତିକି ? ॥୩॥
ପଦ୍ମନାଭ ଦେବର । ସଙ୍ଗ କଲେ ଆଦର
ନିଶ୍ଚେ ହେବ କି ତୋର ସମ୍ମତିକି ? ॥୪॥

**ରାଗ ନାଦନାମକ୍ରିୟା । ଆଦିତାଳ ।**

ସଜ କଞ୍ଜମୁଖି କାହିଁରେ । ତୋ ଗତ ସ୍ନେହ ॥
ଶୁଣି କା ଖଚ ବାଣି । ମଣି ସତ ରମଣି,
ଏଣୀଦୃଶା ମୋ ଆଣି । ନାଶୁ କି ପାଇଁରେ ॥୦॥
ସମ୍ଭାଳି ରଖିବା ଦାସରେ । ରେ ବିମ୍ବାଧରି ।
ସମ୍ଭାବନା କି ମାନସରେ । ଲବେ ଦେଖି ଅନ୍ତର ।
ତେବେ ହେଉ କାତର । ଏବେ ହେଲେ ହାଜର
ରହୁ ତୁ ନ ଚାହିଁରେ ॥୧॥

ପ୍ରସଙ୍ଗେ ପଡ଼ିଲେ ମୋ କଥା । ରେ ଶମ୍ପା ଗୋରି ।
ହାସ ପ୍ରକାଶୁ ଟେକି ମଥା । ଢଣାଇଲେ ମୁହିଁ ।
ଶୁଣାଇ ନୋହୁ ସହି । ବିନା କାରଣେ ଏହି ।
ଭାବ ଶୁଣା ନାହିଁରେ ॥୨॥
ପୀରତି ଲତିକା ଲଗାଇ । ବରବରନି ।
ବିରସେ ଦେଉ ଉପଡାଇ । ଭାବ ଥରେ ଚିତ୍ତରେ ।
ହେବ ନିନ୍ଦାଲୋକରେ । ଠାବ ମୋର ସଂସାରେ ।
ରହିବ ନାହିଁରେ ॥୩॥
ପଦ୍ମନାଭ ଦେବ ଭାଷଇ । ପଦ୍ମଲୋଚନି ।
ଛଦ୍ମ ସ୍ନେହ ମୁ ନ କରଇ । ନ ବୁଝି ମିଛ ସତ ।
କୁବୁଦ୍ଧିରେ ତୁ ରତ । ହେବୁ ଯଦି ସତତ ।
ମୋ ଗତି କେହିରେ ॥୪॥

**ରାଗ ପରଜ । ଏକତାଳ ।**

ନାହିଁ ତୋର କରୁଣା । ଏଣୀନୟନାରେ ॥୦॥
ହରଷ ବଚନ । ଭାଷୁ ଅନୁଦିନ ।
ଆଜି ନ ଗଲା ତା ଶୁଣାରେ ॥୧॥
ଦେଖି ମୋ ଅୟନ । ପୋଡିଛୁ ଲପନ
ହେଲା ମୋ କପାଳ ଉଣାରେ ॥୨॥
ଭରସି ନବିନା । କହୁ ନାହୁଁ ସିନା
ଆଚରଣୁ ଗଲା ଢଣାରେ ॥୩॥
ପଦ୍ମନାଭ ଦେବ । କହିଲେ କି ହେବ
ଏପରି ଅବୁଝାବଣାରେ ॥୪॥

**ରାଗ ଝଙ୍ଖୋଟି । ଅଟତାଳ ।**

ପାସୋରି ଦେଲାକି । ସେ ମତେ ॥୦॥
ଯେ ଯିବା ଆସିବା । ପଥେ ନିଶି ଦିବା
ଜଗେ ମୁ ନିରତେ ॥୧॥
କହି ଥିଲି ଯେତେ । ସଦା ଥିବି ଚିତ୍ତେ ।
ବୋଲି ଯା ପୁରତେ ॥୨॥

ଯାହା ବିନୁ ଆନ । ନାହିଁ ମୋ ଧିଆନ ।
ନିଖିଳ ଜଗତେ ।।୩।।
କହେ ପଦ୍ମନାଭ । ନାରାୟଣ ଦେବ ।
କି ବିଚାରି ସତେ ।।୪।।

**ରାଗ ବିହାଗ । ଏକତାଳ ।**

ସଖି ! କହନା ତାର ପ୍ରସଙ୍ଗରେ ।।୦।।
ବାଧା ପାଇ ନିତି । ମନ୍ଦାଚରଣରେ ମାତି ।
ଶତ୍ରୁ ହାସ୍ୟଗୀରେ । ସଢ଼ାଇବ କେ ଅଙ୍ଗରେ ।।୧।।
ଯାହା ସେ କରିଛି । ତାହା ମୋର ମନେ ଅଛି ।
ଶୁଣିବ କି ଆଉ । କହିଲେ ହେ ବିରଙ୍ଗରେ ।।୨।।
ଦିନେ ଭିନେ ରୀତି । ଭୃଙ୍ଗପରି ତାର ମତି ।
ହୃଦୟ ପୀଡ଼ାଇ । ନ ପାରେ ମୁ ଅନଙ୍ଗରେ ।।୩।।
ତର୍ଜନୀ ବଢ଼ାଇ ।ପଦ୍ମନାଭ ଦେବ କହି
ଦେଖ ହେଚି ଏଣେ । ଆସୁଛନ୍ତି ତ୍ରିଭଙ୍ଗରେ ।।୪।।

**ରାଗ ଭୈରବି । ଆଦିତାଳ ।**

କି ଅପରାଧିନୀ । ସଜନି ସତେ ।
ବୁଦ୍ଧିତ ବୁଡ଼ିଛି ସବୁ ଜାଣି ଜାଣି ।।୦।।
କାହାକୁ ନିନ୍ଦିବି କାହାକୁ ବନ୍ଦିବି ।
ଆପଣାର ଦୋଷ କି ବୋଲି କହିବି ।
ବହିଲି ମୁହିଁ କି ରୋଷରେ ।
ଲବ ଦୋଷରେ । ଲଭିଣ ଚିତ୍ତେ ପରାସରେ ।
ଗଲେ ସେ କେଡ଼େ ନିରାଶରେ ।।୧।।
କ୍ଷମା କର ବୋଲି । ବସନ ପ୍ରସାରି
ବିନୟେ କହିଲେ ଯେତେ ମନ ଧରି ।
ବସିଲି ମୁ କି ଗୁମାନରେ । ଅଭିମାନରେ ।
ଶୁଣିଲି ନାହିଁ ଯାହା ଥରେ ।
ସଜନି ମୋ ଶ୍ରୁତି ପଥରେ ।।୨।।

କହ କି ଉପାୟ । ଏବେ ଗଜପତି ।
ଶ୍ରୀ ପ୍ରତାପରୁଦ୍ର ବିନା କେ ମୋ ଗତି ।
ଆଉ କି ଦେଖିବି କାନ୍ତରେ । ମୁଁ ଏକାନ୍ତରେ ।
ଭିଡ଼ି ମତେ ଭୁଜ ପାଶରେ ।
ବସିବେ ଆସି କି ପାସରେ ॥୩॥

**ରାଗ ଆଶାବରୀ । ଆଦିତାଳ ।**

ଏହିପରି ସ୍ନେହ କରି ଥିଲେ ତ ସରି ॥୦॥
ଅଳପ ଦୋଷକୁ ଘେନି । ହୋଇ ଗୁରୁ ଅଭିମାନୀ
ହସାଉଥିବ ବଇରି ॥୧॥
କରୁଣା ଲବେ ନୋହିବ । ତନୁ ସଢ଼ି ଯାଉଥିବ
ଅବିରତେ ଅନୁସରି ॥୨॥
ପଥ ଜଗି ବସିଥିବ ।
ଦେଖି ଆଡ଼ ହୋଇଯିବ ଶ୍ରୀମୁଖ ମଳିନ କରି ॥୩॥
ଭାଷେ ଗଜପତି ଦେବ । କ୍ଷମା ଥରେତ ନୋହିବ
କାଳ ଯାକ ଶିଶୁସରି ॥୪॥

**ରାଗ ଖରହରପ୍ରିୟା । ଆଦିତାଳ ।**

ଆଉ କହନା ଲମ୍ପଟ ରାଜା ।
ଜାଣିଲି ତୋ ଅନୁରାଗକୁ ଯା ଯା ॥ପଦ॥
.......................ରଙ୍ଗରେ
...................................ଯା ॥୧॥
...........................ଚନ । ରଞ୍ଜନାଞ୍ଜନ
..........................ରେ ବେଗେ ଧୋ ଯା ॥୨॥
.....................ନାହିଁ ଏ । ପୁରୁଷ ଜାତିକି
.....................................ବାଛେ ବାଜା ॥୩॥
.......................। ଡାଳି ନିକର
.......................ଭଳି ନ କର ଯା ॥୪॥
.......................ପରି ମୁହିଁ । ତାପକୁ ସହି
.....................ବି କି ହରିକୃଷ୍ଣ ଯୁବରାଜା ॥୫॥

ରାଗ ଆନନ୍ଦଭୈରବ । ରୂପକତାଳ ।

ମଙ୍ଗଳ କର ବନ୍ଦନ ଘେନି ପରମ ଈଶ୍ୱର
ମାତୃଭୂମି ମାତୃଭାଷା ଭ୍ରାତୃ ବୃନ୍ଦର ।।୦।।
ଉତ୍କଳଜନ ପ୍ରବେଶିଣ ନିଜ କାର୍ଯ୍ୟ କ୍ଷେତ୍ରର
ଜାତୀୟ ଉନ୍ନତି ସାଧନେ ହେବେ ତତ୍ପର ।।୧।।
ନିବେଶି ମନ, ପାଦେ ବନ୍ଦନ କରି ଧନଦର
ପାଇବି ଭବ ଲଭିବେ ଶୁଭ ହେ ପରାତ୍ପର ।।୨।।
ଭାରତୀ ପଦେ ଆରତି କରି ଜାତି ସାହିତ୍ୟର
ସେବାରେ ମତି ବଳିବ ରଜନୀ ବାସର ।।୩।।
ନିଦ୍ରା ଆଳସ୍ୟ କଳହ ଦ୍ୱେଷ ଅସତ୍ୟ ଆବର ।
ଛାଡ଼ି, ମିଳିତ ଶକ୍ତି ଗୁଣ ଜାଣନ୍ତୁ ସତ୍ୱର ।।୪।।
ଶ୍ରୀ ପଦ୍ମନାଭ ଦେବ ଜଣାଏ ଯୋଡ଼ି ବେନି କର,
ଅଚିରେ ଏହି ମନୋବାଞ୍ଛା ଫଳୁ ମୋହର ।।୫।।

●

# ପ୍ରାକ୍‌ସୂଚନା

**ଶ୍ରୀରାଧା ଗୋବିନ୍ଦ ଜଣାଣ** ଚଉତିଶାର ଆଙ୍ଗିକରେ ଏକ ଭକ୍ତି ଗୀତିକା । ଓଡ଼ିଆ ସାହିତ୍ୟରେ ଜଣାଣ ଏବଂ ଚଉତିଶାର ଅଭାବ ନାହିଁ । ଜଣାଣ ସାଧାରଣତଃ ଜଣେ ଭକ୍ତର ଐକାନ୍ତିକ ଭକ୍ତି ଚେତନାର ଆବେଗିକ ଉଚ୍ଚାରଣ । ଭକ୍ତି ଯେଉଁଠି ଯେତେ ନିବିଡ଼ ଜଣାଣ ସେଇଠି ସେତିକି ରସାପ୍ଳୁତ । ଭକ୍ତ ଏଠାରେ ଭିକ୍ଷା ପ୍ରାର୍ଥୀ ଏବଂ ଭଗବାନ୍ ଦାତା । ଭିକ୍ଷା ଯାଚନା କରିବାର ପ୍ରଣାଳୀ ମଧ୍ୟ ପ୍ରାର୍ଥୀ ଭେଦରେ ଭିନ୍ନଭିନ୍ନ । କିଏ ଅଳି କରେ ତ, କିଏ ଦାନ୍ତ ନିକୁଟେ, କିଏ ଊର୍ଦ୍ଧ୍ୱବାହୁ ହୁଏତ, କିଏ ଭୂମିରେ ଗଡ଼େ, କିଏ ହାତ ପସାରେ ତ ଆଉ କିଏ ପଣତ ପସାରେ, କିଏ ଦାତାକୁ ବାଧ୍ୟକରେ ତ ଆଉ କିଏ ଗାଳି ବି ଦିଏ । ଭଗବାନଙ୍କ ଠାରୁ କିଛି ପାଇବା ହିଁ ଭକ୍ତର ଆକାଂକ୍ଷା । ପାର୍ଥିବ ସୁଖ, ଧନ ସମ୍ପତ୍ତି, ସନ୍ତାନସନ୍ତତିର ଅଭାବ ଦୂରୀକରଣ କିମ୍ବା ସଂସାର ଜଞ୍ଜାଳରୁ ମୁକ୍ତି, ଦାସ ବା ସଖା ଭାବରେ ସର୍ବଦା ସାନ୍ନିଧ୍ୟ ଲାଭର ସୁଯୋଗ, ପୁର୍ନଜନ୍ମରୁ ମୁକ୍ତି କିମ୍ବା ବାରମ୍ବାର ଜନ୍ମ ଗ୍ରହଣ କରି ଭକ୍ତି ନିବେଦନ କରିବାପାଇଁ ଭକ୍ତର ଯେଉଁ ଆତ୍ମନିବେଦନ, ତାହାହିଁ ଜଣାଣର ଉପଜୀବ୍ୟ । ମନୁଷ୍ୟର ବିଶ୍ୱାସ ଭଗବାନ କୃପାସମୁଦ୍ର, କରୁଣାବାରିଧି, ଦୟାସାଗର, ଅଯାଚିତ ଦାତା, ଅକ୍ଷୟ ଭଣ୍ଡାରର ଅଧିକାରୀ ଇତ୍ୟାଦି ଇତ୍ୟାଦି; ତାଙ୍କୁ ସନ୍ତୁଷ୍ଟ କରିପାରିଲେ ଏଥିରୁ କଣିକାଟିଏ ସେ ପ୍ରାପ୍ତ ହୋଇପାରିବ । ସେଥିପାଇଁ ସେ ତାଙ୍କ ରୂପ, ଗୁଣ, ଯଶ କୀର୍ତ୍ତନ କରେ; ତାଙ୍କ ଅନନ୍ତ ମହିମାର ସ୍ତୁତିଗାନ କରେ ଏବଂ ତାଙ୍କ ନିକଟରେ ଆତ୍ମସମର୍ପଣ କରେ । ଏହି ଆତ୍ମ ସମର୍ପଣ ଭାବନାହିଁ ଜଣାଣ ଗୀତିର ପ୍ରାଣବିନ୍ଦୁ । ''ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ, ଅହଂ ତ୍ୱାଂ ସର୍ବ ପାପେଭ୍ୟଃ ମୋକ୍ଷୟିଷ୍ୟାମି ମା ଶୁଚ ।''

ସମ୍ପତ୍ତି, ପଦପଦବୀ, ବୈଷୟିକ ଉନ୍ନତିପାଇଁ ଜଣାଉଥିବା ବ୍ୟକ୍ତିଟି ଯଥାର୍ଥଭିକ୍ଷୁକ । କିନ୍ତୁ ଜନ୍ମଜନ୍ମାନ୍ତରର ପାପ କ୍ଷାଳନ କରି ଚରଣାରବିନ୍ଦରେ ସ୍ଥାନ ଦେବାପାଇଁ ଜଣାଉଥିବା ବ୍ୟକ୍ତିଟି ପ୍ରକୃତ ଭକ୍ତ । ଉଭୟଙ୍କ ଜଣାଣରେ ଅଛି ବ୍ୟାକୁଳତା । ପ୍ରଥମର ସମ୍ମୁଖରେ

ସୁଖର ସ୍ୱପ୍ନ ଏବଂ ଦ୍ୱିତୀୟର ସମ୍ମୁଖରେ ଭଗବାନଙ୍କ ମୁଗ୍ଧ ମଧୁର ରୂପ, ଅଭୟ ବରଦ ମୁଦ୍ରା । ଭକ୍ତର ବ୍ୟାକୁଳତା ଯେଉଁଠି ଯେତେ ତୀବ୍ର ଓ ପାରଲୌକିକ, ଜଣାଣ ସେଠାରେ ସେତେ ହୃଦୟସ୍ପର୍ଶୀ ।

ଓଡ଼ିଆ ସାହିତ୍ୟରେ ଭକ୍ତକବିମାନେ ଚଉପଦୀ ମାଧ୍ୟମରେ ନିଜର ଦୁଃଖ ଜ୍ଞାପନ କରିବା ବିଶେଷ ଭାବେ ପରିଲକ୍ଷିତ । ଏଥିପାଇଁ ଚଉତିଶା ମଧ୍ୟ ଏକ ବିଶିଷ୍ଟ ମାଧ୍ୟମ । ଚଉତିଶାର ବିଶେଷତ୍ୱ ଅକ୍ଷର ନିୟମାତ୍ମକ ଚଉତିରିଶିଟି ଶବ୍ଦ, ପାଦ ବା ପଦ ମଧ୍ୟରେ ବକ୍ତବ୍ୟକୁ ପ୍ରକାଶ କରିବା । ରଚୟିତା ବିଷୟାନୁରୂପ ବିଭିନ୍ନ ଛନ୍ଦରେ ଏହାକୁ ରୂପାୟନ କରିପାରେ । ବିଷୟବସ୍ତୁ ପାଇଁ ଛନ୍ଦ ନିର୍ବାଚନ ଅନୁକୂଳ ନ ହେଲେ ଚଉତିଶା ତାର ସମସ୍ତ ସୌନ୍ଦର୍ଯ୍ୟ ହରାଇ ବସିଥାଏ । ଏ ଦୃଷ୍ଟିରୁ ଜଣାଣମୂଳକ ଚଉତିଶାଗୁଡ଼ିକ ଅଧିକ ସାର୍ଥକ, କାରଣ ଭଗବାନଙ୍କ ନିକଟରେ ଭକ୍ତର ବକ୍ତବ୍ୟର ଅନ୍ତ ନାହିଁ । ତେଣୁ ବର୍ଣ୍ଣନିୟମକ୍ରମ କିମ୍ବା ଛନ୍ଦ ନିର୍ବାଚନରେ ଲେଖକର ସ୍ୱାଧୀନତା ସୀମିତ ନୁହେଁ । ପଦ୍ମନାଭ ନାରାୟଣ ଦେବ ଅତୀତର କୃପାସିନ୍ଧୁ ଜଣାଣ, ମନୋବୋଧ ଚଉତିଶା ଇତ୍ୟାଦିକୁ ଅନୁସରଣ କରି ପ୍ରସ୍ତୁତ ଚଉତିଶାଟି ମଧ୍ୟରେ ନିଜର ମନୋବେଦନା ଉପାସ୍ୟ ଦେବତା ଶ୍ରୀରାଧାଗୋବିନ୍ଦଙ୍କ ନିକଟରେ ଜଣାଇଛନ୍ତି ।

କେଉଁ ମାନସିକ ସ୍ଥିତିରେ ପଦ୍ମନାଭ ଏହି ଚଉତିଶାଟି ରଚନା କରିଥିଲେ, ସେ ସମ୍ପର୍କରେ ତାଙ୍କ ବନ୍ଧୁ ଓ ଜୀବନୀକାର ଅପର୍ଣ୍ଣା ପଣ୍ଡା କିଛି ପଦ ଓ ପଦାଂଶ ଉଦ୍ଧାର କରିବା ସହିତ ଜଣାଇଛନ୍ତି-

> *ସେ ମିତ୍ରମାନଙ୍କ ସହିତ କ୍ରୀଡ଼ା କୌତୁକରେ କାଳ ହରଣ କରୁଥିଲେ ଏବଂ ପ୍ରତିଦିନ ସାୟଂକାଳରେ ଶିକ୍ଷିତ ବ୍ୟକ୍ତିମାନଙ୍କ ସହିତ ସାହିତ୍ୟଚର୍ଚ୍ଚା କରିବାର ତାହାଙ୍କର ପ୍ରଧାନ ବ୍ରତ ଥିଲା । ଏହିପରି ସମୟରେ ତାଙ୍କୁ ରକ୍ତପୀତ ରୋଗ ଆକ୍ରମଣ କଲା । ମାତ୍ର ରୋଗର ବଳ ପ୍ରବଳ ନଥିଲା, ସେ ଏହିପରି ଥିବା ସମୟରେ ତାହାଙ୍କ ସହଧର୍ମିଣୀ ଅନ୍ତଃସତ୍ତ୍ୱା ହେଲେ । ଅନ୍ତଃସତ୍ତ୍ୱା ସଂଗେ ସଂଗେ ତାହାଙ୍କ ଶରୀର ଶୀର୍ଣ୍ଣ ଓ ଦୁର୍ବଳ ହୋଇପଡ଼ିଲା ଏବଂ କର ଚରଣ ଅଳ୍ପ ସ୍ଫୀତ ହେଲା । ସେ ଆପଣା ସ୍ତ୍ରୀର ଏହି ଦୁରବସ୍ଥା ଅବଲୋକନରେ ଅତ୍ୟନ୍ତ ଦୁଃଖିତ ଥିଲେ ଏବଂ ତାହାଙ୍କ ଆଶ୍ରିତ ଶିକ୍ଷିତ ବ୍ୟକ୍ତିମାନଙ୍କୁ ଅଶିକ୍ଷିତ ଲୋକେ ତାହାଙ୍କ ସମ୍ମୁଖରେ ନିନ୍ଦା କରୁଥିବାର ଶୁଣି ପୂର୍ବାପେକ୍ଷା ଗୁରୁତର ଦୁଃଖ ଭୋଗ କଲେ । ଏହି ବିବିଧ ପ୍ରକାର (ଦୁଃଖ) ପରିହାର ନିମନ୍ତେ ସେ ନିଜେ ପରମ କାରୁଣିକ*

*ପରମେଶ୍ୱର ରାଧାଗୋବିନ୍ଦଙ୍କ ଶ୍ରୀଛାମୁରେ ଅତି ଦୈନ୍ୟରେ କରଯୋଡ଼ି ଦୁଃଖମାନ ଜଣାଇବାରେ ସେ ସବୁ ଗୋଟିଏ ପୁସ୍ତିକା ହେଲା ତାହାର ନାମ ''ରାଧାଗୋବିନ୍ଦ ଜଣାଣ ।*

ଏହି ପୁସ୍ତିକା ୧୯୦୦ ସାଲରେ ମୁଦ୍ରାଙ୍କିତ ହେଲା । ସେ ନାନା ପ୍ରକାର ଦୁଃଖରେ ପୀଡ଼ିତ ଥିବାରୁ ଯେତେବେଳେ ଯାହା ମନେପଡ଼େ ତାହାହିଁ ଈଶ୍ୱରଙ୍କଠାରେ ଜଣାଉଥିଲେ । ଅତଏବ ଦୁଃଖମାନଙ୍କ ଉପଲକ୍ଷେ ଯେଉଁ ଯେଉଁ ପଦ୍ୟମାନ ରଚିତ ହୋଇଅଛି, ତାହାହିଁ **ରାଧାଗୋବିନ୍ଦ ଜଣାଣ** ।

ମନେହୁଏ ଅତୀତରେ ରାଜପରିକରମାନଙ୍କ ସଙ୍ଗଦୋଷରୁ ସେ କିଛି ସମୟ ପାଇଁ ବିପଥଗାମୀ ହୋଇପଡ଼ିଥିଲେ । ଅବଶ୍ୟ ଶ୍ୟାମସୁନ୍ଦର ରାଜଗୁରୁଙ୍କ ସଦୁପଦେଶ ଏବଂ ପଦକ୍ଷେପ ତାଙ୍କୁ ପୁଣି ସତ୍‌ମାର୍ଗରେ ପରିଚାଳନ କରିଥିଲା । ଏଥିପାଇଁ ଶୈଶବରୁ ଈଶ୍ୱରବିଶ୍ୱାସୀ, ନିରାମିଷାଶୀ ଏବଂ ଆଧ୍ୟାତ୍ମବାଦୀ ପଦ୍ମନାଭ ଅନୁତାପାନଳରେ ଦଗ୍ଧୀଭୂତ ହେଉଥିଲେ । ରକ୍ତପୀତରୋଗ ତାଙ୍କୁ ଅଶେଷ ଯନ୍ତ୍ରଣା ଓ ମାନସିକ ବେଦନା ମଧ୍ୟ ଦେଉଥିଲା । ଜଣେ ସୁଶୀଳାପତ୍ନୀ ଏବଂ ବାରମ୍ବାର ଗର୍ଭନଷ୍ଟ ପରେ ନବଜାତ ପଞ୍ଚମ ସନ୍ତାନର ମୃତ୍ୟୁଜନିତ ଯନ୍ତ୍ରଣା ଥିଲା ଅସହ୍ୟ । ଏତେବେଳେ ପୁଣି ରାଜକୃପା ବଞ୍ଚିତ କିଛି ଈର୍ଷାଳୁ ବ୍ୟକ୍ତି ତାଙ୍କୁ ଏବଂ ତାଙ୍କ ବନ୍ଧୁମାନଙ୍କ କୁତ୍ସାରଟନା କରିବା ଆରମ୍ଭ କରିଦେଇଥିଲେ । ତେଣୁ ସଂସାର ପ୍ରତି ତାଙ୍କର ବୈରାଗ୍ୟ ଜାତ ହେବା ସ୍ୱାଭାବିକ । ତାଙ୍କ ମନୋବେଦନାର କାରଣ ଓ ସ୍ୱରୂପ ଚଉତିଶାଟିର ତୃତୀୟ, ଚତୁର୍ଥ, ପଞ୍ଚମ, ଏକାଦଶ, ଅଷ୍ଟାଦଶ, ବିଂଶ ଇତ୍ୟାଦି ପଦରୁ କଳନା କରାଯାଇପାରେ । ରାଜକୁମାରଙ୍କ ଏହି ପୁଞ୍ଜୀଭୂତ ବେଦନା ହିଁ ଜଣାଣ ଚଉତିଶାଟିକୁ କରିଛି କରୁଣ ରସାପ୍ଲୁତ ଓ ହୃଦୟଗ୍ରାହୀ ।

●

ତାରବ । ରାଧାଗୋବିନ୍ଦ । କଳ୍ପତରୁ ତତ୍ତ୍ୱ ସ୍ୱରୂପ ବିଦ । ଲବେ କୃପାକଲେ ଦୁଃଖ ଯିବ ତ ଚାଲି ସଦା ତୁମ୍ଭ ନାମ ସୁରବ ॥ ୨୮ ॥ ବଞ୍ଚିବା କି ଭଲ ହୋଇ କଲବଳ ବିଷୟ ବିଷର ଜଗତେ । ବିକ୍ଷେପରେ ତହିଁ ପରେ ଅନୁଭେଦି ଦୁଃଖ ମୃଷ୍ଟି-ରେ ଅଛ ଯେତେ । ରାଧାଗୋବିନ୍ଦ । ମୁରଲୀ ଧର ତଦାନନ୍ଦ । ବେଗେ କର ଦୟା ନାରନ୍ତୁ ମୋ କାୟ ସଂସାରେ କ୍ଷଣିକ ଜମନ୍ତେ ॥ ୨୯ ॥ ଶ୍ରୀପଦେ ମୋ ମତି ରଖ ବିଶ୍ୱପତି ବିନାଶି ମୋହ ଅନ୍ଧକାର । ଶିବଦାୟକ ଚରଣୋଦକ ଦେଇ ହର ମୋ ଦୁର୍ଦ୍ଦଶା ବିକାର । ରାଧାଗୋବିନ୍ଦ । ଶ୍ରୀବତ୍ସ ଲାଞ୍ଛିତ ସୁହୃଦ । ଶାନ୍ତ ହେଉ ମନ କଟ ତୁମ୍ଭ ଧ୍ୟାନ ଛାଡୁ ସକଳ ଅହଂକାର ॥ ୩୦ ॥ ଷଡ଼ରିପୁ ଅଶ୍ୱେ ଧରନ୍ତନ୍ତି ମତେ ମାୟା ଜାଲ କର ବିସ୍ତାର । ଷୋଳପଣ ଆଶା କରନ୍ତି ପେଞ୍ଚିବ ତାରେ ବୋଲି ବଂଶୀଅଧର । ରାଧାଗୋବିନ୍ଦ । ଭକ୍ତ ମନ କଞ୍ଜ ଷଟ୍‌ପଦ । ଷଡ଼ଯନ୍ତ୍ରୀ କେତକୀ ଅଶୁ ଯେ ଗତିକ ପାଇଲା ସେପରି ନ କର ଜଂ ୧ ଯଦି ନ ପାରେ ଅଉ ଦୁଃଖ ଯନ୍ତ୍ରଣା ଅକ୍ଷରେ

ଶ୍ରୀ

# ରାଧାଗୋବିନ୍ଦ ଜଣାଣ ।

ଶ୍ରୀ ଶ୍ରୀ ପଦ୍ମନାଭନାରାୟଣ ଦେବଙ୍କ

ଦ୍ୱାରା

ବିରଚିତ

ଓ

ପ୍ରକାଶିତ

Printed at the Gajapathy press.

Parlakimedi.

# ରାଧାଗୋବିନ୍ଦ ଜଣାଣ

## ରାଗ ଗୌଶିକ

କୋଟି-ବ୍ରହ୍ମାଣ୍ଡ-କାରଣ(କ) ଈଶ୍ୱରଙ୍କ ଅରୁଣ ଗଞ୍ଜିତ ଚରଣେ ।
କେଉଁ ଦୀନ ଜନ କରଯୋଡ଼ି ଜଣାଣ ପଢ଼ିଣ ଦାରୁଣ କଷଣେ ।
ରାଧାଗୋବିନ୍ଦ । ନବ ପଞ୍ଚ ଭୁବନେ ବନ୍ଦ୍ୟ ।
କାମ କଳ୍ପତରୁ ସନ୍ତାପ ସିନ୍ଧୁରୁ ଉଦ୍ଧାର କୃପା ବିତରଣେ ।୧।

ଖଗପତିଈଶ ଖଟନ୍ତି ଯେ ପଦେ ବ୍ରହ୍ମା ଶିବ ଆଦି ବାସବ ।
ଖଳ ଖଣ୍ଡ ମତି ମୋପରି ଜନ କି ଯୁଗଳ ଚରଣ ପାଇବ ।
ରାଧାଗୋବିନ୍ଦ । ହେବାରୁ କର୍ମ ବଡ଼ ବନ୍ଦ ।
ଖରେ ଆସି ମୁହିଁ ଏବେ ନିବେଦଇ ଆଶ କରି ମୋ ଦୁଃଖ ଯିବ ।।୨।।

ଗୁରୁ ଗଞ୍ଜଣା ବିପକ୍ଷୀମାନଙ୍କର ଆଉ ମୁଁ ସହି ନ ପାରଇ ।
ଗରଳ ଜାରିତ ବାକ୍ୟ ବାଣ ଗଣେ ମର୍ମକୁ ଦିଅନ୍ତି କମ୍ପାଇ ।
ରାଧାଗୋବିନ୍ଦ । ନିଷ୍ଠେ କହୁଛି ନୁହେ ଛନ୍ଦ ।
ଗଣ୍ଡ ମୂର୍ଖ ସଦା ପଣ୍ଡିତର ନିନ୍ଦା କରିବା ନୟନେ ଦେଖଇ ।।୩।।

ଘଟ ସହୁଛି ଦୁର୍ଘଟ ସଂଘଟନ ଛାଡ଼ିବାରୁ ନାମ ସ୍ମରଣ ।
ଘଡ଼ିଏ ହେଲେ କି କେ କେବେ ଛାଡ଼ନ୍ତା ଯଦି ନ ଲଭନ୍ତା କଦନ ।
ରାଧାଗୋବିନ୍ଦ । ଗୋପନାରୀ ହୃଦପ୍ରମୋଦ ।
ଘଟାନ୍ତୁ ସୁଯୋଗ ଛାଡ଼ୁ ସର୍ବ ଅଘ ସେବାକରି ରଜନୀ ଦିନ ।୪।

ଉଣା ହୋଇଛି ସକଳ ଅଭିଳାଷ ବିପତ୍ତି ପଡ଼ିବାର ଦିନୁ ।
ଉଛଳି ଉଠିଣ ଅବିରତ ଅଶ୍ରୁ କ୍ରମେ ହେଲାଣି କ୍ଷୀଣ ତନୁ ।

ରାଧାଗୋବିନ୍ଦ । ଅଭୟପ୍ରଦ ପଦଦ୍ୱନ୍ଦ ।
ଉରେ ଶିରେ ଦେଇ ଦୁର୍ଗତି ତୁଟାଇ ରଖନ୍ତୁ ନୀଚ ଅପମାନୁ ।୫।

ଚତୁରବର ଚକ୍ରଧର ଚିତ୍ତରେ ଥରେ ମାତ୍ର ବିଚାର କର ।
ଚରାଚରପତି କ୍ଷମା ନ କଲେ ମୋର ଗତି କେ ନାହିଁ ଇତର ।
ରାଧାଗୋବିନ୍ଦ । ନିଖିଳ ଜନ ମନାନନ୍ଦ ।
ଚଇତନ ଦଗ୍ଧ ହେଲାଣି ଅଦଗ୍ଧ ପୀଡ଼ାରୁ ଦୁରନ୍ତ ଦୁଃଖର । ୬।

ଛାଡ଼ି ସର୍ବ ଆଶା ତ୍ରିଭୁବନଈଶ ଭରସା ରଖି ଶ୍ରୀଚରଣେ ।
ଛାମୁକୁ ଆସିଛି ଛାଡ଼ିବ ଦୁର୍ଦ୍ଦଶା କିଞ୍ଚିତ କଟାକ୍ଷ ପାତନେ ।
ରାଧାଗୋବିନ୍ଦ । ନନ୍ଦହୃଦ ଆନନ୍ଦ କନ୍ଦ ।
ଛନ ଛନ ମନେ ଶ୍ୱାସ ଘନଘନେ ପ୍ରାଣ ରଖେ କାଳ ଯାପନେ ।୭।

ଜଗତର ଜଞ୍ଜାଳତ ଆଦିମୂଳ ଗରଳ ଜ୍ୱାଳାରୁ ଅଧିକ ।
ଜନାର୍ଦ୍ଦନ ତହିଁ ଉପରେ କି ଜାତି ଜଳୁଛି ଅଭାବ ପାବକ ।
ରାଧାଗୋବିନ୍ଦ । ଭବବ୍ୟାଧୀ ନାଶ ଅଗଦ ।
ଜୀବର ଆକୁଳ ସିଞ୍ଚି କୃପାଜଳ ନାଶନ୍ତୁ ସଂକଟନାଶକ ।୮।

ଝାମ୍ପି ନେଇଛି ସର୍ବ ସୁଖ ଭୋଗାଦି ନିଷ୍ଠୁର ଦୁର୍ଦ୍ଦଶା ସଞ୍ଚାଣ ।
ଝଟତି କୃପାଚକ୍ରେ ତାକୁ ବିନାଶି କରନ୍ତୁ ମଙ୍ଗଳ ପ୍ରଦାନ ।
ରାଧାଗୋବିନ୍ଦ । ନିଶାଚରବୃନ୍ଦଦରଦ ।
ଝରେ ବାରଂବାର ନୟନରୁ ନୀର ରଖନ୍ତୁ ଅରାତିମର୍ଦ୍ଦନ ।୯।

ନିଃଶଙ୍କ ଚିତ୍ତରେ ନିମିଷ ମାତ୍ରରେ ଗମି ଶତାଧିକ ଯୋଜନ ।
ନକ୍ର ଶିର ଛେଦି ଗଜକୁ ରଖିଲ ହେଲାକି ତାହା ବିସ୍ମରଣ ।
ରାଧାଗୋବିନ୍ଦ । ଦୁଃଖି ରଙ୍କଜନ ସଂପଦ ।
ନିରେଖି ଦୁର୍ଦ୍ଦଶା ନୀରବେ ସହସା ରହିବା କି ଭଲ ବିଧାନ ।୧୦।

ଟୋକାମାନଙ୍କର ଟାହୁଲି ପଣରେ ଟିକି ଟିକି ହୁଏ ହୃଦୟ ।
ଟେକି ମସ୍ତକ ଟିକିଏ ହେଲେ କେବେ ଟାଳିପାରୁନାହିଁ ସଦୟ ।

ରାଧାଗୋବିନ୍ଦ । ଟାକିଛି ଅଭୟ ଶ୍ରୀପଦ ।
ଟୋପାଏ କରୁଣା-ସାଗରରୁ ଊଣାହେବ ବୋଲି ଟିକେ ନ ଭାବ ।୧୧।
ଠାକୁର ବ୍ରହ୍ମାଣ୍ଡର ହୋଇ ଦୁର୍ଦ୍ଦଶା ଦେଖି ଯେବେ ନ ନିବାରିବ ।
ଠାବ ମୋହର ନରହିବ ସଂସାରେ ଆଶା ଭରସା ସରିଯିବ ।
ରାଧାଗୋବିନ୍ଦ । ବିପଦ ଫଣୀ ବିଷ ଗଦ ।
ଠୁକି ଠୁକି କର୍ମ୍ମ ହେଲି ମୁ ବିଭ୍ରମ ଆଉ ପ୍ରାଣ ଧରି ନ ହେବ ।୧୨।

ଡାକ କାତରେ ଦେଲା କ୍ଷଣି ପାଞ୍ଚାଳୀ ବସନ ଦେଲ କି ଯତନେ ।
ଡରୁ ଥିଲେ ଯେ ମାନ ମହତ ଯିବ ଶତ୍ରୁ କୁରୁମଣି ସଦନେ ।
ରାଧାଗୋବିନ୍ଦ । "ସମଦର୍ଶୀ" ପରା ତୋ ପଦ ।
ଡହଳ ବିକଳେ କେତେ ମୁ ଡାକିଲେ ନୀରବ ହୁଅ କି କାରଣ ? ୧୩।

ଢୌକନ ଦେଲି ମିଥ୍ୟାଦ୍ୱେଷ ଅଧର୍ମ ସୁଖ ଲାଳସେ ଦୁର୍ଦ୍ଦଶାକୁ ।
ଢମ ପଣ ଭାଙ୍ଗିଗଲା ତାହାଠାରୁ ପାଇ ଖେଦ ପ୍ରତି ଫଳକୁ ।
ରାଧାଗୋବିନ୍ଦ । ସର୍ବ ଲୋକ ପ୍ରାଣୀ ପ୍ରାଣଦ ।
ଢଳ ଢଳ ପ୍ରାଣ ହେଉଛି ଚରଣ ତଳରେ ରଖ ଏ ଦାସକୁ ।୧୪।

ଅନ୍ତର୍ଗତରେ ଯେବେ ଥିବ କରୁଣା ଅଳପ ହେଲେ ହେ ଅନନ୍ତ ।
ଅବିଳମ୍ବେ ମତେ ରଖ ତା ପ୍ରକାଶି ଘୋରତର ଦୁଃଖୁ ନିରତ ।
ରାଧାଗୋବିନ୍ଦ । ପାଷାଣ ଜନଙ୍କ ବିପଦ ।
ଅବନୀରେ କୀର୍ତ୍ତି ରଖ ବିଶ୍ୱପତି ତାରି ତବ ଦାସାନୁଗତ ।୧୫।

ତାରିଛ ମୋ ପରି ଅନେକ ପାପୀଙ୍କି ବୋଲି ଶୁଣି ମୁଁ ବହୁ ମୁଖୁ ।
ତରତରେ ଧାଇଁ ଛାମୁକୁ ଆସିଛି ବଞ୍ଚିବା ଆଶେ ଘୋର ଦୁଃଖୁ ।
ରାଧାଗୋବିନ୍ଦ । କୃପାର୍ଥୀ ଚାତକ ବାରିଦ ।
ତୁମ୍ଭେ କୃପାସର ମୁଁ ପାପୀ ପାମର କିମ୍ପା ବଞ୍ଚିତ ହେବି ସୁଖୁ ।୧୬।

ଥୟ ନୋହୁଛି ମୋହର ମନ ଲବେ ନଳିନୀଦଳ ଜଳବତ ।
ଥାଉ ତୁମ୍ଭ ପରାଏ ପ୍ରଭୁ ନ ଘୁଞ୍ଚେ ଦୁଃଖ ଏକି ଯୁକ୍ତି ଯୁକତ ।

ରାଧାଗୋବିନ୍ଦ । ଅଖିଳ ମଙ୍ଗଳ ବରଦ ।
ଥରେ କୃପା କଲେ ଭାଙ୍ଗିଯିବ ହେଲେ ଉତ୍ତୁଙ୍ଗ ବିପତ୍ତି ପର୍ବତ ।୧୭।
ଦାରିଦ୍ର୍ୟ ନାଶି ସୁଦାମାର ଜଗତେ ଦୀନବନ୍ଧୁ ନାମ ରଖିଲ ।
ଦେଇ ଆଜନ୍ମ ଅନ୍ଧକୁ ଚକ୍ଷୁ ଦାନ ଅନାଥ ନାଥ ବୋଲାଇଲ ।
ରାଧାଗୋବିନ୍ଦ । ଦୁଃଖସିନ୍ଧୁ ତରି ପ୍ରପଦ ।
ଦରମରା ହୋଇ କାଳକୁ ଯାପଇ ଦୟା କର ନନ୍ଦଦୁଲାଳ ।୧୮।

ଧରିତ୍ରୀରେ ମୋ ସମାନ କେ ନଥିବ ଦୀନ ଦୁଃଖି ସୃଷ୍ଟି ଭିତିର ।
ଧରାଧର ତବ ପ୍ରସାଦ ଥରେ ହେ କେ ନ ପାଏ ଲବ ମାତର ?
ରାଧାଗୋବିନ୍ଦ । ଭକ୍ତ ଆଶାମୃଗ ସୁଫାନ୍ଦ ।
ଧୀରେ ପଚାରଇ କହ ମୁ କିପାଇଁ ତହିଁ କି ନ ହେଲି ପାତର ।୧୯।

ନାରଖାର ହେଲି ନିକୃଷ୍ଟ ନୀତିରେ ନିପଟ ନିପାଠକ ସଙ୍ଗୁ ।
ନିରତ ବିପତ୍ତି ଶୂନ୍ୟରୁ ପଡ଼ଇ ଯଥା ଉପଳ ଗିରି ଶୃଙ୍ଗୁ ।
ରାଧାଗୋବିନ୍ଦ । ଗୋପୀହୃଦ କୁମୁଦ ଚାନ୍ଦ ।
ନରକ ନାଶକ କୈବଲ୍ୟ ଦାୟକ ରଖନ୍ତୁ ଦୀନ ଦାସ ଭୃଗୁ ।୨୦।

ପତିତ ପାବନ ପରାତ୍ପର ଶୁଣ ପାଇ ମୁ ପର ପରାଭବ ।
ପନ୍ଦର ଥର ଛାମୁରେ ନିବେଦିଲେ ଲବେ କୃପା ଯେବେ ନ ହେବ ।
ରାଧାଗୋବିନ୍ଦ । ମୁନିମାନସକଞ୍ଜ ମୁଦ ।
ପାଦାନୁଦାସର ଗୁହାରି ନିକର ସଂସାରେ କେ ଆଉ ଶୁଣିବ ।୨୧।

ଫଂରମାସ ହେଉ ଥରେ ନିରଳସେ କୃପା ଯେବେ ମୋରେ ନୋହିବ ।
ଫଣୀଶେଯ୍ୟାଶାୟୀ ଅବଶ୍ୟ ମୋହର ଜୀବ ଆଶା ଆଜ୍ଞୁ ତୁଟିବ ।
ରାଧାଗୋବିନ୍ଦ । ବ୍ରଜରାଟ ସୁତ ମୁକୁନ୍ଦ ।
ଫଳାଫଳ ଦାତା ବିଶ୍ୱଜନତ୍ରାତା ମହିମା ସୀମାବଦ୍ଧ ହେବ ।୨୨।

ବଜ୍ରଧାରୀ ଗାରିମା କଲ ଖରବ ଗୋବର୍ଦ୍ଧନ ପର୍ବତ ଧରି ।
ବନାଶିଲ କି ବିଚିତ୍ର କଉଶଳେ କଂସ ମଥୁରା ଦଣ୍ଡଧାରୀ ।

ରାଧାଗୋବିନ୍ଦ । ସକଳ ଗୁଣ ବିଶାରଦ ।
ବିଶ୍ୱେ କା ଗରବ ରଖିଛ ମାଧବ ମୋ ଦଶା ତହୁଁ କି ବଳିବ ।୨୩।
ଭବ ବିଭବ ଭାବତ ଭଲ ରୂପେ ଅନୁଭବ ମୁହିଁ କରିଛି ।
ଭାବିଲେ ହେଲେ କେତେ ସୁଖ ଅଳପ କାହିଁରେ ନାହିଁ କିଛି ।
ରାଧାଗୋବିନ୍ଦ । ପଶୁପନାରୀ ପ୍ରିୟମ୍ବଦ ।
ଭରସା ମୋହର ଏକା ଶ୍ରୀପୟର ଯେ କାଳୀନାଗକୁ ତାରିଛି ।୨୪।

ମାନବ କୁଳେ ଜନ୍ମି ମିଥ୍ୟା ମାୟାରେ ବୁଡ଼ି ରହିଛି ଅଭିମାନେ ।
ମାନ ମହତ ପ୍ରକୃତରେ ଗଲାଣି ଅତି କଷ୍ଟ ମୁ ପାଏ ପ୍ରାଣେ ।
ରାଧାଗୋବିନ୍ଦ । ଚତୁରବରଗ ଫଳଦ ।
ମରାମରରାଣେ ପାପୀ ପରିତ୍ରାଣେ ତୁମ୍ଭ ବିନା ଆନ ନ ଜାଣେ ।୨୫।

ଯାଚନା କରେ ଦନ୍ତରେ ଧରି ତୃଣ ଯାମଳଅର୍ଜୁନଭଞ୍ଜନ ।
ଯାଉ ମୋ ସକଳ ଅସହ୍ୟ ଦୁର୍ଦ୍ଦଶା ନିଖିଳବ୍ରହ୍ମାଣ୍ଡପାଳନ ।
ରାଧାଗୋବିନ୍ଦ । ଶ୍ରୀନନ୍ଦ ଯଶୋଦା ଯଶୋଦା ।
ଯିବା ଯମାଳୟ ଶ୍ରବଣେ କି ଭୟ ଜାତ ହୁଏ ଯଦୁନନ୍ଦନ ।୨୬।

ରଖିଛ ଅଜାମିଳ ଆଦି ଜନଙ୍କୁ ଅଭୟବର କରି ଦାନ ।
ରଙ୍ଗରାଜୀବଚରଣରେ ଶରଣ ଏ ଘେନି ପଶିଲି ସୁଜାଣ ।
ରାଧାଗୋବିନ୍ଦ । ଭକ୍ତପିପାସୁସୁଧାହ୍ରଦ ।
ରଖ ବାରେ ବିଭୁ ଦୁଃଖ ରବି ରାହୁ ଅଖିଳ ମଙ୍ଗଳ ନିଦାନ ।୨୭।

ଲୋଚନେ ତୁମ୍ଭ ପରାଏ ପ୍ରଭୁ ଦେଖି ଛାର ଦଶାକୁ କି ଡରିବି ।
ଲଭି ମୁ ଯାହାର ଚରଣ ନଉକା ଭବ ସିନ୍ଧୁ ମଧ୍ଯୁ ତରିବି ।
ରାଧାଗୋବିନ୍ଦ । ନିଗୂଢ଼ତତ୍ୱପୂରାବିଦ ।
ଲବେ କୃପାକଲେ ଦୁଃଖ ଘୁଞ୍ଚି ଗଲେ ସଦା ତୁମ୍ଭ ନାମ ସ୍ମରିବି ।।୨୮।

ବଞ୍ଚିବା କି ଭଲ ହୋଇ କଳବଳ ବିଷୟବିଷର ଜଗତେ ।
ବିଶେଷରେ ତହିଁ ପରେ ଅନୁଭୋଗି ଦୁଃଖ ସୃଷ୍ଟିରେ ଅଛି ଯେତେ ।

ରାଧାଗୋବିନ୍ଦ । ମୁରଲୀଧର ଚିଦାନନ୍ଦ ।
ବେଗେ କର ଦୟା ନରହୁ ମୋ କାୟା ସଂସାରେ କ୍ଷଣିକ ନିମନ୍ତେ ।୨୯।
ଶ୍ରୀପଦେ ମୋ ମତି ରଖ ବିଶ୍ୱପତି ବିନାଶି ମୋହ ଅନ୍ଧକାର ।
ଶିବଦାୟକ ଚରଣୋଦକ ଦେଇ ହର ମୋ ଦୁର୍ଦ୍ଦଶା ବିକାର ।
ରାଧାଗୋବିନ୍ଦ । ଶ୍ରୀବସ୍ତଲାଞ୍ଛିତ ସୁହୃଦ ।
ଶାନ୍ତ ହେଉ ମନ କରି ତୁମ୍ଭ ଧ୍ୟାନ ଛାଡୁ ସକଳ ଅହଂକାର । ୩୦।

ଷଡ଼ରିପୁ ଆହ୍ମେ ଧରିଛନ୍ତି ମତେ ମାୟା ଜାଲ କରି ବିସ୍ତାର ।
ଷୋଳପଣ ଆଶା କରିଛି ଫେଡ଼ିବ ବାରେ ବୋଲି ବଂଶିଅଧର ।
ରାଧାଗୋବିନ୍ଦ । ଭକ୍ତମନକଞ୍ଜ ଷଟ୍‌ପଦ ।
ଷଡ଼ଘ୍ରୀଂ କେତେକୀ ଆଶୁ ଯେ ଗତିକି ପାଇଲା ଯେପରି ନ କର ।୩୧।

ସହି ନ ପାରେ ଆଉ ଦୁଃଖ ଯନ୍ତ୍ରଣା ଅଙ୍ଗ ହେଲାନି ଅବସନ୍ନ ।
ସତ ମୁ କହୁଛି ଦେବାର୍ଚ୍ଚିତ ପଦେ କୃପା ନ କଲେ ବର୍ତ୍ତମାନ ।
ରାଧାଗୋବିନ୍ଦ । ମୁମୁକ୍ଷୁ କଇବଲ୍ୟ ପ୍ରଦ ।
ସରିବ ଭରସା ଯିବ ପ୍ରାଣ ଆଶା ନିଖିଳ ମଙ୍ଗଳ କାରଣ ।୩୨।

ହେଉଛି ଆଶା ସଞ୍ଚାର ପାପୀହୃଦେ ପଦ୍ମଚରଣ ଦେଖି କରି ।
କରିଛି ଯେ ଅନେକ ସନ୍ତାପୀ ତାପ ପରମାଣୁ ହେଲେ ବିତରି ।
ରାଧାଗୋବିନ୍ଦ । ଭବଭୟ ଅଭୟ ଛେଦ ।
ହରନ୍ତୁ ଝଟତି ମୋହର ଦୁର୍ଗତି ଅଚ୍ୟୁତ ଅନଘ ଶ୍ରୀହରି ।୩୩।

କ୍ଷମାସାଗର ବୋଲି ବଳାଇ ପଦେ କହିଲି ଭୟକୁ ଉପେକ୍ଷି ।
କ୍ଷାନ୍ତ ହେଉଛି ଏତିକି ମାଗି ମୁହିଁ କର ସୁଯୋଗ ବାରେ ଦେଖି ।
ରାଧାଗୋବିନ୍ଦ । ପାପୀ ତୃଷାର୍ଥୀ କୃପାନଦ ।
କ୍ଷିପ୍ରେ ରଖୁ ଜୀବ ପଦ୍ମନାଭ ଦେବ ପଦ୍ମାବ୍ଜ ମକରନ୍ଦ ଚାଖି ।୩୪।

●

# ପ୍ରାକ୍‌ସୂଚନା

ପାଶ୍ଚାତ୍ୟ ନାଟକ ଅଧ୍ୟୟନ ଓ ଦଶନରୁ ସମଗ୍ର ଭାରତବର୍ଷ ସହିତ ଓଡ଼ିଶାରେ ଯେଉଁ ନବନାଟ୍ୟ ଆନ୍ଦୋଳନର ସୂତ୍ରପାତ ହୋଇଥିଲା ସେଥିରେ ପାରଳାଖେମୁଣ୍ଡିର ଦର୍ଶକ ଓ ଲେଖକମାନଙ୍କୁ ସଂମିଳିତ କରିବା ସକାଶେ ପଦ୍ମନାଭ ନାରାୟଣ ଦେବଙ୍କ ଆଲୋଚ୍ୟ ନାଟକଟି ଥିଲା ପ୍ରଥମ ପଦକ୍ଷେପ । ଏହା ମାଧ୍ୟମରେ ସେ ଲୀଳା ଓ ରାସପ୍ରିୟ ଦର୍ଶକମାନଙ୍କୁ ନାଟକୀୟ ରୁଚି ପ୍ରତି ଆକୃଷ୍ଟ କରିବାପାଇଁ ଉଦ୍ୟମ କରିଥିଲେ । ଗୋପାଳକୃଷ୍ଣ, ଗୌରହରି, ହରିବନ୍ଧୁ ପ୍ରଭୃତିଙ୍କ ଜନ୍ମଭୂମି ପାରଳାର ଜନସାଧାରଣ ବିଶେଷଭାବେ ସଙ୍ଗୀତପ୍ରିୟ । ସଙ୍ଗୀତଚର୍ଚ୍ଚା କିପରି ପାରଳା ଅଧିବାସୀଙ୍କ ସାଂସ୍କୃତିକ ଜୀବନ ସହିତ ବହୁ ଦିନରୁ ନିରବଚ୍ଛିନ୍ନଭାବେ ଓତଃପ୍ରୋତ ଭାବେ ଜଡ଼ିତ ତାହା 'ତାଳ ସର୍ବସାର ସଂଗ୍ରହ'ର ପ୍ରାକ୍ ସୂଚନାରେ ଉଲ୍ଲେଖ କରାଯାଇଛି । ଏହି ଭୂମିର ସଙ୍ଗୀତ ପ୍ରାଣ ଦର୍ଶକମାନଙ୍କୁ ଦୃଷ୍ଟିରେ ରଖି ରୁଚି ପରିବର୍ତ୍ତନ ପାଇଁ ସେ ପ୍ରଥମ ନାଟକଟିକୁ ସଙ୍ଗୀତ ବହୁଳ କରିବା ସଙ୍ଗେ ସଙ୍ଗେ ନାମିତ କରିଥିଲେ **ସଙ୍ଗୀତ ପ୍ରହ୍ଲାଦ ନାଟକ** । ତଥାପି ନିଜର ପ୍ରୟାସ ଉପରେ ସେ ଦୃଢ଼ ବିଶ୍ୱାସୀ ହୋଇପାରୁନଥିଲେ । ତେଣୁ ଶିକ୍ଷକ ଶ୍ୟାମସୁନ୍ଦର ରାଜଗୁରୁଙ୍କ ଉପରେ ସେ ଏହାର ଭାର ନ୍ୟସ୍ତ କରିଥିଲେ । ଏ ସମ୍ପର୍କରେ ଜୀବନୀକାର ଅପର୍ଣ୍ଣା ପଣ୍ଡା ଜଣାଇଛନ୍ତି-

> *ସେ ପ୍ରହ୍ଲାଦ ନାଟକ ରଚନା କରିବା ଭାର ତାହାଙ୍କ ଶିକ୍ଷକ ଶାମସୁନ୍ଦର ରାଜଗୁରୁଙ୍କ ଉପରେ ନ୍ୟସ୍ତ କରିଥିଲେ, ସେ ତତ୍‌ସମ୍ବନ୍ଧେ କେତେଗୋଟି ଗୀତ ରଚନାକରି ଅନ୍ୟ କାର୍ଯ୍ୟବଶତଃ ନାଟକ ରଚନାରେ ଆଉ ହସ୍ତକ୍ଷେପ କଲେ ନାହିଁ । ସେ ଗୁରୁଙ୍କଠାରେ ଏହି ନାଟକ ରଚନା ବିଷୟରେ ଆଉ କିଛି ନ କହି ଆପେ ନାଟକ ରଚନାରେ ପ୍ରବୃତ୍ତ ହେଲେ । ସେ ଏହି ନାଟକ ରଚନା ସମୟରେ ଶ୍ରୀ ଭେଙ୍କଟ ଶାସ୍ତ୍ରୀଙ୍କ ସାହାଯ୍ୟ ନେଇଥିଲେ । ନାଟକଟି ଅନେକ ଦିନ ପୂର୍ବେ ରଚିତ ହୋଇଥିଲା, ପରେ ଶିକ୍ଷିତ ଲୋକମାନଙ୍କ ଦ୍ୱାରା ସଂଶୋଧିତ ହୋଇ ୧୯୦୧ ସାଲରେ ମୁଦ୍ରାଙ୍କିତ ହେଲା ।*

ତଥାପି ନାଟକଟିର ଭୂମିକାରୁ ଜଣାଯାଏ ଯେ, 'ଶିକ୍ଷକ ଶ୍ରୀଯୁକ୍ତ ବାବୁ ଶାମସୁନ୍ଦର ରାଜଗୁରୁ ବି.ଏ.ଙ୍କ ଦ୍ୱାରା ଆମୂଳାନ୍ତ ସଂଶୋଧନ କରାଇ' ହିଁ ସେ ନାଟକଟିର ମୁଦ୍ରଣ କରିଛନ୍ତି । ଏଥିରେ ଭକ୍ତିଭାଜନ ଗୁରୁ ଏବଂ ବନ୍ଧୁ ଅପର୍ଣ୍ଣା ପଣ୍ଡାଙ୍କ ରଚିତ କେତୋଟି ଗୀତ ମଧ୍ୟ ସଂଯୋଜିତ ।

ନିଜର ଶକ୍ତି ଏବଂ ସୃଷ୍ଟିର ସୌନ୍ଦର୍ଯ୍ୟ ପ୍ରତି ସନ୍ଦିହାନ ହେବା ଏବଂ ନିଜ ରଚନାର ଅଭାବ ପ୍ରତି ସଚେତନ ହେବା ଜଣେ ପ୍ରତିଭାଧର ଲେଖକର କେବଳ ଉଦାରତା ନୁହେଁ ଏକ ମହତ୍ ଗୁଣ । ଏହାହିଁ ବାରମ୍ବାର ପରିମାର୍ଜନାଦ୍ୱାରା ଯେ କୌଣସି ସାରସ୍ୱତ ସୃଷ୍ଟିକୁ କାଳଜୟୀ କରିଥାଏ । ପଦ୍ମନାଭ ନାରାୟଣ ଦେବ ଏ ଉଭୟରେ ଥିଲେ ଏକାନ୍ତ ବିଶ୍ୱାସୀ । ଲେଖକୀୟ ଅହମ୍ ଲେଖକର ପ୍ରତିଷ୍ଠାକୁ କ୍ଷଣସ୍ଥାୟୀ କରିଥାଏ । ଏହାର ବଶବର୍ତ୍ତୀ ନଥିଲେ ବୋଲି ସେ ନିଜ ନାମର ସାର୍ଥକତା ରକ୍ଷାକରି ଚନ୍ଦ୍ରତୁଲ୍ୟ ଅନ୍ୟର ଜ୍ଞାନାଲୋକରେ ଆଲୋକିତ ହୋଇ ସେହି ଆଲୋକର ଦୀପ୍ତିରେ ଅନ୍ୟକୁ ଆଲୋକିତ କରିବାରେ ସଫଳତା ଲାଭ କରୁଥିଲେ । ତା' ନ ହେଲେ ମାତ୍ର ତିନୋଟି ବର୍ଷ ମଧ୍ୟରେ ସେ ପାରଳାଖେମୁଣ୍ଡିର ଦର୍ଶକ ଓ ଲେଖକମାନଙ୍କୁ ଲୀଳା ନାଟକରୁ ବିଦଗ୍ଧ ନାଟକ, ମୁକ୍ତ ମଞ୍ଚରୁ ଏକମୁଖୀ ମଞ୍ଚ, ଦୃଶ୍ୟକାବ୍ୟରୁ ଅଶ୍ଳୀଳତା ପରିହାର, ନାଟକ ମାଧ୍ୟମରେ ସମାଜ ସଂସ୍କାର ବାର୍ତ୍ତା ପ୍ରଚାର ପ୍ରତି ଆକୃଷ୍ଟ କରାଇପାରିନଥାନ୍ତେ । ନାଟ୍ୟାରମ୍ଭରେ ନଟ ଓ ସୂତ୍ରଧାରଙ୍କ କଥୋପକଥନରୁ ନାଟ୍ୟକାରଙ୍କ ମନର ଦ୍ୱନ୍ଦ୍ୱ ଓ ଆଶଙ୍କା ଅବଧାରିତ ହୁଏ ।

ନଟ- ବିଜ୍ଞବର ! ଆଜିକାଲି ଆମ୍ଭ ଗଞ୍ଜାମ ଓଡ଼ିଆମାନଙ୍କରେ ନାଟକାଭିନୟର ସମାଦର କରିବା ଲୋକେ ବିରଳ ଲକ୍ଷିତ ହୁଅନ୍ତି । କେତେକ ନବ୍ୟ ସଭ୍ୟ ବ୍ୟକ୍ତି ଆମ୍ଭମାନଙ୍କ ଆର୍ଯ୍ୟରଚିତ ଶାସ୍ତ୍ରମାନଙ୍କୁ ଅଧୀତି, ବୋଧ ଓ ତଦନୁଯାୟୀ ଆଚରଣ କରିବା ତେଣିକି ଥାଉ, ସେମାନଙ୍କ ପ୍ରତି ଭ୍ରୂକ୍ଷେପ ମଧ୍ୟ କରନ୍ତି ନାହିଁ । ଅନ୍ୟ ଯେଉଁମାନେ ଆପଣା ସର୍ବାଙ୍ଗକୁ ମୁଦ୍ରାଙ୍କିତ କରି ହସ୍ତରେ ପ୍ରେମ ଝୁଲି ଧରି ଭଗବଦ୍ ଭକ୍ତି ପିପାସୁ ବୋଲି ପରିଚୟ ଦିଅନ୍ତି ସେମାନଙ୍କଠାରେ ଆନ୍ତରିକ ଭକ୍ତି ଆକାଶ କୁସୁମବତ୍ । ଆଉ ଏକ ଦଳ ଅଛନ୍ତି ଯେ ସେମାନେ ନାଟକାଭିନୟ କାହାକୁ କହନ୍ତି ତାହାର ଗନ୍ଧ ସୁଦ୍ଧା ଜାଣି ନାହାଁନ୍ତି । ଏପରି ସ୍ଥଳେ ନାଟକାଭିନୟ କରିବା ଲାଗି ଆପଣ କିପରି ଆଦେଶ ଦେଉଅଛନ୍ତି ? ଏହା ଅତି ଆଶ୍ଚର୍ଯ୍ୟର ବିଷୟ ।

ସୂତ୍ରଧାର- ନଟ ! ଏପରି କହିବା ଉଚିତ ନୁହେଁ । ଆପଣ ଏ ଦେଶୀୟ ଲୋକଙ୍କୁ ଯେଉଁ ଯେଉଁ ଶ୍ରେଣୀରେ ବିଭାଗ କରି ଅଛନ୍ତି ତାହା ସତ୍ୟ । ମାତ୍ର ସେପରି ଲୋକେ ଏହି ଦେଶରେ ଏକା ଅଛନ୍ତି- ତାହା ନୁହେଁ, ସକଳ ଦେଶରେ ନ୍ୟୂନାଧିକରେ

ଥାନ୍ତି । ଏହି ହେତୁରୁ ଶ୍ରମସ୍ୱୀକାର ପୂର୍ବକ ସାଧତମ ଉପାୟ ଅବଲମ୍ବନ କରି ସେମାନଙ୍କୁ ଉନ୍ନତ ପଥକୁ କର ଧରି ଉଠାଇ ଆଣିବା ଏବଂ କଣ୍ଟକ ସମାକୀର୍ଣ୍ଣ ପଥରେ ପଧାବିତ ହୋଉଥିବା ଲୋକଙ୍କୁ ସନ୍ମାର୍ଗ ଦେଖାଇବା ପ୍ରତ୍ୟେକ ବିଜ୍ଞ ବ୍ୟକ୍ତିର କର୍ତ୍ତବ୍ୟ କର୍ମ ।''

ପଦ୍ମନାଭ ସ୍ପଷ୍ଟ ଉପଲବ୍ଧି କରିଥିଲେ ଯେ, ପୁରାତନକୁ ପରିହାର କରି ନୂତନତାକୁ ଗ୍ରହଣ କରିବାପାଇଁ ଜନସଚେତନତା ସୃଷ୍ଟି କରିବାକୁ ହେଲେ ପ୍ରାଥମିକ ସ୍ତରରେ ଉଭୟର ସମନ୍ୱୟ ଏକାନ୍ତ ଆବଶ୍ୟକ । ସେଥିପାଇଁ ସେ ସୁପ୍ରଚଳିତ ପ୍ରହ୍ଲାଦ ଚରିତକୁ ନାଟ୍ୟରୂପ ଦେବାପାଇଁ ମନସ୍ଥ କରିଥିଲେ । ପାରଳାଖେମିଣ୍ଡି, ତରଳା, ଜଳନ୍ତର, ମଞ୍ଜୁଷା ଇତ୍ୟାଦି ଓଡ଼ିଶାର ଦକ୍ଷିଣାଞ୍ଚଳରେ **ପ୍ରହ୍ଲାଦ ନାଟକ** ଏକ ଲୋକପ୍ରିୟ ଲୋକନାଟକ । ତରଳା ହେଉ କି ଜଳନ୍ତର ହେଉ ଏ ଅଞ୍ଚଳରୁ ହିଁ ନାଟକଟିର ଜନ୍ମ । ଉଭୟ ଓଡ଼ିଆ ଏବଂ ତେଲୁଗୁ ଭାଷାଭାଷୀ ଦର୍ଶକଙ୍କପାଇଁ ଏହା ସମାନ ଭାବେ ଆମୋଦପ୍ରଦ । ସିଂହାଚଳ ପର୍ବୋତୋପରି ଅଧିଷ୍ଠିତ ଭଗବାନ ବରାହ ନୃସିଂହଙ୍କ ପ୍ରତିଷ୍ଠା ଏ ଅଞ୍ଚଳରେ ସର୍ବାଧିକ । ଲୋକ ନାଟକଟିର ଆଦି ପ୍ରଣେତାକୁ ଘେନି ବିଭିନ୍ନ ମତ ମତାନ୍ତର ଥିବା, ଏ ସମ୍ପର୍କରେ ଗବେଷଣା କରିଥିବା ଡ. ଶାନ୍ତନୁ କୁମାର ରଥଙ୍କ ସନ୍ଦର୍ଭ ଓ ବିଭିନ୍ନ ପ୍ରବନ୍ଧ ଏବଂ ସଂସ୍କୃତି ବିଭାଗ ପକ୍ଷରୁ ପ୍ରକାଶ ପାଇଥିବା ଡ. ଭଗବାନ ପଣ୍ଡାଙ୍କ ଦୀର୍ଘ ମୁଖବନ୍ଧରୁ ଜଣାଯାଏ । ତଥାପି ରାମଚନ୍ଦ୍ର ଛୋଟରାୟ, ଗୌରହରୀ ପରିଚ୍ଛା କିମ୍ବା ସଙ୍ଗୀତଭୂଷଣ ଯେ କେହି ଏହାର ରଚୟିତା ହୁଅନ୍ତୁ ନା କାହିଁକି ଜଳନ୍ତରକୁହିଁ ଏହାର ପିତୃଭୂମିରୂପେ ସାଧାରଣତଃ ଗ୍ରହଣ କରାଯାଇଥାଏ । ଗୌରହରି ପରିଚ୍ଛା ତ ପାରଳାର ଅଧିବାସୀ । ବୀର, ରୌଦ୍ର, ଭୟାନକ, କରୁଣ ଓ ଶାନ୍ତ ରସ ସହିତ ବିବିଧ ଆକର୍ଷଣୀୟ ଦୃଶ୍ୟ ପରିବେଷଣର ଅବକାଶ ଥିବା ଯୋଗୁଁ ପାର୍ଶ୍ୱବର୍ତ୍ତୀ ରାଜାମାନେ ନିଜ ନିଜ ରାଜସଭାର ପଣ୍ଡିତମାନଙ୍କ ଦ୍ୱାରା ଏହାର ଭିନ୍ନ ଭିନ୍ନ ରୂପ ପ୍ରସ୍ତୁତ କରାଇଛନ୍ତି । ମଞ୍ଜୁଷା, ସୁରଙ୍ଗୀ, ଖେମୁଣ୍ଡି, ଧରାକୋଟ ପ୍ରଭୃତିର ଶାସକମାନଙ୍କ ପୃଷ୍ଠପୋଷକତାରେ ନାଟକଟିକୁ ଅଧିକ ଆକର୍ଷଣୀୟ କରିବାପାଇଁ ମୂଳ ପାଣ୍ଡୁଲିପିରେ ପରିବର୍ତ୍ତନ ଅଣାଯାଇଛି । ଏ ଦିଗରେ ନାଟ୍ୟଗୁରୁମାନଙ୍କ ଭୂମିକା ମଧ କମ୍ ନୁହେଁ । ଉତ୍ସବ ଓ ଯାତ୍ରାକାଳୀନ ପରିବେଶକୁ ଅଧିକ ବର୍ଣ୍ଣାଢ୍ୟ ଓ ସରଗରମ କରିବାପାଇଁ ସାଧାରଣତଃ ଦୁଇଟି ନାଟ୍ୟଦଳକୁ ଏକ ସମୟରେ ନାଟକ ପ୍ରଦର୍ଶନ ନିମିତ୍ତ ସୁଯୋଗ ଦେଇ ଏକ ପ୍ରତିଦ୍ୱନ୍ଦ୍ୱିତାମୂଳକ ପରିବେଶ ସୃଷ୍ଟି କରାଯାଇଥାଏ । ଫଳରେ ନାଟ୍ୟଗୁରୁମାନେ ନିଜ ନିଜ ନାଟକକୁ ଅଧିକ ଆକର୍ଷଣୀୟ କରିବାପାଇଁ ବହୁ ଅଭିନବ ଉପାଦାନ ସଂଯୋଜନା କରିଥାନ୍ତି । ରାମଲୀଳା, କୃଷ୍ଣଲୀଳା

ପ୍ରଭୃତି ପରି ଏହା ମଧ୍ୟ ଅତୀତରେ ସାତୋଟି ରାତିରେ ଏବଂ ପ୍ରାୟ ପଚାଶ ଘଣ୍ଟାରେ ପ୍ରଦର୍ଶିତ ହେଉଥିଲା । ବିଶାଖପାଟଣା ସହରରେ ରାମଲୀଳା ଜୟପୁରୁ ମହାରାଜା ବିକ୍ରମଦେବ ବର୍ମାଙ୍କ ଆନୁକୂଲ୍ୟରେ ଗୋଟିଏ ମାସ ଧରି ଅଭିନୀତ ହେଉଥିବା ଏବେ ମଧ୍ୟ ଜନସ୍ମୃତିରେ ଜାଗ୍ରତ ଅଛି ।

ଲୋକନାଟକଟିର ଲୋକପ୍ରିୟତା ଉପଲବ୍ଧ କରି ନିଜର ଅଭିଳାଷ ପୂରଣ ପାଇଁ ପଦ୍ମନାଭ ନାରାୟଣ ଏହାର କଥାବସ୍ତୁକୁ ହିଁ ଏକରାତ୍ର ଅଭିନୟୋପଯୋଗୀ ଆଧୁନିକ ନାଟକ ରୂପ ଦେବା ପାଇଁ ଚିନ୍ତା କରିଛନ୍ତି । ଏଥିରେ ଲୋକନାଟ୍ୟ, ସଂସ୍କୃତ ନାଟକ ଏବଂ ଆଧୁନିକ ନାଟକର ଏକ ସମନ୍ୱିତରୂପ ଦେଖିବାକୁ ମିଳେ । ଆଧୁନିକ ନାଟକ ପରି ଏହା ପାଞ୍ଚଅଙ୍କ ବିଶିଷ୍ଟ । ପ୍ରଥମ ଅଙ୍କ ଚାରୋଟି, ଦ୍ୱିତୀୟ ଅଙ୍କ ପାଞ୍ଚୋଟି, ତୃତୀୟ ଅଙ୍କ ଚାରୋଟି, ଚତୁର୍ଥ ଅଙ୍କ ଚାରୋଟି ଏବଂ ପଞ୍ଚମ ଅଙ୍କ ପାଞ୍ଚୋଟି ଦୃଶ୍ୟରେ ବିଭକ୍ତ । ନାଟକୀୟ ବିଷୟବସ୍ତୁକୁ ସୁନିର୍ଦ୍ଦିଷ୍ଟଭାବେ ଗତିଶୀଳ କରାଇବା ଏବଂ ମଞ୍ଚସଜ୍ଜାରେ ସହାୟକ ହେବା ଦିଗରେ ଏହି ଅଙ୍କ ଓ ଦୃଶ୍ୟ ବିଭାଜନ ଯେପରି ସହାୟକ ହେବ ତା' ପ୍ରତି ନାଟ୍ୟକାର ସଚେତନ । ଗଦ୍ୟ ସଂଳାପପ୍ରତି ଲେଖକ ଗୁରୁତ୍ୱାରୋପ କରିବାପାଇଁ ଉଦ୍ୟମ କରିଥିଲେ ସୁଦ୍ଧା ଦର୍ଶକୀୟ ଆବେଦନକୁ ଦୃଷ୍ଟିରେ ରଖି ସଙ୍ଗୀତ ବାହୁଲ୍ୟକୁ ପରିହାର କରିପାରିନାହାଁନ୍ତି । ନାଟକର ସମାପ୍ତି ବେଳକୁ ବିଦୂଷକ ମୁଖରେ ନାଟ୍ୟକାର ସଙ୍ଗୀତର ଆବଶ୍ୟକତା ସୂଚାଇ ଦେଇଛନ୍ତି-

ବିଦୂଷକ- ମହାରାଜ ! ଆଜି ଦିନପରି ଆନନ୍ଦର ଦିନ ମୋ ଜୀବନରେ କସ୍ମିନକାଳେ ଘଟିନଥିଲା । ଏଣିକି ଘଟିବ ନାହିଁ । ଅବଶ୍ୟ ମହାରାଜ ଜାଣନ୍ତି-''ଆନନ୍ଦ ଦିନରେ ସୁଖିନୋ ସୁଖିକାରୀ ।'' ସଙ୍ଗୀତର କିଛି ଚର୍ଚ୍ଚା ହେଲେ ଭଲ ହେବ । ମହାରାଜ ! ନର୍ତ୍ତକୀଦଳ ମଧ୍ୟ ଏହିଠାରେ ଅଛନ୍ତି । ଆଜ୍ଞା ହେଲେ ନୃତ୍ୟ ଗାନାଦି କରିବେ ।''

ନାଟକଟିର ପ୍ରସ୍ତାବନାରେ ଆଠୋଟି, ପ୍ରଥମ ଅଙ୍କରେ ତେରଟି, ଦ୍ୱିତୀୟ ଅଙ୍କରେ ଷୋଳଟି, ତୃତୀୟ ଅଙ୍କରେ ତିନୋଟି, ଚତୁର୍ଥ ଅଙ୍କରେ ଷୋଳଟି ଏବଂ ପଞ୍ଚମ ଅଙ୍କରେ ଚାଳିଶିଟି ବିଭିନ୍ନ ରାଗ-ତାଳ ସମନ୍ୱିତ ସଙ୍ଗୀତ ସ୍ଥାନ ପାଇଛି । ଅବଶ୍ୟ ନାଟ୍ୟକାର ଅଧିକାଂଶକୁ ସ୍ତୁତି, ସ୍ତୋତ୍ର, ଜଣାଣ, ଭଜନର ଆବଶ୍ୟକତାଥିବା ସ୍ଥଳେ ସଂଯୋଜନା କରିଛନ୍ତି । ପରବର୍ତ୍ତୀ ନାଟକ ଗୁଡ଼ିକରେ ସଙ୍ଗୀତର ସଂଖ୍ୟା ହ୍ରାସ ପାଇଥିବା ଲକ୍ଷ୍ୟ କରାଯାଏ ।

ଲୋକ ନାଟକ ଅନୁସରଣରେ ସଙ୍ଗୀତ ବାହୁଲ୍ୟ କେବଳ ନୁହେଁ ପ୍ରସ୍ତାବନାରେ ବିଷ୍ଣୁଙ୍କ ସ୍ତୁତି ସହିତ ଗଣେଶଙ୍କ ଏବଂ ସରସ୍ୱତୀଙ୍କୁ ମଧ୍ୟ ମଞ୍ଚ ଉପରକୁ ଆଣି ସେମାନଙ୍କ

ସ୍ତୁତିଗାନ ସହିତ ଆଶୀର୍ବାଦ ଭିକ୍ଷା କରାଯାଇଛି । ଲୋକନାଟ୍ୟ ପରମ୍ପରାରେ ଚରିତ୍ରମାନେ ରଙ୍ଗସ୍ଥଳକୁ ଆସିଲାବେଳେ ଗାହକମାନେ ସଙ୍ଗୀତ ମାଧ୍ୟମରେ ସେମାନଙ୍କ ପରିଚୟ ଦେଇଥାଆନ୍ତି କିମ୍ବା ନିଜେ ଚରିତ୍ର ନିଜର ପରିଚୟ ଦେଇଥାଏ, କିନ୍ତୁ ଆଧୁନିକ ନାଟକରେ ଏହା ଅସ୍ୱାଭାବିକ । ଚରିତ୍ରର ବେଶଭୂଷା, ଆଚାରବ୍ୟବହାରରୁ ଦର୍ଶକ ତା'ର ପରିଚୟ ପାଇଥାଏ । ଆଲୋଚ୍ୟ ନାଟକରେ କିନ୍ତୁ ଲୋକନାଟକ ଦେଖି ଆସୁଥିବା ଦର୍ଶକ ମଣ୍ଡଳୀର ମାନସିକତାକୁ ଦୃଷ୍ଟିରେ ରଖି ନାଟ୍ୟକାର ନେପଥ୍ୟରୁ 'ରାକ୍ଷସାଧିପ ହିରଣ୍ୟକଶିପୁ ସଭାକୁ ଆସଇ'' ଏବଂ ''ସହି ସହିତରେ ଘେନି । ଲୀଳାବତୀ ଆସଇ'' ସଙ୍ଗୀତ ମାଧ୍ୟମରେ ଉଭୟ ଚରିତ୍ରର ଆଗମନ ବାର୍ତ୍ତା ସୂଚାଇଛନ୍ତି । ହିରଣ୍ୟକଶିପୁର ରୂପ ଓ ଯଶୋବର୍ଣ୍ଣନା ଲୋକନାଟକର ଅନୁରୂପ । ପୁଣି ଦର୍ଶକମାନଙ୍କୁ ସ୍ତବ୍ଧ କରି ସେମାନଙ୍କୁ ଅଭିନୟ ସହିତ ଏକୀଭୂତ କରାଇବାପାଇଁ ନାଟ୍ୟାରମ୍ଭରେ ଦୀର୍ଘ ସମାସ ବହୁଳ ଶବ୍ଦାଡ଼ମ୍ବରପୂର୍ଣ୍ଣ କ୍ଲିଷ୍ଟ ଏବଂ ଦୀର୍ଘ ସଂଳାପ ଲୋକ ନାଟ୍ୟକାର ସଂଯୋଜନା କରିଥାନ୍ତି । ଦୁଆରୀର ଓଡ଼ିଆ-ତେଲୁଗୁ-ହିନ୍ଦି-ପାର୍ଶୀ ମିଶ୍ରିତ ବିକୃତ ଭାଷା ବିନ୍ୟାସ ମଧ୍ୟ ଏଥିପାଇଁ ସହାୟକ ହୋଇଥାଏ । ସାଧାରଣୀକରଣ ବ୍ୟାପାରର ଏହାହିଁ ତ ପ୍ରଥମ ପର୍ଯ୍ୟାୟ । ସେହି ପରମ୍ପରାକୁ ରକ୍ଷା କରି ପଦ୍ମନାଭ ମଧ୍ୟ ନାନ୍ଦିଗାନପରେ ସୂତ୍ରଧାରର ସଂଳାପକୁ ଅନୁରୂପ କରିବାପାଇଁ ପ୍ରୟାସ କରିଛନ୍ତି । ଏ ପ୍ରକାର ପାଣ୍ଡିତ୍ୟପୂର୍ଣ୍ଣ ସଂଳାପ ଏବଂ ଗୌଡ଼ୀରୀତି ନିବଦ୍ଧ ଶ୍ଳୋକାବଳି ପ୍ରତିଦ୍ୱନ୍ଦ୍ୱୀ ଅନ୍ୟ ଦଳର ପ୍ରଯୋଜକ ଏବଂ ଦର୍ଶକମାନଙ୍କୁ ପ୍ରଭାବିତ କରିବାପାଇଁ ସଂଯୋଜନା କରାଯାଇଥାଇପାରେ । ହିରଣ୍ୟକଶିପୁ ନିଜର ପୌରୁଷ ଏବଂ ପାଣ୍ଡିତ୍ୟ ପ୍ରଦର୍ଶନ କରି ଦର୍ଶକମାନଙ୍କୁ ବିସ୍ମିତ କରିବାପାଇଁ ସଂସ୍କୃତ ଶ୍ଳୋକ କିମ୍ବା ସଂସ୍କୃତ ଛନ୍ଦରେ ରଚିତ ଓଡ଼ିଆ ପଦ୍ୟ ଉଚ୍ଚାରଣ କରିଥାଏ । ଆଲୋଚ୍ୟ ସଙ୍ଗୀତ ପ୍ରହ୍ଲାଦ ନାଟକରେ ମଧ୍ୟ ନାଟ୍ୟକାର ଏହାକୁ ଗ୍ରହଣ କରିଛନ୍ତି ।

ଲୋକ ନାଟକର ପ୍ରସ୍ତାବନା ସଂସ୍କୃତ ବିଦଗ୍ଧ ନାଟକର ପ୍ରସ୍ତାବନାର ପ୍ରତ୍ୟକ୍ଷ ଅନୁସରଣ ନ ହେଲେ ସୁଦ୍ଧା ପଦ୍ମନାଭ ନିଜ ନାଟକରେ ଏ ଉଭୟର ସମନ୍ୱୟ କରିବାପାଇଁ ପ୍ରୟାସ କରିଛନ୍ତି । ପରବର୍ତ୍ତୀ ନାଟକଗୁଡ଼ିକରେ କେବଳ ସଂସ୍କୃତ ନାଟକର ଶୈଳୀ ପରିଗୃହୀତ । ଏପରିକି ଭରତ ବାକ୍ୟ ଦେବାପାଇଁ ମଧ୍ୟ ଏଥିରେ ନାଟ୍ୟକାର ବିସ୍ମୃତ ହୋଇନାହାଁନ୍ତି ।

ଉଲ୍ଲିଖିତ ତ୍ରିବିଧ ଶୈଳୀକୁ ସମନ୍ୱିତ କରି ପ୍ରାୟ ପଚାଶ ଘଣ୍ଟାରେ ପ୍ରଦର୍ଶନ କରାଯାଉଥିବା ପ୍ରହ୍ଲାଦ ନାଟକକୁ ଏକ ରାତ୍ରାଭିନୟୋପଯୋଗୀ ସଙ୍ଗୀତ ପ୍ରହ୍ଲାଦ ନାଟକରେ ରୂପାୟନ କରି ନାଟ୍ୟକାର ପଦ୍ମନାଭ ନାରାୟଣ ଦେବ ଯେ ନିଜର ପ୍ରଚଣ୍ଡ ପ୍ରତିଭାର ପରିଚୟ ଦେଇଛନ୍ତି, ଏଥିରେ ଦ୍ୱିମତ ହେବାର ଅବକାଶ ନାହିଁ । ଏହାର ନାଟକୀୟ ସୌନ୍ଦର୍ଯ୍ୟ

ଏବଂ ଶିଳ୍ପ କୌଶଳ ସମ୍ପର୍କରେ ବିସ୍ତୃତ ଆଲୋଚନା କରିବାର ଅବସର ଏଠାରେ ନାହିଁ । କିନ୍ତୁ ନାଟକଟିର ଭାଷାକୁ ଧରି ବିଭିନ୍ନ ପତ୍ରିକାର ସମ୍ପାଦକ ଏବଂ ରାଜକୁମାରଙ୍କ ନାଟକ ଶିକ୍ଷାଗୁରୁ ଶ୍ୟାମସୁନ୍ଦର ରାଜଗୁରୁଙ୍କ ମଧ୍ୟରେ ଯେଉଁ ବାଦପ୍ରତିବାଦ ସୃଷ୍ଟି ହୋଇଥିଲା, ତାହା ଅତୀବ କୌତୂହଳପ୍ରଦ ଏବଂ ଓଡ଼ିଆ ଭାଷାର ବିକାଶ ଆଲୋଚନାପାଇଁ ଅତ୍ୟନ୍ତ ଉପାଦେୟ । **ସଂକ୍ଷିପ୍ତ ଆଲୋଚନା** ସ୍ତମ୍ଭରେ **ଉତ୍କଳ ସାହିତ୍ୟ** ପତ୍ରିକାର ସମ୍ପାଦକ ବରେଣ୍ୟ ସାହିତ୍ୟିକ ସ୍ୱର୍ଗତ ବିଶ୍ୱନାଥ କର ମନ୍ତବ୍ୟ ଦେଇଥିଲେ-

> *ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ ଦ୍ୱାରା ବିରଚିତ । ରାଜକୁମାର ମହୋଦୟ ଉତ୍କଳ ସାହିତ୍ୟ କ୍ଷେତ୍ରରେ ସୁପରିଚିତ ହୋଇଅଛନ୍ତି । ସେ କେବଳ ଅନ୍ୟକୁ ଉତ୍ସାହ ଦେଇ ନିଶ୍ଚିନ୍ତ ନୁହଁନ୍ତି, ସ୍ୱୟଂ ପରମ ଉତ୍ସାହରେ ଓ ପ୍ରଗାଢ଼ ଅନୁରାଗରେ ସାହିତ୍ୟ ସେବାରେ ପ୍ରବୃତ୍ତ ହୋଇଅଛନ୍ତି । ଇତିପୂର୍ବେ ସେ କେତେଖଣ୍ଡି ପୁସ୍ତକ ପ୍ରକାଶ କରି ଉତ୍କଳୀୟ ପାଠକ ସାଧାରଣଙ୍କୁ ଉପହାର ଦେଇଥିଲେ । ବର୍ତ୍ତମାନ ପାରଳାଖେମୁଣ୍ଡି ରାଜଧାନୀରେ ଗୋଟିଏ ରଙ୍ଗଭୂମି ପ୍ରତିଷ୍ଠିତ କରି ଅଭିନୟୋପଯୋଗୀ ନାଟକ ପ୍ରଣୟନରେ ମନୋନିବେଶ କରିଅଛନ୍ତି । ରାଜକୁମାର ମହୋଦୟ ପ୍ରଥମରେ ପୌରାଣିକ ବିଷୟ ଅବଲମ୍ବନରେ ନାଟକ ରଚନା କରି ସୁବୁଦ୍ଧିର ପରିଚୟ ଦେଇଅଛନ୍ତି । ସମାଲୋଚ୍ୟ ନାଟକର ବିଷୟ ସର୍ବଜନବିଦିତ । ପୁସ୍ତକଖଣ୍ଡି ଆଶାନୁରୂପ ନିର୍ଦ୍ଦୋଷ ଓ ସୁନ୍ଦର ନ ହୋଇଥିଲେ ହେଁ ଏଥିରେ ରାଜକୁମାର ମହୋଦୟଙ୍କ ପକ୍ଷରେ କୃତିତ୍ୱର ପରିଚୟ ଯଥେଷ୍ଟ ଅଛି । ନାଟକଗତ ଚରିତ୍ରଗୁଡ଼ିକ ଅତି ସ୍ୱାଭାବିକରେ ଚିତ୍ରିତ ହୋଇଅଛି । ଅବଶ୍ୟ ପୌରାଣିକ ଅତିପ୍ରାକୃତ ବିଷୟର କଥା ସ୍ୱତନ୍ତ୍ର । ଏ ନାଟକର ହିରଣ୍ୟକଶିପୁ ଯଥାର୍ଥବୀର-ବହୁ ରାଜୋଚିତ ଗୁଣରେ ଭୂଷିତ । ହିରଣ୍ୟକଶିପୁ ପ୍ରତି ଘୃଣାର ଉଦ୍ରେକ ନ ହୋଇ ବରଂ ଶ୍ରଦ୍ଧାର ସଞ୍ଚାର ହୁଏ । ଭକ୍ତି, ନିଷ୍ଠା ରାକ୍ଷସ ରାଜଠାରେ ଊଣା ନଥିଲା, ମାତ୍ର ସବୁ ସକାମ ଯୋଗ, ତପସ୍ୟା ସବୁ ଐଶ୍ୱର୍ଯ୍ୟ କାମନାରେ । ପ୍ରହ୍ଲାଦ ଉପଯୁକ୍ତ ଜନକର ଉପଯୁକ୍ତ ବଂଶଧର । ପ୍ରହ୍ଲାଦର ଭକ୍ତି ଅହେତୁକୀ-ଭକ୍ତ ବାଳକ ପ୍ରହ୍ଲାଦର ଚିତ୍ର କି ମନୋହର କି ହୃଦୟଗ୍ରାହୀ । ପ୍ରହ୍ଲାଦଜନନୀ ଲୀଳାବତୀଙ୍କ ଚିତ୍ରଟି ଆଶାନୁରୂପ ହୋଇଅଛି । ଭକ୍ତ ପ୍ରସବିନୀର ସରଳତା ଓ ମହତ୍ତ୍ୱ ତାଙ୍କ ଚରିତ୍ରରେ ସର୍ବତ୍ର ପ୍ରସ୍ଫୁଟିତ ହୋଇଅଛି । ଅପରାପର ଚିତ୍ରଗୁଡ଼ିକ ମଧ୍ୟ ସ୍ଥଳରେ ମନ୍ଦ ହୋଇନାହିଁ । ପ୍ରସଙ୍ଗକ୍ରମେ ଗ୍ରନ୍ଥକାର ମହୋଦୟ ରାଜନୀତି ପ୍ରଭୃତି ବିଷୟରେ ଯେପରି ଉଚ୍ଚ ଭାବମାନ ବ୍ୟକ୍ତ କରିଅଛନ୍ତି, ସେଥିରୁ ତାଙ୍କର*

ଉନ୍ନତ ଓ ଉଦାର ହୃଦୟର ସୁନ୍ଦର ପରିଚୟ ମିଳୁଅଛି । ପୁସ୍ତକର ଭାଷା ନିର୍ଦ୍ଦୋଷ ହୋଇନାହିଁ । ତଥାପି ଅନେକ ସ୍ଥଳରେ ସୁନ୍ଦର ହୋଇଅଛି । ଦୃଷ୍ଟାନ୍ତ ଦେଖନ୍ତୁ-

''ମହାରାଜଙ୍କୁ ଏପରି ଦୁଃଖ ଆସି ଉପସ୍ଥିତ ହେବା ସମୟରେ ସିନା ତୁମେ ଧୈର୍ଯ୍ୟ ଧରି ତାଙ୍କୁ ସାନ୍ତ୍ୱନା କଲେ ଭଲ ହେବ । ନା ତୁମ୍ଭେ କାନ୍ଦି କାନ୍ଦି ମହାରାଜାଙ୍କୁ ଅଧିକ କନ୍ଦାଇବ ।'' ''ମୁଁ କିଛି ଜାଣିପାରୁ ନାହିଁ । ତାକୁ ଏ ପାଠ କିଏ ଶିଖାଇଲା ? ତାଙ୍କ ତୁଳେ ବିବାଦ କଲେ ଅନିଷ୍ଟ ଘଟିବ ବୋଇଲେ ତ ମହାରାଜ ଶୁଣୁ ନାହାଁନ୍ତି !'' ପୁସ୍ତକରେ ଅନେକଗୁଡ଼ିଏ ସଙ୍ଗୀତ ସନ୍ନିବେଶିତ ହୋଇଅଛି । ଅନେକ ସ୍ଥଳରେ ସଙ୍ଗୀତର ଭାଷା ସରଳ ଓ ସୁନ୍ଦର । ଦୃଷ୍ଟାନ୍ତ ଦେଖନ୍ତୁ-

କହିଲେ ଯେତେ ପରି ହୋଇ ବାରଣ ପରି
ଘେନୁ ନାହୁଁ ତୁ କିଞ୍ଚିତରେ,
କେ ତୋତେ ଶିଖାଇଲା ଆରେ ମୋ ଗଳାମାଳା
ନିରତେ ଭଜୁ ରମା ସାଇଁକିରେ ।

ଅନ୍ୟତ୍ର- ଦେଲିଣି କେତେ ଦଣ୍ଡ କେଡ଼େ ନିର୍ଲଜ୍ଜ ପିଣ୍ଡ
ଆହୁରି ସେହି କଥା କହୁଛି ମୋ ଆଗରେ,
ଛାଡ଼ିବା ଥାଉ ଦୂରେ ଛଳାଇବା ଭଙ୍ଗିରେ
ସ୍ମରଣ କର ବୋଲି ମୋତେ ଫେରି ତିଆରେ ।

ସଙ୍ଗୀତଗୁଡ଼ିକର ଅଧିକାଂଶ ସ୍ଥଳ ଏହିପରି । ଭାଷାର ଗୁଣର କଥା କହିଲୁଁ ଦୋଷେ ମଧ୍ୟ ଅଳ୍ପ ନୁହେଁ । ପ୍ରଥମ କଥା, କେତେକ ସ୍ଥଳରେ ନିତାନ୍ତ ସଂସ୍କୃତିଆ ପଣ୍ଡିତଙ୍କ ଭାଷା ବ୍ୟବହୃତ ହୋଇଅଛି । ପୁସ୍ତକାରମ୍ଭରେ ଦୀର୍ଘ ସମାସଯୁକ୍ତ କଡ଼ମଡ଼ିଆ ଶବ୍ଦଗୁଡ଼ିକ ତାହାର ଜ୍ୱଳନ୍ତ ଦୃଷ୍ଟାନ୍ତ । ଦ୍ୱିତୀୟ କଥା ପ୍ରାଦେଶିକତା । 'ଆମ୍ଭେ-ମାନେ ଯେ କଷ୍ଟ ପଡୁଅଛୁଁ', 'ତୁ ତାକୁ ଡାକିଆଣେ', 'ଶୀଘ୍ରେ ଦୂର ହୁଅ', 'ହେଟି', 'କୋପର ମୂର୍ତ୍ତି', 'କୋଆଡ଼େ' ଇତ୍ୟାଦି । 'ଯେ ଆଜ୍ଞା', 'ଏକବାରେ', 'କେ ଜାଣେ', 'ଏପରି ସ୍ଥଳେ' ଏପରି ପ୍ରୟୋଗମାନ ବିଶୁଦ୍ଧ ଓଡ଼ିଆ ନୁହେ । 'ଭ୍ରାତୃହତ୍ୟା ଦୁଃଖରେ', 'ରାଜା ଅନ୍ତପୁର ଆଡ଼େ ଗମନ', 'ଦାର୍ଢ୍ୟତା', 'ନିକ୍ଷିପ୍ତ କରିବା' ଇତ୍ୟାଦି ବ୍ୟାକରଣ ନିୟମ ବିରୁଦ୍ଧ । ତଦୁପରି ମୁଦ୍ରାକର ପ୍ରମୋଦ

*ଅତ୍ୟନ୍ତ ଅଧିକ । ଏହା ଗଜପତି ପ୍ରେସ୍ ପକ୍ଷରେ ନିତାନ୍ତ ନିନ୍ଦାର କଥା । ଆମ୍ଭେମାନେ ଏକାନ୍ତ ଆଶା କରୁଁ ରାଜକୁମାର ମହୋଦୟ କ୍ରମେ ଏ ସମସ୍ତ ଦୋଷ ପରିହାର କରିପାରିବେ ଏବଂ ସରଳ ଶୁଦ୍ଧ ଭାଷାରେ ସୁରୁଚି ସମ୍ମତ ନାଟକମାନ ପ୍ରଣୟନ କରି ସାହିତ୍ୟ ସଂସାରରେ ଅକ୍ଷୟକୀର୍ତ୍ତି ସ୍ଥାପନ କରିବେ । (୫ମ ଭାଗ/୯ମ ସଂଖ୍ୟା)*

ଏଥିରେ ଆଧୁନିକ ନାଟକ ରଚନା କରିଥିବା ଯୋଗୁଁ ସମ୍ପାଦକ ନାଟ୍ୟକାରଙ୍କ ପ୍ରଶଂସା କରିବା ସହିତ ଭାଷା ପ୍ରୟୋଗରେ ଆଞ୍ଚଳିକତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । ଅନୁରୂପ ଭାବେ ସେହି କଟକରୁ ପ୍ରକାଶ ପାଉଥିବା ଅନ୍ୟତମ ସାପ୍ତାହିକ ପତ୍ରିକାର ନାଟକ ଓ ସଙ୍ଗୀତପ୍ରେମୀ ସୁଯୋଗ୍ୟ ସମ୍ପାଦକ ଗୌରୀଶଙ୍କର ରାୟ ନାଟକଟିର ପ୍ରାପ୍ତି ସ୍ୱୀକାର କରି ଆନନ୍ଦ ପ୍ରକାଶ କରିବା ସହିତ ଦକ୍ଷିଣୀ ଭାଷା ଦୋଷପ୍ରତି ଆକ୍ଷେପ କରିଥିଲେ । ଏହା ନିମ୍ନଲିଖିତ ଭାବେ **ଉତ୍କଳ ଦୀପିକାର** ଭା୩୭/୭ ସଂଖ୍ୟା ତା୧୫।୨।୧୯୦୨ରେ ପ୍ରକାଶ ପାଇଥିଲା ।-

*ସଙ୍ଗୀତ ପ୍ରହ୍ଲାଦ ନାଟକ-ଶ୍ରୀପଦ୍ମନାଭ ନାରାୟଣ ଦେବଙ୍କଦ୍ୱାରା ବିରଚିତ ଓ ପାରଳାଖେମୁଣ୍ଡିର ଗଜପତି ଯନ୍ତ୍ରାଳୟରେ ମୁଦ୍ରିତ । ଏହା ବଡ଼ ଆଡ଼ାର ପୃ ୧୦୨ଷ୍ଠା । ରାଜ ବଂଶୀୟଙ୍କ ମଧ୍ୟରେ ନାଟକ କ୍ଷେତ୍ରରେ ଆମ୍ଭେମାନେ ପ୍ରଥମେ ଖଡ଼ିଆଳ ରାଜକୁମାରଙ୍କୁ ସେଦିନ ଦେଖିଥିଲୁ । ତାଙ୍କ ପ୍ରଣୀତ 'ପ୍ରେମଲତା' ନାଟକ ପାଠକରି ପ୍ରୀତି ଲାଭ କରିଅଛୁଁ । ବର୍ତ୍ତମାନ ପାରଳାଖେମୁଣ୍ଡିର ରାଜକୁମାରଙ୍କୁ ସମାଲୋଚ୍ୟ ନାଟକ ସହିତ ଉପସ୍ଥିତ ହେବାର ବଡ଼ ଆନନ୍ଦର ବିଷୟ । ରାଜକୁମାରମାନେ ନାଟକ ରଚନା କରିବାରେ ପ୍ରବୃତ୍ତ ହୋଇଥିବା ସ୍ଥଳେ ଅଚିରେ ଦେଶରେ ସ୍ଥାୟୀ ନାଟ୍ୟଶାଳା ସ୍ଥାପିତ ହେବାର ସମ୍ଭବ । ନାଟକ ଦୃଶ୍ୟକାବ୍ୟ ଏବଂ ତହିଁରେ ଅଭିନୟ ନ ହେଲେ ତାହା ଅକର୍ମଣ୍ୟ କାରଣ ଅଭିନୟଦ୍ୱାରା ହିଁ ନାଟକର ଭାବ ସମ୍ୟକ୍ ରୂପେ ପ୍ରତ୍ୟକ୍ଷ ହୁଏ । ଓଡ଼ିଶା ପରି ଗରୀବ ଦେଶରେ ରାଜକୁମାରମାନେ କୃତସଂକଳ୍ପ ହୋଇ ସ୍ଥାୟୀ ନାଟ୍ୟଶାଳାର ସୂତ୍ରପାତ କରି ନିଜର ଏବଂ ଅନ୍ୟର ରଚିତ ନାଟିକା ଅଭିନୟ ଦେଖାଇବାର ଚେଷ୍ଟା ନ କଲେ ଆଉ କିଏ ତାହା କରିବାକୁ ସମର୍ଥ ହେବ ? ସମାଲୋଚ୍ୟ ନାଟକଟି ଗୀତିନାଟ୍ୟ ଏବଂ ଅନେକ ରାଗ ରାଗିଣୀ ଓ ତାଳ ଦକ୍ଷିଣ ଅଥବା ପ୍ରକୃତ ଓଡ଼ିଆ ରୀତିରେ ଖଞ୍ଜା ହୋଇଅଛି । ଦୁଃଖର ବିଷୟ ଯେ ଓଡ଼ିଆ ସଂଗୀତର ସ୍ଥାନ ଏ ଅଞ୍ଚଳରେ ଊଣା ପଡୁଅଛି ଏବଂ ସାଧାରଣ ରୁଚି ଉତ୍ତର*

*ପଶ୍ଚିମ ବା ବଙ୍ଗଳା ଦିଗକୁ ଧାଉଁ ଅଛି । ନାଟକଗତ ବିଷୟଟି ଭକ୍ତି ରସାତ୍ମକ ଏବଂ ସେହି ରସ ଉଦ୍ଦୀପନା ଅପେକ୍ଷା ସଂଗୀତ ପ୍ରତି ଅଧିକ ଢଳିବାରୁ ସମ୍ଭବତଃ ନାଟକର ଚରିତ୍ର ଚିତ୍ରରେ କିଛି ତ୍ରୁଟି ଲକ୍ଷିତ ହେଉଅଛି । ପୌରାଣିକ ବୃତ୍ତାନ୍ତ ମଧ ଠିକ୍ ରକ୍ଷା ହୋଇ ନାହିଁ ଏବଂ ଦକ୍ଷିଣୀ ଭାଷାଦୋଷ ଅନେକ ସ୍ଥଳେ ରହି ଯାଇଅଛି । ବିଷ୍ଣୁ ପୁରାଣରୁ ଲେଖକ ବୃତ୍ତାନ୍ତଟି ଘେନି ଥିବାର ପ୍ରକାଶ କରିଅଛନ୍ତି ମାତ୍ର ବିଷ୍ଣୁ ପୁରାଣର ବର୍ଣ୍ଣନାନୁସାରେ ଗ୍ରନ୍ଥ ଲେଖା ହୋଇନାହିଁ । ବିଷ୍ଣୁ ପୁରାଣରେ ସ୍ତମ୍ଭରୁ ନୃସିଂହ ବାହାରିବାର କଥା ନାହିଁ । ତହିଁର ପ୍ରଥମାଂଶ ବିଂଶାଧାୟରେ ସମୁଦ୍ର ଗର୍ଭରୁ ପ୍ରହ୍ଲାଦ ଉଠି ଆସିଲା ପରେ ହିରଣ୍ୟକଶିପୁ ଆପଣା ଅସଦ୍‌ବ୍ୟବହାର ମନେକରି ପ୍ରହ୍ଲାଦଙ୍କ ପ୍ରତି ଉତ୍ପୀଡ଼ନ ଛାଡ଼ି ଦେଇ ପ୍ରୀତିମାନ୍ ହୋଇ ଅନୁତାପ କରେ । ପରେ ନୃସିଂହ ରୂପ ହରି ତାଙ୍କୁ ନାଶ କଲେ ଏବଂ ଟୀକାକାର ଲେଖିଲେ ''କାଳାନ୍ତରେ'' ହରି ନାଶ କଲେ । ତେବେ ଶ୍ରୀମଦ୍ ଭାଗବତର ସପ୍ତମ ସ୍କନ୍ଧରେ ଏ ବର୍ଣ୍ଣନା ଅଛି ଏବଂ ସମ୍ଭବତଃ ତାହାକୁ ଅବଲମ୍ବନ କରି ଲେଖକ ଲେଖିଅଛନ୍ତି । ଶ୍ରୀମଦ୍ ଭାଗବତରେ ହିରଣ୍ୟକଶିପୁ ସ୍ତମ୍ଭରେ ମୁଷ୍ଟି ପ୍ରହାର କରିଥିବାର ଲେଖାଅଛି (୭ମ ସ୍କନ୍ଦ ୮ମ ଅଧାୟ) ସ୍ଥୂଳରେ ନାଟକ ଖଣ୍ଡିକ ପାଇ ଯେତେ ଆନନ୍ଦ ଲାଭର ଆଶା କରିଥିଲୁଁ ପାଠକରି ତେତେ ପାଇଲୁ ନାହିଁ । ଭରସା କରୁଁ ଗ୍ରନ୍ଥକାର ଆମ୍ଭମାନଙ୍କ କଥାରେ ବିରକ୍ତ ନ ହୋଇ ଆପଣାର ରଚନାର ଉନ୍ନତି କରିବାରେ ଯତ୍ନଶୀଳ ହେବେ ।*

ଦକ୍ଷିଣୀ ଭାଷା ପ୍ରତି କଟକ ସମ୍ପାଦକମାନଙ୍କ ଏ ପ୍ରକାର ଅଭିମତ ନାଟକଟିକୁ ସଂଶୋଧନ କରିଥିବା ଏବଂ ଭାଷାର ସ୍ୱାଭାବିକ ବିକାଶ ପ୍ରତି ସଚେତନ ଥିବା ଶ୍ୟାମ ସୁନ୍ଦର ରାଜଗୁରୁଙ୍କୁ ବ୍ୟଥିତ କରିଥିଲା । ସେ ଏହାର ପ୍ରତିବାଦ କରି ସମ୍ପାଦକଙ୍କୁ ଏକ ପତ୍ର ଲେଖିଥିଲେ । ତାହା **ଉତ୍କଳ ଦୀପିକା**ର ତା୨୬।୪।୧୯୦୨ ଅତିରିକ୍ତ ସଂଖ୍ୟାରେ ସମ୍ପାଦକ ପ୍ରକାଶ କରିଥିଲେ-

### *ପ୍ରେରିତ ପତ୍ର*

*ମହାଶୟ,*

*ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କଦ୍ୱାରା ବିରଚିତ ସଙ୍ଗୀତ ପ୍ରହ୍ଲାଦ ନାଟକ ସମାଲୋଚନା କରି ଆପଣ ଲେଖିଅଛନ୍ତି- ''ନାଟକଗତ ବିଷୟଟି ଭକ୍ତି ରସାତ୍ମକ ଏବଂ ସେହି ରସ ଉଦ୍ଦୀପନ ଅପେକ୍ଷା ସଙ୍ଗୀତ ପ୍ରତି ଅଧିକ ଢଳିବାରୁ ସମ୍ଭବତଃ*

ନାଟକର ଚରିତ୍ର ଚିତ୍ରରେ କିଛି ତ୍ରୁଟି ଲକ୍ଷିତ ହେଉଅଛି ।'' ସଙ୍ଗୀତ ଭକ୍ତିରସ ଉଦ୍ଦୀପନାର ପ୍ରତିବନ୍ଧକ ବୋଲି ଆମ୍ଭେ ଆଜି ପର୍ଯ୍ୟନ୍ତ କାହାଠାରୁ ଶୁଣି ନ ଥିଲୁଁ । ସଙ୍ଗୀତ ଶାସ୍ତ୍ରବେତ୍ତାମାନେ କହିଅଛନ୍ତି ଓ ଅନେକ ଲୋକ ସ୍ୱୀକାର କରିଅଛନ୍ତି ସଙ୍ଗୀତ ସମସ୍ତ ପ୍ରକାର ଭାବର ପ୍ରଧାନ ଉତ୍ତେଜକ । ଯଦି ସଙ୍ଗୀତର ଏହି ଗୁଣ ନଥାନ୍ତା, ତେବେ ନାନା ଧର୍ମାବଲମ୍ବୀମାନେ ସଙ୍ଗୀତକୁ ନିଜ ନିଜ ଦୈବ ପ୍ରାର୍ଥନାର ପ୍ରଧାନ ଅଙ୍ଗ କରି କାହିଁକି ନେଇଥାନ୍ତେ ? ଅନ୍ୟାନ୍ୟ ଭାଷାରେ ଏପରି ଭକ୍ତି ରସାତ୍ମକ ନାଟକ ରାଗ ରାଗିଣୀରେ କାହିଁକି ଲେଖା ହୋଇଥାନ୍ତା ? ବୋଧକରୁଁ ଆପଣଙ୍କ ଅଞ୍ଚଳରେ ସଙ୍ଗୀତର ଜ୍ଞାନ ଊଣା ପଡୁଥିବାରୁ ଆପଣ ଏପରି ଲେଖିଅଛନ୍ତି, ନୋହିଲେ କି ଯେଉଁ ସଙ୍ଗୀତ ଶିଶୁ ପଂଶିମୋଦୀ ଓ ଯାହାର ଅଭାବରେ ମନୁଷ୍ୟ ପଶୁ ସମାନ ବୋଲାଯାଏ ସେହି ସଂଗୀତ ପ୍ରତି ଅଧିକ ଢଳିବାରୁ ଭକ୍ତିରସ ଉଦ୍ଦୀପନରେ ତ୍ରୁଟି ଦେଖାଯିବାର ଆପଣ କହନ୍ତେ ?

ଆପଣ ଅନ୍ୟତ୍ର ଲେଖିଅଛନ୍ତି-''ଦକ୍ଷିଣୀ ଭାଷାଦୋଷ ଅନେକ ସ୍ଥଳରେ ରହିଯାଇଛି ।'' ଏପରି ଲେଖିବାର ଉଦ୍ଦେଶ୍ୟ କଣ ? ଅମୁକ ଭାଷା ଦୋଷସଂଲଗ୍ନ, ଅମୁକ ଭାଷା ଦୋଷ ରହିତ୍ ଏହା ଜାଣିବା ସକାଶେ ଆପଣମାନେ କି ନିୟମ କରିଅଛନ୍ତି ? ନା ଆପଣ ମନେ କରିଅଛନ୍ତି କଟକ ଓଡ଼ିଆ ମାତ୍ର ବିଶୁଦ୍ଧ ଓଡ଼ିଆ ଓ ଅନ୍ୟାନ୍ୟ ଅଞ୍ଚଳର ଓଡ଼ିଆ ଓଡ଼ିଆ ନୁହେ ? ନା ପ୍ରାଦେଶିକ ବିଭିନ୍ନତା ଦେଖି ଆପଣ ଏପରି ଲେଖିଅଛନ୍ତି ? ଯଦି 'ଦକ୍ଷିଣୀ ଭାଷାଦୋଷ'ର ଅର୍ଥ ପ୍ରାଦେଶିକ ବିଭିନ୍ନତା ହୋଇଥାଏ, ତେବେ ଆମ୍ଭର କୌଣସି ଆପତ୍ତି ନାହିଁ କାରଣ ପ୍ରାଦେଶିକ ବିଭିନ୍ନତା ପ୍ରାୟ ସମସ୍ତ ଭାଷାରେ ଦେଖାଯାଏ । ବିଶେଷତଃ ଯେଉଁ ଭାଷା ଆଜି ପର୍ଯ୍ୟନ୍ତ କୌଣସି ପ୍ରକାର ନିୟମବଦ୍ଧ ହୋଇନାହିଁ, ସେହି ଭାଷାରେ ପ୍ରାଦେଶିକ ବିଭିନ୍ନତା ବାଚ୍ୟ ନୁହେ । ଏ ଅଞ୍ଚଳରେ ପ୍ରଚଳିତ କେତେକ କଥା ଆପଣମାନଙ୍କୁ ପ୍ରାଦେଶିକ ବୋଧ ହେଲେ, ଆପଣଙ୍କ ଅଞ୍ଚଳରେ ବ୍ୟବହୃତ କେତେକ କଥା ଆମ୍ଭମାନଙ୍କୁ ସେହିପରି ବୋଧହୁଏ । ଯଦି ଆପଣ କଟକ ଓଡ଼ିଆକୁ ଆଦର୍ଶ ଓଡ଼ିଆ ମନେ କରି ଦକ୍ଷିଣୀ ଓଡ଼ିଆକୁ ଦୋଷ ତଳେ ଗଣନା କରି ଅଛନ୍ତି, ତେବେ ଏହା କେବଳ ଭ୍ରମ । ଆମ୍ଭେ ଅନେକ ଦୂର ପରିଶୀଳନ କରି ଦେଖି ଅଛୁଁ ଯେଉଁ ଭାଷାରେ ଆପଣମାନେ ପୁସ୍ତକାଦି ଲେଖି ଅଛନ୍ତି ଓ ଲେଖନ୍ତି ତାହା

ସାଧାରଣତଃ ପ୍ରକୃତ ଓଡ଼ିଆ ନୁହେ, ଓଡ଼ିଆ ଭାଷା କେବଳ ସଂସ୍କୃତର ଅପଭ୍ରଂଶ ଏହି ଭ୍ରମରେ ପଡ଼ି ଆପଣମାନଙ୍କ ଲେଖନୀ ସଂସ୍କୃତ ଆଡ଼େ ପ୍ରଧାବିତ । ଆପଣମାନଙ୍କ ବର୍ଣ୍ଣଶୁଦ୍ଧି arthography ସଂସ୍କୃତ ବର୍ଣ୍ଣଶୁଦ୍ଧିର ପ୍ରତିଲିପି, ବ୍ୟାକରଣ ସଂସ୍କୃତ ବ୍ୟାକରଣର ଅବିକଳ ଅନୁବାଦ, ରଚନା ସଂସ୍କୃତ ଧାରାନୁଯାୟୀ, ଅଭିଧାନ ସଂସ୍କୃତ । ଅନ୍ତତଃ ମାତୃଭାଷାପ୍ରତି ଆପଣମାନଙ୍କର ଏତେ ହୀନଦୃଷ୍ଟି ଯେ ଯଦି କେତେକ କ୍ରିୟା ଓ କାରକର ପ୍ରତିବନ୍ଧକ ନ ଥାନ୍ତା, ଆଜିକାଲି ଆପଣଙ୍କ କୃତବିଦ୍ୟ ମଣ୍ଡଳିରେ ଓଡ଼ିଆ ଭାଷା ଶୁଣିବାକୁ ଥାନ୍ତା କି ନାହିଁ ସନ୍ଦେହ । ଏହା କେତେଦୂର ସତ୍ୟ ବିମ୍‌ସ (Beams) ସାହେବ କଟକର ଓଡ଼ିଆ ଭାଷା ବିଷୟରେ ଯାହା ଲେଖିଅଛନ୍ତି ତାହା ଆପଣ ଥରେ ପଢ଼ିଲେ ବୁଝିପାରିବେ । ଏଥିର କାରଣ ସାଧାରଣ ବ୍ୟବହୃତ ଓଡ଼ିଆ ଭାଷା ପ୍ରତି ଦୃଷ୍ଟିପାତ ନ କରି ପ୍ରାୟ ସମସ୍ତ ବିଷୟ ବଙ୍ଗଳା ଭାଷାରୁ ଅନୁବାଦ କରି ଆଣିବା ଛଡ଼ା ଆଉ କିଛି ନୁହେଁ ।

ପାରଳାଖିମଣ୍ଡି — ଆପଣଙ୍କର

୧୧.୩.୦୨ — ବଶମ୍ବଦ

ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ

ଏହି ପତ୍ରରେ ଥିବା ମନ୍ତବ୍ୟ ସମ୍ପର୍କରେ ପ୍ରତିକ୍ରିୟା ପ୍ରକାଶ କରି ସମ୍ବାଦ ସ୍ତମ୍ଭରେ **ଉତ୍କଳ ଦୀପିକା**ର ସମ୍ପାଦକ **ଭାଷା ବିଚାର** ଶୀର୍ଷକରେ ଏକ ଆଲୋଚନା ପ୍ରକାଶ କରିଛନ୍ତି । ଏଥିରେ ଭାଷାରୁ ଆଞ୍ଚଳିକତା ପରିହାର କରି ବିଶୁଦ୍ଧ ଓଡ଼ିଆ ଭାଷା ଉପରେ ଗୁରୁତ୍ୱାରୋପ କରାଯାଇଛି । ପାଠକମାନଙ୍କ ଅବଗତି ନିମନ୍ତେ ଆଲୋଚନାଟି ଏଠାରେ ସ୍ଥାନିତ କରାଗଲା-

ଭାଷା ବିଚାର

ପାରଳାଖେମୁଣ୍ଡିର ଦ୍ୱିତୀୟ ରାଜକୁମାର ଶ୍ରୀ ପଦ୍ମନାଭ ନାରାୟଣ ଭଞ୍ଜ ଦେବଙ୍କ କୃତ ସଙ୍ଗୀତ ପ୍ରହ୍ଲାଦ ନାଟକର ଆମ୍ଭେମାନେ ଯେଉଁ ସମାଲୋଚନା କରିଥିଲୁଁ ତହିଁର ସେଠାର ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ବିରକ୍ତ ହୋଇ ଖଣ୍ଡିଏ ପତ୍ର ପଠାଇଥିବାରୁ ଆମ୍ଭେମାନେ ତାହା ସାଧାରଣଙ୍କର ଅବଗତି ନିମିତ୍ତ ସ୍ଥାନାନ୍ତରେ ପ୍ରକାଶ କଲୁଁ । ସଙ୍ଗୀତ ଭକ୍ତିରସର ବିରୋଧୀ ବୋଲି ଆମ୍ଭେମାନେ କହିନାହୁଁ

*ମାତ୍ର ଚରିତ୍ର ଚିତ୍ର କରିବାଠାରୁ ସଙ୍ଗୀତ ରଚନାରେ ଅଧିକ ମନୋଯୋଗୀ ହେବାରୁ ନାଟକଟିରେ ଚରିତ୍ର ଚିତ୍ରଣରେ ତ୍ରୁଟି ଘଟିଥିବାର ଲେଖିଥିଲୁଁ । ଏ ଅଞ୍ଚଳରେ ସଙ୍ଗୀତ ଚର୍ଚ୍ଚାର ଆଦର ଜଣା ଥିଲେ ହେଁ ବୁଝିବା ଲୋକଙ୍କର ନିତାନ୍ତ ଅଭାବ ନାହିଁ । ନାଟକରେ ସଙ୍ଗୀତର ଉତ୍କର୍ଷ ଦେଖାଇବା ଅବଶ୍ୟ ନାଟକର ବଳମାତ୍ର ନାଟକର ପ୍ରଧାନ ଅଙ୍ଗ ଚରିତ୍ର ଚିତ୍ର ଏବଂ ସେଥିରେ ତ୍ରୁଟି କରିବା ଏକାନ୍ତ ଦୋଷଜନକ ଅଟେ । ପ୍ରାଦେଶିକ ଭାଷା ବ୍ୟବହାର ସମ୍ବନ୍ଧରେ ଆମ୍ଭେମାନେ ଏତିକି କହିପାରୁଁ ଯେ ସବୁ ଭାଷାରେ ପ୍ରାଦେଶିକ ବ୍ୟବହାର ଅଛି ଏବଂ ପୁସ୍ତକମାନଙ୍କରେ ତାହା ଯେତେ ଅଳପ ପରିମାଣରେ ବ୍ୟବହାର ହୁଏ ତେତେ ଭଲ । ଦକ୍ଷିଣୀ ଓଡ଼ିଆ ଯେ ପ୍ରକୃତ ଓଡ଼ିଆ ଭାଷା ନୁହେ ତାହା ଆଉ କାହାରିକି କହି ଦେବାକୁ ହେବ ନାହିଁ । ପତ୍ର ପ୍ରେରକ ଯେବେ ଭଲ ଓଡ଼ିଆ ଭାଷା କେଉଁଠାରେ ଅଛି ଜାଣିବାକୁ ଚାହାଁନ୍ତି ତେବେ ଆମ୍ଭେମାନେ ତାଙ୍କୁ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ ଦାସ ଏବଂ ଅଭିମନ୍ୟୁ ସାମନ୍ତ ସିଂହାର ପ୍ରଭୃତି ପୁରାତନ କବିମାନଙ୍କର ଗ୍ରନ୍ଥ ଆଲୋଚନା କରିବାକୁ ଅନୁରୋଧ କରୁଅଛୁଁ । କଟକର ଓଡ଼ିଆରେ କିଛି ପ୍ରାଦେଶିକତା ଥିଲେ ହେଁ ତାହା ପ୍ରକୃତ ଓଡ଼ିଆ ନୁହେ ବୋଲି ଆମ୍ଭେମାନେ କହି ନ ପାରୁଁ । ପୁରାତନ କବିମାନଙ୍କର ଗ୍ରନ୍ଥ ପଦ୍ୟରେ ରଚିତ ଏବଂ ଓଡ଼ିଆ ଗଦ୍ୟ ଆଧୁନିକ ଶିକ୍ଷା ପ୍ରଣାଳୀ ପ୍ରଚଳିତ ହେବା ସମୟରୁ ରଚିତ ହେଉଥିବାରୁ ଅବଧି ତହିଁରେ ଅନେକ ଉନ୍ନତି ସାଧନ ହେବାକୁ ବାକି ଅଛି । ଯେଉଁ ବ୍ୟକ୍ତି ଉଲ୍ଲିଖିତ ପୁରାତନ କବିମାନଙ୍କର ଗ୍ରନ୍ଥ ସମ୍ୟକ୍ ରୂପେ ଆଲୋଚନା କରି ଓଡ଼ିଆ ଗଦ୍ୟ ଲେଖିବାକୁ ଯତ୍ନବାନ୍ ହେବେ ସେ ଯେ ଭଲ ଏବଂ ବିଶୁଦ୍ଧ ଓଡ଼ିଆ ଲେଖିପାରିବେ ଏଥିରେ ସନ୍ଦେହ ନାହିଁ ।*

ଭାଷା ସମ୍ପର୍କରେ ବରେଣ୍ୟ ସମ୍ପାଦକଙ୍କ ଏହି ଅଭିମତ ତଥାପି **ଶ୍ୟାମସୁନ୍ଦର ରାଜଗୁରୁଙ୍କ** ମନୋନୀତ ହୋଇନାହିଁ । ସେ ଏକ ଦୀର୍ଘ ପତ୍ରରେ ଭାଷାରେ ଆଞ୍ଚଳିକତାର ପ୍ରୟୋଗ କିପରି ଆବଶ୍ୟକ ଏବଂ ତା'ନ ହେଲେ ସମୟକ୍ରମେ କିପରି ଆଞ୍ଚଳିକ ବୈଷମ୍ୟ ଦେଖାଦେବ, ସେ ସମ୍ପର୍କରେ ଚେତାବନୀ ଦେଇଛନ୍ତି । ତାଙ୍କ ଚେତାବନୀ ପ୍ରତି ଗୁରୁତ୍ୱ ଦିଆନଯିବା ଫଳରେ ଆଜି ଓଡ଼ିଆ ଭାଷାର ସଙ୍କଟ ଘନୀଭୂତ ହୋଇ ଆସୁଛି । ପତ୍ରଟିରେ ବିଭିନ୍ନ ପ୍ରାଚ୍ୟ ପାଶ୍ଚାତ୍ୟ ଭାଷାତତ୍ତ୍ୱବିତ୍‌ମାନଙ୍କ ମନ୍ତବ୍ୟର ଉପାଦେୟତା ବିଚାରକୁ ନେବାପାଇଁ ନିର୍ଦ୍ଦେଶ ଦେଇ ସେ ଲେଖିଛନ୍ତି-

ମହାଶୟ !

ଶ୍ରୀ ପଦ୍ମନାଭ ନାରାୟଣ ଦେବ କର୍ତ୍ତୃକ ବିରଚିତ ସଙ୍ଗୀତ ପ୍ରହ୍ଲାଦ ନାଟକର ସମାଲୋଚନା ସମ୍ବନ୍ଧେ ଆମ୍ଭେ ଯେଉଁ ପତ୍ର ପଠାଇଥିଲୁଁ ତାହା ଆପଣ ଦୟାପୂର୍ବକ ଆପଣଙ୍କ ପତ୍ରିକାରେ ପ୍ରକାଶ କରି ଲେଖିଛନ୍ତି-''ସଙ୍ଗୀତ ଭକ୍ତିରସର ବିରୋଧୀ ବୋଲି ଆମ୍ଭେମାନେ କହି ନାହୁଁ । ମାତ୍ର ଚରିତ୍ର ଚିତ୍ର କରିବାଠାରୁ ସଙ୍ଗୀତ ରଚନାରେ ଅଧିକ ମନଯୋଗୀ ହେବାରୁ ନାଟକଟିରେ ଚରିତ୍ର ଚିତ୍ରଣରେ ତ୍ରୁଟି ଘଟିଥିବାର ଆମ୍ଭେମାନେ ଲେଖିଥିଲୁଁ । ଯଦି ସଙ୍ଗୀତ ରସ ବା ଭାବର ବିରୋଧୀ ନୁହେଁ ତେବେ ସଙ୍ଗୀତ ରଚନାରେ ଅଧିକ ମନଯୋଗୀ ହେଲେ ଚରିତ୍ର ଚିତ୍ରଣରେ କାହିଁକି ତ୍ରୁଟି ଘଟିବ ? ସଙ୍ଗୀତରେ କି ଚରିତ୍ର ଚିତ୍ରିତ ହୋଇନପାରେ ? ଯଦି ହୋଇପାରୁ ନ ଥାନ୍ତା, ତେବେ ସଙ୍ଗୀତ ନାଟକର ଗୋଟିଏ ଅଙ୍ଗ କିପରି ହୁଅନ୍ତା ? ''ନାଟକରେ ସଙ୍ଗୀତର ଉତ୍କର୍ଷ ଦେଖାଇବା ଅବଶ୍ୟ ନାଟକ ବଳ'' ଏହା ଆପଣ କିପରି କହି ପାରନ୍ତେ ? ସେ ଯାହା ହେଉ, ଆପଣ ସମାଲୋଚିତ ନାଟକରୁ କେତେକାଂଶ ଉଦ୍ଧୃତ କରି ଆପଣଙ୍କ କଥାଟା ସମର୍ଥନ କରିବା ପର୍ଯ୍ୟନ୍ତ ଆମ୍ଭେ କହି ପାରିବୁଁ ଯେ ଚରିତ୍ର ଚିତ୍ରଣରେ ଯାହା କିଛି ତ୍ରୁଟି ଦେଖାଯାଏ ତାହା ଅନ୍ୟ କାରଣରୁ ଘଟି ଥାଇପାରେ, ମାତ୍ର ସଙ୍ଗୀତ ଆଡ଼େ ଅଧିକ ଢଳିବାରୁ ନୁହେଁ ।

ପ୍ରାଦେଶିକ ବ୍ୟବହାର ବିଷୟରେ ଆପଣ କହିଅଛନ୍ତି-''ପୁସ୍ତକମାନଙ୍କରେ ତାହା ଯେତେ ଅଳ୍ପ ପରିମାଣରେ ବ୍ୟବହୃତ ହୁଏ ତେତେ ଭଲ'' । ମାତ୍ର ଭାଷା ବିଜ୍ଞାନବେତ୍ତା ମାକସ୍‌ମୂଲର କହିଛନ୍ତି-"*And unless the litarary and courtly languages invigorate themselves by a constantly re-newed under course with their former companions the popular dialects will, sooner or later, assert their ascendency (vide Maxmular's Science of language vol II pp 61)*

ପ୍ରାଦେଶିକ ଭାଷା ସହିତ ପୁସ୍ତକଗତ ଭାଷାର ସମ୍ପର୍କ ନ ରହିଲେ କାଳକେ ପ୍ରାଦେଶିକ ଭାଷା ଆଧିପତ୍ୟ ସ୍ଥାପନ କରିଯିବ । ସେ ଅନ୍ୟତ୍ର କହିଅଛନ୍ତି-*What we are accustomed to call languages, the literary idioms of Greece and Rome and India, of Italy, France and Spain, must be considered as artificial rather than as natural forms*

*of speech. The real and natural life of language is in its dialects, a name which, in its widest sense, comprises provincialism, brogue, patois, Jargon or any other variety that affects the general progress of languages down to the idiom of families and individuals (Vide the same pp 55)*

ଗ୍ରୀସ୍, ରୋମ୍, ଭାରତବର୍ଷ, ଇଟାଲି, ଫ୍ରାନ୍ସ ଓ ସ୍ପେନ୍ ଇତ୍ୟାଦି ଦେଶମାନଙ୍କରେ, ଆମ୍ଭେମାନେ ଯାହାକୁ ଭାଷା କହୁ, ତାହା କୃତ୍ରିମ ଭାଷା ବୋଲି ଆଲୋଚନା କରିବାକୁ ହେବ । ଭାଷାର ପ୍ରକୃତ ପ୍ରାଣ କେବଳ ପ୍ରାଦେଶିକତାରେ ।

ବୀମ୍ସ ସାହେବ କହିଅଛନ୍ତି-*It is to be hoped that this sort of nonsense has had its day, and that in all the seven language, literature will, by degrees, become national and that men will begin to see that there is no disgrace in writting as they talk" (vide Beam's Comparative Grammar of Modern Aryan languages of India vol II PP 251)*

ଆଶା ହୁଏ ଏପରି ନିର୍ବୋଧତାର ସମୟ ଶେଷ ହୋଇଯାଇଅଛି, ସବୁ ଭାଷାର ସାହିତ୍ୟ କ୍ରମଶଃ ସ୍ୱାଭାବିକ ହୋଇ ଉଠିବ ଓ ଜନସାଧାରଣ ଯେପରି କଥାବାର୍ତ୍ତା କରନ୍ତି ସେହିପରି ଲେଖିବାର ଲଜ୍ଜାଜନକ ନୁହେ ବୋଲି ଲୋକେ ଜାଣିବେ । ଏଥିରୁ ଆପଣ ସ୍ପଷ୍ଟ ବୁଝିପାରିବେ ଯେ ପ୍ରାଦେଶିକ ଭାଷା ପୁସ୍ତକମାନଙ୍କରେ ଯେତେ ଅଧିକ ପରିମାଣରେ ବ୍ୟବହୃତ ହୋଇପାରିବ ତେତେ ଭଲ । କାରଣ ସାଧାରଣ ଲୋକେ ପଢ଼ି ବୁଝିପାରିବେ ଓ ଦେଶର ମଙ୍ଗଳ ହେବ ।

ଆପଣ ଲେଖିଛନ୍ତି-"ଦକ୍ଷିଣୀ ଓଡ଼ିଆ ଯେ ପ୍ରକୃତ ଓଡ଼ିଆ ନୁହେ ତାହା ଆଉ କାହାରିକି କହି ଦେବାକୁ ହେବ ନାହିଁ" ଏ କଣ ନିପାତନସିଦ୍ଧ ? ନା କୌଣସି ନିୟମ ଦ୍ୱାରା ପ୍ରମାଣିତ ? ନା ଆପଣଙ୍କର ବ୍ୟକ୍ତିଗତ ଅଭିପ୍ରାୟ ? ଏହି ଦକ୍ଷିଣୀ ଭାଷାରେ ପରା ଉପେନ୍ଦ୍ରଭଞ୍ଜ, କୃଷ୍ଣସିଂହ, କବିସୂର୍ଯ୍ୟ, ଗୋପାଳକୃଷ୍ଣ ପ୍ରଭୃତି କବିମାନେ ଗ୍ରନ୍ଥ ରଚନା କରି ଓଡ଼ିଆ ଭାଷାକୁ ରଖି ଦେଇଯାଇଅଛନ୍ତି । "ଭଲ ଓଡ଼ିଆ ଭାଷା" ଜାଣିବା ସକାଶେ ଏହି ଦକ୍ଷିଣୀ କବିମାନଙ୍କ ଗ୍ରନ୍ଥ ଆଲୋଚନା

କରିବାକୁ ପରା ଆପଣ ଆମ୍ଭଙ୍କୁ ଅନୁରୋଧ କରିଅଛନ୍ତି ? ତେବେ ଦକ୍ଷିଣୀ ଓଡ଼ିଆ ପ୍ରକୃତ ଓଡ଼ିଆ ନ ହେଲା କିପରି ? ନାଟକର ଓଡ଼ିଆ ବିଷୟରେ ଆପଣ ଲେଖିଅଛନ୍ତି-''କିଛି, ପ୍ରାଦେଶିକତା ଥିଲେ ହେଁ ତାହା ପ୍ରକୃତ ଓଡ଼ିଆ ନୁହେଁ ବୋଲି ଆମ୍ଭେମାନେ କହି ନ ପାରୁଁ ।'' ପ୍ରାଦେଶିକତା ଥିବା ଯୋଗୁଁ ନାଟକର ଓଡ଼ିଆ ପ୍ରକୃତ ଓଡ଼ିଆ ନୁହେଁ ବୋଲି ଆମ୍ଭେ କହି ନାହୁଁ । ତାହା ସାଧାରଣ ବ୍ୟବହୃତ ଭାଷା ନ ହେବାରୁ ଅର୍ଥାତ୍ ବର୍ଣ୍ଣଶୁଦ୍ଧି, ବ୍ୟାକରଣ ରଚନା ଇତ୍ୟାଦି କେବଳ ସଂସ୍କୃତାନୁଯାୟୀ ଥିବାରୁ ପ୍ରକୃତ ଓଡ଼ିଆ ନୁହେ ବୋଲି କହିଥିଲୁ । ବୀମ୍‌ସ୍ ସାହେବ ମଧ୍ୟ କହିଅଛନ୍ତି-

*"Orissa at a later period followed the lead of Bengal and form the causes above mentioned, it has resaled that in both provinces the national speech has been banished from books and now lives only in the mouths of the people." (vide Beam's comparative Grammar vol 1 PP 38),* ଓଡ଼ିଶା ବଙ୍ଗଦେଶର ପଶ୍ଚାତ୍‌ଗାମୀ ହୋଇ ନିଜ ଜାତୀୟ ଭାଷାକୁ ପୁସ୍ତକରୁ ଏକାବେଳକେ ଦୂର କରି ଦେଇଅଛି । ବର୍ତ୍ତମାନ ଜାତୀୟ ଭାଷା ଜନସାଧାରଣ ମୁଖରେ ମାତ୍ର ଶୁଣିବା ମିଳେ । ଆପଣ ଉପଦେଶ ଦେଇଅଛନ୍ତି-''ଯେଉଁ ବ୍ୟକ୍ତି ଉଲ୍ଲିଖିତ ପୁରାତନ କବିମାନଙ୍କ ଗ୍ରନ୍ଥ ସମ୍ୟକ୍ ରୂପେ ଆଲୋଚନା କରି ଓଡ଼ିଆ ଗଦ୍ୟ ଲେଖିବାକୁ ଯତ୍ନବାନ୍ ହେବେ ସେ ଯେ ଭଲ ଏବଂ ବିଶୁଦ୍ଧ ଓଡ଼ିଆ ଲେଖିପାରିବେ ଏଥିରେ ସନ୍ଦେହ ନାହିଁ । ପୁରାତନ ଗ୍ରନ୍ଥ ସବୁ ପଦ୍ୟରେ ରଚିତ । ପଦ୍ୟ କାବ୍ୟରେ ଯେ ଭାଷାର କୌଣସି ନିୟମ ରହେ ନାହିଁ ଏହା ଆଉ କାହାରିକି କହିଦେବାକୁ ହେବ ନାହିଁ । ବିଶେଷତଃ ଯେଉଁ କାବ୍ୟମାନଙ୍କରେ ଶବ୍ଦାଡ଼ମ୍ବର ବିନା (*"Childish quibling about words endless repetition and all sorts of far fetched rhetorical puzzles"*) ଆଉ କିଛି ଦେଖାଯାଏ ନାହିଁ, ସେଥିରୁ ଭଲ ଓ ବିଶୁଦ୍ଧ ଓଡ଼ିଆ ଶିଖିବା ନିତାନ୍ତ ଅସମ୍ଭବ । ଗଦ୍ୟରୁ ପଦ୍ୟ ଲେଖାଯାଇପାରେ, ଏହା ଅନେକ କୃତବିଦ୍ୟ ଲୋକ କହିଅଛନ୍ତି । କିନ୍ତୁ ପଦ୍ୟରୁ ବିଶୁଦ୍ଧ ଗଦ୍ୟ ଲେଖିବାର ଆମ୍ଭେ ଆଜି ପର୍ଯ୍ୟନ୍ତ କାହାଠାରୁ ଶୁଣି ନ ଥିଲୁଁ । ଏତେ କଥା କାହିଁକି ? ଉପେନ୍ଦ୍ରଭଞ୍ଜ, ସାମନ୍ତସିଂହାର, କୃଷ୍ଣଦାସ ପ୍ରଭୃତି ପୁରାତନ କବିମାନଙ୍କ ଗ୍ରନ୍ଥ ସମ୍ୟକ୍ ରୂପେ

*ଆଲୋଚନା କରାଯାଇ ଲେଖା ହୋଇଥିବା ଦୁଇ ଚାରିଖଣ୍ଡ ଗଦ୍ୟ କାବ୍ୟ ଦେଖାଇ ଦିଅନ୍ତୁ । ଏଣିକି ଲୋକେ ଆପଣଙ୍କ ଉପଦେଶାନୁସାରେ ପୁସ୍ତକାଦି ଲେଖିବାରେ ପ୍ରବୃତ୍ତ ହେବେ ।*

*ପାରଳାଖିମଣ୍ଡି* — *ଆପଣଙ୍କର*

*୧୮.୫.୦୨* — *ବଶମ୍ବଦ*

*ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ*

ଏ ପ୍ରକାର ବାଦ ପ୍ରତିବାଦ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ନାମରେ ଅଙ୍କିତ ଧ୍ରୁବ ନାଟକ ସମ୍ପର୍କରେ ମଧ୍ୟ 'ଉତ୍କଳ ସାହିତ୍ୟ'ର ସମ୍ପାଦକ ବିଶ୍ୱନାଥ କର ଏବଂ ଶ୍ୟାମସୁନ୍ଦର ରାଜଗୁରୁଙ୍କ ମଧ୍ୟରେ ଚଳିଥିଲା । ତାହା ଯଥା ସ୍ଥାନରେ ସୂଚିତ କରିବା ସହ ଏ ସବୁର ପରିଣାମ କିପରି ଓଡ଼ିଆ ଭାଷା ଆଲୋଚନା ପାଇଁ ଶ୍ୟାମସୁନ୍ଦର ରାଜଗୁରୁ ଏବଂ ଗୋପୀନାଥ ନନ୍ଦଙ୍କୁ ପ୍ରଚୋଦିତ କରିଥିଲା, ତାହା ମଧ୍ୟ ସେହି ଅବସରରେ ଉଲ୍ଲେଖ କରାଯାଇଛି ।

ସେ ଯାହାହେଉ ନାଟକ ରଚନା କ୍ଷେତ୍ରରେ ଏକ ନୂତନ ପରମ୍ପରା ସୃଷ୍ଟି କରିବାରେ **ଶ୍ରୀସଙ୍ଗୀତ ପ୍ରହ୍ଲାଦ** ନାଟକର ଭୂମିକା ଅବଶ୍ୟ ସ୍ୱୀକାର୍ଯ୍ୟ । ପଦ୍ମନାଭ ଦେବଙ୍କ ଅନ୍ୟାନ୍ୟ ନାଟକ ଅଭିନୀତ ହେଲା ପରେ ଏହି ନାଟକର ସମାଦର ହ୍ରାସ ପାଇଥିବା ସମ୍ଭବପର । କେବଳ ପାଣ୍ଡିତ୍ୟପୂର୍ଣ୍ଣ ସଂଳାପ ଏବଂ ସଙ୍ଗୀତ ବାହୁଲ୍ୟ ନୁହେଁ ଏହାକୁ ମଞ୍ଚସ୍ଥ କରିବାପାଇଁ ପ୍ରାୟ ତିରିଶ ଜଣ ସଙ୍ଗୀତ ଜ୍ଞାନ ଥିବା ଅଭିନେତା ମଧ୍ୟ ଆବଶ୍ୟକ । ପୁଣି ମଞ୍ଚ ଉପରକୁ ହାତୀ, ସାପ, ଅଗ୍ନି ଇତ୍ୟାଦି ଆଣିବା କଷ୍ଟସାଧ୍ୟ । ଗୋଟିଏ ରାତିରେ ପ୍ରଦର୍ଶିତ ହେବାପାଇଁ ଏହା ଉଦ୍ଦିଷ୍ଟ ହେଲେ ସୁଦ୍ଧା ଅନ୍ୟାନ୍ୟ ନାଟକ ତୁଳନାରେ ଏହା ଅତ୍ୟନ୍ତ ଦୀର୍ଘ । ପାରଳାଖେମୁଣ୍ଡିର ରାଜମଞ୍ଚରେ ଏହାର ପ୍ରଦର୍ଶନ ସୁକର ହେଲେ ସୁଦ୍ଧା ଅନ୍ୟତ୍ର ଏହାର ମଞ୍ଚାୟନ ଦୁଷ୍କର । ତଥାପି ଓଡ଼ିଆ ନାଟକର ଆଲୋଚନାବେଳେ ଏହାକୁ ବିସ୍ମୃତ ହେବାର ନୁହେଁ ।

# ଶ୍ରୀ

# ସଙ୍ଗୀତପ୍ରହ୍ଲାଦନାଟକ

ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ

ଦ୍ୱାରା

ରଚିତ

ଓ

ପ୍ରକାଶିତ ।

PRINTED AT THE GAJAPATHY PRESS

PARLAKIMEDI.

1901.

# ଭୂମିକା

ଦୀର୍ଘ ଭୂମିକାର ପ୍ରୟୋଜନ ନାହିଁ । ନାଟକ ରଚନା କରିବା ମୋର ଏହି ପ୍ରଥମୋଦ୍ୟମ । ପୂଜ୍ୟପାଦ ବ୍ୟାସଦେବକୃତ ବିଷ୍ଣୁପୁରାଣାନ୍ତର୍ଗତ ପ୍ରହ୍ଲାଦଚରିତାବଲମ୍ବନରେ ଏହି ସଙ୍ଗୀତ ପ୍ରହ୍ଲାଦ ନାଟକ ବିରଚିତ । ଭରସାକରେ ଉତ୍କଳର ସାହିତ୍ୟ ରସିକମାନେ ଏହି ପୁସ୍ତକର ଦୋଷ ଭାଗ ନିଜ ନିଜ ଉଦାରତା ଗୁଣରେ ପରିହାରକରି ସାରଭାଗ ଶ୍ରଦ୍ଧାର ସହିତ ଗ୍ରହଣ କରିବେ ।

ଏଠାରେ କୃତଜ୍ଞତା ସହିତ ସ୍ୱୀକାର କରୁଅଛି ଯେ ମୋର ଶିକ୍ଷକ ଭକ୍ତିଭାଜନ ଶ୍ରୀଯୁକ୍ତ ବାବୁ ଶ୍ୟାମସୁନ୍ଦର ରାଜଗୁରୁ ବି.ଏ.ଏ ପୁସ୍ତକଟିକୁ ଆମୂଳାନ୍ତ ସଂଶୋଧନ ଏବଂ କେତେଗୋଟି ଗୀତ ରଚନା କରିଦେଇ ମତେ ଚିରବାଧିତ କରିଅଛନ୍ତି ।

ପରିଶେଷରେ ଦୁଃଖର ସହିତ ବକ୍ତବ୍ୟ ଏହି ଯେ ଛାପାଖାନା ଦୋଷରୁ ଏ ପୁସ୍ତକରେ ଅନେକ ବର୍ଣ୍ଣାଶୁଦ୍ଧି ରହି ଯାଇଅଛି ତହିଁର ପ୍ରତିକାର ସ୍ୱରୂପ ପୁସ୍ତକାଦ୍ୟରେ ଶୁଦ୍ଧିପତ୍ର ସନ୍ନିବେଶିତ ହୋଇଅଛି । ପାଠକମହୋଦୟମାନେ ତଦନୁସାରେ ସଂଶୋଧନ କରି ପଠନ କଲେ ଅର୍ଥଗ୍ରହଣରେ କୌଣସି ଅସୁବିଧା ହେବ ନାହିଁ । ଇତି ।

ଶ୍ରୀ ପଦ୍ମନାଭ ନାରାୟଣ ଦେବ

# ଉତ୍ସର୍ଗ ପତ୍ର

ଅଗ୍ରଜ ଶ୍ରୀ ଶ୍ରୀ ଶ୍ରୀ ଗୌରଚନ୍ଦ୍ର ଗଜପତି ନାରାୟଣ
ଦେବ ମହାରାଜଙ୍କ କରକମଳେଷୁ ।

ଗଙ୍ଗା ବଂଶ ଅବତଂସ ଧୀର ବୀରବର ।
ପାରଳା-ଧର-ମଣ୍ଡନ ନରେନ୍ଦ୍ରଶେଖର ॥
ପବିତ୍ର ହୃଦୟ ଗୁଣିଗଣ ଶିରୋମଣି ।
ପ୍ରଶଂସେ ଗଞ୍ଜାମ ସଦା ଅଦ୍ୱିତୀୟ ମଣି ॥
ଗୌରଚନ୍ଦ୍ର ଗଜପତି ନାରାୟଣଦେବ ।
ଦୁଃଖିନୀ ଉତ୍କଳପ୍ରତି ଲବେ ଦୟା ହେବ ॥
ଜାତୀୟ ସାହିତ୍ୟ ତବ ବାହୁଛାୟା ତଳେ ।
ରହି ଏ ଲଭିବ ଉନ୍ନତି ଅନୁକମ୍ପା ବଳେ ॥
ବୀଣାକରେ ଜଗଦ୍ଧାତ୍ରୀ କରୁଛନ୍ତି ଗାନ ।
ଶୁଣଇ ଭାରତ ସଦା ଶ୍ରୀଛାମୁଙ୍କ ନାମ ॥
ଭାରତ ସନ୍ତାନ ହେତୁ, କୃତଜ୍ଞତା ମୋର ।
ପ୍ରକାଶି, ଏ ଭେଟି ଦି଼ଏ କ୍ଷମ ! ଗୁଣାକର ॥
ଚମ୍ପକପ୍ରିୟ ଶଙ୍କର ଗଇଁଶ ଧାରଣ ।
କରିବା ଶୁଣି, ସାହସେ କରେ ସମର୍ପଣ ॥
ପାଦରେ ଏହି ନାଟ଼କ କରନ୍ତୁ ଗ୍ରହଣ ।
ମୋହର ଏ ଆନ୍ତରିକ ଭକ୍ତି ନିବେଦନ ॥

ଚିରସ୍ନେହାନୁରାଗୀ
ଶ୍ରୀ ପଦ୍ମନାଭ ନାରାୟଣ ଦେବ

# ନାଟ୍ୟୋଲ୍ଲିଖିତବ୍ୟକ୍ତିଗଣ

## ପୁରୁଷଗଣ

| | |
|---|---|
| ହିରଣ୍ୟକଶିପୁ | ଦାନବାଧିପତି |
| ବିପ୍ରଚିତ୍ | ମନ୍ତ୍ରୀ |
| ପ୍ରହ୍ଲାଦ | ହରିଣ୍ୟକଶିପୁଙ୍କ ପୁତ୍ର |
| ଶୁକ୍ରାଚାର୍ଯ୍ୟ | ଦାନବଗୁରୁ |
| ଇନ୍ଦ୍ର | ସ୍ୱର୍ଗାଧିପ |
| ବୃହସ୍ପତି | ଦେବଗୁରୁ |
| ଶ୍ରୀପଞ୍ଚାନନ | ଜ୍ୟୋତିଷିକ |
| ଷଡ଼ାନନ ମହାପାତ୍ର | ଶିଷ୍ୟଦ୍ୱୟ |
| ବିନାୟକ ମିଶ୍ର | |
| ଶ୍ରୀନୃସିଂହ | ଅବତାରବିଶେଷ |
| ନାରଦ | ମୁନିବିଶେଷ |

ଦେବଗଣ, ଶିକ୍ଷକ, ସେନାପତି, ବିଦୂଷକ, ଦୌବାରିକ, ମାହୁନ୍ତ, ଖଳିକାର ଇତ୍ୟାଦି, ଇତ୍ୟାଦି ।

## ସ୍ତ୍ରୀଗଣ

| | |
|---|---|
| ଲୀଳାବତୀ | ପଟ୍ଟମହିଷୀ |
| କୀରବାଣୀ/ସୁଲକ୍ଷଣା | ସଖୀମାନେ |
| ଦିତି | ଦାନବମାତା |
| ପରିମଳା/ଚଞ୍ଚଳା | ଦାସୀମାନେ |

●

# ଶ୍ରୀ ସଙ୍ଗୀତ ପ୍ରହ୍ଲାଦ ନାଟକ

(ସୂତ୍ରଧାର ଓ ସଙ୍ଗିଗଣ)

ରାଗ ଶ୍ରୋଟ । ଆଦିତାଳ ।

ହରି ! କରୁଣା କର ଜଗଦୀଶ ।୦।

ପାପ କୂପେ ପଡ଼ି     ଦୁଃଖେ ଯାଏ ସଡ଼ି ।

ବାରେ ରଖ ହୃଷୀକେଶ ।୧।

ଅଗତିରଗତି     ତ୍ରିଭୁବନପତି ।

ଜନାର୍ଦ୍ଦନ ଅଘନାଶ ।୨।

ବିକଚ ନଳିନ     ଗଞ୍ଜନ ଆନନ ।

ଅଚ୍ୟୁତ ଜଗନ୍ନିବାସ ।୩।

(ସଭାକୁ ଉଦ୍ଦେଶ୍ୟ କରି ପୁଷ୍ପାଞ୍ଜଳି ବିକୀର୍ଣ୍ଣ କରିବା ଓ ସଙ୍ଗିଗଣଙ୍କ ପ୍ରସ୍ଥାନ)

ସୂତ୍ରଧାର - ଆହା ! ପ୍ରାସାଦସମାନୋନ୍ନତକାୟମାନାବଲମ୍ବୀ ବିବିଧ ବର୍ଣ୍ଣକାଚମୟ ପତ୍ରାନ୍ତର ଦୀପାବଳୀ ଆକାଶରେ ଚନ୍ଦ୍ରାଦି ନକ୍ଷତ୍ରରାଜି ପରି ଦେଦୀପ୍ୟମାନ ହେଉଅଛି । ଏହିଠାରେ ମହାବଦାନ୍ୟ, ସର୍ବଶାସ୍ତ୍ର ନିପୁଣ ଏବଂ ସକଳ ଜନାନନ୍ଦକର ଗୁଣିଗଣଙ୍କର ସମାବେଶ । ଆଜି ଯେପରି ସୁଖର ଦିନ ଘଟିଅଛି ତାହା ବଚନାତୀତ । ଏହି ସୁଦିନରେ ଯଦି କୌଣସି ମନୋହର ପାରମାର୍ଥିକ ନାଟକାଭିନୟ ହେବ, ତେବେ ଆଉ କି ପଚାରିବାକୁ ଅଛି ? (କେତେ କାଳ ବିଚାରାନ୍ତର) ଆଚ୍ଛା ! ଉତ୍ତମ ସମୟ ଘଟିଅଛି । ତ୍ରିଲୋକପାଳ ଭକ୍ତ-ରକ୍ଷଣ-ଦୀକ୍ଷା-ବନ୍ତ ପରମେଶ୍ୱରଙ୍କଠାରେ ପ୍ରାର୍ଥନା ଏହିଯେ- ଯେପରି ନିର୍ବିଘ୍ନରେ ନାଟକଟି ସଂପୂର୍ଣ୍ଣ ହେବ-(ଚତୁର୍ଦ୍ଦିଗ ନିରୀକ୍ଷଣ କରିବା)

(ନଟର ପ୍ରବେଶ)

ନଟ - (ଚତୁର୍ଦ୍ଦିଗ ନିରୀକ୍ଷଣ କରି) ଆର୍ଯ୍ୟ ! ଆପଣ ଅଧୀନକୁ କାହିଁକି ଡକାଇଲେ ?

ସୂତ୍ର - ନଟବର ! ଦେଖ ! ଏ ସଭା କିପରି ଶ୍ରୀ ଧାରଣ କରିଅଛି । ଏହିଠାରେ ମୌହୂର୍ତ୍ତିକ, ବୈୟାକରଣ, ନୈୟାୟିକ, ମୀମାଂସିକ, ପୌରାଣିକ, ଐତିହାସିକ, ଶ୍ରୋତ୍ରିୟ, କୁଶୀଲବ, ପାରିହାସିକ, କବି, ବେଦାନ୍ତି, ବୈଷ୍ଣବ, ମୌରଜିକ ଓ ବୈଣିକ ପ୍ରଭୃତି ଉପବେଶନ କରିଅଛନ୍ତି । ଆପଣ ଯଦି ଦୟା ପୂର୍ବକ ନୂତନ ବିରଚିତ ସକଳଜନମନୋହର ପ୍ରହ୍ଲାଦ ନାଟକଟି ଅଭିନୟ କରି ପାରିବ, ତେବେ ଏହି ସଭାସ୍ଥ ସଭ୍ୟବୃନ୍ଦଙ୍କୁ ଆନନ୍ଦ ସାଗରରେ ନିମଜ୍ଜନ କରି ସେମାନଙ୍କ ପ୍ରୀତିଭାଜନ ଏବଂ ପ୍ରଶଂସାଯୋଗ୍ୟ ହେବ ।

ନଟ - ବିଜ୍ଞବର ! ଆଜି କାଲି ଆମ୍ଭ ଗଞ୍ଜାମ ଓଡ଼ିଆ ମାନଙ୍କରେ ନାଟକାଭିନୟର ସମାଦର କରିବା ଲୋକେ ବିରଳ ଲକ୍ଷିତ ହୁଅନ୍ତି । କେତେକ ନବ୍ୟସଭ୍ୟ ବ୍ୟକ୍ତି ଆମ୍ଭମାନଙ୍କ ଆର୍ଯ୍ୟରଚିତ ଶାସ୍ତ୍ରମାନଙ୍କୁ ଅଧୀତି, ବୋଧ ଓ ତଦନୁଯାୟୀ ଆଚରଣ କରିବା ତେଣିକି ଥାଉ, ସେମାନଙ୍କ ପ୍ରତି ଭ୍ରୂକ୍ଷେପ ମଧ୍ୟ କରନ୍ତି ନାହିଁ । ଅନ୍ୟ ଯେଉଁମାନେ ଆପଣା ସର୍ବାଙ୍ଗକୁ ମୁଦ୍ରାଙ୍କିତ କରି ହସ୍ତରେ ପ୍ରେମଝୁଲି ଧରି ଭଗବଦ୍‌ଭକ୍ତି ପିପାସୁ ବୋଲି ପରିଚୟ ଦିଅନ୍ତି ସେମାନଙ୍କଠାରେ ଆନ୍ତରିକ ଭକ୍ତି ଆକାଶ-କୁସୁମବତ୍ । ଆଉ ଏକ ଦଳ ଅଛନ୍ତି ଯେ ସେମାନେ ନାଟକାଭିନୟ କାହାକୁ କହନ୍ତି ତାହାର ଗନ୍ଧ ସୁଦ୍ଧା ଜାଣି ନାହାନ୍ତି । ଏପରି ସ୍ଥଳେ ନାଟକାଭିନୟ କରିବାଲାଗି ଆପଣ କିପରି ଆଦେଶ ଦେଉ ଅଛନ୍ତି ? ଏହା ଅତି ଆଶ୍ଚର୍ଯ୍ୟର ବିଷୟ ।

ସୂତ୍ର - ନଟ ! ଏପରି କହିବା ଉଚିତ ନୁହେ । ଆପଣ ଏ ଦେଶୀୟ ଲୋକଙ୍କୁ ଯେଉଁ ୨ ଶ୍ରେଣୀରେ ବିଭାଗ କରି ଅଛନ୍ତି ତାହା ସତ୍ୟ । ମାତ୍ର ସେପରି ଲୋକେ ଏହି ଦେଶରେ ଏକା ଅଛନ୍ତି- ତାହା ନୁହେ, ସକଳ ଦେଶରେ ନ୍ୟୂନାଧିକରେ ଥାନ୍ତି । ଏହି ହେତୁରୁ ଶ୍ରମସ୍ୱୀକାରପୂର୍ବକ ସାଧମତ ଉପାୟ ଅବଲମ୍ବନ କରି ସେମାନଙ୍କୁ ଉନ୍ନତ ପଥକୁ କର ଧରି ଉଠାଇ ଆଣିବା ଏବଂ କଣ୍ଟକ ସମାକୀର୍ଣ୍ଣ ପଥରେ ପ୍ରଧାବିତ ହେଉଥିବା ଲୋକଙ୍କୁ ସନ୍ମାର୍ଗ ଦେଖାଇବା ପ୍ରତ୍ୟେକ ବିଜ୍ଞ ବ୍ୟକ୍ତିର କର୍ତ୍ତବ୍ୟ କର୍ମ ।

ନଟ - ବିଜ୍ଞବର ! 'ପରିଶେଷରେ ଆମ୍ଭର ବକ୍ତବ୍ୟ ଏହି ଯେ ଯେଉଁ ସଭାରେ ଜଗଦ୍ଧାତ୍ରୀ ବୀଣାପାଣୀଙ୍କ କୃପାପାତ୍ର ଓ ନିଖିଳ ଗୁଣାଳଂକୃତ ସଭ୍ୟବୃନ୍ଦ ସମବେତ ହୋଇ ଅଛନ୍ତି, ସେପରି ସ୍ଥଳରେ ମୋ ପରି ଅନଭିଜ୍ଞ ଲୋକ ନାଟକାଭିନୟ କରି ସଫଳ ମନୋରଥ ହେବା ଆଶାତୀତ ମାତ୍ର । ଦୁଃଖରେ

ବିଷୟ ! ଜାଣି ଶୁଣି କିପରି ନାଟକାଭିନୟ କରିବାକୁ ମତେ ଆଦେଶ ଦିଅନ୍ତି ?

ସୂତ୍ର - ଆପଣ କହିଲେ ଏପରି ଭିଜ୍ଞ ଲୋକମାନେ ସମବେତ ହେବା ସ୍ଥଳରେ ଆପଣ ପରି ଅନଭିଜ୍ଞ ଲୋକ ନାଟକାଭିନୟ କରିବା ଉଚିତ ନୁହେ । ମାତ୍ର ଏପରି କେବେ ବିଚାର କର ନାହିଁ । କାରଣ, ''କ୍ଷୀରମେବ ଯଥାହଂସଃ ଗୁଣାନ୍ ଗୃହ୍ନନ୍ତି ପଣ୍ଡିତଃ ।'' ଏହି ରୀତିରେ ଏମାନେ ଗୁଣ ଗ୍ରହଣ କରିବେ ଆମ୍ଭର ଏହି ମାତ୍ର ବିଶ୍ୱାସ । ବିଶେଷତଃ ଯେଉଁ ନାଟକରେ ପରମ ଭକ୍ତ ପ୍ରହ୍ଲାଦଙ୍କ ଦୃଢ଼ ଭକ୍ତି, ନିଃଶେଷୀକୃତନିଖିଳ-କ୍ଷିତି-ପାଳ ଧରାଧିପ ହିରଣ୍ୟକଶିପୁଙ୍କର ଆଦିତ୍ୟବତ୍ ପ୍ରତାପ ଓ ଭକ୍ତ ହୃଦୟୋପବିଷ୍ଟ ଭକ୍ତ-ରକ୍ଷଣ-ଦୀକ୍ଷାବନ୍ତ ନୃସିଂହଙ୍କ ଭକ୍ତ ବତ୍ସଳତା ବର୍ଣ୍ଣିତ ହୋଇଅଛି, ସେପରି ନାଟକାଭିନୟ ଦେଖି କାହାର ମନ ନ ଭୁଲିବ ? ଏଣୁ ଆପଣ ଏ ବିଷୟରେ ପଶ୍ଚାଦ୍‌ପଦ ଦେବା ଅବିଧେୟ । ପରମେଶ୍ୱର ନୃସିଂହଙ୍କୁ ସ୍ମରଣା କରି କାର୍ଯ୍ୟରେ ଲାଗିଯାଅ । ଆଗ ଯାଇ ସମସ୍ତ ସମ୍ଭାର ପ୍ରସ୍ତୁତ କରି ଦିଅନ୍ତୁ ।

ନଟ - (ସ୍ୱଗତ) ସୂତ୍ରଧାର ତ ଉତ୍ତମ କହିଲେ । ଭଗବାନଙ୍କ କୃପା କଟାକ୍ଷରୁ କାର୍ଯ୍ୟଟି ନିର୍ବିଘ୍ନରେ ସମ୍ପୂର୍ଣ୍ଣ ହୋଇ, ଏହି ସଭାସ୍ଥ ମହତ୍‌ଜନମାନଙ୍କ ଆନନ୍ଦ ଉତ୍ସାହ କରିବ । ନା ଏପରି ଭାବିବା ଦୁରାଶା ମାତ୍ର । କାରଣ ତାଦୃଶ ଭକ୍ତିଜନକ ଏବଂ ପ୍ରେମମୟ ନାଟକ ମାଦୃଶ ଜନ ଅଭିନୟ କରି ଏତାଦୃଶ ଫଳ ଲଭିବା ଅସମ୍ଭବ । ଯାହା ହେଉ ପରମେଶ୍ୱର ଅଛନ୍ତି । (ପ୍ରସ୍ଥାନ)

(ନଟୀର ପ୍ରବେଶ ।)

ନଟୀ - (ପ୍ରଣାମ କରି) ଆର୍ଯ୍ୟପୁତ୍ର ! ଆପଣଙ୍କ ମୁଖ ସନ୍ଦର୍ଶନ କରି ମୁଁ ଜାଣି ପାରୁଅଛି ଆପଣ କୌଣସି ଚିନ୍ତାରେ ଗ୍ରସ୍ତ । ଏଥିର କାରଣ କି ?

ସୂତ୍ର - ପ୍ରିୟେ ! ଆମ୍ଭେ ଏହି କ୍ଷଣି ତୁମ୍ଭ ନିକଟକୁ ଯିବାକୁ ଉଦ୍ୟତ ଥିଲୁ । ଆମ୍ଭର ଚିନ୍ତାର କାରଣ ଏହି ଯେ ଗୋଟିଏ ଗୁରୁତର କାର୍ଯ୍ୟରେ ଆମ୍ଭେ ହସ୍ତକ୍ଷେପ କରିଅଛୁ ।

ନଟୀ - ଆର୍ଯ୍ୟପୁତ୍ର ! କି କାର୍ଯ୍ୟରେ ଆପଣ ହସ୍ତକ୍ଷେପ କରି ଅଛନ୍ତି ?

ସୂତ୍ର - ପ୍ରିୟେ ! ଏହି ସଭାସ୍ଥ ଭବ୍ୟବୃନ୍ଦଙ୍କ ସମ୍ମୁଖରେ ଶ୍ରୀପଦ୍ମନାଭ ନାରାୟଣ ଦେବ କର୍ତ୍ତୃକ ବିରଚିତ ସଙ୍ଗୀତ ପ୍ରହ୍ଲାଦ ନାଟକ ଅଭିନୟ କରିବା ନିମିତ୍ତେ ମନ ବଳାଇ ଅଛୁଁ । ସେଥିଲାଗ ନଟକୁ ମଧ୍ୟ ସକଳ ଆୟୋଜନ କରିବା ନିମନ୍ତେ ଆଦେଶ ଦେଇଅଛୁଁ । କିନ୍ତୁ ଉକ୍ତ କାର୍ଯ୍ୟରେ କିପରି କୃତକାର୍ଯ୍ୟ

ହେବୁଁ ସେଥିଲାଗି ଭାବିତ ଅଛୁଁ । ଯାହା ହେଉ ଆମ୍ଭର ବକ୍ତବ୍ୟ ଏହି ଯେ ତୁମ୍ଭ ସାହାଯ୍ୟ ବିନା ଏଡ଼େ ବଡ଼ କାର୍ଯ୍ୟ ସମାଧା କରିବା ଆମ୍ଭ ପକ୍ଷେ ଦୁସ୍ତର ଅଟେ ।

ନଟୀ - ଆର୍ଯ୍ୟପୁତ୍ର ! ବାସ୍ତବରେ ଏହା ଏକ ଗୁରୁତର କାର୍ଯ୍ୟ ଅଟେ । ମାତ୍ର ଚିନ୍ତା କର ନାହିଁ, ପରମ କାରୁଣିକ ପରମେଶ୍ୱର ଅଛନ୍ତି । ସେ ତୁମ୍ଭଙ୍କୁ ଅଭୟ ପ୍ରଦାନ କରିବେ, କାର୍ଯ୍ୟ ନିର୍ବିଘ୍ନରେ ସମ୍ପୂର୍ଣ୍ଣ ହେବ । ତୁମ୍ଭ ଦାସୀକି ଯାହା ଆଜ୍ଞା ହେବ ତାହା ସେ ଶିରୋଧାର୍ଯ୍ୟ କରି କରିବ ।

ସୂତ୍ର - ଆଚ୍ଛା ! ପ୍ରିୟାର ବଚନାମୃତ ସେଚନରେ ଆମ୍ଭର ଶୁଷ୍କ ଆଶା ଲତା ପୁନର୍ଜ୍ଜୀବିତ ହୋଇଅଛି । ଭକ୍ତୋଦ୍ଧାରକ ଶ୍ରୀନୃସିଂହଙ୍କ ଚରଣସରୋଜରେ ଆମ୍ଭର ଭକ୍ତି ସହ ଆନ୍ତରିକ ପ୍ରାର୍ଥନା ଏହି ଯେ ନାଟକଟି କିପରି ବିନାବିଘ୍ନରେ ସମାପ୍ତ ହେବ । ପ୍ରିୟେ ! ବର୍ତ୍ତମାନ ସମୟକୁ ଲକ୍ଷ୍ୟ କରି ଗୋଟିଏ ଗୀତ ବୋଲ ।

ନଟୀ - ଯେ ଆଜ୍ଞା !

**ରାଗ ତୋଡ଼ି । ଏକତାଳ ।।**

କି ଶୋଭା ଦିଶେ କୁଞ୍ଜ ପୁଞ୍ଜ ପୁଷ୍ପ ରାଜିରେ ।<br>
ଚଞ୍ଚଳ ତର ଚଞ୍ଚରୀକ ବସି ଝଙ୍କାରେ ।୦।<br>
ନିତାନ୍ତ ମତ୍ତ ହୋଇ ପିକ ମଧୁପାନରେ ।<br>
କାନନ ବିତାନରେ ମଧୁର ଗାନକୁ କରେ ।୧।<br>
ଗନ୍ଧ ଚୋର ମନ୍ଦ ସମୀର ଶୈତ୍ୟ ଭାବରେ ।<br>
ପ୍ରବହି ମହିତାପ ନାଶେ କି ମନୋହରେ ।୨।<br>
ସୁଧାକର ସୁଧା ପାନେ ବସୁଧା କି ନିଶାରେ ।<br>
ନିସ୍ତବ୍ଧ ଭାବ ଧରି ଶୋଇଛି ଏହି ନିଶାରେ ? ।୩।<br>
ଅବଗାହନ୍ତି ସକଳେ ଆନନ୍ଦ ସାଗରେ<br>
ବାସନ୍ତୀ ଉତ୍ସବେ ମାତି ବିଭୁ ପଦ ଧ୍ୟାନରେ ।୪।

ସୂତ୍ର - ପ୍ରିୟେ ! ତୁମ୍ଭର କି ମଧୁର ସ୍ୱର ! ଶ୍ରବଣ ମାତ୍ରେ ଆମ୍ଭେ ମନ୍ତ୍ରବଦ୍ଧପଂଶିବଦ୍ଧ ହେଲୁଁ । ରେ ମତ୍ତକୋକିଳବଚନା ! ଏଣେ ଆସ ବିଘ୍ନ ବିନାଶକ ଗଣେଶଙ୍କ ଅର୍ଚ୍ଚନା କରିବା ।

ନଟୀ - ଯେ ଆଜ୍ଞା ।

(ଗଣେଶଙ୍କ ଆବିର୍ଭାବ)

ନଟୀ - (ପ୍ରଣାମ ପୂର୍ବକ)

**ରାଗ କଲ୍ୟାଣୀ । ଏକତାଳ ।**

ଗଜାନନ । କାମନା ପୂର୍ଣ୍ଣକାରି ।୦।
ପାର୍ବତୀ ନନ୍ଦନ । ପାପ ବିମୋଚନ ।
ବନ୍ଦିତ-ସୁର-ଶୌରି ।୧।
ମୂଷିକ ବାହନ । ଭୂଷିତ ଭୂଷଣ ।
ପାଳିତ-ଶିବ-ଗୌରୀ ।୨।
ଆଶ୍ରିତ ପୋଷକ । ବିଘ୍ନ ବିନାଶକ ।
ହେ ଭବ-ସିନ୍ଧୁ-ତରି ।୩।
ଗଣପତି ଦେବ । ଗଜପତି ଦେବ ।
ମାନସ -କଞ୍ଜ-ହରି ।୪।

ସୂତ୍ର - ଦେବ ! ଜଗତ୍‌ପୂଜ୍ୟ ବିଘ୍ନେଶ ! ଆମ୍ଭର ନାଟକାଭିନୟ କିପରି ନିର୍ବିଘ୍ନରେ ସମ୍ପୂର୍ଣ୍ଣ ହେବ ସେଥିଲାଗି ବର ପ୍ରଦାନ କରନ୍ତୁ । (ଦଣ୍ଡପ୍ରଣାମ)

ଗଣେଶ - ତଥାସ୍ତୁ । (ଅନ୍ତର୍ଦ୍ଧାନ)

ସୂତ୍ର - ପ୍ରିୟେ ! ସର୍ବ -ବିଘ୍ନ-ଶାନ୍ତି-କାରକ ଗଣନାୟକଙ୍କର ପ୍ରସାଦ ପାଇ ଅସୀମ ଆନନ୍ଦ ଲଭି ଅଛୁଁ । ତେଣେ ଚାଲ, ଜଗତ୍‌ବନ୍ଦ୍ୟା ମା ସରସ୍ୱତୀଙ୍କ ଚରଣ ସରୋଜରେ ଅଭୟ ବର ଭିକ୍ଷା କରିବା ।

(ସରସ୍ୱତୀଙ୍କ ଦୃଶ୍ୟ)

ନଟୀ - (ପ୍ରଣାମ କରି)

**ରାଗ ଝଞ୍ଜୋଟୀ । ଆଦିତାଳ ।**

ମାତ ସରସ୍ୱତି । ଦେବିସରସ୍ୱତି ।
ଭଗବତି ଭାରତି ନମସ୍ତେ ।୦।
ତାପ ବିମର୍ଦ୍ଦିନି । ପାପ ବିମୋଚନି ।।
ବୀଣା ପୁସ୍ତକ-ରଂଜିତ -ହସ୍ତେ ।୧।
ଜାଡ୍ୟାପହାରିଣୀ । କେଶବ ମୋହିନି ।
ଦେହି ପଦ ପଦ୍ମ ମମ ମସ୍ତେ ।୨।

କିଙ୍କରପାଳିନି । ପଙ୍କଜଲୋଚନି ।
ଶ୍ରୀ ଗଜପତି ଭୂପତି-ବିନୁତେ ।୩।

ସୂତ୍ର - (ବନ୍ଦନ) **ରାଗ ଝଞ୍ଜୋଟୀ । ଆଦିତାଳ ।**

ଜଲଜାନନି । ଚାରୁହାସିନି ।
ଦୀନ ଜନେ ବାରେ କୃପାକର ।୦।
ପଙ୍କଜାସନି । ରଙ୍କପାଳିନି ।
ସେବିତ ନିଖିଳ-ସୁର-ନର ।୧।
କୁନ୍ଦ ଦଶନି । ମନ୍ଦଗାମିନୀ ।
ସଦୟେ ଦିଅ ଅଭୟ ବର ।୨।
କରୁଣା ଧାନି । ଯା ରୂପ ଜିଣି ।
ନିନ୍ଦେ କୁନ୍ଦେନ୍ଦୁ ତୁଷାର ହାର ।୩।

ସରସ୍ୱତୀ - ରେ ବତ୍ସ ! ଆମ୍ଭର ଆଶୀର୍ବାଦରୁ ତୋର ନାଟକ ନିରାପଦରେ ଅଭିନୀତ ହେବ । ମନରେ କିଛି ଆଶଙ୍କା କର ନାହିଁ ।

ସୂତ୍ର - ଯେ ଆଜ୍ଞା (ପ୍ରଣାମ) (ସରସ୍ୱତୀଙ୍କ ଅନ୍ତର୍ଦ୍ଧାନ)

ସୂତ୍ର - ପ୍ରିୟେ ! ଗଣାଧିପ ଏବଂ ବୀଣାପାଣିଙ୍କ ବର ପାଇଲାଇଁ । ଏଥର ନାଟକାଭିନୟରେ ସଫଳ ମନୋରଥ ହେବା ଅତି ସୁଲଭ । ଆସ, ମୁଁ ଶ୍ରୀରମାରମଣଙ୍କ ବନ୍ଦନା କଲା ଉତ୍ତାରୁ କାର୍ଯ୍ୟରେ ଲାଗିଯିବା ।

ସୂତ୍ର - (ସ୍ତୁତି ଗାନ ।)

**ରାଗ ତୋଡ଼ି । ଆଦିତାଳ ।।**

ଆହେ ଶ୍ରୀ ଲକ୍ଷ୍ମୀରମଣ । ଘେନ ମୋ ବନ୍ଦନ ।୦।
ବଳି ଅଛି ମୋ ମାନସ । କରିବି ଜନେ ପ୍ରକାଶ ।
ଭବଦୀୟ କଥା ରସ । ହେ ଦୀନପାଳନ ।୧।
ନ ଜାଣେ ମୁହିଁ ଅଜ୍ଞାନ । ନାଟକ ବିଧି ବିଧାନ ।
ଅଭୟ କର ପ୍ରଦାନ । ଏହି ମୋ ଜଣାଣ ।୨।
ଦୋଷା ଦୋଷ କରି କ୍ଷମା । ପ୍ରକାଶି ନିଜ ମହିମା ।
ନାଟକ କରାନ୍ତୁ କ୍ଷମା- । - ନିଧାନ ସମ୍ପୂର୍ଣ୍ଣ ।୩।

ନଟୀ - ଆର୍ଯ୍ୟପୁତ୍ର ! ଚାଲ ! ଚାଲ ! ତେଣେ ନଟ କାହିଁକି ଆମ୍ଭଙ୍କୁ ଡାକୁ ଅଛନ୍ତି ।
(ଦୁହିଁଙ୍କର ପ୍ରସ୍ଥାନ ଓ ଯବନିକା ପତନ ।)

(ନେପଥ୍ୟେ)

## ରାଗ କାମୋଦୀ । ଆଦି ତାଳ ।।

ରାକ୍ଷସାଧିପ । ହିରଣ୍ୟକଶିପୁ ସଭାକୁ ଆସଇ ।
ସୁର ନର କିନ୍ନର । ଯାଠାରେ ପରିକର ।
ସେହିପରି ସେବନ୍ତି ସେହି ।୦।
ତାର ମିଳିତ । ସାର ମରକତ ।
ହାର ବିରାଜଇ । ଶିରରେ ପରକଟ ।
ହୀରକର ମୁକୁଟ । ବୀର ବେଶ ପକାଇ ।୧।
କୁଣ୍ଡଳ ଦୋଳେ । ତା ଗଣ୍ଡ ମଣ୍ଡଳେ ।
ଶୋଭା କି ଦିଶଇ । ଦିନମଣି ଦୂଷଣ ।
ମଣିଗଣ ଭୂଷଣ । ଅଙ୍ଗେ ଭୂଷିତ ହୋଇ ।୨।
ନର୍ତ୍ତକୀଗଣ । କରନ୍ତି ନର୍ତ୍ତନ ।
ମାଗଧ ବନ୍ଦଇ । ଅରିକୁଳଦରଦ ।
ବୀର ତୂର ଶବଦ । ଦଶ ଦିଗପୂରଇ ।୩।
ମଣିମା ଡାକ । ପଢ଼ଇ ଅନେକ ।
ଚାମର ଢଳଇ । ଅତିଶୟ ଭୀକର ।
କରରେ ଖରତର । ତରବାର ବୁଲାଇ ।୪।

-୦-

## ରାଗ ବିହାଗ । ଆଦିତାଳ ।।

ସହୀ ସହିତରେ ଘେନି । ଲୀଳାବତୀ ଆସଇ ।୦।
କୁଟିଳ-ନୀଳ-କୁନ୍ତଳା । ଝମକାଇ ପଦ ବଳା ।
ଧୀରତର ପଦନ୍ୟାସେ । ଧରାଶିର ମଣ୍ଡଇ ।୧।
ବିଳସାଇ ଦରହାସ । ଲାଲମୟ ରଦବାସ ।
ନାଶାଫୁଲା ନଥଝୁଲା । କି ସୁନ୍ଦର ଦିଶଇ ।୨।
ବିରାଜଇ ଉରପର । ସାର ମରକତ ହାର ।
ମତ୍ତଚଞ୍ଚରୀକବେଣୀ । ଚରମରେ ଲୋଟଇ ।୩।
ମଦନ-କର-ମୁକୁର । ବଦନ କି ମନୋହର ।
ରୁଚକ ରୁଚିର କୁଚ । ବାସ ଫୁଟ ଶୋଭଇ ।୪।

## (ପ୍ରଥମାଙ୍କ)

### (ପ୍ରଥମ ଦୃଶ୍ୟ–ସଭାଗୃହ)

(ରାଜା ହରିଣ୍ୟକଶିପୁ, ଲୀଳାବତୀ, ମନ୍ତ୍ରୀ ବିପ୍ରଚିତ୍, ବିଦୂଷକ ଓ ପାରିଷଦବର୍ଗ ଆସୀନ ।)

ରାଜା - ବିପ୍ରଚିତ୍ ଅମାତ୍ୟପୁଙ୍ଗବ ! ତୁମ୍ଭର ସମସ୍ତ କୁଶଳ ?

ମନ୍ତ୍ରୀ - ସକଳ ସାମ୍ରାଜ୍ୟଲକ୍ଷ୍ମୀ ବିଭବାତିଶୟ ବିଶିଷ୍ଟ ମହାରାଜଙ୍କ ସେବକ ହୋଇଥିବାଠାରେ ଆମ୍ଭର କୁଶଳ ବିନା ଆଉ କିସ ହେବ ?

ରାଜା - ପ୍ରିୟ ବିଦୂଷକ ! ତୁମ୍ଭର କୁଶଳାତିଶୟ କହନ୍ତୁ ?

ବିଦୂଷକ - ସ୍ୱପରାକ୍ରମୋପାର୍ଜ୍ଜିତ ସମସ୍ତ ଭୂବଳୟାଳଂକୃତ ଭୁଜଦଣ୍ଡ ବିଶିଷ୍ଟ, ବଳବର୍ଦ୍ଧୈରି-ବିତାନ-ମଦନୋନ୍ମତ୍ତ-କରିକୁମ୍ଭ-ବିଦାରଣ ପ୍ରଚଣ୍ଡ ଗଣ୍ଡ ଭେରଣ୍ଡ, ଦାନବ କୁଳ-କ୍ଷୀରାର୍ଣ୍ଣବ-ରାକାସୁଧାକର, ନିଖିଳରାଜନ୍ୟବୃନ୍ଦ-ଭୀପ୍ରଦ-ଧୂମକେତୁ, ସସାଗରା ଧରିତ୍ରୀର ଏକମାତ୍ର ଅଧୀଶ୍ୱର ଶ୍ରୀଶ୍ରୀଶ୍ରୀ ହରିଣ୍ୟକଶିପୁଙ୍କ ବାହୁ ଛାୟାରେ ଥାଇ ଆମ୍ଭର ସକଳ ବିଷୟରେ ଶୁଭହେବା କି ଅସମ୍ଭବ ?

ରାଜା - (ଈଷତ୍ ହାସ ପ୍ରକାଶ କରି) ଆଚ୍ଛା ! ମନ୍ତ୍ରୀପୁଙ୍ଗବ ! ଆମ୍ଭ ଦେଶସ୍ଥ ବ୍ରାହ୍ମଣମାନେ ବେଦ ବେଦାଙ୍ଗ ଇତିହାସ ପୁରାଣ ପଠନ, ଯଜନ ଯାଜନାଦି ଷଟ୍‌କର୍ମ ଓ ଦେବଦେବ ଉମା ପତିଙ୍କ ଅର୍ଚ୍ଚନା ଓ ବନ୍ଦନାଦି କରନ୍ତି ?

ମନ୍ତ୍ରୀ - ସକଳ ବିଷୟ ଉତ୍ତମରୂପେ କରନ୍ତି, ମହାରାଜାଧିରାଜ ।

ରାଜା - ସକଳ ଶସ୍ତ୍ରବିଦ୍ୟାନିପୁଣ ରାଜନ୍ୟବର୍ଗ ଆମ୍ଭ ଆଜ୍ଞା ଅଲଘଂନ ପୂର୍ବକ ନିଜ ନିଜ କାର୍ଯ୍ୟରେ ଜାଗରୁକ ହୋଇ ଅଛନ୍ତି ?

ମନ୍ତ୍ରୀ - ମାଳବ, ନେପାଳ, ନିଷଧ, ମଗଧ, କାଶ୍ମୀର, ଅଙ୍ଗ, ବଙ୍ଗ, ଚୋଳ, କେରଳ, କାମ୍ବୋଜ, କର୍ଣ୍ଣାଟ, କେକୟ, କର୍ବୁର, ଯବନ, ଆନ୍ଧ୍ର, ଓଡ୍ର ଓ ମରହଟ୍ଟାଦି ଭୂପତିମାନେ ଭବଦୀୟ ଚରଣାରବିନ୍ଦରେ ସମ୍ପୂର୍ଣ୍ଣ ଭକ୍ତିରଖି ଓ ସ୍ୱ ସ୍ୱ ଗଜ ତୁରଙ୍ଗମାଦି ସୈନ୍ୟମାନଙ୍କୁ ଯୁଦ୍ଧ ସଜ୍ଜାରେ ସଜ୍ଜିତ କରି ସ୍ୱାମି କାର୍ଯ୍ୟରେ ନିରନ୍ତର ତତ୍ପର ଅଛନ୍ତି ।

ରାଜା - ଆଚ୍ଛା ।

(କୁଳ ଗୁରୁ ଶୁକ୍ରାଚାର୍ଯ୍ୟ ସଭାରେ ପ୍ରବେଶ)

ରାଜା - (ସିଂହାସନରୁ ଉଠି) ନମସ୍କାର ! ଭଗବନ୍ ଶୁକ୍ରାଚାର୍ଯ୍ୟ !

ଶୁକ୍ରା - କଲ୍ୟାଣ ! କଲ୍ୟାଣ ! ମହାରାଜ !

ରାଜା - (ହସ୍ତ ଦେଖାଇ) ମହାଭାଗ ! ଏହି ଆସନରେ ଉପବେଶନ କରନ୍ତୁ ।

ଶୁକ୍ରା - ଯେ ଆଜ୍ଞା ।

ବିଦୂ - ମହାରାଜ ! ବିଦ୍ୱଜ୍ଜନକୋଳାହଳକାରୀ ଶୁକ୍ରାଚାର୍ଯ୍ୟ ସଭାରେ ଉପସ୍ଥିତ ଅଛନ୍ତି । ବୋଧହୁଏ ସଂପ୍ରତି ଛାମୁ କୌଣସି ରାଜକୀୟ କାର୍ଯ୍ୟରେ ଶ୍ରୀହସ୍ତ କ୍ଷେପଣ କରିବେ ନାହିଁ । ଏ ହେତୁରୁ ଯଦି ଶ୍ରୀଛାମୁଙ୍କ ଆଜ୍ଞା ହୁଏ, ତେବେ କୁଳଗୁରୁ ଶୁକ୍ରାଚାର୍ଯ୍ୟ କେତେଗୁଡ଼ିଏ ନୀତିଗର୍ଭ ସଦୁପଦେଶ ଏ ସଭାସ୍ଥ ଜନଙ୍କୁ ବୁଝାଇ ସ୍ୱୀୟ ପାଣ୍ଡିତ୍ୟ ଚରିତାର୍ଥ କରିବେ ।

ମନ୍ତ୍ରୀ - ମହାରାଜ ! ବୋଧହୁଏ ଅଦ୍ୟ ଶ୍ରୀଛାମୁଙ୍କର ଲବମାତ୍ର ଅବସର ନାହିଁ । ଗତକାଲି ଯେଉଁ ରାଜକୀୟ କାର୍ଯ୍ୟଗୁଡ଼ିକ ନିଷ୍ପତ୍ତି ନ ହୋଇ ରହିଯାଇଅଛି, ସେହି କାର୍ଯ୍ୟଗୁଡ଼ିକ ଆଜି ଶ୍ରୀଛାମୁ ଦଖଲ ଘେନିଲେ ଭଲ ହେବ ।

ବିଦୂ - ମହାରାଜ ! ତାହା ଆଜିକ ନିମନ୍ତେ ବନ୍ଦ କରାନ୍ତୁ ।

ମନ୍ତ୍ରୀ - ମହାରାଜ ! ତାହା ବନ୍ଦ କରିବା ନିତାନ୍ତ ଅନୁପଯୁକ୍ତ । କାରଣ ରାଜାର ପ୍ରଧାନ କର୍ତ୍ତବ୍ୟକର୍ମ ରାଜକୀୟ କାର୍ଯ୍ୟ ନିଷ୍ପତ୍ତି; ତତ୍ପରେ ଚିତ୍ତାନୁସାରେ କୌଣସି କୌଣସି ସମୟରେ ଶାସ୍ତ୍ର-ଲୋଚନା, ସଙ୍ଗୀତ ଶ୍ରବଣ, ମୃଗୟାଦିରେ ରତ ହେବା ବିଧେୟ ।

ବିଦୂ - ସଖେ ! ଭଲ କହିଲ । ଆପଣଙ୍କ ମତରେ ଶାସ୍ତ୍ରାଲୋଚନା ଓ ଆମୋଦ ପ୍ରମୋଦ ରାଜାଙ୍କ ପ୍ରଧାନ କର୍ମ ନ ହୋଇ ବେତନଗ୍ରାହୀ ଚାକର ପରି ରାତ୍ରିଂଦିବା ରାଜକୀୟ କର୍ମ କରିବା ଏକା ରାଜାର କର୍ତ୍ତବ୍ୟ କାର୍ଯ୍ୟ ହେଲା । ହାୟ ! କି ବିଚିତ୍ର ଯୁକ୍ତି !

ମନ୍ତ୍ରୀ - ପ୍ରିୟ ବିଦୂଷକ ! ଆମ୍ଭ ପ୍ରତି ରୋଷ କରନ୍ତୁନା । ରାଜା ବୈତନିକ ଚାକର ଅପେକ୍ଷା ଶତଗୁଣ ଅଧିକ ପରିଶ୍ରମ ସ୍ୱୀକାର ପୂର୍ବକ ଶାସନୀୟ କାର୍ଯ୍ୟରେ ରତ ହେବା କେବଳ ବିଧେୟ । ଯେ ସକଳ ସାମ୍ରାଜ୍ୟର ପିତା, ସେ ନିଜେ ପୁତ୍ରବତ୍ ପ୍ରଜାଗଣଙ୍କ ଲାଳନ ପାଳନ ଓ ଶାସନ କରିବା ତୁମ୍ଭ ମତରେ କି ଦୋଷାସ୍ପଦ ?

ବିଦୂ - ସଖେ ! ଆପଣ କହିବା ପରି ଯଦି ମହାରାଜ ନିଜେ ସକଳ କର୍ମ କରି ନେବେ ତେବେ ଆମ୍ଭେମାନେ ମନ୍ତ୍ରୀ ପଦବୀରେ ବରିତ ହେବା ନିମନ୍ତେ କି ହେତୁ ପଶ୍ଚାତ୍‌ପଦ ହେବୁଁ ?

ରାଜା - (ଈଷତ୍ ହାସ କରି) ବୃଥା ବାକ୍ ବିତଣ୍ଡାରେ କି ପ୍ରୟୋଜନ ? ବାସ୍ତବ ରାଜକୀୟ କାର୍ଯ୍ୟ ସମାପନ ରାଜାର ପ୍ରଧାନ କର୍ତ୍ତବ୍ୟକର୍ମ । ଯାହା ହେଉ, କୁଳଗୁରୁ ଶୁକ୍ରାଚାର୍ଯ୍ୟଙ୍କ ମୁଖ ନିଶ୍ରୁତ ବଚନାମୃତ ଶ୍ରୁତି ମୁଖରେ ଅନେକ ଦିନାବଧି ପାନ କରିନାହୁଁ । ଏ ହେତୁରୁ ଅଦ୍ୟ ସେ ଅମୃତ ପାନ କରିବାକୁ ଉପଯୁକ୍ତ ସମୟ ଘଟି ଅଛି ବୋଲି ଆମ୍ଭେ ଭାବୁଁ ।

ମନ୍ତ୍ରୀ - ଶ୍ରୀ ଛାମୁଙ୍କ ଯେ ଇଚ୍ଛା ।

ବିଦୂ - (ମନ୍ତ୍ରୀପ୍ରତି) ମହାଶୟ ! ବସନ୍ତୁ ! କଥାଟା କହିଲେ କି ହେବ ? କାର୍ଯ୍ୟରେ ତ ପରିଣତ ନ ହେଲା । (ସଭାସ୍ଥ ଜନ ହାସ୍ୟ)

ରାଜା - ମହାଭାଗ ! କୁଳଗୁରୁ ଶୁକ୍ରାଚାର୍ଯ୍ୟ ! ଆପଣ ସଦୟ ହୋଇ କେତେକ ନୀତି ବିଷୟ ଆମ୍ଭଙ୍କୁ ଓ ଏହି ସଭାସ୍ଥ ଜନଙ୍କୁ ବୋଧ କରାନ୍ତୁ ।

ଶୁକ୍ରା - ଯେ ଆଜ୍ଞା ! ମହାରାଜ ଓ ସଭ୍ୟବୃନ୍ଦ ! ଶ୍ରୀଛାମୁଙ୍କର ଆଦେଶାନୁସାରେ ଅଦ୍ୟ ଆମ୍ଭେ ଏହି ସମବେତ ଭଦ୍ରମଣ୍ଡଳୀ ସମକ୍ଷରେ କିୟତ୍‌କାଳ ନୀତିଶାସ୍ତ୍ର ବିଷୟରେ ଉପନ୍ୟାସ କରିବୁଁ । ତାହା ଆପଣମାନେ ଶ୍ରଦ୍ଧାନ୍ୱିତ ହୋଇ ଶ୍ରବଣ କରନ୍ତୁ । ନୀତିଶାସ୍ତ୍ରର ଧାରାଗୁଡ଼ିକୁ ସକଳ ସଂପ୍ରଦାୟ ଲୋକେ ସ୍ୱୀକାର କରନ୍ତି । ଯାହା କି ଆମ୍ଭମାନଙ୍କ ଦେଶରେ ଅଧୁନାତନ ପ୍ରଚଳିତ ସାମାଜିକ ନିତ୍ୟକୃତ୍ୟ ନିୟମମାନଙ୍କୁ ଅସ୍ମଦ୍ଦେଶୀୟ ଲୋକକଥିତ ନୀତିଶାସ୍ତ୍ରର ଧାରା ବୋଲି କହନ୍ତି, ତାହା କେବଳ ଭ୍ରମ । ଦେଖନ୍ତୁ, କୌଣସି ଏକ ଦଳ ସ୍ୱୀକୃତ ନିତ୍ୟକୃତ୍ୟ ବା ନିତ୍ୟନୈମିତ୍ତ୍ୟ କ୍ରିୟାଗୁଡ଼ିକ ଅନ୍ୟ ଦଳ ସ୍ୱୀକାର କରନ୍ତି ନାହିଁ ଓ ସମୟେ ସମୟେ ଘୃଣା କରନ୍ତି । ଏହି ହେତୁରୁ ସକଳ ଦଳସମ୍ମତ ନୀତି ମାତ୍ର ଐଶ୍ୱରିକ ନୀତି । (ଉଚ୍ଚରେ ରୋଦନ କରି ଦିତୀଙ୍କ ପ୍ରବେଶ ଓ ସଭାସ୍ଥ ଜନ ସଚକିତେ ନିରୀକ୍ଷଣ । ରାଜା ନିଜ ମାତାଙ୍କର ଆଗମନ ଓ ରୋଦନ ଦେଖି ସିଂହାସନରୁ ଉଠି ମାତାଙ୍କ ନିକଟକୁ ଯାଇ ପ୍ରଣାମ କରି ବିନୟରେ ପଚାରିବା ।)

ରାଜା - **ରାଗ ଝଞ୍ଜୋଟୀ । ଆଦିତାଳ ।**

କହ ତୁ ବଚନ । ଜନନି ବହନ ।
କି ହେତୁ ବିକଳେ କରୁ ରୋଦନ ? ।୦।

କେ ଦେଲା କି ଦଣ୍ଡ ? । ଦିଶୁଛି ତୋ ଗଣ୍ଡ ।
ଲୋତକ ଧାରରେ ଅତୀବ ମଳିନ ।୧।
ଅଙ୍ଗ ଥରହର । କିଂପା ଏ କାତର ? ।
ଦିଶେ ନାରଖାର ଶ୍ରୀମୁଖ ନଳିନ ।୨।
ଏ ବୟସେ ତୋର । କହ କେ ପାମର ।
ତୋତେ କରିଅଛି କିବା ଅପମାନ ? ।୩।

ଦିତୀ **ରାଗ ଖମାଚ । ଅଟତାଳ ।**

କି ବୋଲି କହିବି ତୋତେ । ମୋହର ଦୁଃଖ ।୦।
ବଳିଷ୍ଠ ବୀରବର । କନିଷ୍ଠ ଭାଇ ତୋର ।
ପରାଣ ହରାଇଛି । କମଳାପତି ହାତେ ।୧।
ତିଳେ ହେଲେ ନ ଡରି । କୁଳଜନବଇରୀ ।
ବରାହରୂପ ଧରି । ଭସାଇ ଦେଲା ମୋତେ ।୨।
ଧିକ ମୋର ଜନମ । ଯାଉ ନାହିଁ ଜୀବନ ।
ଯାହା ହେଉଛି ଚିତ୍ତ । ପଡ଼ି ଖେଦ ସରିତେ ।୩।
ଆରେ ନିଷ୍ଠୁର ବିଧି । କାହିଁ ନେଲୁ ମୋ ନିଧି ।
ଏ ପାପ ନୟନେ କି । ଦେଖିବି ଆଉ ସତେ ? ।୪।

ରାଜା - (ଦୀର୍ଘ ନିଶ୍ୱାସ ଛାଡ଼ି ଅଶ୍ରୁମୋଚନ କରିବା) ମାତା ! କ୍ରନ୍ଦନ କର ନାହିଁ । ଶାନ୍ତ ହୁଅ, ଶାନ୍ତ ହୁଅ ।

ଦିତୀ - ବାବୁ ! ମୁଁ ସମ୍ଭାଳି ପାରୁ ନାହିଁ । (କ୍ରନ୍ଦନ କରିବା)

**ରାଗ ବିହାଗ । ଆଦିତାଳ ।**

ନକର ତୁ ବିଚାର । ମାତ କେତେ ମାତର ।୦।
ବିହି ଲିହିବା କଥା । ଆନ କେ କରିବ ତା ?
ଯାହା ହେବାକୁ ଥାଏ । ଘଟଇ ସେ ନିକର ।୧।
ଅନିତ୍ୟ ବିନଶ୍ୱର । ଅଟଇ ଏ ସଂସାର ।
ହୋଇଛି କେ ଜାଣିଛ । ଅଜର କି ଅମର ? ।୨।
ଭାବିଲେ କି ମିଳିବ ? । ଆଉ କି ସେ ଆସିବ ?।
ଦେଖି ଜନନୀ ମୋତେ । ଦୁଃଖ ସାନ୍ତ୍ୱନା କର ।୩।

ଆଜ ଠାରୁ ବଇରୀ । ହେଲା ମୋହର ହରି ।
ଦେଖିବି କେ ରଖିବ ? । ଛେଦିବି ତାର ଶିର ।୪।

ରାଜା - (ଲୀଳାବତୀ ପ୍ରତି) ସୁନ୍ଦରୀ ! ମାତାଙ୍କୁ ଅନ୍ତଃପୁରକୁ ନେଇ ସାନ୍ତ୍ୱନା କର ।

ଲୀଳା - ଯେ ଆଜ୍ଞା ! (ଶାଶୁଙ୍କୁ ଧରି ଅନ୍ତଃପୁର ଗମନ ।)

ରାଜା - ମନ୍ତ୍ରୀ ପ୍ରଧାନ ! କି ଅଦ୍‌ଭୁତ ଘଟଣା, କି ଦୁଃଖର ବିଷୟ ! ଛାର ହରି ଆମ୍ଭର କନିଷ୍ଠ ଭ୍ରାତା ଦିଗ୍‌ବିଜୟୀ ହିରଣ୍ୟାକ୍ଷକୁ ନିହତ କରିଅଛି ! କି ଦୁରୂହ ସାହସ ! ବୋଧହୁଏ ଆମ୍ଭର ବାହୁବଳ ସେ ବୁଝି ନଥିବ । ସେହେତୁରୁ ମରଣକୁ ବରଣ କରି ଅଛି । ଆମ୍ଭେ ଏ ସଭାସ୍ଥ ଜନ ସମ୍ମୁଖରେ ପ୍ରତିଜ୍ଞା କରି କହୁ ଅଛୁଁ କି ଏହି ବଳବଦ୍‌ବୈରି-ବିତାନ-ମଦୋନ୍ମତ୍ତ-କରିକୁମ୍ଭ ବିଦାରଣ-ପ୍ରଚଣ୍ଡ-କୃପାଣରେ ତାର ଶିରଛେଦନ କରି ଅଖିଳ ବ୍ରହ୍ମାଣ୍ଡଭାଣ୍ଡକୁ ନିଜ କୁଳଜନମାନଙ୍କର ଲୀଳା କ୍ଷେତ୍ରରୂପେ ପରିଣତ କରିବୁଁ ।

ମନ୍ତ୍ରୀ- ଆଜ୍ଞା ! ମହାରାଜ ! ବୋଧହୁଏ ଭବଦୀୟ ଶତ୍ରୁ-ରକ୍ତ-ଲିପ୍ତ କୃପାଣର ମହିମା ସେ ଜାଣି ନାହିଁ । ବାସ୍ତବରେ ଶତ୍ରୁକୁ ସମୂଳରେ ନାଶ କରିବା ନିଖିଳଜନସମ୍ମତ । କ୍ଷମା କରନ୍ତୁ । ମୁ ଛାମୁରେ ନିବେଦନ କରୁଅଛି । ସେ ହରି ବଡ଼ ମାୟାବୀ । ସେ ବିବିଧ ବେଶ ଧାରଣ କରିପାରେ । ସେ ଅକାଟ୍ୟରେ ଛାମୁଙ୍କ ସହିତରେ ଯୁଦ୍ଧ କଲେ ତାହାର ପରାଜୟ ଅନିବାର୍ଯ୍ୟ । ମାତ୍ର କୃତ୍ରିମ ବେଶ ଧାରଣ କଲେ କେଜାଣି ଛାମୁଙ୍କୁ ବାଧା ଦେଇପାରେ । ଦେଖନ୍ତୁ ଯେ ବୀରକୁଳକୁ ଏକବାରେ ନିର୍ମୂଳ କରିଥିଲେ, ସେହି ହିରଣ୍ୟାକ୍ଷଙ୍କୁ ସେ କିପରି ବରାହ ରୂପ ଧାରଣ କରି ହତ କରିଅଛି । ଏହି କାରଣରୁ ଆଦୌ ଉପାୟ ଅବଲମ୍ବନ କରିବା ବିଧେୟ ।

ରାଜା - ମନ୍ତ୍ରିପ୍ରଧାନ । ଆପଣ ଯଥାର୍ଥ କହିଲ । କହନ୍ତୁ କି ଉପାୟ ଅବଲମ୍ବନ କଲେ ସେ ଅସୁରକୁଳବୈରିକି ବିନାଶ କରି ପାରିବୁଁ ?

ମନ୍ତ୍ରୀ - ଆଜ୍ଞା ! ଶ୍ରୀଛାମୁରେ ଜଣା କରୁଅଛି ଶ୍ରବଣ କରନ୍ତୁ । ଶ୍ରୀଛାମୁ କଠିନ ଜପ ତପ ସାଧନ କରି ଜଗଦ୍‌ପାତା ପିତାମହଙ୍କଠାରୁ ବରପ୍ରାପ୍ତ ହେଲେ ଅନାୟାସରେ ତାହାକୁ ନାଶ କରିପାରନ୍ତି ।

ରାଜା - ହେଉ ! ତପର ସମସ୍ତ ଆୟୋଜନ କରାନ୍ତୁ । ନିର୍ଜ୍ଜନରେ ତପ ସାଧନ କରିବା ଉଚିତ୍ । ଏଣୁ ଆମ୍ଭେ ମନ୍ଦରାଦ୍ରିକି ଯାଇ ତପ କରିବୁଁ । ଆଜିକ ନିମନ୍ତେ ସଭା ବନ୍ଦ ହେଉ । ଆମ୍ଭେ ଅନ୍ତଃପୁରକୁ ଯାଉଁ ।

ମନ୍ତ୍ରୀ । - ଯେ ଆଜ୍ଞା ।

(ରାଜା ଶୁକ୍ରାଚାର୍ଯ୍ୟଙ୍କୁ ପ୍ରଣାମ କରି ଅନ୍ତଃପୁରକୁ ଗମନ ଓ ଯବନିକା ପତନ)

## (ଦ୍ୱିତୀୟ ଦୃଶ୍ୟ)

### (ଲୀଳାବତୀଙ୍କ ଅନ୍ତଃପୁର)

(ଲୀଳାବତୀ ପର୍ଯ୍ୟଙ୍କୋପରି ଅର୍ଦ୍ଧଶୟନା ଓ କୀରବାଣୀ, ସୁଲକ୍ଷଣା ସଖିଦ୍ୱୟଙ୍କର ପୃଥକାସନରେ ଉପବେଶନ)

ଲୀଳା - କୀରବାଣି ! ସୁଲକ୍ଷଣେ ! ଦେଖ ! ଯାହାକି ମନୁଷ୍ୟ କେବେ ହେଲେ ମନରେ ଭାବନା କରି ନଥାଏ ତାହା କିପରି ବିଧି ବଶରୁ ଘଟେ ! ଅଦ୍ୟ ଅପରାହ୍ନ ସମୟରେ ମହାରାଜ ସଭାରେ ବିରାଜମାନ କରିଥିଲେ । ମୁଁ ମଧ ତାହାଙ୍କ ପାଖରେ ବସିଥିଲି । ସଭାରେ ସକଳ ଶାସ୍ତ୍ରନିପୁଣ ଆଉ ମାନ୍ୟଗଣ୍ୟ ଲୋକେ ଉପବିଷ୍ଟ ଥିଲେ । ସେ ସମୟରେ ଭଗବନ୍ ଶୁକ୍ରାଚାର୍ଯ୍ୟ ଆସି ମହାରାଜଙ୍କ ଆଦେଶମତେ ନୀତି ବିଷୟକ ଏକ ବକ୍ତୃତା ପ୍ରଦାନ କରୁଥିଲେ । ବକ୍ତୃତାଟି ସମ୍ପୂର୍ଣ୍ଣ ନ ହେଉଣୁ ମୋହର ଶ୍ୱଶ୍ରୂ ହଠାତ୍ ସଭା ସ୍ଥଳରେ ପ୍ରବେଶ କରି ଉଚ୍ଚରେ ରୋଦନ କରି ମହାରାଜଙ୍କୁ ଜଣାଇ ଦେଲେ ଯେ ଆମ୍ଭର ଦେବର ହିରଣ୍ୟାକ୍ଷକୁ ଲକ୍ଷ୍ମୀପତି ହରି ବରାହ ରୂପ ଧାରଣ କରି ହତ କରିଅଛନ୍ତି । ଏହି ଦାରୁଣ ସମ୍ବାଦ ମହାରାଜ ଶ୍ରବଣ କରି କେତେ କାଳ ପର୍ଯ୍ୟନ୍ତ ବିସ୍ମିତ ହେଲେ । ଆଉ କୁଳଗୁରୁ ଶୁକ୍ରାଚାର୍ଯ୍ୟ ଏକବାର ଅବାକ୍ ହୋଇ ବସିଲେ । ମହାରାଜଙ୍କ ଆଜ୍ଞାରୁ ମୁ ଶ୍ୱଶ୍ରୂଙ୍କୁ ଅନ୍ତଃପୁରକୁ ନେଇ ଆସି ସକଳ ପ୍ରକାର ଶୁଶ୍ରୂଷା କଲି । କେ ଜାଣେ ସେ ଏତେବେଳଯାଏ ରୋଦନ କରୁଥିବେ ପରା ! ସଖି । ମହାରାଜ କେଉଁଠାରେ କିସ କରୁଥିବେ ମୁଁ ଜାଣିପାରୁନାହିଁ । ସେ କି ଭ୍ରାତୃମୃତ୍ୟୁ ହେତୁ ଶୋକାକୁଳିତ ନା ସେ ଅସୁରକୁଳଶତ୍ରୁ ରମାରମଣଙ୍କ ସଙ୍ଗେ ଯୁଦ୍ଧ

କରିବାକୁ ଉପାୟ ଚିନ୍ତା କରୁଥିବେ । ମୋର ମନ ବଡ଼ ଆନ୍ଦୋଳିତ ହେଉଅଛି । (ଅଞ୍ଚଳରେ ଲୋତକ ପୋଛିବା ।)

କୀର - ସଖି । ଏପରି ଦୁଃଖ କର ନାହିଁ । ଦେବଦେବ ମହାଦେବଙ୍କ କୃପାରୁ କୌଣସି ଅନିଷ୍ଟ ଘଟିବ ନାହିଁ । ମହାରାଜାଙ୍କୁ ଏପରି ଦୁଃଖ ଆସି ଉପସ୍ଥିତ ହେବା ସମୟରେ ସିନା ତୁମ୍ଭେ ଧୈର୍ଯ୍ୟ ଧରି ତାହାଙ୍କୁ ସାନ୍ତ୍ୱନା କଲେ ଭଲ ହେବ । ନା ତୁମ୍ଭେ କାନ୍ଦି ମହାରାଜାଙ୍କୁ ଅଧିକ କନ୍ଦାଇବ ?

ସୁଲ - କୀରବାଣୀ ଯଥାର୍ଥ କହିଅଛି । ମହାରାଜ ଆମ୍ଭ ସଖିଙ୍କି ଏପରି ସ୍ନେହ କରନ୍ତି ଯେ ଯଦି କୌଣସି ସମୟରେ ଆମ୍ଭ ସଖୀଙ୍କ ମୁଖ ମ୍ଳାନ ଦେଖନ୍ତି ତେବେ ନିଜ ନୟନରୁ ଅଶ୍ରୁ ବୁହାଇ ପକାନ୍ତି । ଏପରି ସ୍ଥଳେ ଏ କି ରୋଦନ କଲେ ସେ ଆଉ ଦେହ ଧରି ରହିପାରିବେ ?

ଲୀଳା - ସଖି । ତୁମ୍ଭେ ଯାହା କହିଲ ତାହା ସତ । ମାତ୍ର ମୁଁ ଜାଣିପାରୁ ନାହିଁ କି ହେତୁରୁଟି ଆଜି ମୋ ମନ ଏଡ଼େ ଶୋକାକୁଳିତ ହେଉଅଛି ? ଯାହା ହେଉ ତ୍ରିଲୋକବନ୍ଦ୍ୟ ଜଗଦ୍‌ଜନନୀ ପାର୍ବତୀଙ୍କଠାରେ ମୋର ଜଣାଣ ଏହି ଯେ ମହାରାଜ କିପରି ସର୍ବ ଶୁଭରେ ଥିବେ ।

କୀର - ଦୁଃଖ କର ନାହିଁ । ଶିବ ପାର୍ବତୀ ମହାରାଜାଙ୍କର ଆଉ ତୁମ୍ଭର ସର୍ବ ପ୍ରକାର ମଙ୍ଗଳ କରିବେ ।

ସୁଲ - କୀରବାଣି ! ଚାଲ ଏଠାରୁ ଆମ୍ଭେ ଯିବା । ବୋଧହୁଏ ମହାରାଜ ଏଆଡ଼େ ବିଜେ ହେଉଅଛନ୍ତି ।

କୀର - ହଁ, ଚାଲ ଯିବା ।

(ଦୁହିଁଙ୍କର ପ୍ରସ୍ଥାନ)

(ଲୀଳାବତୀ ପର୍ଯ୍ୟଙ୍କ ତଳେ ଦଣ୍ଡାୟମାନା ଓ ରାଜାଙ୍କ ପ୍ରବେଶ)

ଲୀଳା - ଆର୍ଯ୍ୟପୁତ୍ର ! ଦାସୀକି କୃପା କରନ୍ତୁ ।
(କହି ଚରଣତଳେ ପ୍ରଣାମ କରିବା)

ରାଜା - ପ୍ରିୟେ ! କୃପାପାତ୍ର କି କୃପାକର ହୋଇପାରେ ?
(ରାଜା ଓ ରାଣୀଙ୍କ ପର୍ଯ୍ୟଙ୍କୋପରି ଉପବେଶନ)

ରାଜା - **ରାଗ ନାଦନାମକ୍ରିୟା । ଆଦିତାଳ ।**

ଗଜ-ବର-ଗତି ଶୁଣରେ । ମୋ ବଚନକୁ ।
ଦନୁଜାରି ସେ ହରି । ଅନୁଜକୁ ମୋହରି ।

ଧରି କପଟ ବେଶ । ମାରିଛି ପରାଣରେ ।୦।
ବଇରୀ ନାଶିବା ହେତୁରେ । ଜୀବର ଧନ ।
ଯିବି ମୁଁ ମନ୍ଦରାଚଳରେ ।
ନାନାଦି ତପ ଭାବେ । ମନାଇ କଞ୍ଜଭବେ ।
ଦିଗ୍‌ବିଜୟୀ ହୋଇ । ଆସିବି ମୁ ଜାଣରେ ।୧।
କ୍ଷତ୍ରିୟ କୁଳେ ଜାତ ହୋଇ । ନୀଳ କୁନ୍ତଳା ।
ଶତ୍ରୁକୁ ଯଦି ନ ନାଶଇ ।
ଧିକ ତାର ଜନମ । ଧିକ ତା ବୀରପଣ ।
ଜୀଇଁଥିଲେ ହେଲେ । ଅଛି କି କାରଣରେ ? ।୨।
ଦୁଃଖ ନ କରିବୁ ମନରେ । କନକଗୋରି ।
ଆସିବି ଅଳପ ଦିନରେ ।
ସଖୀଙ୍କ ସଙ୍ଗତରେ । ଆମୋଦ ପ୍ରମୋଦରେ ।
ସୁନ୍ଦରି କରୁଥିବୁ । କାଳକୁ ହରଣରେ ।୩।
କେବଳ ଶରୀର ମାତର । ପୀନଉରଜା ।
ନେଉଛି ସଙ୍ଗେ ମୋର ।
ମନ ଧନ ତୋଠାରେ । ଥିବ ଅନୁଦିନରେ ।
ମଦନମଦାଳସି । ଅଟେ ମୁ ଅଧୀନରେ ।୪।

ଲୀଳା - **ରାଗ ହିନ୍ଦୁସ୍ଥାନି । କାଫିଅଟତାଳ ।**

ଛାଡ଼ି ରହିପାରିବି କି ସତେ ?
ନଭସାଅ ହେ ଦୁଃଖ ସରିତେ ।୦।
ଯାହା ହେଉଥାଇ ସହି ଚିତ୍ତେ ।
ତ୍ରୁଟିକ ଅନ୍ତର ଯୁଗ ମତେ ।୧।
ଜଳ ତେଜି ମୀନ କି ବରତେ ?
ଝୁରି ମରିବି ଅନୁବରତେ ।୨।
ତୁମ୍ଭ ବିନୁ ମୋର ପ୍ରାଣପତେ ।
ଗତି କେ ଅଛି ଏହି ଜଗତେ ? ।୩।

ନାଥ ନିରାଶ ନକର ମୋତେ ।
ନିଅ ନ ନିଅ ଯିବି ସଙ୍ଗତେ ।୪।

ରାଜା - **ରାଗ ଖମାଚ । ଏକତାଳ।**

ହେଲାକି ଉଚିତ ? ବିଚାର ତୋ ଚିତ୍ତ ।
ହାସବିଳାସିନି । ଜାଣି ନଜାଣୁତ ।୦।
ଘୋର ବିପିନକୁ । ତପ ସାଧନକୁ ।
ଯାଉଛି କିପରି । ଆସିବୁ ସଙ୍ଗତ ? ।୧।
ଏକେତ ଅବଳା । କୁସୁମକୋମଳା ।
ପୁଣି ଗର୍ଭବତୀ । କାଳତ ଅତୀତ ।୨।
ଦିଅ ତୁ ମେଲାଣି । ଆରେ ଗୁଣମଣି ।
ହଟି ବସିଅଛୁ । ବାଳକ ପରିତ ।୩।

ଲୀଳାବତୀ - ଛାମୁଙ୍କର ଇଚ୍ଛା । ମୁ ତ ଅଧୀନା । ମୁ କି ଆଜ୍ଞା ଲଙ୍ଘନ କରିପାରେ ? ଯଦି ଛାମୁ ବିଜେ ହେବେ, ତେବେ ଶୀଘ୍ର ଫେରି ଆସିବେ । ଏତିକି ମାତ୍ର ମୋର ପ୍ରାର୍ଥନା ।

ରାଜା - ସୁନ୍ଦରି ! ଅବଶ୍ୟ ଶୀଘ୍ର ଆସିବି । ତୁ କିଛି ଚିନ୍ତା କରନାହିଁ । (ଏପରି କହି ଲୀଳାବତୀଙ୍କ ଅନୁମତି ଘେନି ମନ୍ତ୍ରୀଙ୍କି ଆହ୍ୱାନ କରି)

**ରାଗ ଶଙ୍କରାଭରଣ । ଅଟତାଳ ।**

ହେ ମନ୍ତ୍ରିରାଣ । ଅନୁବରତେ । ଥିବଟି ସାବଧାନ ।୦।
ଯାଉଛି ମନ୍ଦରାଦ୍ରି । କାଲି ମୁ ତପ ସାଧି ।
ଆସିବି କିଛି ଦିନେ । ମନାଇ କଞ୍ଜାସନ ।୧।
ଲାଗିଲା ସବୁ କଥା । ରାଜଧାନି ବ୍ୟବସ୍ଥା ।
ଭଲ ମନ୍ଦ ବିଚାରି । କରୁଥିବ ପାଳନ ।୨।
ଗଡ଼ ପରିଖାମାନ । ଜଗାଇ ଥିବ ଜାଣ ।
ପ୍ରବେଶ ନ ହୁଅନ୍ତି । ଯେପରି ରିପୁଗଣ ।୩।
ମୋ ସକଳ ସମ୍ପତ୍ତି । ଅଟେ ଯେ ଲୀଳାବତୀ ।
କରୁଥିବ ତା ସେବା । ନମଣି ନିଶି ଦିନ ।୪।

ମନ୍ତ୍ରୀ - ଯେ ଆଜ୍ଞା ।

ରାଜା - ଆମ୍ଭେ ଯାଉଁ । ସର୍ବବିଷୟରେ ଜାଗ୍ରତ ।

(ପ୍ରସ୍ଥାନ ଓ ଯବନିକା ପତନ)

## (ତୃତୀୟ ଦୃଶ୍ୟ)

### (ଦେବରାଜ ଇନ୍ଦ୍ର ଓ ଦେବତାମାନଙ୍କ ସଭା)

ଇ - ଦେବଗଣ ! ଦେଖନ୍ତୁ । ଅସୁରାଧମ ହିରଣ୍ୟକଶିପୁ କେତେ ପ୍ରତାପ ଦେଖାଇ ନିର୍ଭୀକ ଚିତ୍ତରେ ଆମ୍ଭଙ୍କୁ ଯୁଦ୍ଧରେ ପରାସ୍ତ କରି କେତେ ଯାତନା ଦେଇଅଛି । ଏତିକି ମାତ୍ର କରି ଦୁରାତ୍ମା ସନ୍ତୁଷ୍ଟ ନ ହୋଇ ବାରମ୍ବାର ଆମ୍ଭର ଓ ମୁନିଶ୍ରେଷ୍ଠମାନଙ୍କର ଯୋଗ ତପସ୍ୟାରେ ଅକଥନୀୟ ବ୍ୟାଘାତ ଜନ୍ମାଇ ଅଛି । ସେ ପାପିଷ୍ଠକୁ ଓ ତାହାର ଦୁରାତ୍ମା ବନ୍ଧୁଗଣଙ୍କୁ ନ୍ୟାୟ କିମ୍ବା ଅନ୍ୟାୟ ଉପାୟରେ ବିନାଶ କରିବା ଦେବତାମାନଙ୍କର ସର୍ବତୋଭାବରେ ଶ୍ରେୟସ୍କର ଅଟେ । ବର୍ତ୍ତମାନ ସେ ନିଜ ଭ୍ରାତୃହତ ଦୁଃଖରେ ପ୍ରପୀଡ଼ିତ ହୋଇ ଜଗତ୍‌ପାତା ଶ୍ରୀମନ୍ ନାରାୟଣଙ୍କୁ ଯୁଦ୍ଧରେ ନାଶ କରିବା ଲାଗି ମନ୍ଦରାଦ୍ରିରେ ତପସାଧନ କରିବାକୁ ଯାଇଅଛି । ତାହାର ପଟ୍ଟମହିଷୀ ଲୀଳାବତୀ ବର୍ତ୍ତମାନ ଅନ୍ତଃସତ୍ତ୍ୱା ହୋଇଅଛି । ଯେବେ ସେହି ମୂର୍ଖ ଦେବଗଣଙ୍କର ଏଡ଼େବଡ଼ ଅନିଷ୍ଟ ଘଟାଇଅଛି, ତେବେ ତାର ଔରସଜାତ ସନ୍ତାନ ଅବା ଆମ୍ଭମାନଙ୍କର କେତେଦୂର ଅନିଷ୍ଟ ଘଟାଇ ନ ପାରିବ ? ଏହେତୁରୁ ଆମ୍ଭେ ଆପଣମାନଙ୍କର ଅନୁମତି ନେଇ ସସୈନ୍ୟରେ ତାହାର ଅନ୍ତଃପୁରରେ ପହୁଞ୍ଚି ତାହାର ପଟ୍ଟମହିଷୀକୁ ବଧ କରିବୁଁ ।

ଦେବଗଣ - ଦେବରାଜଙ୍କ ଆଜ୍ଞାରେ ଆମ୍ଭେମାନେ ସମ୍ମତ ଏବଂ କାୟମନୋବାକ୍ୟରେ ଈଶ୍ୱରଙ୍କଠାରେ ପ୍ରାର୍ଥନା କରୁଥିବୁଁ ଯେପରି ଦେବରାଜ ସ୍ୱୀୟ ମନୋରଥ ସିଦ୍ଧ କରି ନିର୍ବିଘ୍ନରେ ସ୍ୱର୍ଗପୁରକୁ ପ୍ରତ୍ୟାଗମନ କରିବେ ।

ଇ - ଉତ୍ତମ ! ତେବେ ମୁଁ ଯାଏ ।

ଦେବ - ଯେ ଆଜ୍ଞା ! (ରାଜା ସସୈନ୍ୟରେ ଲୀଳାବତୀର ଅନ୍ତଃପୁର ଆଡ଼େ ଗମନ ଓ ଯବନିକା ପତନ)

## (ଚତୁର୍ଥ ଦୃଶ୍ୟ)

ଇ - (ଲୀଳାବତୀଙ୍କ କେଶ ଧରି) ରେ ଦନୁଜପ୍ରିୟବତି ! ଦେବରାଜ ଶଚୀପତି ଆମ୍ଭେ ଅଟୁ । ତୋ ପତି ଆମ୍ଭର ଏବଂ ଋଷି ପ୍ରମୁଖମାନଙ୍କର ସମାଧି

ଭଗ୍ନ କରି ଅନେକାନେକ ବିଘ୍ନ ଘଟାଇ ଆମ୍ଭମାନଙ୍କୁ ଯେଉଁ କ୍ଳେଶ ଦେଇଅଛି ତାହା ଆଜଯାଏ ମନରୁ ଯାଇନାହିଁ । ବିଶାଳାକ୍ଷି ! ଚିରକାଳଶତ୍ରୁ ସାଧିବାକୁ ଆଜି ଆମ୍ଭେ ତୋ ପୁରକୁ ଆସିଅଛୁଁ ।

ଲୀଳା - ଦେବରାଜ ! ଆପଣଙ୍କ ପକ୍ଷେ ଏହା ଉଚିତ୍ ନୁହେଁ । ମୁଁ ଜଣେ ଅବଳାସ୍ତ୍ରୀ । ମୋହର ପତି ବର୍ତ୍ତମାନ ମନ୍ଦରାଦ୍ରି ଗମନ କରିଅଛନ୍ତି । ଏପରି ସ୍ଥଳେ ଆପଣ ମୋ ଗୃହରେ ପ୍ରବେଶ କରିବା ଅବିଧେୟ । ପୁଣି ମୋତେ ମାରିପକାଇବାକୁ ଉଦ୍ୟତ । ଏହିକି କ୍ଷତ୍ରିୟ ଧର୍ମ ? ମୋ କେଶ ଛାଡ଼ନ୍ତୁ । ଦୂର ହୁଅନ୍ତୁ ।

ଇନ୍ଦ୍ର - **ରାଗ ବିହାଗ । ଏକତାଳ ।**

ଇଷ୍ଟଦେବଙ୍କୁ ସ୍ମରଣ । କରରେ ନାରୀରତନ ।୦।
ତୋ ପତି ତପ ଆମ୍ଭର । ଭାଙ୍ଗିଛି ଅନେକ ଥର ।
ଶତ୍ରୁ ସାଧିବା ହେତୁରେ । କରିଛି ମୁ ଆଗମନ ।୧।
ଶୁଣିଛି ତୁ ଗର୍ଭବତୀ । ହୋଇଅଛୁ ଲୀଳାବତି ।
ତା ବଂଶ ନାଶଯିବା ପାଇଁ । ନେବି ତୋହର ଜୀବନ ।୨।
ମୂଳ ନାଶୁଥିଲେ ସରି । ଅସୁରସଙ୍ଗତେ କଳି ।
ଏଣିକି ନଥିବ ତେତେ । ଏହା ମୋର ନିର୍ଦ୍ଧାରଣ ।୩।
ଦେଖ ପ୍ରଚଣ୍ଡ କୃପାଣ । ଦିଆ ହୋଇଅଛି ଶାଣ ।
ବାଜନ୍ତେ ମସ୍ତକ ଛିଡ଼ି । ପଡ଼ିବ ତୋ ଅପଘନ ।୪।

ଲୀଳା - (ଅତି ଶୋକରେ ବିଧିପ୍ରତି)

**ରାଗ ଛାୟାତରଙ୍ଗିଣୀ । ଅଟତାଳ ।**

ଏ ଦୁଃଖ ଆଉ ସହି । ରହି ନ ପାରେ ବିହି ।
ବାଧିଲାନି ମର୍ମକୁ । ପ୍ରାଣ ରହିବ ନାହିଁ ।୦।
ପୁରେ ନାହାନ୍ତି କାନ୍ତ । କେଦେବ ଏ ଉଦନ୍ତ ।
ଧରିଛନ୍ତି ମୋହର । କେଶକୁ ଶଚୀସାଇଁ ।୧।
ପାଇଣ ଅବସର । ଆସି ଏ ସୁନାଶିର ।
ମୋ ମରଣ ପାଞ୍ଚନ୍ତି । ଶତ୍ରୁ ସାଧିବାପାଇଁ ।୨।

ଛାର ଅବଳା ମାରି । ଲଭିବେ କି ସେ ଶିରୀ ।
ଥରେ ହେଲେ ମନରେ । କିଂପା ଭାବନ୍ତି ନାହିଁ ।୩।
ସାହା ତୁମ୍ଭବିନାରେ । ଅଛି କେ ଏ ସଂସାରେ ?
କୃପା କରି ରଖନ୍ତୁ । ମତେ ଅନାଥା ମୁହିଁ ।୪।
(ଏହା କହି ଲୀଳାବତୀ ହତଚେତା ଓ ହଠାତ୍ ମହର୍ଷି ନାରଦଙ୍କ ପ୍ରବେଶ)

ନାରଦ - (ଇନ୍ଦ୍ରପ୍ରତି)

**ରାଗ ନାଟକୁରଞ୍ଜୀ । ଆଦିତାଳ ।**

ହେ ସୁନାଶିର । ଛାଡ଼ ଛାଡ଼ ଏ ନାରୀବର ।
କି ଦୋଷ ଦେଖି ଏହାର । ନାଶିବା ପାଞ୍ଚ ମନର ।୦।
ସକଳ ବିଦ୍ୟାରେ ନିପୁଣ । ଅଟ ଆପଣ ।
କିଂପା କର ଏ ଆଚରଣ ।
ମୋର ବିନୟ ବଚନ । ଘେନି ପରିତ୍ରାଣ କର ।୧।
ଏହି ଲୀଳାବତୀ ଗର୍ଭର । ସ୍ଥିତ କୁମର ।
ଭକ୍ତଙ୍କ ଶିର-ଅଳଙ୍କାର ।
ନାଶ କରିବେ ଅସୁର । ଜାଣ ଆହେ ଶଚୀବର ।୨।
ଯାହାଙ୍କର ଭକ୍ତି ହେତୁରୁ । ଜଗତଗୁରୁ ।
ଜାତ ହେବେ ସ୍ତମ୍ଭାସ୍ତମ୍ଭରୁ ।
ନିଜ ମାୟାପ୍ରଭାବରୁ । ଧରି ନୃସିଂହାବତାର ।୩।

ଇ - (ଲୀଳାବତୀର କେଶ ଛାଡ଼ି ନାରଦଙ୍କୁ ନମସ୍କାର ଓ ବନ୍ଦନ କରିବା ।)

**ରାଗ ଖମାଚ । ଏକତାଳ ।**

ଘେନ ମୋ ବନ୍ଦନ । ହେ ରୁଷି ରାଜନ ।
କୃପା କର ବାରେ । ଭସ୍ମବିଲେପନ । ୦।
ଶିରେ ଜଟା ଜୁଟ । କି ତେଜେ ପ୍ରକଟ ।
କଣ୍ଠେ ଲମ୍ବେ ମାଳା । ବିପଞ୍ଚୀ ଧାରଣ ।୧।
ଶାରଦୀୟ ଶଶି । ଲପନ ପ୍ରକାଶି
ସକଳ ଦୁରିତ । କରେ ବିନାଶନ ।୨।

କରେ ଜପାମାଳ । ଦିଶେ କି ମଞ୍ଜୁଳ ।
କଷାୟ ଦୁକୁଳ । ଦିଶେ ଶୋଭାବନ ।୩।
ବନ୍ଦ୍ୟ-ସୁର-ନର । ଧାତାଙ୍କ କୁମର ।
ଦୟା ରଖ ମୋରେ । ଭାରତୀନନ୍ଦନ ।୪।

ନା - କଲ୍ୟାଣ ! ଦେବରାଜ ! କଲ୍ୟାଣ ।

ଇ - **ରାଗ ଘଣ୍ଟାରବ । ଅଟତାଳ ।**

କରୁଥିଲି ମୁଁ କେଡ଼େ ମନ୍ଦପଣ ।୦।
ଘୋର ସ୍ତ୍ରୀହତ୍ୟା ପାତକ । ଲାଗିଥାନ୍ତା ହକନାକ ।
ପହୁଞ୍ଚି ନଥାନ୍ତ ଯଦି ଆପଣ ।୧।
ଦେବଙ୍କ ଅଭୟପ୍ରଦ । ଯେ କରିବେ ଶତ୍ରୁ ବଧ ।
ତୁଛେ ହରାଇଥାନ୍ତେ ସେ ପରାଣ ।୨।
ଚଣ୍ଡାଳ କୋପବଶରୁ । ନାଶିଥାନ୍ତି ଆଶାତରୁ ।
ଭାସିଯାଇଥାନ୍ତେ ଅମରଗଣ ।୩।
ରଖିଦେଇ ଗଲ ଆସି । ଧର୍ମ୍ମ ରୂପି ବ୍ରହ୍ମଋଷି ।
କ୍ଷମାକର ମୋତେ, ଘେନି ଜଣାଣ ।୪।

ମହାଶୟ ! ନଜାଣି ମୁଁ ଦୋଷ କରିଅଛି । କ୍ଷମା କରନ୍ତୁ ।

ନା - ଦେବରାଜ ! ଆପଣଙ୍କର କିଛି ଦୋଷ ନୁହେଁ । ଆପଣ ରୋଷପରବଶ ହୋଇ ଏହା କରିଅଛନ୍ତି । ଯାହା ହେଉ ଆପଣ ଏଠାରୁ ଶୀଘ୍ର ବିଜେହେନ୍ତୁ ।

ଇ - ଯେ ଆଜ୍ଞା ! (ପ୍ରଣାମ ଓ ପ୍ରସ୍ଥାନ)

ନା - **ରାଗ ରେଗୁପ୍ତ । ଆଦିତାଳ ।**

ନିତ୍ୟ ସନାତନ । ପତିତପାବନ । ନମସ୍ତୁତେ ।୦।
ପାପନିବାରଣ । ଦୁଷ୍ଟ ବିଦାରଣ ।
ସାଧୁଜନରକ୍ଷଣ । ନମସ୍ତୁତେ ।୧।
କଳୁଷଧ୍ୱଂସନ । ସଙ୍କଟତାରଣ ।
ଭକ୍ତଜନପାଳନ । ନମସ୍ତୁତେ ।୨।
ହେ କରୁଣାମୟ । ସଦୟହୃଦୟ ।
ତ୍ରିଭୁବନ ମୋହନ । ନମସ୍ତୁତେ ।୩।

ଅଚିନ୍ତ୍ୟନିର୍ଗୁଣ । ଅଖିଳକାରଣ ।
ଜନମନୋରଂଜନ । ନମସ୍ତୁତେ ।୪।

(ଲୀଳାବତୀ ସଚେତା ହୋଇ ନାରଦଙ୍କୁ ପ୍ରଣାମ କରିବା)

ନାରଦ - ଦେବି ! କଲ୍ୟାଣ ! କଲ୍ୟାଣ ।

ଲୀଳାବତୀ - ଭଗବାନ୍ ! ଆପଣଙ୍କ କୃପାରୁ ପରା ମୁଁ ଇନ୍ଦ୍ରଙ୍କ ଅତ୍ୟାଚାରରୁ ମୁକ୍ତି ଲଭିଲି ?

ନାରଦ - ଦେବୀ ! ସେ ନଜାଣି ସ୍ତ୍ରୀ ହତ୍ୟା କରିବାରେ ଉଦ୍ୟତ ଥିଲେ । ଆମ୍ଭର ଉପଦେଶ ଘେନି ସେ ବାହାରି ଗଲେ । ଏଣିକି ଭୟର ଆଶଙ୍କା ନାହିଁ ।

ଲୀଳାବତୀ - ଆପଣ ରକ୍ଷାକର୍ତ୍ତା ଥାଉଁ ଥାଉଁ କି ଭୟ ? (ଏହା କହି ଲୀଳାବତୀ ପୁନଃ ପ୍ରଣାମ କରିବା)

ନାରଦ - କଲ୍ୟାଣ ! ଦେବୀ ! କଲ୍ୟାଣ ! ଏବେ ମୋ ସଙ୍ଗେ ଚାଲ ଯିବା !

ଲୀଳାବତୀ - ଯେ ଆଜ୍ଞା ।

(ଉଭୟଙ୍କ ନିଷ୍କ୍ରମଣ ଓ ଯବନିକାପତନ)

●

## ଦ୍ୱିତୀୟାଙ୍କ

### ପ୍ରଥମ ଦୃଶ୍ୟ (ମନ୍ଦରାଦ୍ରି)

### (ରାଜା ହିରଣ୍ୟକଶିପୁ ପ୍ରବେଶ)

ରାଜା - ହାୟ ! କି ମନୋହର ଦୃଶ୍ୟ ! ନୀଳନଭନିଭଶାମାୟମାନ ଅରଣ୍ୟାନୀ, କଳକଳ ନିନାଦିନୀ କ୍ଷୁଦ୍ର କ୍ଷୁଦ୍ର ନିର୍ଝରଣୀ ସମୂହ, ଅଭ୍ରଂ-ଲିହଉତ୍ତୁଙ୍ଗଗିରିଶିଖରରାଜି ଓ ବିହଙ୍ଗାଶ୍ରିତ ଅପୂର୍ବ କୁଞ୍ଜପୁଞ୍ଜରେ ଏହି ମନ୍ଦରାଦ୍ରି ଅସୀମ ଶୋଭା ଧାରଣ କରିଅଛି । ଆମ୍ର, ଡାଳିମ୍ବ, କଦମ୍ବ, ନିମ୍ବ, ଚମ୍ପକ, ତିନ୍ଦକ, ଅଶୋକ, କୁରୁବକ, ତାଳ, ଶାଳ, ତମାଳ ବକୁଳ, ନଟିକାଳ, ଖଦୀର, ଜମ୍ବୀର, ଖର୍ଜ୍ଜୁର, ଟଗର, ନାଗେଶ୍ୱର, କଣିଅର, କରବୀର, କଦଳୀ, ବଦରୀ ପ୍ରଭୃତି ବୃକ୍ଷରାଜୀରେ ଦେବାଦ୍ରି ଅଧିକ ଶ୍ରୀଧାରଣ କରିଅଛି । ଏହିପରି ସ୍ୱର୍ଗୋପମେୟ ପର୍ବତରେ ବସି ତପ ସାଧନ କଲେ କି ନିଜ ରତ୍ନ ଖଚିତ ହର୍ମ୍ୟୋପବେଶନ ସୁଖ ଆଉ ମନେ ପଡ଼ିବ ? ସଂସାର ଯନ୍ତ୍ରଣାରେ ଯନ୍ତ୍ରିତ ମରାମରଙ୍କର କେବଳ ଏହିମାତ୍ର ପରମଶାନ୍ତିର ସ୍ଥଳ । ଯାହାହେଉ ଏହି ପବିତ୍ର ପର୍ବତରେ ଘୋରତର ତପ ସାଧନ କରି ସେ ପାପିଷ୍ଠ ଦୁରାତ୍ମା ଅସୁରକୁଳହନ୍ତାକୁ ଧୂଳିସାତ କରିବି ।
(ନବଦ୍ୱାର ରୁଦ୍ଧକରି ଉର୍ଦ୍ଧ୍ୱବାହୁ କପାଳି ଆଦି ଆସନମାନଙ୍କରେ ବସି ସ୍ତୁତି ପଠନ କରିବା)

ସ୍ରଗ୍‌ଧରା ॥

ବାରେ ମୋରେ ସ୍ୱରେଶ ପ୍ରଭୁ କର ସୁଦୟା ପୁଣ୍ଡରୀକାକ୍ଷ ଈଶ ।
କେତେ ଦୁଃଖେ ଜଣାଏ ବିକଳବଚନରେ ହଂସବାହ ସ୍ୱୟମ୍ଭୋ ।
ତ୍ରାତା କର୍ତ୍ତା ବିଧାତା ଶରଣ ଅଟ ବିଭୋ ତୁମ୍ଭ ନାମାଳି ଗାଏ ।
ପୂର୍ଣ୍ଣାନନ୍ଦେ ରଖାଅ ଶ୍ରୁତିବଦନ ସଦା ସର୍ବସନ୍ତାପହର୍ତ୍ତା ।

ବସନ୍ତତିଳକ ॥

ଆହେ ବ୍ରହ୍ମନ୍ କର କରୁଣା ମୋଠାରେ ।
ବେଗେ ବାଞ୍ଛା କର ସଫଳା ବିଶ୍ୱେଶ ।

ତ୍ୱତ୍ପାଦାମ୍ଭୋରୁହଯୁଗଳେ ମୋ ଆଶା ।
ତୁମ୍ଭେ ପ୍ରେମୀ ଅନୁଗତ ହେବା ଲୋକେ ।

ମାଳିନୀ ॥

ଅହିତ ବିହିତ ବାଧା ଚିନ୍ତି ମୋ ଚିତ୍ତ ଏବେ ।
ବ୍ୟଥିତ ହୁଅଇ ଆହେ ଲୋକନାଥ ସ୍ୱୟଂଭୋ ।
ସମରଥ କର ମୋତେ ତାକୁ ବିଧ୍ୱଂସିବାକୁ ।
ସମର ଅଜିରମଧ୍ୟେ ହେଉ ତା ବୈରଶୁଦ୍ଧି ॥

(ବ୍ରହ୍ମାଙ୍କ ଆବିର୍ଭାବ)

ବ୍ରହ୍ମା - ରାଜନ୍ ! କଲ୍ୟାଣ ! କଲ୍ୟାଣ !
(କମଣ୍ଡଳରୁ ଜଳସେଚନ କରିବା)

ରାଜା - (ସଚେତ ହୋଇ) ବ୍ରହ୍ମାଣ୍ଡପାତା ! ନମସ୍କାର ।

ରାଗ କଲ୍ୟାଣୀ । ଅଟତାଳ !

ବନ୍ଦନ ଘେନ ପଙ୍କଜ ଆସନ । କନ୍ଦନ କର ମୋହର ମୋଚନ । ଚତୁରାନନ, ଖଞ୍ଜନେକ୍ଷଣ, ତ୍ରିଜନ, ଜୀବନ, ପ୍ରଦାନ, ନାଶନ, କାରଣ ତୁମ୍ଭେ ହେ ହଂସବାହନ ।୦।

ଅସୁରଙ୍କ କୁଳ ପାଳନ । ମରାମରଗଣଶରଣ୍ୟ । ସୌଭାଗ୍ୟ ଦାୟକ । ହେ ଭୂନାୟକ । ସ୍ୱଭକ୍ତନିକରରକ୍ଷକ । ସର୍ବମଙ୍ଗଳକାରକ । ସର୍ବସୁଖପ୍ରଦାୟକ । ସକଳଲକ୍ଷଣଯୁକ୍ତ ଚରଣ । ଈଶବନ୍ଦିତ ଭୁବନମୋହନ ।୧।

ଭାରତୀ-ମାନସ-ସୁରଞ୍ଜନ । ଶିରେ ଜଟାମୁକୁଟ ଶୋଭନ । ପରମ ପାବନ । ଭକ୍ତ ଜୀବନ । ନମସ୍ତେ ହେ ଦେବ ବରେଣ୍ୟ । ପାପ ତାପ ବିନାଶନ । ଅଖିଳ ସୁଗୁଣ ଭୂଷଣ । ସତତ ତୁମ୍ଭର ପଦ୍ମଚରଣେ । ଏ ଦୀନ ହୀନଜନ କରେ ଧ୍ୟାନ ।୨।

ବ୍ର - କଲ୍ୟାଣ ! ବତ୍ସ ! କଲ୍ୟାଣ !

**ରାଗ ଖମାଚ । ଆଦିତାଳ ।**

ହେ ଶରଣରକ୍ଷଣ ହଂସବାହନ । ଏହି ବର କର ପ୍ରଦାନ ।
ବିନୟେ ମାଗୁଛି ମୁହିଁ । କୃପାକର ଭାବଗ୍ରାହି । ପତିତଜନ ପାବନ ।୦।

ସର୍ବଜଗତପିତା । ଅଖିଳସମ୍ପତ୍ତି ଦାତା । ତ୍ରାତା, ପାତା,
ନିଖିଳଲୋକପୂଜ୍ୟ ଚତୁର୍ବେଦରଚୟିତା । ସେବିତ ସୁରାସୁର ।
ଯକ୍ଷନର କିନ୍ନର । ଭକ୍ତଜନପାଳନ । ତ୍ରିତାପନାଶନ ।୧।
ଜଳରେ କି ସ୍ଥଳରେ । କି ଅନନ୍ତ ଆକାଶରେ । ନରେ, ସୁରେ,
ସକଳ ଆୟୁଧେ । ସମରେ ଦିବସ କିବା ରାତ୍ରେ । ଆବର ଅନଳରେ ।
ବାୟୁ ଉତପାତରେ । ନୋହିବ ମୋର ମୃତ୍ୟୁ ତ୍ରିଲୋକେ ଜାଣ ।୨।
ତୁମ୍ଭବିନା ମୋଗତି । କେ ଅଛି ଭାରତୀ ପତି । ଶାନ୍ତି, ମୂର୍ତ୍ତି, ମୋହର କେବଳ ।
ତୁମ୍ଭେ ମାତ୍ର ସକଳ ସମ୍ପତ୍ତି । ନାଶି ମୋର ଦୁର୍ଗତି ।
ଛଡ଼ାନ୍ତୁ ମନୁଭୀତି । ମନକାମନା ପୂରାଇ । ଚତୁରାନନ ।୩।

ବ୍ର

### ରାଗ ପରଜ । ଏକତାଳ ।

ତୋର କଠିନ ଜପତପ ଲାଗିରେ ।୦।
ନିଷ୍ଟେ କହୁଚି ଶୁଣ । ଭକ୍ତଶିରୋମଣ୍ଡନ ।
ଗଲା ମୋ ସମାଧି ଭାଂଗିରେ ।୧।
ଏକେତ ସୁକୁମାର । ପୁଣି ରାଜଈଶ୍ୱର ।
କଷ୍ଟ ସହି ଗଲୁ ସାଗିରେ ।୨।
ତୋତେ ହେଲି ପ୍ରସନ୍ନ । ଅଭୀଷ୍ଟ କଲି ଦାନ ।
ହେଲୁ ତୁ ମୋର କୃପାଭାଗୀରେ ।୩।
ରହ ତୁ ଚିରଦିନ । କରି ମୋର ଧିଆନ ।
ତୋରେ କେବେ ନ ହେବି ରାଗୀରେ ।୪।

ରା

### ରାଗ କାମୋଦୀ । ଅଟତାଳ ।

ଅମରବର । ଚରଣେ ପ୍ରଣତି ମୋହର ।୦।
ମୋରେ ହୋଇ ପରସନ୍ନ । ବର କରିଲ ପ୍ରଦାନ ।
ଅଭୀଷ୍ଟ ଫଳିଲା ଏଥର ।୧।
ହେ ଲୋକେଶ ବେଦବର । ନ ଲୋଡ଼େ କେତେମାତର ।
ତୁମ୍ଭ କୃପା ବିନୁ ଇତର ।୨।
ଆଜ୍ଞା ଦିଅନ୍ତୁ ବହନ । ଯିବି ମୁ ନିଜ ଭୁବନ ।
କରୁଣା ଥାଉ ନିରନ୍ତର ।୩।

ବ୍ର - କଲ୍ୟାଣ ! ବତ୍ସ କଲ୍ୟାଣ ! (ଅନ୍ତର୍ଦ୍ଧାନ)

(ରାଜା ନିଜ ପୁରକୁ ପ୍ରସ୍ଥାନ ଓ ଯବନିକାପତନ)

ନେପଥ୍ୟେ ।

**ରାଗ କଲ୍ୟାଣୀ । ଅଟତାଳ ।**

ଦାନବକୁଳଈଶ୍ୱର । ଦିଶେ ଭୀକର ।
ବୀରକେଶେ ଦେଇ କର ।
ପ୍ରଚଣ୍ଡ ମାରତଣ୍ଡ ପରି ଦିଶେ ତା ଗଣ୍ଡ ।
କରିବ କି ଦ୍ୱିଖଣ୍ଡ ।
ଏ ନିଖିଳ ସଂସାର । ସକଳ ମରାମର ।
ବିକଳେ ଯୋଡ଼ି କର ।
ସ୍ୱକୁଳ ରକ୍ଷଣେ । ସେବନ୍ତି ଯା ପୟର ।୦।
ରତନ ସିଂହାସନରେ । କି ଯତନରେ ।
ବସି ଦିତିଙ୍କ କୁମର ।୧।
ଦାନବବୈରିଗଞ୍ଜନ । ଖରକୃପାଣ ।
ନଚାଏ ଥରକୁଥର ।୨।
ଦେବାରୁ ଶ୍ରୀବେଦବର । ଅଭୀଷ୍ଟବର ।
ଗର୍ବିତ ହୋଇ ଅପାର ।୩।
ରକ୍ତ କଷାୟିତନେତ୍ରେ । କେଡ଼େ ବିଚିତ୍ରେ ।
ତୋଷେ ଦେଖେ ନିରନ୍ତର ।୪।

## (ଦ୍ୱିତୀୟ ଦୃଶ୍ୟ)

### (ସଭାଗୃହ)

(ରାଜା ହିରଣ୍ୟକଶିପୁ ସିଂହାସନୋପରି ଉପବିଷ୍ଟ, ମନ୍ତ୍ରୀ ଓ ସଭାସଦ୍‌ବର୍ଗ ଆସୀନ ।)

ରା - ବିପ୍ରଚିତ୍ ଅମାତ୍ୟପୁଙ୍ଗବ ! ନିଖିଳଜଗତ୍‌କର୍ତ୍ତା କଞ୍ଜାସନ ଆମ୍ଭର କଠିନ ତପ ସାଧନରେ ଅପରିମିତ ସନ୍ତୋଷ ପ୍ରକାଶ କରି ଆମ୍ଭ ଅଭିଳଷିତ ବରକୁ ପ୍ରଦାନ କରିଅଛନ୍ତି । ଏପରି ବୋଲା ବାହୁଲ୍ୟ ଯେ ଆମ୍ଭେ ବର ପାଇବା ପୂର୍ବେ ଆମ୍ଭର ଯେଉଁ ଶକ୍ତି ଥିଲା ତାହା ବର୍ତ୍ତମାନ ତ୍ରିଲୋକପୂଜ୍ୟ ଧାତାଙ୍କ କୃପାରୁ ଶତଗୁଣ ବୃଦ୍ଧି ହୋଇଅଛି । ବୋଧହୁଏ ନିଶ୍ଚୟ ଅସ୍ମତ୍

ଭ୍ରାତୃହନ୍ତା ହରିକି ଅବଲୀଳାରେ ବିନାଶ କରିପାରିବୁଁ । ଆଉ ସେହି ଶତ୍ରୁର ରକ୍ତସ୍ନାନରେ ଭ୍ରାତୃମୃତ୍ୟୁ ଶୋକାନଳକୁ ଯାହା କି ଆମ୍ଭର ସର୍ବାଙ୍ଗକୁ କ୍ରମେ କ୍ରମେ ଦଗ୍ଧୀଭୂତ କରୁଅଛି ନିର୍ବାପଣ କରିବୁଁ ।

ମନ୍ତ୍ରୀ - ଆଜ୍ଞା ! ତାହା କି ଛାମୁଙ୍କ ପକ୍ଷେ ଦୁରୂହକାର୍ଯ୍ୟ ? କ୍ଷମା କରନ୍ତୁ ଛାମୁରେ ଜଣାଉଛି । କେତେ ଦିନ ପୂର୍ବେ ଦେବରାଜ ଇନ୍ଦ୍ର - (ନାରଦଙ୍କ ପ୍ରବେଶ)

ରାଜା - (ଆସନରୁ ଉଠି) ନମସ୍କାର ! ମହାମୁନେ ।

ନାରଦ - ରାଜନ୍ ! କଲ୍ୟାଣ ! କଲ୍ୟାଣ !

ରାଜା - **ରାଗ ମୁଲତାନ । ଅଟତାଳ ।**

ଘେନ ବନ୍ଦନ ଧାତାକୁମର ।
ଦୀନଜନରେ କରୁଣା କର ।୦।
ମୋର ପୁରେ କରି ଆଗମନ ।
ବରଯତି ହେ କଲ ପାବନ ।୧।
କେତେ ଦିନେ ତୁମ୍ଭ ଦରଶନ ।
ମୋତେ ମିଳିଲା ଋଷି ରାଜନ ।୨।
ତପସାଧନକୁ ଯାଇଥିଲି ।
ଜପ କରି ବର ମୁଁ ପାଇଲି ।୩।
କିସ ବିଚାରି ତୁମ୍ଭେ ଆସିଲ ।
ନିଃସଂଶୟରେ କହ ସୁଶୀଳ ।୪।

ନା **ରାଗ ତୋଡ଼ି । ରୂପକତାଳ ।**

କର ଶ୍ରବଣ ମୋ ନିବେଦନ ଆହେ ରାଜନ ।
କେଡ଼େ ବିପତ୍ତି ଦାନବପତି ଗଲାଟି ଜାଣ ।୦।
ବୁଲାଇ ଶାଣଯୁକ୍ତକୃପାଣ ପାକଶାସନ ।
କଲେ ଗମନ ତୋର ଭୁବନ ବୀରମଣ୍ଡନ ।୧।
ନିତାନ୍ତ ରୋଷେ ମାରିବାକୁ ସେ ବଳାଇ ମନ ।
କେଶକୁ ତୋର ଲୀଳାବତୀର କଲେ ଧାରଣ ।୨।
ସେକାଳେ ଆସି ମୁହିଁ ପ୍ରବେଶି କଲି ବାରଣ ।
ରାଣୀ ଧରମୁ କି ସୁକରମୁ କଲେ ବର୍ଜନ ।୩।

ଏହି କଥା କରିବାକୁ ଛାମୁରେ ଜଣାଣ ।
ଆସିଲି ଏବେ ଯାଉଛି ଫେରି ଅମରଭୁବନ ।୪।

ରା - ସତେ ! ଏକବାରେ ତାର ସର୍ବନାଶ କରିବି ।

ନା - ରାଜନ ! ଆମ୍ଭେ ସ୍ୱର୍ଗପୁରକୁ ଯାଉଁ ।

ରା - ଆଜ୍ଞା ! (ଚରଣତଳେ ପ୍ରଣିପାତ)

ନା - ସମସ୍ତ ଶତ୍ରୁଗଣ ପାଦାକ୍ରାନ୍ତ ହୁଅନ୍ତୁ । (ପ୍ରସ୍ଥାନ)

ରା - ମନ୍ତ୍ରୀ ପ୍ରଧାନ ! ଛାର ଶଚୀପତି ଆମ୍ଭ ଅନ୍ତଃପୁରରେ ପ୍ରବେଶ କରି ଏଡ଼େ ବଡ଼ ଉତ୍ପାତ ଜନ୍ମାଇଲା ?

ମ - ଆଜ୍ଞା ହଁ । ମୁଁ ତାହାହିଁ କହୁଥିଲି ।

ରା - ହେଉ ! ହେଉ ! ତୁମ୍ଭେ ଯୁଦ୍ଧର ସର୍ବ ଆୟୋଜନ କରାଅ ମୁଁ ଅନ୍ତଃପୁରକୁ ଯାଇଆସେ । (ପ୍ରସ୍ଥାନ ଓ ଯବନିକାପତନ) ।

## ତୃତୀୟ ଦୃଶ୍ୟ

(ଲୀଳାବତୀ ଅନ୍ତଃପୁରରେ ଦଣ୍ଡାୟମାନା ଓ ରାଜାଙ୍କର ପ୍ରବେଶ ଓ ରାଣୀ ନମସ୍କାର କରିବା)

ରା - ତୋର ସର୍ବ ମଙ୍ଗଳ ହେଉ ।

ଲୀ - (ନୟନ ଯୁଗଳରୁ ଲୋତକ ବୁହାଇ)

**ରାଗ ବିଳାହରି । ଏକତାଳ ।**

ହେ ପ୍ରାଣନାଥ । ପାଇଲି କେତେ ଯାତନା ।୦।
ତପସାଧନକୁ । ଶ୍ରୀଛାମୁ ଯିବାକୁ ।
ଦୁଃଖ ମୁ ସହିଲି ସିନା ।୧।
ଦିନେ ଶଚୀ-ଈଶ । ଧରି ମୋର କେଶ ।
କଲେ ସେ ଯେତେ ତର୍ଜନା ।୨।
ବୁଲାଇ କୃପାଣ । ନେଉଥିଲେ ପ୍ରାଣ ।
କଲି ମୁଁ ବିଧି ବନ୍ଦନା ।୩।
ସେ କାଳେ ପ୍ରବେଶି । ନାରଦ ମହର୍ଷି ।
ରଖିଲେ କରି କରୁଣା ।୪।
ଏହି କଥାମାନ । ପଡ଼ିଗଲେ ମନ ।
ଛାଡ଼ି ଯାଏ ମୋ ଚେତନା ।୫।

ରାଜା - ରାଗ ପାନ୍ତୁବରାଡି । ରୂପକତାଳ ।

ରେ ସୁନ୍ଦରି ଶୁଣ । ମୁଁ କରିବି ତାର ଶିର ଛେଦନ ।
ତେଜି ବିମନ । ମୋ ବାଣୀ ଘେନ ।
ତ୍ରିପୁରେ କେ ଅଛି ମୋ ସମାନ ।
କରିବ ମୋର ସଙ୍ଗତେ ରଣ ।
ଭୟେ ପଳାଇବେ ଦେଖି ଶତ୍ରୁଗଣ ।୦।

ଦେବ ଗନ୍ଧର୍ବ କିନ୍ନର । ସୁର ଆବର ଅସୁର । ଖଟୁ ଅଛନ୍ତି ମତେ ନିରନ୍ତର । ଅଛିକି ଆର । ଲୋକରେ ବୀର । ବିବାଦୀ ହୋଇବ ସଙ୍ଗତେ ମୋର । ସେହି ପାମର । ଶଚୀବର । ଶିର ଧରି ବଞ୍ଚିବକି ଅକିଞ୍ଚନ । ୧।

ଦେଖ ତାହାର କେଡ଼େ ସାହସ । ଆସି ତୋର ବାସ । ଅଭୟେ ଧରିଲା ତୋ ନୀଳକେଶ । ଜୀବନେ ଆଶ । ଛାଡ଼ି ଏ ଦୋଷ । କଲା ପରା ଛାର ଅମର ଈଶ । କର ବିଶ୍ୱାସ । କରିବି ନାଶ । ତୋ ଦାସୀ କରିବି ତା ନାରୀରତନ ।୨।

ବନ୍ଧ୍ୟ ବେଦବରଙ୍କ କୁମର । ମୁନିଗଣବର । କହିଅଛନ୍ତି । ସର୍ବ ସମାଚାର । ଆଗରେ ମୋର । ନୁହ ଅଧୀର । ମେଲାଣି ଦିଅ ମୁ ଯିବି ସତ୍ୱର । ସୁରଙ୍କ ପୁର । ଧରି ସଙ୍ଗର । ବୀରଶୂର ଗଣ । ନାଗରୀ ମଣ୍ଡନ ।୩।

ଲୀଳା - ରାଗ ହଂସଧ୍ୱନି । ଏକତାଳ

ମାଗଇ ପଦ୍ମପାଦେ ମୁଁ ଏତିକି ହେ ।୦।
ରଖି ନିବେଦନ । କରନ୍ତୁ ଯାପନ ।
ଭବନେ କେତେ ଦିନରାତିକି ହେ ।୧।
ଆଉ ପୁରୁ ଯାଇ । କେତେ ଶ୍ରମ ପାଇ ।
କରିବେ ନାଶ ଶଚୀପତିକି ହେ ।୨।
ଗଲା କଥା ଯାଉ । ଭାବନା ନ ଥାଉ ।
ତାହାର ନଷ୍ଟ ଦୁଷ୍ଟ ରୀତିକି ହେ ।୩।
ଜଣାଣ ଏତେକ । ଜୀବଥିଲା ଯାକ ।
ଛାଡ଼ିବି ନାହିଁ ତୁମ୍ଭ କତିକି ହେ ।୪।

ରା - ସୁନ୍ଦରି ! କିଛି ଭାବନା କରନାହିଁ । ଶୀଘ୍ରେ ଫେରି ଆସିବି ଯାଉଅଛି ।

ଲୀଳା - ମହାରାଜାଙ୍କ ଇଚ୍ଛା ।

(ରାଜାଙ୍କ ପ୍ରସ୍ଥାନ ଓ ଯବନିକାପତନ)

## ଚତୁର୍ଥ ଦୃଶ୍ୟ

(ରାଜା ଇନ୍ଦ୍ର, ବୃହସ୍ପତି, ସୁରଗଣ ଓ ମୁନିଗଣ ଆସୀନ)

ଇ - ବନ୍ଦ୍ୟ ବୃହସ୍ପତେ, ସୁର ଓ ମୁନିଶ୍ରେଷ୍ଠମାନେ, ଆପଣମାନଙ୍କ ଅନୁମତି ନେଇ ଆମ୍ଭେ ଦୁରାତ୍ମା ହରିଣ୍ୟକଶିପୁର ଅନ୍ତଃପୁରକୁ ଯାଇଥିଲୁ । ଆମ୍ଭେ ତାହାର ପତ୍ନୀ ଲୀଳାବତୀର କେଶ ଧରି ଝିଙ୍କି ଆଣି ପ୍ରଚଣ୍ଡ କୃପାଣରେ ତାହାକୁ ଦୁଇଖଣ୍ଡ କରିବା ଲାଗି ପ୍ରସ୍ତୁତ । ଇତ୍ୟବସରରେ ମହାତ୍ମା ନାରଦ ହଠାତ୍ ସେହି ସ୍ଥାନରେ ପ୍ରବେଶ ହୋଇ ଆମ୍ଭକୁ ନିଷେଧ କରି କହିଲେ ''ଏ ନିରପରାଧିନୀକୁ ମାରନାହିଁ'' । ଏହି ବାକ୍ୟ ଶ୍ରବଣ ମାତ୍ରକେ ଲୀଳାବତୀର କେଶକୁ ପରିତ୍ୟକ୍ତ କଲୁଁ । ତତ୍ପରେ ମହର୍ଷି କହିଲେ ଲୀଳାବତୀର ଗର୍ଭସ୍ଥିତ ଶିଶୁର ନିମିତ୍ତେ ନିଜେ ଭଗବାନ ନାରାୟଣ ନୃସିଂହାବତାର ଧାରଣ କରି ପାପିଷ୍ଠ ହରିଣ୍ୟକଶିପୁକୁ ବିନାଶ କରିବେ । ଏହି ବୃତ୍ତାନ୍ତ ତାଙ୍କ ମୁଖରୁ ଶ୍ରବଣ କରି ଅତୀବ ସନ୍ତୁଷ୍ଟହେଲୁଁ । ସୁଖର ବିଷୟ ଏହି ଯେ ସେହି ସମୟରେ ଲୀଳାବତୀ ଅଚେତା ଥିଲା । ଏଣୁ ନାରଦ ଆମ୍ଭଙ୍କୁ ଯାହା କହିଲେ ତାହା ସେ ଶୁଣି ପାରିନଥିବ ଏବଂ ସେ ଶ୍ରୀମନ୍ ନାରାୟଣଙ୍କର ନୃସିଂହାବତାର କଥା ସ୍ୱୀୟ ଭର୍ତ୍ତାକୁ କହି ପାରିବ ନାହିଁ ।

ବୃହ - ଏହା ଯଥାର୍ଥ । କାରଣ ସ୍ତ୍ରୀମାନେ ଯେବେ ଦୁଃଖାକ୍ରାନ୍ତ ହୁଅନ୍ତି ତେବେ ସେମାନଙ୍କର ବାହ୍ୟ ଜ୍ଞାନ ଶୂନ୍ୟଥାଏ ।

ଦେବ - ଦେବରାଜଙ୍କ ବଚନ ଶୁଣି ଆମ୍ଭେମାନେ ସାତିଶୟ ସନ୍ତୁଷ୍ଟ ହେଲୁଁ ।

ଇ - ଏତେ କାଳକୁ ଦୁଃଖିଜନ ଦୁଃଖହାରୀ ଭଗବାନ୍ ଆମ୍ଭମାନଙ୍କ ପ୍ରତି ସଦୟ ହେଲେ ଆଉ- (ଏମନ୍ତ ସମୟରେ ପ୍ରଚଣ୍ଡ କୃପାଣ ବୁଲାଇ ହରିଣ୍ୟକଶିପୁ ସଭାସ୍ଥଳେ ପ୍ରବେଶ ଓ ସୁରଗଣ ଇତସ୍ତତ ପଳାୟନ ।)

(ଇନ୍ଦ୍ର ସଚକିତ ହୋଇ ସିଂହାସନରେ ଉପବେଶନ ।)

ରା- ରାଗ ଶଙ୍କରାଭରଣ । ଅଟତାଳ ।

ପଡ଼ିଲୁରେ । ଆଜ ତୁହି ମୋର ଛାମୁରେ ।
ସକଳ ସୁରାସୁର । ଯକ୍ଷନରକିନ୍ନର ।
ଆବର ରମାବର । କେହି ରଖିବରେ ।୦।
କୁଶପାଣି । ପ୍ରସନ୍ନେ ମୁ ଯିବା ଶୁଣି ।
ଉତପାତ କଲୁ ମୋ ପୁରେ ନ ଜାଣି ।
ଧରି ଏ ତରବାରୀ । ଛେଦିବି ତୋର ଶିର ।
ସ୍ନାନ କରିବି ମୁହିଁ ତୋହର ରକତରେ ।୧।
ସୁରାଧମ । କଲୁ ତୁ କେଡ଼େ କରମ ।
ଅଟଇ କି ତାହା । କ୍ଷତ୍ରିୟ ଧରମ ।
ହେବାରୁ ଦଶା ବାମ । ହେଲା ପରା ତୋ ଭ୍ରମ ।
ଲାଜ ଛାଡ଼ି ବସିଛୁ ଏ ସିଂହାସନରେ ।୨।
ତ୍ରିଭୁବନେ । ଅଛି କେ ମୋର ସମାନେ ।
ଥରେ ହେଲେ ନ ବିଚାରିଲୁ ତୋ ମନେ ।
ଆଜ ତୁ କେତେ ଦିନେ । ମୋ ପାଦ ମରଦନେ ।
ଛାଡ଼ିବୁ ତୋ ଜୀବନ ନିମିଷ ମଧ୍ୟରେ । ୩।
ତୋ ରମଣୀ । ଶଚୀ ପଙ୍କଜ ବାସିନୀ ।
ବଳେ ଅନ୍ତଃପୁରରୁ ମୁଁ ଝିଙ୍କି ଆଣି ।
ମୋ ଜୀବନ ପ୍ରେୟସୀ । ତଳେ କରିବି ଦାସୀ ।
ପ୍ରତିଜ୍ଞା କରି କହୁଛି ତୋ ଆଗରେ । ୪।

ଇ- ରାଗ ନବରୋଜ । ଆଦିତାଳ ।

ଆରେ ଅସୁର । ଏ ବିକାର ।
ନହୁଅ ଶୁଣ ମୋ ଗିର ମରିବୁ ନିଷ୍ଟେ ଏଥର ।୦।
ବଳିଗଲା ତୋ । ଉତ୍ପାତ ।
ଅବଶ୍ୟ କରିବି ହତ । ଇଷ୍ଟଦେବଙ୍କୁ ସୁମର ।୧।
ହଂସବାହନ । ସୁରବର ।
ସଦୟେ ତୋତେ ଦେବାର । ବର ହେବ ଛାର ଖାର ।୨।

ଶତ୍ରୁ ଭୀକର । ବଜ୍ର ମୋର ।
ଜାଣି ନାହୁଁରେ ପାମର । ଛେଦିବି ତୋହର ଶିର ।୩।
ନିନ୍ଦ କରମ । କୁ ଅଧମ ।
ନିକଟେ ଦେଖିବୁ ଯମ । ତୋ କାଳ ହେଲା ଆଖର ।୪।
ବୃଥା ଗରବ । କିସ ହେବ ।
ମନ ଯଦି ବଳିଥିବ । ମୋ ସଙ୍ଗେ କର ସମର ।୫।
(ଏପରି କହି ଦୁହେଁ ଯୁଦ୍ଧରେ ପ୍ରବୃତ୍ତ ।)

ନେପଥ୍ୟେ - ରାଗ ଆରଭି । ଆଦିତାଳ ।

ସ୍ୱର୍ଗେ କରନ୍ତି ସମର । କମ୍ପଇ ତ୍ରିପୁର ।
ଦିଶେ କେଡ଼େ ଭୟଙ୍କର । ଖର କୃପାଣକୁ ବିଚିତ୍ରେ ବୁଲାଇ
ଶରଣ ରକ୍ଷଣ ବଜ୍ର ହସ୍ତରେ ଝମକାଇ ।୦।
ଦିଶଇ କେଡ଼େ ଶୋଭନ । ରତ୍ନାଭରଣ । ମସ୍ତକେ
କିରୀଟ ମାନ । ଶତ୍ରୁ ଦିଏ ଘଉଡ଼ି ବେନି ଯୋଦ୍ଧାଙ୍କ ରଡ଼ି ।
ଦନ୍ତକୁ କିଡ଼ି କିଡ଼ି । କରେ ନିଶକୁ ମୋଡ଼ି ।
ଧୀରେ ପଦ ଫେଇ । ବୀରେ ଯାନ୍ତି ଡେଇଁ ।
ଶିରେ ପ୍ରହାରିବା ହେତୁ ପରସ୍ପର ।୧।
ହିରଣ୍ୟ କଶିପୁ ଶୂର । ବୀର ପ୍ରବର । ହୋଇ କ୍ରୋଧଭର ।
ଶାଣିତ ତରବାର । ବୁଲାଇ ଖରତର । ଶିରେ କଲା ପ୍ରହାର ।
ସେ ଶଚୀବରଙ୍କର । ଅତି ବିକଳରେ ଗଲେ ଅନ୍ତଃପୁର ।
ମହାଭୀତ ହୋଇ । ସେ ସୁରପତି । ଧୃତି ଯିବାର ଭାଳି ।
ଗତି ନଥିବା ହେଜି । ଲୁଚିଣ ରହିଲେ ନିଜ ରାଣୀଙ୍କ ମନ୍ଦିର ।୨।
ଦେଖିଣ ସେ ଡରିବାର । ଦନୁଜେଶ୍ୱର । ବାହୁଡ଼େ ନିଜ ନଗର ।
ବହି ମନେ ଉଲ୍ଲାସ । ପ୍ରକାଶି ଅଟ୍ଟହାସ । ଯିବା ବାଟରେ କରୁଅଛି ଏହି ବିଚାର ।
କରି ସର୍ବ ନାଶ । ମାରି ରମା ଈଶ ।
ସାରିବି ଦର୍ପ ନିଖିଳଜନଙ୍କର । ବହି ଗର୍ବ ଅପାର ।
କହି ସେ ଦମ୍ଭଗୀର ଯାଇ ପ୍ରବେଶ ହେଲା ନିଜ ସ୍ୱର୍ଣ୍ଣ ଅଗାର ।୩।

## ପଞ୍ଚମ ଦୃଶ୍ୟ

(ଲୀଳାବତୀର ଅନ୍ତଃପୁର)

ଲୀଳା - ସଖି ଦେଖନ୍ତୁ ଆଜଯାଏ ମହାରାଜ ଫେରି ନଆସିଲେ । କେ ଜାଣେ ସେ କେଉଁଠାରେ କିସ କରୁଥିବେ । ସଖି ! ମହାରାଜ ଦେବରାଜଙ୍କ ସଙ୍ଗେ ଯୁଦ୍ଧ କରିବାକୁ ଯିବା ଦିନାବଧି କୌଣସି ଏକ ପ୍ରକାର ପୀଡ଼ାରେ ମୋ ହୃଦୟ ପୀଡ଼ିତ ଅଛି । ଦେଖ, ସେହିଦିନଠାରୁ କିପରି ଏ ହତଭାଗିନୀର ଗୃହର ଶ୍ରୀଛାଡ଼ି ଯାଇଛି । ବାସ୍ତବ ଯାହା କି ଲୋକେ କହନ୍ତି "ପତି ନଥିବା ଗୃହ ପଦ୍ମ ନ ଥିବା ତଟାଗ ସଦୃଶ ।" ମୁଁ ମୁକ୍ତ କଣ୍ଠରେ ଏପରି କହୁଅଛି ଯେ "ପତି ନଥିବା ଗୃହ ପ୍ରାଣ ନଥିବା କଳେବର ସ୍ୱରୂପ ।" । ଛି ! ବିରହିଣୀ ନାରୀର ଜୀବନ କି ଜୀବନ !

(ଅଞ୍ଚଳରେ ଅଶ୍ରୁ ପୋଛିବା)

କୀର- ସଖି ! ଏକି ! ଏକି ! ଆଜ କି ତୁମ୍ଭେ ପାଗଳିନୀ ହୋଇ ଅଛ ? କାଳତ ବଳିଗଲାଣି । ଏକି ତୁମ୍ଭର ଦୁଃଖ କରିବାକୁ ସମୟ ? ମହାରାଜ ତୁମ୍ଭଠାରେ ପ୍ରତିଜ୍ଞା କରି ଯାଇଅଛନ୍ତି । ଅବଶ୍ୟ ଶଚୀପତିକି ନାଶ କରି ସର୍ବ ଶୁଭରେ ତୁମ୍ଭ ପୁରକୁ ବିରାଜମାନ କରିବେ । କଦାପି ଦୁଃଖ କର ନାହିଁ ।

ସୁଲ - ସଖି ! ଏ ଛାର କଥାକୁ କି ଦୁଃଖ । ତହିଁରେ ତୁମ୍ଭେତ ତୁଛା ମନୁଷ୍ୟ ନୁହ, ଜଗତ୍ ମାତାଙ୍କ କୃପାରୁ କିପରି ଦୁଇ ଚାରି ଦିନରେ ସର୍ବ ଶୁଭରେ ଦୁଇ ଭାଗ ହେବ । ଆଉ ପାଣି କଳସିଏ ପଡ଼ିଯିବ । କୀରବାଣୀ ଯଥାର୍ଥ କହିଅଛି । ଏ ତୁମ୍ଭର କାନ୍ଦିବାର ସମୟ ନାହିଁ । କାନ୍ଦ ନାହିଁ, ମୋ ରାଣ କାନ୍ଦ ନାହିଁ । (ଏପରି ସାନ୍ତ୍ୱନା କରୁ କରୁ ନଗରରେ ଚହଳ ଶୁଭିବାର) ।

ଲୀଳା - (ଶୁଣି) ସଖି । ସୁଲକ୍ଷଣା ! ଯାଇ ଦେଖତ, ମହାରାଜ ବିଜେ କଲା ପରି ଦିଶୁଅଛି ।

ସୁଲ - (ଉଠି ପ୍ରାଙ୍ଗଣପଟ ଅବଲୋକନ) ।

ସୁଲ - ହଁ ସଖି ! ମହାରାଜ ଆସୁଅଛନ୍ତି । ସଖି ! କୀରବାଣୀ ! ଆସ, ଏହିଠାରୁ ଆମ୍ଭେ ଯିବା । (ଦୁହିଁଙ୍କର ପ୍ରସ୍ଥାନ । ରାଜାଙ୍କର ପ୍ରବେଶ ଓ ଲୀଳାବତୀ ତାହାଙ୍କର ଚରଣେ ପ୍ରଣାମ କରିବା ।)

ରାଜା - କଲ୍ୟାଣ !

ରାଗ କାମୋଦୀ । ଆଦିତାଳ ।

ପଙ୍କଜାକ୍ଷି ଶୁଣ ବଚନ ।
ତୋ ପାଶୁ ମେଲାଣି ନେଇଁ । ସ୍ୱର୍ଗପୁରେ ଯାଇ ମୁହିଁ ।
କଲି ଘୋରତର ରଣ ।୦।
ଯୁଦ୍ଧେ ହାରି ଶଚୀପତି । ପାଇ ମନେ ଅତି ଭୀତି ।
ଲୁଚିଲା ତା ଅନ୍ତଃପୁରେ ।
ବଳ ତାର ଗଲା ଜଣା । ତେଣୁ ମୁ କଲି କରୁଣା ।
ଫେରିଲି ନିଜ ଭୁବନ ।୧।
କହୁଛି ପ୍ରତିଜ୍ଞା କରି । ନିଶ୍ଚେ ମୁଁ ମାରିବି ହରି ।
ମୋ ସଙ୍ଗେ ଯୁଝି ନ ପାରିବ ।
ସଦୟେ ସେ କୁଶଧର । ଦେଇଛନ୍ତି ମୋତେ ବର ।
ତ୍ରିପୁରେ କେ ମୋ ସମାନ ।୨।
କିଂପା ଦିଶଇ ମଳିନ । ତୋ କଳାକର ଲପନ ।
କହରେ ମୋ ଜୀବଜୀବନ ।
ବିନୟେ ଧରୁଛି ପାଣି । ଏହି ଏକା ମୋ ମାଗୁଣି ।
କେବେ ତୁ ନକର ଗୁମାନ ।୩।
ଆଉ କେବେ ତୁ ଏହିପରି । ନ କରିବୁ ପ୍ରାଣେଶ୍ୱରି ।
କହୁଛି ଏ କଥା ନିଦାନ ।
ଛାଡ଼ିବି ରାଜ୍ୟ ବିଭୁତି । ବନେ ପଶି ହେବି ଯତି ।
କଲେ ତୁ ମୋଠାରେ ବିମନ ।୪।

ଲୀଳା - ରାଗ ବେହାଗ । ଅଟତାଳ ।

ଘେନ ମୋର ବିନତି । ବାରେ ମୋ ପ୍ରାଣପତି ।୦।
ଅସୁରଙ୍କ ବଇରୀ । ଅଟନ୍ତି ଯେ ଶଉରି ।
ନ ଯୁଝ ତାଙ୍କ ସଙ୍ଗେ । ଶୁଣି ମୋର ଭାରତି ।୧।
ଧରି କପଟ ବେଶ । ଦେଖ ସେ ରମାଈଶ
ତୁମ୍ଭର ଅନୁଜଙ୍କୁ । କିପରି ନାଶିଛନ୍ତି ।୨।
ମନ ହେଉଛି ମୋର । ନିରନ୍ତର କାତର ।
ତୁମ୍ଭର ମଙ୍ଗଳବିନୁ । ନାହିଁ ମୋ ଅନ୍ୟ ଗତି ।୩।

ନ ଲୋଡ଼େ କିଛି ଆଉ । ତୁମ୍ଭେ ଶୁଭରେ ଥାଉ ।
କିପରି ଯିବ ପ୍ରାଣ । ମୋ ସକଳ ସମ୍ପତ୍ତି ।୪।

ରାଜା- **ରାଗ ଖମାଚ ଅଟତାଳ ।**

ଶୁଣ ମୋ ବିନୟ ବାଣୀ ନାରୀଶିରୋମଣ୍ଡନା
ମନୁ ତେଜ ଦୁଃଖ ତୁହି । କାମ-ଦୁଃଖ-ଖଣ୍ଡନା ।୦।
ଛିଡ଼ା ହେବାକୁ ମୋ ଆଗରେ । ନାହିଁ ତ ବୀର ମହୀରେ ।
ଜାଣୁକି ମୋତେ ଜିଣିବ ବୋଲି ସେ ଉଦଣ୍ଡନା ? ।୧।
ଘେନ କହୁଛି ସୁନ୍ଦରି । ନାଶିବାକୁ ଶତ୍ରୁ-କରି ।
ସତ ମୁଁ ଅଟଇ ପ୍ରଚଣ୍ଡ ଗଣ୍ଡଭେରଣ୍ଡ ନା ।୨।
ବୃଥା କଥାରେ ନଳିନ । ଲପନ କରି ମଳିନ ।
ଅବିରତ ଅଶ୍ରୁ ତେଜି ମାର ହାତେ ଦଣ୍ଡନା ।୩।

ଭୀରୁ ! ତୁ କଦାପି ଦୁଃଖ କର ନାହିଁ । ମୁଁ ଅକ୍ଳେଶରେ ସେ ରମାପତିକି ନାଶ କରିପାରେ । ତୁ ଅନ୍ତଃପୁରରେ ଆନନ୍ଦରେ ଥାଅ ! ମୋତେ ଅନୁମତି ଦିଅ । ମୁଁ ସଭାକୁ ଯାଏ ।

ଲୀଳା - ଯେ ଆଜ୍ଞା ! (ନମସ୍କାର କରିବା)

(ରାଜାଙ୍କ ପ୍ରସ୍ଥାନ ଓ ଯବନିକା ପତନ)

●

## ତୃତୀୟାଙ୍କ

### (ପ୍ରଥମ ଦୃଶ୍ୟ)

(ରାଜା ହିରଣ୍ୟକଶିପୁ ସିଂହାସନରେ ଆସୀନ, ମନ୍ତ୍ରୀ, ପାରିଷଦଗଣ ଓ ସୈନ୍ୟାଧିପତିମାନେ ନିକଟେ ଉପବେଶନ ।)

ରାଜା - ମନ୍ତ୍ରୀନ୍ । ସେ ମୂଢ଼ ହରି କେଡ଼େ ସାହସ କଲା ! ଯେ ତ୍ରିଲୋକରେ ବନ୍ଦ୍ୟ, ଯାହାର ନାମ ଶ୍ରବଣ ମାତ୍ରେ ସ୍ୱର୍ଗ ମର୍ତ୍ତ୍ୟ ଏବଂ ପାତାଳ ଲୋକେ ଭୟରେ ସତତ କମ୍ପମାନ ତାହାର ପ୍ରିୟ ଭ୍ରାତା ହିରଣାକ୍ଷକୁ-ପାପିଷ୍ଠ କି ଜାଣି ନଥିଲା ଯେ-ବିନାଶ କଲା । ବୁଝିବା କେଉଁ ଧୈର୍ଯ୍ୟବଳରୁ ସେ ଏଡ଼େ ବଡ଼ କାର୍ଯ୍ୟରେ ହସ୍ତ କ୍ଷେପଣ କରିଅଛି । ଦେଖ ! ସେ ଭୟାକୁ କିପରି ଲୁଚି ରହିଅଛି । ଥରେ ମାତ୍ର ଧୈର୍ଯ୍ୟ ଧରି ମୋ ସମ୍ମୁଖରେ ଛିଡ଼ା ହେଉ । ଏହି ଶାଣିତ କୃପାଣର ପ୍ରଭାବ ଜାଣି ପାରିବ । ହେ ବିବେକଶିରୋମଣ୍ଡନ, ନିଖିଳ ସାମ୍ରାଜ୍ୟ ଲାଳନାପାଳନ-ନିପୁଣ ବିପ୍ରଚିତ୍ ଅମାତ୍ୟସାର୍ବଭୌମ ! ଥରେ ଯତ୍ନକରନ୍ତୁ ଯେପରି ସେ ଭ୍ରାତୃପ୍ରାଣହନ୍ତା ମୋର ନୟନ ପଥାରୂଢ଼ ହେବ । ଏହି ରଣରଙ୍ଗର ବାହୁଦ୍ୱୟର କଣ୍ଡୁୟନ କିପରି ଶୀଘ୍ର ଦୂରୀଭୂତ ହେବ, ତାହାର ଉପାୟ ଆଲୋଚନା କରନ୍ତୁ ।

ମନ୍ତ୍ରୀ - ମହାରାଜ ! ସେ ଅସୁରକୁଳ ଶତ୍ରୁ ହରି ଭବଦୀୟ ବାହୁ ପରାକ୍ରମ ଜାଣିପାରି କୌଣସି ଅଗମ୍ୟ ସ୍ଥଳରେ ଲୁଚି ରହିଅଛି । ଲୁଚିବା ଶତ୍ରୁକୁ ଧରିବା ସହଜ କଥା ନୁହେଁ । ସେ ହେତୁ ଅନୁମାନଦ୍ୱାରା ତାହାର ବାସସ୍ଥାନ ଠିକ୍ କରିବା ଆବଶ୍ୟକ । ମୁଁ ପୂର୍ବରେ ଶୁଣି ଅଛି ହରି ମୁନି ଓ ଭକ୍ତମାନଙ୍କର ହୃଦୟରେ ଓ ସକଳ ସ୍ଥାନରେ ଅପ୍ରକାଶରେ ଥାଏ । ଏଣୁ ଉକ୍ତସ୍ଥଳମାନଙ୍କରେ ଅନ୍ୱେଷଣ କରା ଦୁସ୍ତର । କିନ୍ତୁ, ଯଦି ଶ୍ରୀ ଛାମୁଙ୍କ ଆଦେଶ ହୁଏ ତେବେ ଏହି ସଭାସ୍ଥିତ ସେନାପତିମାନଙ୍କୁ ଅନ୍ୱେଷଣାର୍ଥ ସୈନ୍ୟସହ ପ୍ରେରଣ କରିବି ।

ରାଜା - ଉତ୍ତମ ! (ସେନାପତିମାନଙ୍କ ପ୍ରତି ।)

**ରାଗ କଲ୍ୟାଣୀ । ଆଦିତାଳ ।**

ବୀରେ ହେ । ଥରେ ଯାଅ ସତ୍ୱରେ ହେ ।୦।

ମୋର ବଚନ ଘେନ । ଶୂରଶିରୋମଣ୍ଡନ ।
ହରଷେ ତ୍ରିଭୁବନ । କର ଯାଇ ଭ୍ରମଣ ।
ହରିଭକ୍ତ ଯେ ଜନ । ଧରି ତାହାକୁ ବେଗେ ଆଣ ।
କରିଣ କଳବଳ । ଚିରି ତାହାର ଉର ।
ସାରି ଦିଅ ହେ ଭକ୍ତଙ୍କ । ସୃଷ୍ଟି ଏକବାରେ ।୧।
ଭୋଗ ସୁଖ ବରଜ । ଆଗ କରିବ କାର୍ଯ୍ୟ ।
ଦିଗ ବିଦିଗେ ଖୋଜ । ନାଗାଦି ଲୋକେ ଆଜ ।
ଧରି ରମାରମଣ । କରି ହସ୍ତପଦ ବନ୍ଧନ ।
କରିକି ଯେହି ପରି । ହରି ଦିଏ ବିଦାରି ।
ଗାରିମା ତାହାରି । ଭାଙ୍ଗି ଆଣ ମୋ ପାଶରେ ।୨।
ଅତି ଆନନ୍ଦଭରେ । ଜ୍ୟୋତିଯୁକ୍ତ କର୍ତ୍ତରେ ।
ଛାତିକି ଧରି କରେ । କର୍ତିବି କ୍ଷଣକରେ ।
କାହିଁ ଲୁଚିଛି ସେହି । କେହି ଦେବ କି କହି ।
ବାଦେ ଆସିବ ଯଦି । ପାଦେ ମରଦିଦେବି ।
ମୋଦେ ତାହାର ମାଂସ । ଖାଇଦେବେ ଅସୁରେ ।୩।

ସେନାପତିମାନେ-ଯେ ଆଜ୍ଞା ।

(ତରବାରି ବୁଲାଇ ଓ ଘୋର ରଡ଼ି କରି ପ୍ରସ୍ଥାନ ।)

ରା - ମନ୍ତ୍ରିପ୍ରଧାନ ! କିପରି ଅସୁରକୁଳଘାତୁକ ମୋ ସମ୍ମୁଖରେ ପଡ଼ିବ ଆମ୍ଭେ ରାତ୍ରିଂଦିବା ଏହି ଚିନ୍ତା କରୁଁ ।
(ପରିମଳା ପରିଚାରିକାର ଦ୍ରୁତ ପ୍ରବେଶ ।)

ପରି - ଶୁଭ ସମାଚାର ! ମହାରାଜ ! ଶୁଭ ସମାଚାର !

ରା - ପରିମଳା ! କି ଶୁଭ ସମାଚାର । ଶୀଘ୍ରେ କହ !

ପରି - ଶ୍ରୀଛାମୁଙ୍କର ପଟ୍ଟମହିଷୀ ଲୀଳାବତୀ ପୁତ୍ର ପ୍ରସବ କଲେ ।

ରାଜା - ସତ କହୁଛୁ ?

ପରି - ହଁ ଆଜ୍ଞା । ଛାମୁରେ ମିଥ୍ୟା କଥା କୁହାଯାଇପାରେ ?

ରାଜା - ହେ ମନ୍ତ୍ରିନ୍ ! ଏହି ପରିମଳା ପରିଚାରିକାକୁ ପ୍ରଚୁର ପୁରସ୍କାର ପ୍ରଦାନ କରି ତାହାର ମନାନନ୍ଦ କରାନ୍ତୁ ।

ମନ୍ତ୍ରୀ - ଯେ ଆଜ୍ଞା ।

ରାଜା - **ରାଗ ମରୁଆ ! ଅଟତାଳ ।**

ଶିବ କୃପାରୁ । ଜନ୍ମିଲା ସୁତ । ଲୀଳାବତୀଙ୍କ ଗର୍ଭରୁ ।୦।
ଚିର ଅଭିଳଷିତ । କାର୍ଯ୍ୟ ହେଲା ପୂରିତ ।
ହେଲି ମୁଁ ଆନନ୍ଦିତ । ନିଶ୍ଚୟ ଆଜ ଠାରୁ ।୧।
ନିରତେ ମୁହିଁ । ଦୁଃଖକୁ ସହି । ଥିଲି ଅପୁତ୍ରକ ହୋଇ ।
ଲଭି ସୁତ ସମ୍ପତ୍ତି । ଛାଡ଼ି ମୁ ସର୍ବ ଭୀତି ।
ବିନାଶିବ ଝଟତି । ସେ ହରି ରଣଭୀରୁ ।୨।
ହେ ମନ୍ତ୍ରୀ ରାଣ । ମୋ ବାଣୀ ଶୁଣ । କରାନ୍ତୁ ଉତ୍ସବମାନ ।
କୁଳଗୁରୁଙ୍କୁ ଡାକି । ଜନ୍ମ କାଳକୁ ଦେଖି ।
ବୁଝ ଜାତକ ରଖି । ଶୁଭାଶୁଭ ତହିଁରୁ ।୩।
ପେସି ଅର୍ଚ୍ଚକ । ମନ୍ତ୍ରିନାୟକ । କର ଶିବଅଭିଷେକ ।
ବନ୍ଧୁଗଣ ଡକାଇ । ଧନ ବସନ ଦେଇ ।
ତାଙ୍କ ମନ ପୁରାଇ । ପଠାଅ ଆମ୍ଭ ପୁରୁ ।୪।

ବିପ୍ରଚିତ୍ ଅମାତ୍ୟପ୍ରଧାନ । ଆପଣ ନିଜେ ଯାଇ ପୁତ୍ର ଜନ୍ମର ବାର୍ତ୍ତା ଜନସାଧାରଣରେ ଘୋଷଣା କରାନ୍ତୁ । ଉତ୍ସବ କିପରି ଜନମନାନନ୍ଦକର ହେବ ସେଥି ବିଷୟେ ପ୍ରଯତ୍ନ କରନ୍ତୁ । ଆମ୍ଭେ ଯାଉଁ ପୁତ୍ରକୁ ଦେଖି ଆସିବୁଁ ।

ମନ୍ତ୍ରୀ - ଆଜ୍ଞା ! ମହୋଦୟଙ୍କ ଆଦେଶ ଶିରୋଧାର୍ଯ୍ୟ କଲି ।

(ରାଜା ଓ ମନ୍ତ୍ରୀର ପ୍ରସ୍ଥାନ ଓ ଯବନିକା ପତନ ।)

## ଦ୍ୱିତୀୟ ଦୃଶ୍ୟ ।

(ରାଣୀ, ଧାତ୍ରିଗଣ ଓ ଦାସୀମାନେ ସଦ୍ୟୋଜାତ ଶିଶୁର ଶଯ୍ୟା ପାର୍ଶ୍ୱେ ଉପବେଶନ ଓ ରାଜାଙ୍କ ପ୍ରବେଶ ।)

ପରିମଳା - ମହାରାଜା ! ହେଟି ଧାନ୍ୟ ଆଉ ସ୍ୱର୍ଣ୍ଣ ମୁଦ୍ରା ଶ୍ରୀହସ୍ତରେ ଧାରଣ କରନ୍ତୁ ।

(ରାଜା ଧାନ୍ୟ ଓ ସ୍ୱର୍ଣ୍ଣମୁଦ୍ରା ସୂତିକାଗାରର ଏକ ପାର୍ଶ୍ୱରେ ନିକ୍ଷିପ୍ତ କରି ଶିଶୁ ମୁଖାବଲୋକନ କରିବା ।)

ରାଜା - (ସ୍ୱଗତ) ଆଜ ଆମ୍ଭର ଜନ୍ମ ସାର୍ଥକ ହେଲା । ଏହି ଶିଶୁଟିର ମୁଖମାଧୁରୀ ସଂଦର୍ଶନ କଲାମାତ୍ରେ କୌଣସି ଏକ ପ୍ରକାର ଅନିର୍ବଚନୀୟ ଆନନ୍ଦ ଆମ୍ଭ

ହୃଦୟରେ ଜାତ ହେଉଅଛି । ଈଶ୍ୱର ଏହାର ସର୍ବପ୍ରକାର ମଙ୍ଗଳ କରନ୍ତୁ । (ପ୍ରକାଶ୍ୟରେ) ପରିମଳା ଓ ଧାତ୍ରିଗଣ ! ତୁମ୍ଭେମାନେ ଶିଶୁ ଓ ରାଣିଙ୍କର ସ୍ୱାସ୍ଥ୍ୟ ବିଷୟରେ ନିତାନ୍ତ ଜାଗରୁକ ଥିବ ।

ପରିମଳା - ମହାରାଜ ! ଏ ବିଷୟରେ କି ଛାମୁଙ୍କ ଆଜ୍ଞା ଦରକାର ?

ରାଜା - ହଁ ଆମ୍ଭେ ତୁମ୍ଭମାନଙ୍କର ଭକ୍ତି ଓ ସେବା ଭଲରୂପେ ଜାଣୁ ତଥାପି ଏହିପରି ସମୟରେ ତୁମ୍ଭମାନଙ୍କୁ କହିବାର ବିହିତ ମଣୁଅଛୁଁ ।

ପରିମଳା - ଛାମୁଙ୍କର ଆଜ୍ଞା ଆମ୍ଭେମାନେ ମୁଣ୍ଡ ଉପରେ ରଖିଲୁଁ । ମହାରାଜ କ୍ଷମା କରନ୍ତୁ ! ଆମ୍ଭମାନଙ୍କୁ ଆଉ ଏ ଧାଡ଼କି କିଛି ମିଳି ପାରିଲା ନାହିଁ । ଆମ୍ଭେମାନେ ଯେ କଷ୍ଟ ପଡୁଅଛୁଁ ତା କହି ବସିଲେ କି ସରିବ ? ପେଟକୁ ଆହାର ନାହିଁ କି, ଆଖିକି ନିଦ ନାହିଁ । ସବୁ ଛାମୁଙ୍କୁ ଗୋଚର । ଅଧିକ କହିଲେ କିସ ହେବ ।

ରାଜା - ହେଉ ! ଆମ୍ଭେ ମନ୍ତ୍ରୀଙ୍କୁ କହିଦେବୁଁ ଯେପରି ତୁମ୍ଭମାନଙ୍କୁ ଉତ୍ତମ ପୁରସ୍କାର ମିଳିବ । ଯାଅ ନିଜ ନିଜ ସେବାରେ ଲାଗିଯାଅ ।

ପରି - ଆଜ୍ଞା (ରାଜାଙ୍କର ପ୍ରସ୍ଥାନ ଓ ଯବନିକାପତନ) ।

## ତୃତୀୟ ଦୃଶ୍ୟ

(ରାଜା ସିଂହାସନରେ ଉପବିଷ୍ଟ, ମନ୍ତ୍ରୀ, ବିଦୂଷକ ଓ ପାରିଷଦ ବୃନ୍ଦଙ୍କ ସଭାସ୍ଥଳେ ଆସୀନ ।)

ରାଜା - ମନ୍ତ୍ରିନ୍ ! କିଂରୀତିରେ ଜନ୍ମୋତ୍ସବ ସମାଧା ହେଲା ବିଷଦ୍‌ରୂପେ କହନ୍ତୁ ?

ମନ୍ତ୍ରୀ - ଆଜ୍ଞା ! ମହାରାଜାଙ୍କର ଆଦେଶାନୁସାରେ ମୁଁ ନିଜେ ଯାଇ ଜନ୍ମୋତ୍ସବର ସର୍ବାଙ୍ଗୀନ ସୌନ୍ଦର୍ଯ୍ୟ ନିମିତ୍ତେ ଅପର୍ଯ୍ୟାପ୍ତ ପରିଶ୍ରମ ସ୍ୱୀକାର କରିଅଛି । କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ ଭବଦୀୟ ସେବକ ସ୍ୱାମୀ କାର୍ଯ୍ୟ ଲାଗି କିୟତ୍‌କାଳ ପର୍ଯ୍ୟନ୍ତ ନିଜ ପ୍ରାଣକୁ ବିସ୍ମରି ଯାଇଥିଲା । ଶ୍ରବଣ କରନ୍ତୁ ଦେବଦେବ ଉମାକାନ୍ତଙ୍କ ଏବଂ ଭାରତୀପତିଙ୍କ ଭକ୍ତଗଣଙ୍କୁ ଡକାଇ ପ୍ରଚୁର ଧନଧାନ୍ୟାଦି ପ୍ରଦାନ, ଅର୍ଚ୍ଚକମାନଙ୍କୁ ପ୍ରେଷଣ କରି ମହାଦେବଙ୍କୁ ଅର୍ଚ୍ଚନା ଓ ଅଭିଷେକାଦି, ପ୍ରତ୍ୟେକ ବୀଥିରେ ରମ୍ଯାତରୁ ପୂର୍ଣ୍ଣକୁମ୍ଭମାନ ସଂସ୍ଥାପନ, ଆମ୍ର ତୋରଣ ବନ୍ଧନ ଇତ୍ୟାଦି କାର୍ଯ୍ୟ ନିଜେ ଥାଇ କରାଇଲି । ଦୀନ ଦୁଃଖୀଙ୍କୁ ଯଥେଷ୍ଟ ଧନ ବସନ ପ୍ରଦାନ ଏବଂ ପୁତ୍ର ମଙ୍ଗଳାର୍ଥେ

ବ୍ରାହ୍ମଣମାନଙ୍କଦ୍ୱାରା ବେଦମନ୍ତ୍ରୋଚ୍ଚାରଣ ଆଉ ରାଜବନ୍ଧୁମାନଙ୍କର ବିପୁଳ ସତ୍କାର କରାଗଲା । ନର୍ତ୍ତକଙ୍କର ନୃତ୍ୟ ଗାନାଭିନୟରେ ଓ ଜନସମୂହର କଳରବରେ ନଗରର କେତେଦୂର ସୌନ୍ଦର୍ଯ୍ୟ ବୃଦ୍ଧି କରିଛି ତାହା ଛାମୁ ଥରେ ମାତ୍ର ଅବଲୋକନ କଲେ ଜାଣିପାରିବେ । କୁଳଗୁରୁଙ୍କୁ ଡକାଇ ଲଗ୍ନାଦି ସଂସ୍ଥାପନ କରାଇ ଅଭିନବ କୁମାରମହାରାଜଙ୍କର ଜାତକ ତୟାର କରାଇ ଦେଇଅଛି । ଜାତକ ନାମ ପ୍ରହ୍ଲାଦ ବୋଲି ଦିଆଯାଇଅଛି ।

ରାଜା - ବିପ୍ରଚିତ୍ ଅମାତ୍ୟପୁଙ୍ଗବ କରିବା କାର୍ଯ୍ୟରେ କୁତ୍ରାପି ଅଭାବ ପରିଲକ୍ଷିତ ହୁଏ ନାହିଁ ।

ବିଦୂ - ମହାରାଜ ! ନିଖିଳ ସଦ୍‌ଗୁଣବିଶିଷ୍ଟ ଅମାତ୍ୟଶ୍ରେଷ୍ଠ ଆତ୍ମପ୍ରତି ଯେ ଅଭାବ ଦେଖାଇ ଅଛନ୍ତି ତାହାତ ମହାରାଜ ଜାଣନ୍ତି ? ତେବେ ମହାରାଜ କିପରି ମୁକ୍ତ କଣ୍ଠରେ କ୍ଷମା କରନ୍ତୁ ।

ରାଜା - ସଖେ ! ଆପଣଙ୍କ ମନୋଭାବ ଆମ୍ଭେ ଉତ୍ତମରୂପେ ବୁଝି ପାରିଅଛୁଁ ।

ବିଦୂ - ମହାରାଜ ସକଳ ବିଷୟ ଜାଣନ୍ତି ।

ରାଜା - (ଇଷତ୍ ହାସ୍ୟ ପ୍ରକାଶ କରି) ମନ୍ତ୍ରିନ୍ ! ଏହାଙ୍କୁ ଯଥେଷ୍ଟ ପୁରସ୍କାର ଦିଅନ୍ତୁ ।

ମନ୍ତ୍ରୀ - ମହାରାଜଙ୍କ ଆଜ୍ଞା ଶିରୋଧାର୍ଯ୍ୟ କଲି ।

ବିଦୂ - ମହାରାଜ ! ମନେ ପଡ଼ିଲା । ମୁ ପୁତ୍ରୋତ୍ସବରେ ଯାହା ଦେଖିଲି ତାହା ଛାମୁରେ ନିବେଦନ କରୁଅଛି, ଶ୍ରବଣ କରନ୍ତୁ ।

ରାଜା - ବୟସ୍ୟ ! କହନ୍ତୁ ।

ବିଦୂଷକ - ମହାରାଜ ! ମନ ଚାଞ୍ଚଲ୍ୟ ହେତୁ ଉକ୍ତ ମହୋତ୍ସବ ବିଷୟରେ କିଛି ବିସ୍ତାର କରି କହି ନ ପାରେ । ବିଶେଷତଃ ମାନବର ସୀମାବଦ୍ଧ ସଂକୀର୍ଣ୍ଣ ଭାଷାରେ ସେହି ମହତ୍ ବ୍ୟାପାର ବର୍ଣ୍ଣନା କରିବାକୁ କାହାର ସାମର୍ଥ୍ୟ ? କଳ୍ପନାଶକ୍ତି ଐନ୍ଦ୍ରଜାଲିକ ପକ୍ଷ ସଂଲଗ୍ନ କରି ଦୈନନ୍ଦିନ ଉଡ୍ଡୀୟମାନ ହେଲେ ମଧ୍ୟ ଯେ ମହୋତ୍ସବର ଶୋଭାତିଶୟର ସୀମାନ୍ତ ରେଖା ସ୍ଥିର କରି ପାରିବ ନାହିଁ, ସାମାନ୍ୟ ମାଦୃଶ ଜନ କି ପ୍ରକାର ତାହାକୁ ବର୍ଣ୍ଣନା କରି କହି ପାରିବ ? ସେହି ଅସଂଖ୍ୟ ଧ୍ୱଜପତକାର ଶ୍ରେଣୀ, ଦୁନ୍ଦୁଭୀର ଦିଙ୍‌ମଣ୍ଡଳ ପ୍ରକମ୍ପିତ ଶତ୍ରୁ ଭୀକର ଧ୍ୱନି, ଗାୟକ ଗାୟିକା ବୃନ୍ଦଙ୍କ ପ୍ରାଣସ୍ପର୍ଶୀ ହୃଦୟୋନ୍ମାଦକ

ସୁଧାମୟ ତାନମାନ ପରିପୂରିତ ଗାନ, ଅଭିନବ କୁମାରଙ୍କ ମଙ୍ଗଳାର୍ଥେ ଲକ୍ଷ ଲକ୍ଷ କଣ୍ଠୋଚ୍ଚାରିତ ଶିବ ନାମର ମହାକଲ୍ଲୋଳ, ମହତ୍କ୍ଷୁଦ୍ର ବ୍ରାହ୍ମଣଶୁଦ୍ର ବିଳାସୀବ୍ୟବସାୟୀ ଧନୀଦରିଦ୍ର ପଣ୍ଡିତମୂର୍ଖ ଏମାନଙ୍କର ସମ୍ମେଳନ ଏବଂ ବୃଦ୍ଧମାନଙ୍କର ଆନନ୍ଦବିଭବ, ଯୁବାମାନଙ୍କ ହାସ୍ୟଲାସ୍ୟାଦିଭାବ ଓ ବାଳକମାନଙ୍କ ଉଦ୍ଦଣ୍ଡ ତାଣ୍ଡବ ମୁଁ କି ପ୍ରକାରେ ଛାମୁରେ ଅଭିବ୍ୟକ୍ତ କରିପାରିବି ? ଅଧିକନ୍ତୁ ସକଳଲୋକ ଯେ ପ୍ରକାର ପୁରସ୍କୃତ ହୋଇଅଛନ୍ତି ସେମାନଙ୍କର ଆନନ୍ଦ ଇୟତ୍ତା କରିବା ନିତାନ୍ତ ଅସମ୍ଭବ ।

ରାଜା - (ଈଷତ୍ ହାସ୍ୟ ପ୍ରକାଶ କରି) ତେବେ ସବୁ ଭଲ ରୂପେ ଚଳି ଯାଇଅଛି ତ ?

(ସସୈନ୍ୟରେ ସେନାପତି ପ୍ରବେଶ ।)

ସେନାପତେ ! ଏବେ ଆସୁଅଛ ? ସେ କପଟାଚାରୀ ଭୀରୁ ହରିକି ଅନୁସନ୍ଧାନ କରି ପାରିଲ ?

ସେନା - (ନମସ୍କାର ପୂର୍ବକ) ମହାରାଜ ! ମୁଁ ସସୈନ୍ୟରେ ଜମ୍ବୁ, ପ୍ଲକ୍ଷ, କୁଶ, କ୍ରୌଞ୍ଚ, ଶାକ, ଶାଲ୍ମଳୀ ଏବଂ ପୁଷ୍କର ଦ୍ୱୀପରେ ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତେ ଅନୁସନ୍ଧାନ କରିଅଛି । ମାତ୍ର କୌଣସିଠାରେ ହେଲେ ତାହା ବାସନା ପାଇ ପାରିଲି ନାହିଁ । ତାହାର ଗୁପ୍ତସ୍ଥିତି ଭେଦନ କରିବାଲାଗି ଅନେକ ସ୍ଥଳରେ ଗୁପ୍ତଚରମାନଙ୍କୁ ନିଯୁକ୍ତ କରିଆସିଅଛି । ବୋଧହୁଏ ଅନତିବିଳମ୍ବରେ ସେମାନଙ୍କଠାରୁ ସମ୍ବାଦ ଆସିପାରିବ ।

ରାଜା - ଆଚ୍ଛା ! ମନ୍ତ୍ରିନ୍ ! ସେନାପତି ସୈନ୍ୟସହ ଉପଯୁକ୍ତ ସମୟରେ ପହୁଞ୍ଚି ଅଛନ୍ତି । ପୁତ୍ର ଜନ୍ମୋତ୍ସବ ଲକ୍ଷ୍ୟେ ଶୀଘ୍ର ଯାଇ ସେମାନଙ୍କୁ ଉପଯୁକ୍ତ ପୁରସ୍କାର ଦିଅନ୍ତୁ ।

ମନ୍ତ୍ରୀ ଯେ ଆଜ୍ଞା (ପ୍ରଣାମ ଓ ପ୍ରସ୍ଥାନ)

(ରାଜାଙ୍କ ପ୍ରସ୍ଥାନ ଓ ଯବନିକା ପତନ)

ନେପଥ୍ୟେ ।

**ରାଗ ଖମାଚ । ଅଟତାଳ ।**

ଦିନକୁ ଦିନ ପ୍ରହ୍ଲାଦ । କି ଯତନେ ବଢ଼ଇ ।୦।
ଘୂରାଇ ଭୃଙ୍ଗନୟନ । ପୂରାଇ ହାସେ ବଦନ ।
କର ଜାନୁରେ ଗମନ । କରି ତଳେ ପଡ଼ଇ ।୧।

ଚାରୁ ସସ୍ମିତ ଆନନ । ବାମ ନୟନକୁଞ୍ଚନ ।
ଶରଦ କଳାକରକୁ । ଅବହେଳେ ତଡ଼ଇ ।୨।
କରିକଲଭ ପରାଏ । ଝୁଲି ମସ୍ତକ ହଲାଏ ।
କି ସୁନ୍ଦର ଉଭା ହୋଇ । ଭିତ୍ତି ଭର ଛାଡ଼ଇଁ ।୩।
କୁଟିଳ ଚାରୁ କୁନ୍ତଳ । କଟି ତଟରେ ଦୁକୂଳ ।
ଭାଷି ଦରୋଟି ବଚନ । ଛଣା ସୁଧା ଏଡ଼ଇ ।୪।

## ଚତୁର୍ଥ ଦୃଶ୍ୟ

(ଶ୍ରୀପଞ୍ଚାନନ ଜ୍ୟୋତିଷାଳଂକାର, ଷଡ଼ାନନ ମହାପାତ୍ର ଓ ବିନାୟକ ମିଶ୍ର ଶିଷ୍ୟ ଦ୍ୱୟ ମଣ୍ଡପରେ ଉପବେଶନ)

ପ - ଗତକାଲି ରାଜକୁମାର ପ୍ରହ୍ଲାଦଙ୍କର ବିଦ୍ୟାରମ୍ଭ ଉତ୍ସବ ଯେ ରୀତିରେ ହୋଇଥିଲା ତାହା ବର୍ଣ୍ଣନାତୀତ । ଶୁଭମୁହୂର୍ତ୍ତରେ ପ୍ରଥମ ଅକ୍ଷରାଭ୍ୟାସ ନିମନ୍ତେ ଏହି ମଣ୍ଡପରେ ରାଜକୁମାର ଉପବିଷ୍ଟ ଥିବାର ଦେଖି ବୈକୁଣ୍ଠର ଶୋଭା, କୈଳାସର ଶାନ୍ତି, ବ୍ରହ୍ମଲୋକର ପବିତ୍ରତା ଏବଂ ନନ୍ଦନବନର ଉପଭୋଗ ଏକତ୍ର ଉପଲବ୍ଧ ହେଲା ପରି ବୋଧ ହେଉଥିଲା । ରାଜକୁମାରଙ୍କ ସ୍ମେରାନନ, ସୁବିଶାଳ ପଦ୍ମ ପଲାଶ ଲୋଚନ, ସର୍ବଗ୍ରାହିଣୀ ଦୃଷ୍ଟି ଏବଂ କୋକିଳ କଳଜିତ ସ୍ୱରରେ ଅକ୍ଷର ଉଚ୍ଚାରଣ ଦର୍ଶକଙ୍କର ମନ ମୁଗ୍ଧ କରୁଥିଲା ।

ଷଡ଼ା - ଗୁରୋ ! ଆପଣ ଦେଖିଅଛନ୍ତି ? ଗୁରୁ ଅକ୍ଷର ଲେଖୁଁ ଲେଖୁଁ ସେ କିପରି ଅନୁକରଣ କରି ଲେଖି ଦେଉଥିଲେ ।

ପ - ହଁ ଆମ୍ଭେ ଜାତକରୁ ବୁଝି ତୋତେ କହିଥିଲୁଁ ପରା ସେ ଜଣେ ଭାରି ବିଦ୍ୱାନ ହେବେ ।

ଷଡ଼ - ଆଜ୍ଞା- ହଁ ।

ବିନା - ମହାଭାଗ ! ଜାତକ ଗଣନାରୁ ପରା ଆପଣ ଜାଣି ପାରିଅଛନ୍ତି ଯେ ରାଜକୁମାରଙ୍କର କିଛି ଅମଙ୍ଗଳ ଅଛି ?

ପଞ୍ଚା - ସେ ବିଷୟରେ କିଛି ଭାବନା ନାହିଁ । ଆମ୍ଭେ ନିଜେ ମନ୍ତ୍ରୀକୁ କହି ଦୁଷ୍ଟ ଗ୍ରହମାନଙ୍କର ଶାନ୍ତି ନିମିତ୍ତେ ହୋମ ପାୟଶ୍ଚିତ୍ତାଦି କରାଇ ଦେଇଅଛୁଁ ।

ଷଡ଼ା - କୁମାରଙ୍କ ହେତୁ ମହାରାଜଙ୍କର ବି କିଛି ଅମଙ୍ଗଳ ଘଟିବ ବୋଲି କହିଥିଲେ ପରା ?

ପଞ୍ଚା - ତନ୍ନିମିତ୍ତେ ଦାନ ଜପ ହୋମାଦି କରାଯାଇଅଛି ।

ବିନା - ମହାଭାଗ ! ଜ୍ୟୋତିଷ ଶାସ୍ତ୍ରର ଫଳ ବିଷୟରେ ପାର୍ବତୀଙ୍କର ଶାପ ହୋଇଅଛି ପରା ?

ପଞ୍ଚା - ସେହି ହେତୁ ସ୍ଥଳ ବିଶେଷରେ ଜ୍ୟୋତିଷଶାସ୍ତ୍ରର ଗଣନା ଫିଟିଯାଏ । ତାହା ବୋଲି କି ଜୋତିଷ ଶାସ୍ତ୍ର ମିଥ୍ୟା ହେବ ?

ଷଡ଼ା - ଆଜ୍ଞା ! ଯଥାର୍ଥ । ଜ୍ୟୋତିଷ ମିଥ୍ୟା ହେଲେ ଗ୍ରହଣାଦି କିପରି ଜାଣିପାରନ୍ତୁ ?

ବିନା - ଏ କି କଥା ! ଜ୍ୟୋତିଷ ତିନି ଭାଗରେ ବିଭକ୍ତ । ଯଥା ଗଣିତ, ମୁହୂର୍ତ୍ତ ଏବଂ ଫଳ । ଗଣିତଦ୍ୱାରା ଗ୍ରହମାନଙ୍କର ଚଳାଚଳ, ଋତୁମାନଙ୍କର ପରିବର୍ତ୍ତନ ଓ ଗ୍ରହଣାଦିର ଗଣନା କରାଯାଏ । ଗଣିତଦ୍ୱାରା ନିର୍ଦ୍ଧାରିତ କଥା ସର୍ବବାଦୀ ସମ୍ମତ । ଏପରି କହିଲେ ଚଳେ ଯେ ଗଣିତର ଫଳଭାଗ ତୁଲେ ସମ୍ବନ୍ଧ ନାହିଁ ।

ପଞ୍ଚା - ଯାହାହେଉ ଏ ସ୍ଥଳେ ତାହାର ମୀମାଂସା କରିବାର ଅନୁପଯୁକ୍ତ । ଚାଲ-ସାୟଂକାଳ ଆସି ପ୍ରବେଶ ହେଲାଣି । ସନ୍ଧ୍ୟା ବନ୍ଦନ କରିବାକୁ ଯିବା ।

(ସମସ୍ତଙ୍କର ପ୍ରସ୍ଥାନ)

●

# ଚତୁର୍ଥ ଅଙ୍କ

## (ପ୍ରଥମ ଦୃଶ୍ୟ)

(ରାଜା ହିରଣ୍ୟକଶିପୁ, ମନ୍ତ୍ରୀ ବିପ୍ରଚଂଦ୍ ଓ ପାରିଷଦବର୍ଗ ଆସୀନ)

ରାଜା - ମନ୍ତ୍ରିନ୍ ! ଦେଖ ! ସେ ଭ୍ରାତୃହନ୍ତା, କାପୁରୁଷ ରଣଭୀରୁ ହରି, ଆମ୍ଭର ବାହୁବଳ ଜାଣି କିପରି ଭୀତ ହୋଇ ଆମ୍ଭ ନୟନ ପଥରେ ପଡୁନାହିଁ । ଏ କି କ୍ଷତ୍ରିୟୋଚିତ ଧର୍ମ ? ଦୁରାତ୍ମା ଛଦ୍ମବେଶ ଧାରଣ କରି କେଉଁ ସାହାସରେ ଆମ୍ଭ ପ୍ରାଣାଧିକ ପ୍ରିୟତମ ଭ୍ରାତାକୁ ପ୍ରାଣରେ ବିନାଶ କଲା । ସେ କି ଜାଣି ନଥିଲା ବୃକ୍ଷଶାଖାରେ ଚଢ଼ି ସେହି ବୃକ୍ଷର ମୂଳ ଛେଦନ କଲେ ଆପଣା ପ୍ରାଣର ଅନିଷ୍ଟ ଘଟିବ ? କି ଦୁର୍ବୋଧ କାର୍ଯ୍ୟ ।

ମନ୍ତ୍ରୀ - ମହାରାଜ ! ଯଥାର୍ଥ ସେ ନ ଜାଣି ଦୁର୍ବୋଧ କାର୍ଯ୍ୟ କଲା । ଯେବେ କଲା ତେବେ ଲୁଚି ରହିବାର ଉଚିତ ନ ଥିଲା । ହେଲେ ହେଲା ଅଳ୍ପଦିନେ ତାହାର ପ୍ରତିଫଳ ପାଇବ ।

(ଶିକ୍ଷକ ଓ ପ୍ରହ୍ଲାଦର ପ୍ରବେଶ)

ରାଜା - ପ୍ରିୟ କୁମାର ପ୍ରହ୍ଲାଦ ! ମୋ କୋଳକୁ ଆସେ । (କୋଳ କରି) କି ହେତୁ ଏଠାକୁ ଆସିଛୁ ?

ପ୍ରହ୍ଲା - ପିତା ! ଆପଣଙ୍କୁ ଦେଖିବା ସକାଶେ ।

ରାଜା - ବାବୁ ! ତୁ ଯାହା ଶିକ୍ଷି ଅଛୁ ତାହା ଥରେ କହ ।

ପ୍ରହ୍ଲା - ତାତ ଆଦି- ଅନ୍ତ ରହିତ ସୃଷ୍ଟି -ସ୍ଥିତି-ପ୍ରଳୟକାରକ ସକଳ -କାରଣର ଆଦିକର୍ତ୍ତା ଯେ ହରି ତାହାଙ୍କର ଅନୁପମ ମହିମା । ମନେ ମନେ ଭାବନା କରି ତାହାଙ୍କର କିଛି ବିଷୟ ଶିକ୍ଷା କରିଅଛି ।

ରାଜା - (ସଚକିତ ଭାବେ ଓ ଆରକ୍ତ ନୟନେ ଚାହିଁ) ଦୁରାତ୍ମନ୍ ! କ୍ରୂର-ବ୍ରାହ୍ମଣାଧମ ! ତୁ ପରା ଜଣେ ସୁଶିକ୍ଷିତ ଶିକ୍ଷକ ? ତୁ ମୋର ଶତ୍ରୁର ପ୍ରଶଂସାପାଠ ପ୍ରହ୍ଲାଦକୁ ଶିଖାଇ ଅଛୁ ?

ଶିକ୍ଷ - (ସକାତରେ) ମହାରାଜ ! କ୍ଷମା କରନ୍ତୁ ! ମୁଁ କସ୍ମିନ୍ କାଳେ ରାଜ କୁମାରଙ୍କୁ ସେପରି ଶିଖାଇ ନାହିଁ ।

ରାଜା - ପ୍ରହ୍ଲାଦ ! ତେବେ କାଠାରୁ ଏ କୁତ୍ସିତ ବିଦ୍ୟା ଶିଖିଛୁ ? ଏ ଶିକ୍ଷକଠାରୁ ନାହିଁ ତ ?

ପ୍ରହ୍ଲାଦ- - ନା-ଏ ତ କୁତ୍ସିତ ବିଦ୍ୟା ନୁହେଁ । ଏ ସତ୍ ବିଦ୍ୟା । ତାହା ଏହାଙ୍କଠାରୁ ଶିଖି ନାହିଁ ।

ରାଜା - ତେବେ ଆଉ କାହାଠାରୁ ?

ପ୍ରହ୍ଲାଦ - **ରାଗ ତୋଡ଼ି । ଆଦିତାଳ ।**

ଜନକ କହୁଛି ଘେନ । ହୋଇ ସାବଧାନ ।୦।
ନିଖିଳ ଭୁବନ ପାତା । ଅଖିଳ ମଙ୍ଗଳଦାତା ।
ଦୁଃଖୀ ପାପୀ ଜନ ତ୍ରାତା । ଗୁଣାନୁବାଦନ ।୧।
ସକଳ ଶକ୍ତି କାରଣ । ବିକଳଜନଶରଣ୍ୟ ।
ଅକଳିତ କୃପାରଣ୍ୟ । ପ୍ରଭୁଙ୍କ କଥନ ।୨।
ସମସ୍ତ ଭବନ ଲୋକ । ବିମଳ ବୁଦ୍ଧି ଶିକ୍ଷକ ।
ତମନାଶନ ଆଲୋକ । ଦେଇଛନ୍ତି ଜ୍ଞାନ ।୩।
ଯାର କରୁଣା ମାତର । ଦୂର କରେ ପାପଭାର ।
ତାର ବିନୁ ଗୁରୁ ମୋର । ନାହିଁ କେ ଆନ ।୪।

ରାଜା - **ରାଗ ବେଗଡ଼ା । ଆଦିତାଳ ।**

ହେଲାତ ଭଲା ଶିଖିଛୁ । ନକହ ଏହା ଏଣିକି
ଶତ୍ରୁର ପ୍ରଶଂସା ରଖ । ଆଜଠାରୁ ତୁ ତେଣିକି ।୦।
ଆମ୍ଭ କୁଳ ବଇରୀ । ଅଟଇ ପରା ସେ ହରି ।
ତା ଗୁଣାନୁବାଦନ କର । ଭ୍ରମୁଅଛୁ ନ ଜାଣିକି ।୧।
ତିନି ଭୁବନ ଈଶ୍ୱର । ହିରଣ୍ୟକଶିପୁ ବୀର ।
ଛାମୁରେ ଏପରି ଗୀର । ଭାବ ତୁ କେବେ ଭଣି କି ।୨।
କରେ ମୁଁ ଯେଣୁ ଆଦର । ସେ ହେତୁ କି ଏ ପ୍ରକାର ।
କହିତୁ ପ୍ରଳାପ ଗୀର । ଚାଳୁଛୁ କାଳଫଣୀକି ।୩।
କହିଲେ ମୁ ହେବ କିସ । ନାହିଁକି ତୋ ବୁଦ୍ଧି ଲେଶ ।
ମନେ ଧ୍ୟାଇ ରମାଈଶ । ବଞ୍ଚିବୁ ଯାଇ କେଣିକି ।୪।
ଗଲାନିତ ଗଲା କଥା । ଏଥର ଛାଡ଼ ସେ ପ୍ରଥା ।
ବାତୁଳ ପରି ତୁ ବୃଥା । ରଟନା କୁତ୍ସା ବାଣୀକି ।୫।

ପ୍ରହ୍ଲାଦ - ରାଗ ଶ୍ରୋଟ । ଏକତାଳ ।

ତାହାଙ୍କୁ । ନ କର ନିନ୍ଦନ ।୦।

ପତିତ ପାବନ । ମୁକ୍ତିର ସଦନ । ଯେ ପାପ ନାଶନ ।୧।

ନିଖିଳ କାରଣ । ଅଖିଳ ପାଳନ । ସେହି ମାତ୍ର ଜାଣ ।୨।

ଦୁଃଖୀର ସମ୍ପତ୍ତି । ଅଗତିର ଗତି । ଯେ ଭୟ ବାରଣ ।୩।

ଯା ଚରଣ ତଳ । ଶରଣର ବଳ । ଜାଣିଛି ମୋ ମନ ।୪।

ଛାଡ଼ ଦ୍ୱେଷ ହିଂସା । ଚିତ୍ତେ ଦିବା ନିଶା । କରହେ ସ୍ମରଣ ।୫।

ରାଜା - ଦୁର୍ବୋଧ ବାଳକ ! ଏ ବୁଦ୍ଧି କାହୁଁ ଶିଖିଛୁ ! (ମନ୍ତ୍ରୀ ପ୍ରତି ଚାହିଁ) ଦେଖ ! ଏ କିପରି ଆମ୍ଭ ଶତ୍ରୁର ଭୁବନନିନ୍ଦ୍ୟ ଗୁଣଗାନ କରୁଅଛି ? ଏ ଭୂତଗ୍ରସ୍ତ ହୋଇ ଅଛି ନା ଏହାର ସ୍ୱଭାବ ଏହିପରି ?

ମନ୍ତ୍ରୀ - ମହାରାଜ ! କ୍ଷମା କରନ୍ତୁ । ଯୁବରାଜ ପ୍ରହ୍ଲାଦ କାହାଠାରୁ ଏହି ଶିକ୍ଷା ପାଇଅଛନ୍ତି ତାହା, ଜାଣିବା ଅସମ୍ଭବ । କିନ୍ତୁ ସମୟ କିଛି ବଳି ଯାଇ ନାହିଁ । ଏଥର ଉପଯୁକ୍ତ ଶିକ୍ଷା ଦେଲେ ସବୁ କଥା ଭଲ ହେବ ।

ରାଜା - ଉତ୍ତମ ! ତେବେ ହେଉ ।

ମନ୍ତ୍ରୀ - (ଶିକ୍ଷକ ପ୍ରତି) ଅବଧାନ ! ଯୁବରାଜଙ୍କୁ ସଙ୍ଗରେ ନେଇ ଏଣିକି ଉପଯୁକ୍ତ ଶିକ୍ଷା ଦିଅନ୍ତୁ । ଶୁଣନ୍ତୁ ବହୁ ଶ୍ରମ ସ୍ୱୀକାର କରି ତାହାଙ୍କ ମାନସରୁ ହରିଭକ୍ତି ବିଶ୍ୱାସ ସମୂଳେ ଉତ୍ପାଟନ କରନ୍ତୁ ।

ଶିକ୍ଷ - ହଁ ଆଜ୍ଞା । (ପ୍ରହ୍ଲାଦ ସହିତରେ ଗମନ)

(ରାଜାଙ୍କ ଅନ୍ତଃପୁର ଗମନ ଓ ଯବନିକା ପତନ)

## ଦ୍ୱିତୀୟ ଦୃଶ୍ୟ

(ରାଜା ଓ ରାଣୀ ଆସୀନ)

ରାଣୀ - ଏ ପାଠ ତାକୁ କେ ଶିଖାଇଲା ! ମତେତ କିଛି ବୁଦ୍ଧି ଦିଶୁନାହିଁ । ମହାରାଜ ! ସେଠୁଁ କିସ ହେଲା ?

ରାଜା - ମୁଁ କେତେ ପ୍ରକାର ପ୍ରବୋଧନ କରି କହିଲେ ମଧ୍ୟ ସେ ଶୁଣିଲା ନାହିଁ । ସେହି ଆମ୍ଭ କୁଳ ବୈରୀ ରମାରମଣର ଗୁଣାନୁବାଦନ ପୁନଃପୁନଃ କରିବାକୁ ଲାଗିଲା । ପରିଶେଷରେ ତର୍ଜନା ବାକ୍ୟ କହିଲେ ହେଲେ ନ ଶୁଣି ମୋତେ ସେହି ଶତ୍ରୁର ମନ୍ତ୍ରୋପଦେଶ କରିବାକୁ ବସିଲା ।

ରାଣୀ - କି ଦୁର୍ଦ୍ଦଶା ପଡ଼ିଲା ! ମହାରାଜ ! ଯାହା ହେଉ ସେ ଚଞ୍ଚଳମତି ବାଳକକୁ ତର୍ଜ୍ଜନା କରି ତାର ମନସ୍ତାପ ଜନ୍ମାନ୍ତୁନା ।

ରାଜା - (ସରୋଷେ) ରେ ଅବିବେକିନି ! ସ୍ୱକୁଳ ଶତ୍ରୁର ସ୍ତୁତି ଗାନ ଶ୍ରବଣ କରିବା କି କ୍ଷତ୍ରିୟଙ୍କ ଧର୍ମ ? ନିଖିଳବୀରସେବ୍ୟ ହିରଣ୍ୟକଶିପୁ କି ତାହା ଶୁଣିପାରେ ? ସେ ବିନାଶି ପାରେ ପ୍ରହ୍ଲାଦ ପରି ଶତେ ପୁତ୍ର, ମାତ୍ର ଶୁଣି ନ ପାରେ ଛଦ୍ମବେଶୀ, ଭ୍ରାତୃହନ୍ତା ଅଧମ ହରିର ସ୍ତବ ।

ରାଣୀ - (ସାଶ୍ରୁନୟନେ) ଆର୍ଯ୍ୟପୁତ୍ର । କ୍ଷମା କରନ୍ତୁ । ରାଗୀ ହୁଅନ୍ତୁ ନା ସେତ ଚପଳମତି ବାଳକ । ମୁଁ ନିଜେ ତାକୁ ବାଟକୁ ଆଣିବି । ମୁଁ ଶ୍ରୀଛାମୁରେ କର ଯୋଡ଼ି କହୁଛି ଆଉ ତାକୁ କୌଣସି ଦଣ୍ଡ ଦିଅନ୍ତୁନା ।

ରାଜା - ସୁନ୍ଦରି ! ଯେତେ ଦିନ ପର୍ଯ୍ୟନ୍ତେ ପ୍ରହ୍ଲାଦ ହରିନାମ ରଟନା ନ କରିବ ତେତେଦିନ ପର୍ଯ୍ୟନ୍ତେ ମୁ ତାର କିଛି ଅନିଷ୍ଟ ସାଧନ କରିବି ନାହିଁ । ମୁଁ ଯାଉଛି । ତୁମ୍ଭେ ତାକୁ ଡକାଇ ଭଲ ରୂପେ ବୁଝାଇ କହ ।

ରାଣୀ - (ନତମସ୍ତକେ) ଆଜ୍ଞା ! ହେଉ । (ରାଜାଙ୍କ ପ୍ରସ୍ଥାନ) (ସ୍ୱଗତ) ଏ ରାଗରେ କମ୍ପି ଗଲେଣି । ସେ କହିଲେ ଶୁଣିବ କି ନାହିଁ । (କିଛିକାଳ ବିଚାରି) ଚଞ୍ଚଳା ! ଚଞ୍ଚଳା !

ଚଞ୍ଚ - ଆଜ୍ଞା ! ହାଜର ।

ରାଣୀ - ଯା ପ୍ରହ୍ଲାଦକୁ ଡାକି ଆଣେ ।

ଚଞ୍ଚ - ଆଜ୍ଞା ହଁ (ପ୍ରସ୍ଥାନ)

ରାଣୀ - (ସ୍ୱଗତ) ମୁ କିଛି ଜାଣି ପାରୁନାହିଁ । ତାକୁ ଏ ପାଠ କିଏ ଶିଖାଇଲା । ମୁ ଅନେକ ଋଷିଙ୍କ ମୁଖୁ ଶୁଣି ଅଛି ହରି ସର୍ବଶକ୍ତିମୟ ଅନ୍ତର୍ଯ୍ୟାମୀ ଅଟନ୍ତି । ଏହା ତାଙ୍କ ମହିମା ପରା ? ତାଙ୍କ ତୁଲେ ବିବାଦ କଲେ ଅନିଷ୍ଟ ଘଟିବ ବୋଇଲେତ ମହାରାଜ ଶୁଣୁ ନାହାନ୍ତି । ଏଥିକି ଉପାୟ କି ?

(ପ୍ରହ୍ଲାଦ ଓ ଦାସୀ ପ୍ରବେଶ)

ରାଣୀ - ବାବୁ ! ପ୍ରହ୍ଲାଦ ! ପାଖକୁ ଆସ (କୋଳକରି ଚୁମ୍ବନ ଦେବା) ପିତା କେତେ ମନା କଲେ ହେଲେ କାହିଁକି ଶୁଣୁନାହୁଁ ? ଏ କି ବୁଦ୍ଧି ? ତୋତେ ଏ ପାଠ କେ କହିଅଛି ? ତୁ କାର ସ୍ତୁତି କରୁ ?

ପ୍ରହ୍ଲାଦ - ରାଗ ଆହାରି । ଆଦିତାଳ ।

ତା ନାମ ସ୍ମରେ ମୁ ଜାଣି ଗୋ । ଜନନି ।୦।
ଯେ ଜଗତ ଗୁରୁ । ବାଞ୍ଛା କଳ୍ପତରୁ ।
ନାଶି ଦେବ ପାପଶ୍ରେଣୀ ।୧।
ଅମଳ କମଳ । ବିମଳ ଉତ୍ପଳ ।
ନିନ୍ଦେ ଯାର ନେତ୍ର ଠାଣି ।୨।
ଭୁବନ କରତା । ଭକ୍ତି ମୁକ୍ତି ଦାତା ।
ଆଦେଶ ଥାଏ ମୁ ଶୁଣି ।୩।
ତା ଆଜ୍ଞା ନ ହେଲା । ପିତା କଥା ହେଲା ।
ସତ ବୋଲି ମୁ ନ ମଣି ।୪।

ରାଣୀ- ରାଗ ଆହାରୀ । ଆଦିତାଳ ।

ହୋଇଲା, ନୋହିଲା କଥା ତୋତେ କାହିଁକି ।୦।
ଜନକ ପ୍ରବୋଧ ଗିର । ନ ମାନି ତୁ ନିରନ୍ତର ।
ଭଜୁ କିଂପା ସେ ରମାସାଇଁକି ।୧।
ପଚାରୁଛି କିସ ମୁହିଁ । ଜାଣୁ ଅଛୁ କିସ ତୁହି ।
ଟିକିଏ ହେଲେ ଡର ନାହିଁକି ।୨।
ଛାଡ଼ି ନିଜ କୁଳ ମତ । କରୁଛୁ ହିତ ଅହିତ ।
ନିଶ୍ଚେ ତୋର ଦୋଷ ନୋହିକି ।୩।
ମାଗି ଘେନୁଛି ଧନ । ନ କର ତା ନାମ ଗାନ ।
ଶତ୍ରୁର ସ୍ତବ କେ କରୁ ଥାଇକି ।୪।

ପ୍ରହ୍ଲାଦ- ରାଗ ଶଙ୍କରାଭରଣ । ଆଦିତାଳ ।

ଯାହା ପଛେ କର ତୁହି । ତାହା ବିନୁ ସାହା ନାହିଁ ।
ଧରି କହୁଛି ତୋର ଚରଣ । ଛାଡ଼ିବି ନାହିଁ ଶେଷଶାୟୀ ।୦।
ଯାହା ହେବ ପଛେ ହେଉ । ଗଲେ ମୋର ପ୍ରାଣ ଯାଉ ।
ପଶିଛି ମୁ ତା ପାଦେ ଶରଣ । ନାରଦ ଥାନ୍ତି ଯାକୁ ଧ୍ୟାଇ ।୧।
ତାର ପାଦ ତରୀ ଧରି । ଭବସିନ୍ଧୁ ହେବି ପାରି ।
ନିଖିଳ ପାତା ବିପତ୍ତାରଣ । ଯେ ଭକ୍ତଜନ ଭାବଗ୍ରାହୀ ।୨।
ଦେଲେ ସେ ଦିଅନ୍ତୁ ଦଣ୍ଡ । ନୁହଇ ଉଦ୍ଦଣ୍ଡ ।
ନ ତେଜିବି ସେ ନାମ ସ୍ମରଣ । ଯେ ନାମ ବିଶ୍ୱେ ପ୍ରକଟଇ ।୩।

ରାଣୀ- ରାଗ କଦମ୍ବା । ଆଦିତାଳ ।

କହନା ଏ ବାଣିକି । ମୋ ନେତ୍ର ସମ୍ମୁଖି ।୦।
ଧରି ମୋର ଚରଣ । କାତର ହୁଅନା ଶୁଣ ।
ଆଉ ତୋତେ ମୋ ଧନ । ନ କହିବି ଏଣିକି ।୧।
କା ସାହସ ବଳିବ । ତୋତେ ଆସି ଦଣ୍ଡ ଦେବ ।
ଯଦିବା କିସ ଘଟିବ । ସହିବ ଧରଣୀକି ।୨।
ତୁହି ମୋ ଗଳାମାଳି । ମୋ ଦୁଃଖୀର ସଙ୍ଖାଳି ।୨।
କେବେ ନ ବସିବୁ ଭାଳି । ଧରୁଛି ତୋ ପାଣିକି ।୩।
ପିତାଙ୍କୁ ଦେଖିଲା କ୍ଷଣି । ନ ସ୍ମର ସାରଙ୍ଗପାଣି ।
ଇଚ୍ଛା ହେଲେ ମନେ ଗୁଣି । ଯାଅ ପଛେ କେଣିକି ।୪।

ପ୍ରହ୍ଲା - ମାତା ! ଯେ ହରିନାମ ସ୍ମରଣ କରେ ତାର କୌଣସି ଭୟ ନ ଥାଇପାରେ ?

ରାଣୀ - ନା ବାବୁ ! ମୋ କଥା ଶୁଣେ । ପିତାଙ୍କଠାରେ କେବେ ତାଙ୍କ ନାମ ରଟନା କର ନାହିଁ । ଯା- ଗୁରୁଙ୍କଠାକୁ ଯାଇ ପାଠ ପଢ଼ । ବେଳ ଉସ୍ୱର ହେଲାଣି, ଗୁରୁଙ୍କୁ କହି ଶୀଘ୍ର ଆସିବୁ ।

ପ୍ରହ୍ଲା - ଆଜ୍ଞା (ନମସ୍କାର କରି ପ୍ରସ୍ଥାନ)

ରାଣୀ - (ସ୍ୱଗତ) ଏ ଅପାଠୁଆ ବୋଲି କେ କହିବ ? ମହାରାଜ ତ ହରିନାମ ଧରିଲାକ୍ଷଣି କୋପର ମୂର୍ତ୍ତି ଧାରଣ କରନ୍ତି । (ଦୀର୍ଘ ନିଶ୍ୱାସ ଛାଡ଼ି) ଉମାକାନ୍ତଙ୍କର କୃପାରୁ କିପରି ପିତା ପୁତ୍ରର ଦ୍ୱନ୍ଦ ଶୀଘ୍ର ନିବର୍ତ୍ତି ଯାଏ । (ପ୍ରକାଶ୍ୟେ) ଦାସି ! ଦାସି ! ଏ କୋଆଡ଼େ ଗଲା । ଡାକିଲେତ ଶୁଣୁ ନାହିଁ ।

ଚ - ଆଜ୍ଞା ! ହେଟି ହାଜର ।

ରାଣୀ - ଉସ୍ୱର ହେଲାଣି । ସ୍ନାନକୁ ଯିବା ।

ଚ - ଆଜ୍ଞା । ବିଜେ କରନ୍ତୁ । (ପ୍ରସ୍ଥାନ ଓ ଯବନିକା ପତନ)

## ତୃତୀୟ ଦୃଶ୍ୟ

(ପ୍ରହ୍ଲାଦ, ଶିକ୍ଷକ ଓ ଛାତ୍ରବୃନ୍ଦ ।)

ଶିକ୍ଷ - ଯୁବରାଜ ! ମୁଁ ଯାହା କହେ ମନୋଯୋଗ ପୂର୍ବକ ଶ୍ରବଣ କରନ୍ତୁ । ଯୌବନ, ଐଶ୍ୱର୍ଯ୍ୟ ଏବଂ ପ୍ରଭାବ ମନୁଷ୍ୟର ଅସୀମ ଅନର୍ଥ ଘଟାଏ । ଯଦି ଏ ତିନିହେଁ ଏକ ସ୍ଥାନରେ ସମ୍ଭବନ୍ତି ତେବେ ଅନର୍ଥର ଇୟତ୍ତା କି

କରାଯାଇପାରେ । ଏଣୁ କୌଣସି ଧନୀ ଯୁବକ ଅଧିକାର ପ୍ରାପ୍ତ ହେଲେ ବଡ଼ ଜାଗରୂକ ହୋଇ କାର୍ଯ୍ୟ କ୍ଷେତ୍ରରେ ପ୍ରବେଶ କରିବା ସର୍ବତୋଭାବେ ବାଞ୍ଛନୀୟ । ଶାସ୍ତ୍ରାଧ୍ୟୟନ କରିବା, ମାତା ପିତାଙ୍କ ଆଜ୍ଞା ପ୍ରତିପାଳନ କରିବା ଏବଂ ସର୍ବଜନୋଚିତ କାର୍ଯ୍ୟ କରିବା ନିତାନ୍ତ ଆବଶ୍ୟକ । ମୂର୍ଖପୁତ୍ର ପିତାମାତାଙ୍କର ଅଶେଷ ଅନିଷ୍ଟ ଘଟାଏ । ସ୍ୱକୁଳର ଯଶ ସାଧନ କରିବା ପୁତ୍ର ମାତ୍ର ସୁପୁତ୍ର । ନିଜ କୁଳର ଅପଯଶ ସାଧନ କରିବା ପୁତ୍ରକୁ ମାତା ଜନ୍ମ କରିବାଠାରୁ ବରଂ ବନ୍ଧ୍ୟା ହେବାର ଭଲ । ପ୍ରାଣୀ ମାତ୍ର ସ୍ୱଚ୍ଛନ୍ଦ ବୃତ୍ତିର ପକ୍ଷପାତୀ, କିନ୍ତୁ ଆପଣାର ହିତ ସାଧନାର୍ଥେ ମାତା ପିତାଙ୍କର ସୁନୀତି ଗର୍ଭକ ଉପଦେଶର ମସ୍ତକରେ ପଦାଘାତ କରି ଅନ୍ୟର ଆଶ୍ରୟ ଲୋଡ଼ିବା କେବଳ ମସ୍ତିଷ୍କ ବିକାରର ପରିଚାୟକ ମାତ୍ର । ଏହି ହେତୁରୁ ତୁମ୍ଭେ ମାତାପିତାଙ୍କ ଆଜ୍ଞା ଲଙ୍ଘନ କରିବା ଅନୁଚିତ । ହେଟି-ଏହି ''ଶୁକ୍ରନୀତି'' ପୁସ୍ତକ ପଠନ କରନ୍ତୁ, ଆମ୍ଭେ ଗୃହକୁ ଯାଇ ଏହିକ୍ଷଣି ଆସିବୁଁ ।

ପ୍ରହ୍ଲା - ଆଜ୍ଞା ! (ପ୍ରହ୍ଲାଦର ପୁସ୍ତକ ଗ୍ରହଣ ଓ ଶିକ୍ଷକଙ୍କର ପ୍ରସ୍ଥାନ) ଛାତ୍ରବୃନ୍ଦ । ଯଥାର୍ଥ ଶାସ୍ତ୍ରାଧ୍ୟୟନ, ମାତା ପିତାଙ୍କ ଆଜ୍ଞାପାଳନ ଓ ପରୋପକାର ସାଧନ ବ୍ୟକ୍ତିର ମାତ୍ର କର୍ତ୍ତବ୍ୟ କର୍ମ । ଜୀବର ଜନ୍ମ ସାଫଲ୍ୟ କିମ୍ବା ଅବିନଶ୍ୱର କରିବାକୁ ହେଲେ ଅନ୍ୟ ଉପାୟ ଅବଲମ୍ବନ କରିବାକୁ ପଡ଼ିବ ।

ଛାତ୍ର - (ଏକସ୍ୱରେ) ତା ସବିଶେଷରେ ବୁଝାଇ ଦିଅନ୍ତୁ ।

ପ୍ରହ୍ଲା - **ରାଗ ଝଞ୍ଜୋଟୀ । ଆଦିତାଳ ।**

ଦିତି ନନ୍ଦନେ ଶୁଣ । ଥରେ ମନ ଦେଇ ।
କହିବି ସବୁ କଥା ସମଜାଇ ।୦।
ପ୍ରାଣୀ ଜନ୍ମି ସଂସାରେ । ବାଳ ଯୁବା ବୃଦ୍ଧରେ ।
ତିନି ଅବସ୍ଥା ଡେଇଁ ପ୍ରାଣ ତେଜଇ ।୧।
ବୁଡ଼ି ଅଗାଧ ଭ୍ରମେ । ପଡ଼ି ଅଧର୍ମ କର୍ମେ ।
ଅକାଳେ କେଉଁ ପାପୀ ଜନ ମରଇ ।୨।
ରକ୍ତ ମାଂସ ଶରୀର । ଅହଙ୍କାର ବିକାର ।
ଧରି ଜୀବ ସଙ୍କଟ ଭୋଗ କରଇ ।୩।

ସୃଷ୍ଟି ସ୍ଥିତି ପ୍ରଳୟ । କାରଣ ସେ ଅବ୍ୟୟ ।
ଶ୍ରୀ ଦାମୋଦର ବିଷ୍ଣୁ କମଳାସାଇଁ ।୪।
ବ୍ରହ୍ମା ଶିବ ସନକ । ନାରଦ ଭୃଗୁ ଶୁକ୍ର ।
ରଟନ୍ତି ସେହି ନାମ ନିରତେ ଧାଇ ।୫।
ଯାର ଭକ୍ତି ଯୋଗରୁ । ବଞ୍ଚିବା ବିପଦରୁ ।
ତାକୁ ଛାଡ଼ି କାହାକୁ ଭଜିବା ଯାଇ ।୬।

**ରାଗ ଶ୍ରୋଟ । ଏକତାଳ ।**

କେବଳ ହରି ଧ୍ୟାନ । ସାରଟି ଘେନ ।୦ ।
ଆସିଅଛ ଯାହା ଘେନିଯିବ ତାହା
କେ ନ ଯିବେ ସଙ୍ଗେ ଜାଣ ।୧।
ପୁତ୍ର କଳତ୍ର ଆଦି । ବାରଟି ଦିନ କାନ୍ଦି ।
ପାଶୋରି ଦେବେ ବହନ ।୨।
କ୍ଷଣିକ ସୁଖ ପାଇଁ । ମିଥ୍ୟା ଅନେକ କହି ।
ନ ହୁଅ ପାପରେ ଲୀନ ।୩।
କରି ନାନା ପ୍ରକାର । ନଟକୁଟ ବିଚାର ।
ନୁହ ନରକେ ପତନ ।୪।
ନ ବଳୁ କଦାଚିତ । କାମ ଲମ୍ପଟେ ଚିତ୍ତ ।
ଏ ସର୍ବ ଦୁଃଖର ସ୍ଥାନ ।୫।
ଏକମାତ୍ର ସୁଗତି । ନିଖିଳ ଲୋକ ପତି ।
ଲୋକେଶ ରମାରମଣ ।୬।

(ଗୁରୁଙ୍କ ପ୍ରବେଶ)

ଜନୈକ ଛାତ୍ର- ଗୁରୋ ! ଏକ୍ଷଣି ରାଜକୁମାର ବିଷ୍ଣୁଙ୍କ ମହିମା ଆମ୍ଭମାନଙ୍କୁ ଶିଖାଉ ଥିଲେ ।
ଶିକ୍ଷ - ମୁଁ ସବୁ ଶୁଣି ପାରିଛି, ହେଉ ହେଉ (ଶିର କମ୍ପନ କରିବା)

**(ରାଗ ଧନାଶ୍ରୀ । ଆଦିତାଳ ।)**

ସତେ ନାଶ ଯିବୁ ଏଥର । ରାଜ କୁମାର ।୦।
ଶିକ୍ଷି କାହୁଁ ଏ ବିଗୁଣ । ହରିଙ୍କି କରି ସ୍ମରଣ ।
ମରଣ କରୁ ବରଣ । ତୋର ଏ କି ବିଚାର ।୧।

ଯେ ତିନିପୁର ଈଶ୍ୱର । ଇନ୍ଦ୍ର ଚନ୍ଦ୍ର ଦିବାକର ।
ଅଟନ୍ତି ଯାର କିଙ୍କର । ନ ଶୁଣୁ ବଚନ ତାର ।୨।
କହିଲେ କେତେ ବୁଝାଇ । ସଦା ହରି ଗୁଣ ଗାଇ ।
ହେଲୁ ପରା ତୁହି ବାଇ । ନ ଘେନୁ କଥା କାର ।୩।
ପିତାକୁ କହିବି ଯାଇ । ତୋ ଗର୍ବ ଦେବି ଭଙ୍ଗାଇ ।
ଆସି ରଖୁ ତୋତେ ସେହି । ଯା ହେତୁ ହେଉ ବିକାର ।୪।

ପ୍ରହ୍ଲାଦ - ରାଗ ବିହାଗ । ଆଦିତାଳ ।

କହିଲେ ହେଁ କେତେ ପରି ଶୁଣୁଛି କେହି ।
ତାର ବିନୁ ଆଉ ମୋର ଗତି କେ ନାହିଁ ।୦।
ଯାହା ଇଚ୍ଛା ତାହା କର ନ ଡରେ ମୁହିଁ ।
ପ୍ରାଣ ଯିବା ଯାଏ ଥିବି ତା ପଦ ଧ୍ୟାଇ ।୧।
ଜାଣୁଛି ମୁଁ ଏ ସଂସାରେ କେ କାର ନାହିଁ ।
ଦାରା ସୁତ ବାନ୍ଧବ ନ ଯିବେ ଗୋଡ଼ାଇ ।୨।
ନାରାୟଣ ଦାମୋଦର ବିଷ୍ଣୁ କେଶବ ।
ପଦ୍ମନାଭ ହୃଷୀକେଶ ଶୌରୀ ମାଧବ ।୩।

ଶିକ୍ଷ - ହଁ, ହେଲା ହେଲା ଏତିକି ହେଉ । ମୁଁ ପଛେ ଯାଇ ପିତାଙ୍କ ଛାମୁରେ ସବୁ ଜଣାଇ ଦେବି । ଏଥର ଅନ୍ତଃପୁରକୁ ଗମନ କରନ୍ତୁ । ଛାତ୍ରଗଣ ! ତୁମ୍ଭେମାନେ ମଧ ଘରକୁ ଯାଅ ।

ପ୍ରହ୍ଲା - ଆଜ୍ଞା- (ନମସ୍କାର ପୂର୍ବକ ଛାତ୍ରବୃନ୍ଦ ସହ ପ୍ରସ୍ଥାନ)

ଶିକ୍ଷ - (ସ୍ୱଗତ) ଏ କିପରି ଆଧ୍ୟାତ୍ମିକ ବିଷୟ ଅତି ଅଳ୍ପ ବୟସରେ ଜାଣିପାରିଛି । ଏ ବଡ଼ ଆଶ୍ଚର୍ଯ୍ୟର ବିଷୟ । ଏହାର ଜ୍ଞାନ ଅଲୌକିକ । ଯାହା କହିଗଲା ତା ସତ୍ୟ । ଯାହାହେଉ, ଚଳିବା କଥା ମହାରାଜାଙ୍କୁ ଜଣାଇବାର ଅଛି । ନ କହିଲେ କି ବଞ୍ଚି ପାରିବି । ଭୋଜନ ସମୟ ବଳି ଗଲାଣି, ଆଚ୍ଛା ମୁଁ ଯାଏ ।

(ପ୍ରସ୍ଥାନ ଓ ଯବନିକା ପତନ)

## ଚତୁର୍ଥ ଦୃଶ୍ୟ

(ରାଜା, ମନ୍ତ୍ରୀ, ପାରିଷଦ ବର୍ଗ, ଅସୁର ବୀର ବୃନ୍ଦ ଓ ଦୌବାରିକ)

ରାଜା - ମନ୍ତ୍ରିପ୍ରଧାନ ! ଦେଖ । ପ୍ରହ୍ଲାଦର କି ପ୍ରକାର ମସ୍ତିଷ୍କ ବିକାର ଜନ୍ମିଅଛି । ମୁଁ ପ୍ରାତଃକାଳରେ ରାଣୀଙ୍କି କହି ଥିବାରୁ ସେ ଉତ୍ତମ ପରାମର୍ଶ

ଦେଇଅଛନ୍ତି । ସେ କହିଲେ ଅଳ୍ପ ଦିନରେ ପ୍ରହ୍ଲାଦ ହରି ସ୍ମରଣ ଛାଡ଼ି ଦେଇପାରେ । କିନ୍ତୁ ମୁଁ ବିଶ୍ୱାସ କରେ ନାହିଁ । ଯେ ଅନେକ ଦିନଠାରୁ କେତେ ପ୍ରକାରେ ବୋଧ କଲେ ମଧ ଯାହା ଛାଡ଼ି ନାହିଁ, ସେ ତାହା ଅଳ୍ପ ଦିନରେ କିପରି ଛାଡ଼ି ପାରିବ !

ମନ୍ତ୍ରୀ - ମହାରାଜ ! ମୁ ଗୁରୁଙ୍କୁ ଉତ୍ତମରୂପେ ବୁଝାଇ କହି ଦେଇଛି, ବୋଧହୁଏ ତାହାଙ୍କ ପରାମର୍ଶରୁ ଯୁବରାଜ ହରିସ୍ମରଣ ଛାଡ଼ି ପାରନ୍ତି ।

(ଗୁରୁ ଓ ପ୍ରହ୍ଲାଦ ପ୍ରବେଶ)

ରାଜା - ଗୁରୋ ! କି ସମାଚାର ?

ଶିକ୍ଷ - ମହାରାଜ ! କ୍ଷମା କରନ୍ତୁ । ମୁଁ ଅସାଧାରଣ ଶ୍ରମ ସ୍ୱୀକାର କରି ରାଜକୁମାରଙ୍କୁ କେତେ ପ୍ରକାର ବୋଧ କଲି, କିନ୍ତୁ ମୋପଟ ସେ ଭ୍ରୂକ୍ଷେପ ମଧ କଲେ ନାହିଁ - ପରେ ମୁଁ ତାହାଙ୍କୁ ସଦୁପଦେଶ ଦେଇ, "ଶୁକ୍ର ନୀତି" ପଠନ କରିବାକୁ କହି ମୁଁ ଟିକିଏ ସେ ସ୍ଥାନରୁ ଅନ୍ତର ହେଲି । ସେ ସମୟରେ ଯୁବରାଜ "ଶୁକ୍ରନୀତି" ପୁସ୍ତକ ଖଣ୍ଡିକ ଦୂରେ ଫିଙ୍ଗି ଦେଇ ଅନ୍ୟ ଛାତ୍ରମାନଙ୍କୁ ହରି ଭଜନ କରିବାକୁ ଆଦେଶ ଦେଇ ତାର ଗୁଣାନୁବାଦନ କରୁଥିଲେ । ମୁଁ ଆସି କେତେ ମନା କଲେ ମଧ ନ ଶୁଣି ମତେ ମଧ ସେ ନାମ ଭଜନ କରିବାକୁ କହିଲେ ।

ରାଜା - **ରାଗ ଶଙ୍କରାଭରଣ । ଆଦିତାଳ ।**

ଆରେ କୁମର । ବିଚାର କର । ହେଲାକି ଏ ସୁନ୍ଦର ।୦।
ଅବୁଝା ଲୋକ ପରି । କାଳ ଯାକ ଏପରି ।
କାହିଁକି ଲୋକହସା । କରୁ ନ ମାନି ଗୀର ।୧।
କୁଳ ଜନ ବଇରୀ । ପରା ସେ ଦଇତାରି ।
ତା ଅନୁଗତ ହୋଇ । ତା କଥା ଟେକିବାର ।୨।
ପରମ ଗୁରୁ ସମ । ପୂଜନୀୟ ମୁ ଜାଣ ।
ମୋହର ସଙ୍ଗତରେ । ବିବାଦ ରଚିବାର ।୩।

ପ୍ରହ୍ଲା **ରାଗ ଝଞ୍ଜୋଟୀ । ଆଦିତାଳ ।**

ଜାଣି ନ ଜାଣି ପିତା । ହେଲକି ନୁଆ ।
କାମ କ୍ରୋଧରେ ବିନାଶ କାୟା ।୦।

କୃପାସାଗର । କମଳା ବର । କର ସ୍ମରଣ କରିବେ ଦୟା ।୧।
ଦୀନବାନ୍ଧବ । କୃଷ୍ଣ କେଶବ । ପଙ୍କଜାନନ ବନମାଳିୟା ।୨।
ପାପ ନାଶନ । ବିଶ୍ୱ ମୋହନ । ଭଜ ନାଶିବେ ସଂସାର ମାୟା ।୩।
କୁଳ ବଇରୀ । ଅଟନ୍ତି ଶୌରି । ବୋଲୁଛ ଯାହା ହେଲକି ବାୟା ।୪।

ରାଜା - **ରାଗ ନବରୋଜ । ଆଦିତାଳ ।**

ଶୁଣ ଏଥର ମନ୍ତ୍ରିବର । କହିଲେ ମୁଁ କେତେଥର । ନ ଶୁଣେ ଲବ ମାତର ।୦।
ପିତୃ ଆଦେଶ ଦୂର କରି । ମାତୃ ଆଜ୍ଞା ପରିହରି ।
ଶତ୍ରୁକୁ ଭଜେ ପାମର ।୧।
କହି ନ ପାରେ ଆଉ ମୁହିଁ । ରହିବି କେତେ ସହି ।
ସେହି ଅରି ସ୍ତବ ଗିର ।୨।
ଧରି ଗର୍ବ ମୋ ଆଗରେ । ହରି ନାମ ଗାନ କରେ ।
ତରିବ ବୋଲି ବର୍ବର ।୩।
ପାରିବ ଯଦି ଆସୁ କେହି । ତୁରି ଦେବି ତାକୁ ଯାଇ ।
ସାରିବି ଯାର ସଂସାର ।୪।

ପ୍ରହ୍ଲାଦ- **ରାଗ ଧନାଶ୍ରୀ । ଆଦିତାଳ ।**

ଅନୁତାପ ତ ଆଧାର । ଅଖିଳ ଦୁଃଖ ହରଣ କରିବା ।୦।
ଦୁର୍ବିଷୟମାନ ଦୂରେ ପକାଇ । ଦାମୋଦରକୁ ଧ୍ୟାଇ ।
ଧର୍ମ ଆଚରିବା ।୧।
ପାପାତ୍ମା ମୁ ବୋଲି ଭୀତିକି ପାଇ । ଅତି କରୁଣ ସ୍ୱରେ ।
ଅଶ୍ରୁ ବରଜିବା ।୨।

ରାଜା - (ସକ୍ରୋଧେ) ଦୁରାତ୍ମନ୍ । (ବକ୍ଷସ୍ଥଳେ ପାଦାଘାତ କରିବା)

ପ୍ରହ୍ଲା - କୃତ ପାପ ଭାବି ବିନୟ ହୋଇ ।
ଶ୍ରୀପଦ ପଦ୍ମେ କ୍ଷମା ।
ଆକୁଳେ ମାଗିବା ।୩।

ରାଜା - ରେ ଅଧମ ଡିମ୍ଭକ ! ଆଉରି ଅଣ୍ଟି ନାହିଁ । ପଦାଘାତ କିପରି ଲାଗିଲା ।

ପ୍ରହ୍ଲା - ପିତା ! କେଉଁଠାରେ ପାଦାଘାତ କଲ ? ମୁ ତ ଜାଣି ନାହିଁ ।

ରାଜା - ଜାଣି ନାହୁଁ ! ଏଥର ଜାଣିବୁ । ମନ୍ତ୍ରିନ୍ ! କୁଳ ଧର୍ମ ପରିତ୍ୟାଗ ଏବଂ ମାତୃପିତୃ ଆଜ୍ଞା ଅବଜ୍ଞା କରିବା ପୁତ୍ରକୁ ରଖିବା କି ଲାଭ ? ଶୀଘ୍ର ଆମ୍ଭ ଗଜରାଜକୁ ଅଣାନ୍ତୁ ।

ମନ୍ତ୍ରୀ - ଆଜ୍ଞା ! (ଦୌବାରିକ ପ୍ରତି) ଦୌବାରିକ ! ଶୀଘ୍ର ଯାଇ ଦନ୍ତାବଳକୁ ଆଣ ବୋଲି ମାହୁନ୍ତକୁ କହିବେ ।

ଦୌବା - ଆଜ୍ଞା ! ହେଟି ଆସୁଅଛି ।

ରାଜା - ମନ୍ତ୍ରିପ୍ରଧାନ ! ଏହାକୁ ଗଜ ପାଦରେ ମର୍ଦ୍ଦାଇ ଦେବ ।

ମନ୍ତ୍ରୀ - ମହାରାଜ ! କ୍ଷମା କରନ୍ତୁ । ଦାସ ନତ ମସ୍ତକରେ କରଯୋଡ଼ି ଜଣାଉଅଛି ସେପରି କରାନ୍ତୁନା । ଯୁବରାଜ ସୁକୁମାରମତି ବାଳକ ଅଟନ୍ତି । ଏ କିଛି ଜାଣୁ ନାହାନ୍ତି । ଯାର ସ୍ମେରାନନ ଦେଖି ଜଗତ ଆହ୍ଲାଦିତ, ଯାର ନବନୀତ ମୃଦୁ ବଚନରେ ଲୋକେ ଆପ୍ୟାୟିତ ଏବଂ ଯାର ଦର୍ଶନ ମାତ୍ରେ ଦର୍ଶକ ବୃନ୍ଦ ବିମୁଗ୍ଧ ହୁଅନ୍ତି, ମହାରାଜ ! ତାହା ପ୍ରତି କି ଏପ୍ରକାର ଦଣ୍ଡ ଉପଯୁକ୍ତ ? ମହାରାଜ ! ଶ୍ରୀଚରଣତଳେ ଶରଣ ପଶି ମାଗି ଘେନୁଛି ତାଙ୍କୁ ଏ ଦଣ୍ଡ ଦିଅନ୍ତୁନା-ଦିଅନ୍ତୁନା ! (ଚରଣ ତଳେ ପଡ଼ି ରୋଦନ) ।

ରାଜା - ମନ୍ତ୍ରିନ୍ ! ନିଖିଳ ବୀର ମୁକୁଟାଳଂଙ୍କାର ହିରଣ୍ୟକଶିପୁଙ୍କର ଅମାତ୍ୟ ହୋଇ, ଏ କି ନାରୀଜନୋଚିତ କାର୍ଯ୍ୟ କରୁଅଛ ? (କରେ ଉଠାଇ) ଆମ୍ଭେ କିଏ କହିଲେ ମଧ୍ୟ ଶୁଣିବୁ ନାହିଁ । ଶତ୍ରୁସ୍ତବକାରୀର ମରଣ ଅନିବାର୍ଯ୍ୟ ।

(ହସ୍ତୀ ସହ ମାହୁନ୍ତ ପ୍ରବେଶ)

ରାଜା - (ସକ୍ରୋଧରେ ପ୍ରହ୍ଲାଦଙ୍କୁ ହସ୍ତୀ ପଦ ତଳେ ନିକ୍ଷିପ୍ତ କରିବା)

ପ୍ରହ୍ଲା - (ଗଜ ପଦ ତଳେ ପଡ଼ି)

**ରାଗ ହିନ୍ଦୁସ୍ଥାନୀ କାଫି । ଅଟତାଳ ।**

ମଦନ ମୋହନ । ମହାମହିମ ।
ସନାତନ । ଗୁଣଧାମ । ଅଭିରାମ । ଘନଶ୍ୟାମ ।୧।
ବିମଳ ନୀଳ । ନୀରଜ ନୟନ ।
ନାରାୟଣ । ଜନାର୍ଦ୍ଦନ । କର ତ୍ରାଣ । ତ୍ରିବିକ୍ରମ ।୨।
ମୁକ୍ତିର ସଦନ । ସର୍ବ କଦନ ।
ବିମୋଚନ । ପୁରାତନ । ଭଗବାନ । ପୂତପ୍ରେମ ।୩।

ତରୁଣ, ଅରୁଣ । ନିଭ ଚରଣ ।

ସୁପ୍ରସନ୍ନ । ପଦ୍ମାନନ । ନିରଞ୍ଜନ । ନିରୂପମ ।୪।

(ହସ୍ତୀ ପଦାଘାତରେ ପ୍ରହ୍ଲାଦଙ୍କ ଅଙ୍ଗରେ କିଛି କ୍ଷତ ନ ହୋଇ ତଦ୍ ଗାତ୍ର ସ୍ପର୍ଶରେ ଗଜ ମରିଯିବା ଦେଖି)

ମନ୍ତ୍ରୀ - ଆୟୁଷ୍ମାନ୍ ! ଏଣେ ଆସନ୍ତୁ (ପ୍ରହ୍ଲାଦଙ୍କୁ କୋଳ କରି ରାଜାଙ୍କ ନିକଟକୁ ଆଣିବା)

ରାଜା - କି ଆଶ୍ଚର୍ଯ୍ୟ ! ବୋଧ ହୁଏ ଗଜ କୌଣସି ରୋଗରେ ପୀଡ଼ିତ ଥିଲା, ନୋହିଲେ କି ! ମରିଯାଇଥାନ୍ତା ? ହେଉ ହେଉ କାଲି ! ତୋର ବିଷୟ ଦେଖିବି । ଦୂର ହୁଅ । ଦୂର୍ ଦୂର୍ ।

ପ୍ରହ୍ଲା - ଆଜ୍ଞା (ନମସ୍କାର ଓ ଗମନ)

(ରାଜାଙ୍କ ପ୍ରସ୍ଥାନ ଓ ଯବନିକା ପତନ)

●

## ପଞ୍ଚମ ଅଙ୍କ

### (ପ୍ରଥମ ଦୃଶ୍ୟ)

(ରାଜା ହିରଣ୍ୟକଶିପୁ ସିଂହାସନରେ ଉପବେଶନ, ପୃଥକାସନେ ପ୍ରହ୍ଲାଦ ଆସୀନ, ମନ୍ତ୍ରୀ ଓ ପାରିଷଦ ଗଣ ଆସୀନ )

ରାଜା - ମନ୍ତ୍ରିନ୍ ! ଦେଖ (ପ୍ରହ୍ଲାଦ ପ୍ରତି ତର୍ଜନୀ ଦେଖାଇ) ଏ କୁଳାଙ୍ଗାର କୁମରକୁ କେତେ ପ୍ରକାରେ ବୁଝାଇ କହିଲେ ମଧ ଶୁଣୁ ନାହିଁ । ସର୍ବ ମଙ୍ଗଳ କାରକ ମହାଦେବଙ୍କ ଅର୍ଚ୍ଚନ ଜଗତ୍‌ପାତା ବ୍ରହ୍ମାଙ୍କର ଧ୍ୟାନ କିମ୍ବା ତ୍ରିଲୋକ ବିଜୟୀ ହିରଣ୍ୟକଶିପୁଙ୍କର ସେବନ ପରିତ୍ୟକ୍ତ କରି ସେହି ଦାନବକୁଳବୈରୀ ହରିର ଆରାଧନା କରେ । ଏହାର ଏହି ଗୁଣକୁ ଆମ୍ଭେ ଶତବାର ଧିକ୍‌କାର କରୁଁ ଏବଂ କାର ସମ୍ମୁଖରେ ପ୍ରହ୍ଲାଦ ଆମ୍ଭର ପୁତ୍ର ବୋଲି କହିବାକୁ ଲଜ୍ଜିତ ହେଉ । ଏହି ଦୁର୍ଗୁଣ ବିଶିଷ୍ଟ ପୁତ୍ରକୁ ଏକବାର ଧୂଳିସାତ୍ କରିବା ବିହିତ ମଣୁ ଅଛୁଁ । ଯେ ଭୁବନ ବନ୍ଦ୍ୟ ହିରଣ୍ୟକଶିପୁର ଅଙ୍ଗୁଳି ଚାଳନରେ କିମ୍ବା ସାମାନ୍ୟ ବକ୍ରଦୃଷ୍ଟି ନିକ୍ଷେପ ମାତ୍ରେ ନିଖିଳ ବ୍ରହ୍ମାଣ୍ଡ ପ୍ରକମ୍ପିତ ହେଉଅଛି ସେ କି ସହିପାରେ ଶତ୍ରୁର ସ୍ତବ-ବିଶେଷତଃ ନିଜ ପୁତ୍ର ମୁଖୁ-ଶତ୍ରୁ ହରିର ସ୍ତବ ଯେଉଁ ହରି ବଣିକ ମୁଖୁ ହିରଣ୍ୟ ଶବ୍ଦ ଶୁଣି ''ହିରଣ୍ୟକଶିପୁ ଆଗମନ'' ଭୀତିରେ ସକାତରେ ଇତସ୍ତତଃ ପଳାୟନ କରେ ତାହାର ସ୍ତବନ ।

ପ୍ରହ୍ଲା - (ସମ୍ମୁଖେ ଦଣ୍ଡାୟମାନ ହୋଇ)

**ରାଗ ବିଭାଷ । ଆଦିତାଳ ।**

ନକର ନିନ୍ଦନ । ଅରଜ ପରମ । ପ୍ରେମ ନାମ ସଦା ଘୋଷି ।
ଯାହାର କୃପାରୁ ଏ ଭବ ସଂସାରୁ । ତରିବ ଦୁଃଖ ବିନାଶି ।୦।
ମଧୁର ମୁରଲୀ ବାଦନ ହରି । ବିଧୁ ଶୋଭା ନିନ୍ଦେ ମୁଖ ମାଧୁରୀ ।
ସାଧୁଜନ ଚିତ୍ତ ଉଲ୍ଲାସକାରୀ । ଲୋକ ଶୁଭ ଅଭିଳାଷୀ ।୧।

ନବ ନୀରଦ ନିନ୍ଦିତ ବରନ । ସର୍ବକାରଣ ପଙ୍କଜ ଆନନ ।
ଗର୍ବ ଖରବ କାରକ ମୋହନ । ଧ୍ୟାନେ ବସି ଦିବା ନିଶି ।୨।
ଅଗତି ରକ୍ଷକ ଶାନ୍ତି ମୂରତି । ନିଗମ ପୁରୁଷୋତ୍ତମ ଶ୍ରୀପତି ।
ସଙ୍ଗତିକି କରି କେବଳ ସୁଗତି । କାମ କ୍ରୋଧ ଲୋଭ ନାଶି ।୩।
ନିଖିଳ ସଂସାର ଅଭୟ ବାରଣ । ଅଖିଳ ଭୁବନ ସୃଷ୍ଟି କାରଣ ।
ଦୁଃଖୀ ତାପୀ ଜନ ତାପ ହରଣ । ଚରଣେ ଶରଣ ପଶି ।୪।

ରାଜା- ରାଗ ମୁଖାରୀ । ଆଦିତାଳ ।

ଗଲା ତୋ ମତିକିରେ । ହେଲାନି ହେଉନି ହେଉ ଏତିକିରେ ।୦।
ଜଗତ ଜନ ଈଶ୍ୱର । ନାଗ ନାକ ଯା କିଙ୍କର ।
ନିଗମ ନାମ ମୋହର । ଛାଡ଼ି ଭଜୁ ହରି କିରେ ।
(ପଡ଼ି) ନାହିଁ କେହି ମହି ମଣ୍ଡଳେ ମୋର ସରି ।
ନିଖିଳ ନୃପତି-ମତ୍ତ ବାରଣ କେଶରୀ ।
ଶୂର ବୀରଦମ୍ଭ ବିନାଶକାରୀ ।
ନରେନ୍ଦ୍ର ବରପତି ସଙ୍ଗତି ପରିହରି ।୧।
ସାର କରିଲୁ ତୁ ପାମର ତାର ଭକ୍ତି କିରେ ।
ନାରଖାର ହେଲୁ ପାଇବୁ ଦୁର୍ଗତି କିରେ (ପଡ଼ି) ।୨।
ଧରି ଦମ୍ଭପଣ ଆସୁ ମୋ କତି କିରେ ।
ମୋର କ୍ରୋଧେ ରହି ପାରୁବୁ ବରତି କିରେ (ପଡ଼ି) ।୩।
ମନ୍ତ୍ରିନ୍ ! ଶୀଘ୍ର ଆମ୍ଭ ଖଳିକାରକୁ ଡକାଅ ।

ମନ୍ତ୍ରୀ - ଯେ ଆଜ୍ଞା ! (ଦୌବାରିକକୁ ପ୍ରେଷଣ)

ଦ୍ୱର - ମନ୍ତ୍ରିପ୍ରଧାନ ! ଆପଣ ପରା କହିଥିଲେ, ପ୍ରହ୍ଲାଦଙ୍କୁ ଉପଯୁକ୍ତ ଶିକ୍ଷା ଦେଲେ ହେଲେ ତାହାର ଦୁର୍ଗୁଣତ ଛାଡ଼ିଲା ନାହିଁ । ଅଙ୍ଗାରକୁ ଶତ ବାର ଦୁଗ୍ଧରେ ଧୌତ କଲେ ମଧ୍ୟ ତାର ମଳିନତା କି ଛାଡ଼ିଯାଏ ? ନା- କଦାପି ହେବ ନାହିଁ ।

ମନ୍ତ୍ରୀ - ଆଜ୍ଞା ! ଯଥାର୍ଥ । (ଖଳିକାରର ପ୍ରବେଶ)

ରାଜା - ରେ ଖଳିକାର ! ତୁ କି କି ସର୍ପ ଆଣି ଅଛୁ ?

ଖଳି - (ନମସ୍କାର କରି) ମହାରାଜ ! କୁହୁକ, ତକ୍ଷକ, ଅନ୍ଧକ ଇତ୍ୟାଦି ସର୍ପମାନ ଆଣିଅଛି ।

ରାଜା - ଆଚ୍ଛା ଏହି ସର୍ପମାନଙ୍କୁ ଉତ୍ତେଜନା କରାଇ ପ୍ରହ୍ଲାଦକୁ ଦଂଶନ କରିବା ସକାଶେ ପ୍ରେରଣ କର ।

ଖଳି - ମହାରାଜ ! ତେଡ଼େ କଥା କରି ପାରିବି !

ରାଜା - ରେ ଅଧମ ! ଶୀଘ୍ର କର । ନୋହିଲେ ତୋହର ଶିର ଛେଦନ କରିବି ।

ଖଳି - ଯେ ଆଜ୍ଞା- (ପ୍ରହ୍ଲାଦ ନିକଟକୁ ଯାଇ)

**ରାଗ ହିନ୍ଦୁସ୍ଥାନି କାଫି । ଆଦିତାଳ ।**

କହିଲେ ହେଲେ କେତେ କଥା ନ ଶୁଣି ।
ବୁଧି ହୁଡୁଛୁ ସବୁ ଜାଣି ଜାଣି ।୦।
ପିତା ଉପଦେଶ । କରି ଉପହାସ ।
ଭଜୁଛୁ ହରିକି ରଜନୀ ଦିବସ ।
ଘେନ ତୁ ଏବେ ତୋ ଚିତ୍ତରେ । ହକନାକରେ ।
ମରିବୁ ସର୍ପ ଆଘାତରେ । ରଖିବ କେ ଏ ତ୍ରିଲୋକରେ ।୧।

ପ୍ର
ତିନି ଲୋକ ଈଶ । ଯେହି ପୀତବାସ ।
ଛାଡ଼ି ନ ପାରେ ମୁ ହେଲେ ହେବି ନାଶ ।
ଛାର ତୋର ସର୍ପ ଘାତରେ । ମୁହିଁ ନ ଡରେ ।
କେବଳ ଗତି ଯେ ସଂସାରେ । ତାର ନିନ୍ଦା କରୁ ମୁଖରେ ।୨।

ଖଳି -
ମରଣ ବରଣ । କରୁ କି କାରଣ ।
ଏହି ହେତୁ ତୁ କି ହୋଇଛୁ ଜନମ ।
ନିଶ୍ଚେ ଗଲାନିତ ତୋ ଜ୍ଞାନ । ରାଜ ନନ୍ଦନ ।
ଧରି ତୁ ଯେବେ ଏ ଦୁର୍ଗୁଣ । କଲୁନି ତୋ ପିତା ନିନ୍ଦନ ।୩।

ପ୍ରହ୍ଲା -
ଆନନ୍ଦ ସଦନ । ଜଗତ ବନ୍ଦନ ।
ନିଖିଳ ବ୍ରହ୍ମାଣ୍ଡ ତମ ବିଛେଦନ ।
ସର୍ବ ସୃଷ୍ଟି ଜନ ପାଳନ । ପଦ୍ମ ଆନନ ।
ସୁରଙ୍ଗ ରାଜୀବ ଚରଣ । ନିନ୍ଦୁ ତୁହି ଯା ଅକାରଣ ।୪।

ଖଳି - ରାଜକୁମାର ! ଜାଗ୍ରତ ହୁଅ । (ସର୍ପ ପେଟିକା ଘୋଡ଼ଣି ଫିଟାଇ ଫୁଂକ୍କାର କରି ଗୋଟାକ ଉତ୍ତାରୁ ଆଉ ଗୋଟିକୁ ଧରି ପ୍ରହ୍ଲାଦଙ୍କ ସର୍ବାଙ୍ଗରେ ଦଂଶନ କରାଇବା ।)

ପ୍ରହ୍ଲାଦ- **ରାଗ ହିନ୍ଦୁସ୍ଥାନି ଖମାର । ଆଦିତାଳ ।**

ଅନ୍ଧନୟନ ଅଞ୍ଜନ ପ୍ରଭୁ ବିଶ୍ୱପାଳନ ।
ଦୀନ ଦୟାମୟ ସର୍ବ ଆଶ୍ରୟ ଭୁବନ ମୋହନ ।୦।

ଶୁଭବରଦ ଅଭୟ ପଦ କରି ଆଛନ୍ତି । ତାପ ଶୋକ ଭୟ ପାପ କରି କ୍ଷୟ ଅଧମ ତାରଣ । ରଖନ୍ତୁ ମତେ ହେ ଲୋକପତେ ଶରଣ ରକ୍ଷଣ । ଅସାର ସଂସାର ଦୁର୍ଗତିରେ ପଡ଼ିଛି ମୁହିଁ । କରନ୍ତୁ ତ୍ରାହି । ହେ ଭାବଗ୍ରାହି । ପତିତପାବନ ।୧।

ଭବ ସରିତେ ଭାସି ନିରତେ ଲଭେ କଷଣ । ଢୋକି ପାପ ନୀର । ମୋ ଜୀବ ଅସ୍ଥିର । ବିପଦ ବାରଣ । ଚରଣ ତରୀ ଦେଇ ହେ ହରି । କଳୁଷ ଭଞ୍ଜନ । ଉଦ୍ଧାର ସତ୍ୱର । ସୁ ଚିତ୍ତରେ । କର ବିଧାନ । ହେ ନିରଞ୍ଜନ । ନିତ୍ୟ ନୂତନ । ନିତ୍ୟ ପୁରାତନ ।୨।

ହେ ଦୟାଳୟ । ସଙ୍କଟମୟ । ମର୍ତ୍ତ୍ୟେ ଜୀବନ । ପାଉଛି ବିପଦ । ଅଲେଖ ସୁଖଦ । ତ୍ରିତାପ ନାଶନ । କରୁଣାମୟ । ଭୁବନାଶ୍ରୟ । ନିଖିଳ କାରଣ । ଅରୁଣ ଚରଣ-ଅମୃତକୁ । ବଳିଛି ଆଶା । ଦେଇ ପିପାସା । ନାଶ ଦୁର୍ଦ୍ଦଶା । ଦୁଃଖ ବିନାଶନ ।୩।

ମୋକ୍ଷ ଦାୟକ । ବିଶ୍ୱ ନାୟକ । ତମସ ଛେଦନ । ସିଞ୍ଚି କୃପାଜଳ । ହୃଦୟ ନିର୍ମଳ । କର ଜନାର୍ଦ୍ଦନ । ଅନାଥ ନାଥ । ହେ ଜଗନ୍ନାଥ । ପ୍ରଭୁ ଭଗବାନ । ଶରଣ୍ୟ । ବରେଣ୍ୟ । ମର ପୁରେ । ପାଇ କଦନ । ହେଲି ଅଜ୍ଞାନ କରନ୍ତୁ ତ୍ରାଣ । ହେ କ୍ଷମା ସଦନ ।୪।

ଖଳି - ମହାରାଜ ! ଏ କି ଅଦ୍ଭୁତ କଥା । ଏ କି ଆଶ୍ଚର୍ଯ୍ୟ ଘଟଣା ! ମୋର ଚିରକାଳ ପାଳିତ ସର୍ପମାନେ ରାଜକୁମାରଙ୍କୁ ଦଂଶନ କରି ମରି ପଡ଼ିଅଛନ୍ତି । ମହାରାଜ ! ରାଜକୁମାରଙ୍କୁ କିଛି ବାଧା ହୋଇ ନାହିଁ । କାର ମହିମାରୁ ଏହିପରି ଘଟିଲା !

ରାଜା - (ସକ୍ରୋଧେ) ଖଳିକାର ! ଦୂରେ ଯାଅ । ମୃତ ସର୍ପମାନଙ୍କୁ ନେଇ ଦୂରେ ଯାଅ । (ଖଳିକାର ମୃତ ସର୍ପମାନଙ୍କୁ ଘେନି ପ୍ରସ୍ଥାନ) (ନିଜ ସିଂହାସନ ସ୍ଥିତ ସ୍ୱର୍ଣ୍ଣ ପାତ୍ର ହସ୍ତେ ଧରି ପ୍ରହ୍ଲାଦ ନିକଟକୁ ଯାଇ) ରେ ଦୁର୍ବୃତ୍ତ ପ୍ରହ୍ଲାଦ ! ବୋଧହୁଏ ତୁ ସର୍ବାଙ୍ଗରେ କୌଣସି ଔଷଧ ଲଗାଇ ହରିନାମ ସ୍ମରଣ ମହିମାର ଚମତ୍କାର ଦେଖାଇଲୁ । ହେଟି, ଆମ୍ଭେ ଭୃତ୍ୟମାନଙ୍କୁ ପ୍ରତ୍ୟୟ ନ ଯାଇ ସ୍ୱ ହସ୍ତରେ ପ୍ରସ୍ତୁତ କରିଥିବା ମହାକାଳକୂଟ ବିଷ ମିଶ୍ରିତ ପ୍ରପାନ ନେଇ ପାନ କର । ଲୋକେ ଦେଖନ୍ତୁ ସେ ଦାମ୍ଭିକ କାପୁରୁଷ ବିଷ୍ଣୁ ତୋତେ କି ପ୍ରକାର ରଖିବ, ଏବେ ଦଣ୍ଡକରେ ସବୁ ଜଣା ପଡ଼ିଯିବ ।

ପ୍ରହ୍ଲାଦ - ଯେ ଆଜ୍ଞା । (ପାତ୍ର ଧାରଣ)

**ରାଗ ଭୈରବୀ । ଆଦିତାଳ ।**

ସର୍ବ ଲୋକ ଜୀବ ରକ୍ଷକ । ହେ ହେ ପରମ ।
ସାଧୁ ଭକ୍ତ ଜନୈକ ପକ୍ଷକ ।୦।
ବୃନ୍ଦାରକ ବୃନ୍ଦ ବନ୍ଦିତ । ହେ ହେ ମୁକୁନ୍ଦ ।
ବୃନ୍ଦାରଣ୍ୟ ପୁଷ୍ପ ଭୂଷିତ ।
ପଦ୍ମଚରଣ । ପାପ ହାରକ ।
ଅଖିଳ ଘୋର ତିମିର ବିଚ୍ଛେଦକ ।୧।
ସତ୍ୟକାମ ସତ୍ୟ ବର୍ଦ୍ଧକ । ହେ ହେ ବିଶୁଦ୍ଧ ।
ସକଳ ସଦ୍‌ଗୁଣ ପ୍ରବର୍ତ୍ତକ ।
ଚିଦାତ୍ମକ । ବିଶ୍ୱନାୟକ ।
ଜଗତ ମରାମର ତାପ ବାରକ ।୨।
ସର୍ବାଶ୍ରୟ ଜନ ପାଳନ । ହେ ହେ ଲୋକେଶ ।
ଗୀର୍ବାଣ ଗଣ ସଂରକ୍ଷକ ।
ନିତ୍ୟାନନ୍ଦ ମୋକ୍ଷ କାରକ ।
ନିଖିଳ ଭକ୍ତ ପ୍ରମୋଦ ସଂଦାୟକ ।୩।

ରାଜା - କାହାକୁ ଡାକିଲେ ତୋତେ କେ ରଖି ପାରିବ । ପ୍ରହ୍ଲାଦ ଡରୁଛୁ କାହିଁକି ଶୀଘ୍ର ପାନ କର ।

ପ୍ରହ୍ଲା - ତାତ ! ଛାର ବିଷକୁ ମୁ କି ଡରେ (ବିଷ ପାନ କରିବା)

ରାଜା - ଆଛା ! ଏଥର ଜଣାଯିବ (ଉଚ୍ଚାହାସ କରିବା)

ପ୍ରହ୍ଲା - (ସ୍ୱର୍ଣ୍ଣପାତ୍ର ହସ୍ତରୁ ନିକ୍ଷେପ କରି ଅଳ୍ପ କାଳ ପର୍ଯ୍ୟନ୍ତେ-ଭ୍ରମି ଯାଇ ପରେ ହରିଙ୍କ ଉପାସନା ଆରମ୍ଭ କରିବା) ହେ ଦୟାମୟ ! ସର୍ବାଶ୍ରୟ ! ତୁମ୍ଭେ କି ପ୍ରକାର ବିଦ୍ୟମାନ ଅଛ କେବଳ ତୁମ୍ଭେ ମାତ୍ର ଜାଣ, ମାତ୍ର ତୁମ୍ଭେ ଦୟାମୟ ବୋଲି ମୁ ଜାଣି ପାରି ଅଛି । ମୁଁ ସଂସାରର ଗୋଟିଏ କୀଟାଣୁ ମାତ୍ର । ମୁ ଶକ୍ତିହୀନ ଏବଂ ଅତି କ୍ଷୁଦ୍ର ଲୋକ । ଖର ଶ୍ରୋତରେ ଭାସମାନ ତୃଣ ଖଣ୍ଡର ସାମର୍ଥ୍ୟ ମଧ୍ୟ ମୋର ନାହିଁ । ଯେବେ ମୋର ଆଶା ସଫଳ ହୁଏ ନାହିଁ, ଯେବେ ଏ ହୃଦୟରେ ଶୋକାନଳ ପ୍ରଜ୍ୱଳିତ ହୁଏ, ଯେବେ ମୁ ନୈରାଶ୍ୟର ତପ୍ତ ବାଲୁକା କ୍ଷେତ୍ରେ ପଡ଼ିଥାଏ ଏବଂ ଯେବେ ସଂସାର ଭୟର ମୂର୍ତ୍ତି ଧାରଣ କରି ମୋ ଦୃଷ୍ଟି ପଥରେ ଦଣ୍ଡାୟମାନ ହୁଏ ତେବେ ପ୍ରଭୋ ! ତୁମ୍ଭର ସେହି ପୀଡ଼ା ହରଣ, ଭବତାରଣ ଓ ପତିତ ପାବନ ନାମ ରଟନା କରି ମୋର ଦଗ୍ଧୀଭୂତ ହୃଦୟ ଅନିର୍ବଚନୀୟ ଆନନ୍ଦ ଓ ସାହସ ପ୍ରାପ୍ତ ହୁଏ । ଶୋକରେ କାତର ହୋଇ ମୁଁ ଯେବେ ହରି ବୋଲି ଡାକେ, ତେବେ ମୋର ହୃଦୟରେ ଅପୂର୍ବ ଶୀତଳ ଭାବ ଜାତ ହୁଏ ଏବଂ ସୁଖ ସେହି କ୍ଷଣି ବିଦ୍ୟୁତ୍ ବେଗରେ ସର୍ବାଙ୍ଗରେ ପ୍ରଭାବରେ ସଞ୍ଚାରିତ ହୁଏ । ପ୍ରଭୋ କରୁଣା ସାଗର ଏ ଦାସାନୁଦାସ ପ୍ରତି କେତେ ଥର କରୁଣା ପ୍ରକାଶ କରି ରକ୍ଷା କରି ନାହାନ୍ତି ?

ରାଜା - ଶତ ଧିକ୍କାରିତ ଜୀବନ, ଆଉରି ନ ଯାଇ ରହିଅଛି । (ପ୍ରହ୍ଲାଦ ପ୍ରତି) ତୁ କି କୌଣସି ଅମୃତ ଔଷଧ ଖାଇଅଛୁ ?

ପ୍ରହ୍ଲା - ଆଜ୍ଞା ! ଆଉ କିଛି ନୁହେଁ ! ହରିନାମାମୃତ ଔଷଧ ମାତ୍ର ।

ରାଜା - ଧିକ୍ ତୋ ଜନ୍ମ ! ଏହି କ୍ଷଣି ଏହି ଖଡଗ୍‌ରେ ତୋର ଶିରଚ୍ଛେଦନ କରିବି ! (ଖଡ୍‌ଗ) ଧରି ନିକଟକୁ ଗମନ .

ମନ୍ତ୍ରୀ ଓ ପାରିଷଦ୍-(ଏକ ସ୍ୱରରେ) ମହାରାଜ ! କ୍ଷମା କରନ୍ତୁ ଖଡ୍‌ଗରେ ଶିର ଛେଦନ କରନ୍ତୁନା ।

ରାଜା - ନ କରିବୁ କାହିଁକି ?

ମନ୍ତ୍ରୀ ଓ ପାରିଷଦ୍- ମହାରାଜ ! ଅନ୍ୟ ଶିକ୍ଷାଦ୍ୱାରା ଯୁବରାଜ ସାଧ ହୋଇପାରନ୍ତି । ଶାନ୍ତ ହୁଅନ୍ତୁ ! କେତେ କାଳ ଅବସର ଦିଅନ୍ତୁ । ଛାମୁଙ୍କ ଯେ କୃପାଣର ପଣ ଲକ୍ଷ୍ମୀପତି ହରି ଜାଣି ଭୟରେ ଲୁଚି ରହିଛି- ତାହାର ଆଘାତ ସୁକୁମାର ବାଳକ ପ୍ରହ୍ଲାଦ କି ସହ୍ୟ କରିପାରିବେ ?

ରାଜା - ପ୍ରହ୍ଲାଦ ! ଦୂର ହୁଅ, ଆଜଠାରୁ ମନେ ରଖେ ତୁ ହରିସ୍ମରଣ ନ ଛାଡ଼ିଲେ ତୋର ମୃତ୍ୟୁ ଅନିବାର୍ଯ୍ୟ । ଶୀଘ୍ରେ ଦୂର ହୁଅ ।

ପ୍ରହ୍ଲା - ଯେ ଆଜ୍ଞା । (ପ୍ରସ୍ଥାନ)

ରାଜା - ହେଉ । ଏଥର ଆମ୍ଭର ବଳ ବୁଝିବୁ ।

(ରାଜାଙ୍କ ପ୍ରସ୍ଥାନ ଓ ଯବନିକା ପତନ)

## ଦ୍ୱିତୀୟ ଦୃଶ୍ୟ

(ଅନ୍ତଃପୁରସ୍ଥିତ ଦେବୀ ମନ୍ଦିର ପାବଚ୍ଛରେ, ଲୀଳାବତୀ, କୀରବାଣୀ ଓ ସୁଲକ୍ଷଣା ଦଣ୍ଡାୟମାନା)

ଲୀଳା - ସଖି ! ସେ କିପରି ସେଥିରୁ ବଞ୍ଚିଲା ! ଜଗତ୍‌ଜନନୀ ତାକୁ ଦୀର୍ଘାୟୁ କରନ୍ତୁ । ସବୁ ସାପଯାକ ମରିଗଲେ ?

କୀର - ହଁ ସବୁ ଗୁଡ଼ାକ ମରିଗଲେ ।

ସୁଲ - ଏତ ବଡ଼ ଆଶ୍ଚର୍ଯ୍ୟ କଥା । ସଖି ଲୀଳାବତି ! ମୁ ବୋଧ କରେ ଯୁବରାଜ କେବଳ ରମାପତିଙ୍କ କୃପାରୁ ବଞ୍ଚିଥିବେ ।

ଲୀଳା - ହଁ ସଖି, ତୁମ୍ଭ କଥା ସତ ହୋଇପାରେ । ସଖି ! ଖଳିକାଶର କିପରି ହାତ ଗଲା ! ଗୋଟାକ ଉତ୍ତାରୁ ଗୋଟିଏ ସାପଦ୍ୱାରା ପ୍ରହ୍ଲାଦକୁ ମରାଇଲା । ମହାରାଜ ମଧ ବୁଧି ହୁଡ଼ିଛନ୍ତି । ଧୂଳି ଖେଳିବା ବାଳକ ଈଶ୍ୱର ବିଷୟରେ କିସ ଜାଣି ପାରିବ ? ସେ କିସ କହିଲା ବୋଲି ତାକୁ ଏତେ ଦଣ୍ଡ ଦେଲେ । ହେଟି କାଳି ହାତି ଗୋଡ଼ ତଳେ ପକାଇ ଦେଇଥିଲେ । ଭଗବାନଙ୍କ କୃପାରୁ ହାତିଟି ମରି ପ୍ରହ୍ଲାଦ ବଞ୍ଚିଲା । ଫେରେ ଆଜ ସର୍ପ ହାତରେ ମରାଇ ପକାଇବାକୁ ବସିଥିଲେ । (ଦୀର୍ଘ ନିଶ୍ୱାସ ପକାଇ) ଆହା । ପ୍ରହ୍ଲାଦ କେତେ ବିକଳରେ କାନ୍ଦି ଥିବ ?

କୀର - ନା ସଖି ! ସେ କିଛି କାନ୍ଦି ନାହାନ୍ତି ବୋଲି ଶୁଣିଲି । ସେ ହରିଙ୍କି ମାତ୍ର ଧ୍ୟାନ କରୁଥାନ୍ତି ।

ଲୀଳା - ସଖି ! ସେଠାରୁ ମହାରାଜ ତାକୁ କିସ କଲେ ?

କୀର - ସଖି ! ସେ ସର୍ପମାନଙ୍କ ଦଂଶନରୁ ବଞ୍ଚିବା ଆଉ ସର୍ପମାନେ ମରା ପଡ଼ିବା ଦେଖି ଲୋକେ କୁହାକୁହି ହେବାର ଶୁଣିଲା କ୍ଷଣିତ ମୁ ଦଉଡ଼ି ଆସି ତୁମ୍ଭଠାରେ କହୁ ଅଛି । ମୁ ବିଚାର କରେ ମହାରାଜ ତାହାଙ୍କୁ ଆଉ କିଛି କରି ନ ଥିବେ ।

ସୁଲ - ହଁ, କଲେ ମାତ୍ର ତାହାଙ୍କର କିସ ଯିବ । ଯେ ହାତି କୁଦାରୁ ଆଉ ସାପ ମାଡ଼ରୁ ବଞ୍ଚିଛି ତାହାକୁ ମହାରାଜ- ନାହିଁ ଯେ, ଆଉ କେ କିସ କରି ପାରିବ ।

(ପୁଷ୍ପ ଓ ବିଲ୍ୱପତ୍ର ପାତ୍ର ହସ୍ତେ ଧରି ଚଞ୍ଚଳାର ପ୍ରବେଶ ।)

ଲୀଳା - ଚଞ୍ଚଳା ! ମୁ ଗୋଡ଼ ହାତ ଧୋଇ ପାଟ ପିନ୍ଧିବା ସମୟରେ ପୂଜା ସମ୍ଭାର ଜାଗ୍ରତ କରିବାକୁ ତୋତେ କହିଥିଲି । ତୁ ଆଉରି କରି ନାହୁଁ ?

ଚଞ୍ଚ - ଆଜ୍ଞା ! ଫୁଲ ପତ୍ରୀ ଧରି ଆସୁଅଛି । ପତ୍ରୀ ଅଣାଇବାରେ ଅଳପ ହେଲା । ମହାରାଜ ଆଉ ଯୁବରାଜ ମିଶି ସୁଖରେ ରହିବା ଲାଗି ମଣିମା ମାଙ୍କୁ ଆଉ ସରସ୍ୱତୀଙ୍କୁ ପୂଜା କରିବେ ବୋଲି କୀରବାଣୀ ଠାରୁ ଶୁଣି ମୁ ଆସି ଭୋଗରାଗାଦି ମନ୍ଦିରରେ ରଖି ଦେଇଯାଇଅଛି ।

ଲୀଳା - ଚଞ୍ଚଳା କି କହିବା ପର୍ଯ୍ୟନ୍ତେ ଛଗିଥାଏ - ପାତ୍ର ଏଠାରେ ରଖେ ।

ଚଞ୍ଚ - ଆଜ୍ଞା ହଁ ! ଏତେକ ମତେ ଲକ୍ଷେ ଟଙ୍କା ।

(ପାତ୍ର ତଳେ ରଖିବା)

ଲୀଳା - (ପାତ୍ର ହସ୍ତେ ଧରି) ସଖି କୀରବାଣି, ସଖି ସୁଲକ୍ଷଣା ମୁଁ ପୂଜାରେ ବସିବି । ମନ୍ଦିର ଭିତରକୁ ଆସ । (ସମସ୍ତଙ୍କର ମନ୍ଦିରକୁ ଯିବା)

(ଲୀଳାବତୀ ଧୂପ, ଦୀପ, ନୈବେଦ୍ୟ ଦେଇ ପ୍ରଥମେ ପାର୍ବତୀଙ୍କୁ ପୂଜା କରି ତପୂରେ ସରସ୍ୱତୀଙ୍କୁ ପୂଜା କରିବା ।)

ଲୀଳା - (କରଯୋଡ଼ି)

**ରାଗ ନାଦନାମକ୍ରିଆ । ଅଟତାଳ ।**

ସଙ୍କଟ ତାରିଣି । ନିବେଦନ ମୋର ଘେନି ।

କର ମାତ ଥରେ ଦୟା ବର-କୃପା-ପ୍ରଦାୟିନି ।୦।

ମରାମର ଚରାଚର ତ୍ରିଲୋକ ପାଳିନି ।

ଭୁବନମୋହିନି ଦୁର୍ଗତିବିନାଶିନି ।୧।

କାତ୍ୟାୟନି କପର୍ଦ୍ଦିନି କେଶରୀବାହିନି ।

ତ୍ରିଶୂଳଧାରିଣି ଗିରିନ୍ଦ୍ରନନ୍ଦିନି ।୨।

ପୁତ୍ର ପିତା ଦ୍ୱେଷ କଥା ଛଡ଼ାଇ ଜନନି ।

ପାଳନ୍ତୁ ଦୁଃଖିନୀ ଗୃହକୁ ପାବନି ।୩।

ତୋ ପ୍ରହ୍ଲାଦ ସୁଖାନନ୍ଦ ବଢ଼ାଇ ମୃଡାନି ।

ରଖ ଶ୍ରୀଭବାନି ପଙ୍କେରୂହାନନି ।୪।

ହେ ଜଗଦ୍‌ଜନନି ପ୍ରହ୍ଲାଦର ମଙ୍ଗଳକର । (ନମସ୍କାର କରି ସଖିମାନଙ୍କୁ ପ୍ରସାଦ ଦେବା ଓ ପ୍ରସାଦ ପାତ୍ରରେ ରଖିବା ।)

ଲୀଳା - (ସରସ୍ୱତୀ ନିକଟେ କର ଯୋଡ଼ି)

**ରାଗ ଝଞ୍ଜୋଟୀ । ଆଦିତାଳ ।**

ଦେବି ମନୋମୟୀ ବାଣି ଶ୍ୱେତ-ପଦ୍ମ-ବାସିନି ।

ଚନ୍ଦନ-ନିହାର କୁନ୍ଦ-କାଶ-ଇନ୍ଦୁ-ହାସିନି ।।

ଚରଣ କମଳ ତଳେ । ଦୀପ୍ତଶଶି ଝଲମଲେ ।

କଳ୍ପନା-ପ୍ରତିଭା-ରୂପା ବିଦ୍ୟା ବୁଦ୍ଧି ସ୍ୱରୂପିଣି ।୧।

ପ୍ରଣାମି ଚରଣ ତଳେ । ଜଣାଏ ଅତି ବିକଳେ ।

ଆଶୀର୍ବାଦ କର ବାରେ ସର୍ବ-ଉନ୍ନତି-ଦାୟିନି ।୨।

ଏହି ଦାନବ ଆଳୟ । କର ଚିର ଜ୍ୟୋତିର୍ମ୍ମୟ ।

ପ୍ରକାଶି କୃପା-ମିହିର ନ ମଣି ଦିବା ଯାମିନି ।୩।

ଯାଉ ଦ୍ୱେଷ ଅଭିମାନ । ବାନ୍ଧି ଏକ ସୂତ୍ରେ ପ୍ରାଣ ।
ରଖନ୍ତୁ ପିତା ପୁତ୍ରକୁ ନିଖିଳ ଜନପାବନି ।୪।
ନ ମାଗଇ କିଛି ଆଉ । ଭବେ ମୁହିଁ ଜୀଇଁଥାଉ ।
ପ୍ରହ୍ଲାଦ ପ୍ରଖ୍ୟାତି ପାଉ ବର କୃପା ପ୍ରଦାୟିନି ।୫।

-୦-

ମା:ତ ! ମହାରାଜାଙ୍କ କଣ୍ଠରେ ବିରାଜମାନ କରି ପ୍ରହ୍ଲାଦକୁ ଦଣ୍ଡ ନ ଦେଲା ପରି କରନ୍ତୁ । (ନମସ୍କାର କରି ସଖିମାନଙ୍କୁ ପ୍ରସାଦ ଦେବା ଓ କିଛି ପ୍ରସାଦ ପାତ୍ରରେ ରଖିବା ।)

ଲୀଳା - ସଖି ସୁଲକ୍ଷଣା ! କୀରବାଣି ! ଚାଲ ଏଥର ଯିବା ।

କୀରୁ - ସଖି ! ହଁ ଚାଲ । (ସମସ୍ତେ ମନ୍ଦିରରୁ ବାହାରି ମନ୍ଦିର ଚାନ୍ଦନି ଉପରେ ଉପବେଶନ ଓ ପାର୍ଶ୍ୱେ ପ୍ରସାଦ ପତ୍ର ସ୍ଥାପନ ।)

ଲୀଳା - ଦାସି ! ଦାସି !

ଚଞ୍ଚ - ଆଜ୍ଞା !

ଲୀଳା - ପ୍ରହ୍ଲାଦକୁ ଡାକି ଆଣେ ।

ଚଞ୍ଚ - ଆଜ୍ଞା ହେଟି ଡାକି ଆଣୁଛି ।

କୀର - ସଖି ସୁଲକ୍ଷଣା ! ଚାଲ ଆମ୍ଭେମାନେ ଏଠୁଁ ଯିବା । (ତର୍ଜନୀ ଦେଖାଇ) ହେଟି ମହାରାଜ ଏଣେ କାହିଁକି ଆସୁଅଛନ୍ତି ।(ଦୁହିଁଙ୍କର ପ୍ରସ୍ଥାନ ଓ ଲୀଳାବତୀ ଦଣ୍ଡାୟମାନା)

ରାଜା - ସୁନ୍ଦରି ! କି ଆଜି ଏଠାରେ ଅଛ ?

ଲୀଳା - (ପ୍ରଣାମ କରି) ମହାରାଜ ! ମହାମାୟୀ ଆଉ ସରସ୍ୱତୀଙ୍କ ପୂଜା ସାରି ସଖିମାନଙ୍କ ସାଙ୍ଗରେ ଏଠାରେ ବସିଥିଲି । ହେଟି ପ୍ରସାଦ ଗ୍ରହଣ କରନ୍ତୁ । (ପ୍ରସାଦ ପତ୍ର ବଢ଼ାଇବା)

ରାଜା - (ପ୍ରସାଦ ଗ୍ରହଣ କରି) ସୁନ୍ଦରି ! ଆସ ଏଠାରେ ଟିକିଏ ବସିବା । (ରାଜା ଉପବେଶନ କରିବା ଓ ଲୀଳାବତୀଙ୍କି ହସ୍ତ ଧରି ପାର୍ଶ୍ୱେ ବସାଇବା ।)

ରାଣୀ - ମହାରାଜ ! ପ୍ରହ୍ଲାଦକୁ ସର୍ପଘାତ କରାଇଲ ?

ରାଜା - ହଁ ସେହି କଥା ଆମ୍ଭେ ତୁମ୍ଭଙ୍କୁ କହିବାକୁ ଆସିଅଛୁଁ ।

ରାଣୀ - ମହାରାଜ !!

ରାଜା - ସୁନ୍ଦରି ! ଶୁଣ ମୁଁ କେତେ ପରି ବୁଝାଇ କହିଲେ ସୁଦ୍ଧା ସେ ନ ଶୁଣି ଥରକୁ ଥର ଆମ୍ଭମାନଙ୍କର ଶତ୍ରୁର ନାମ କୀର୍ତ୍ତନ କଲା । ଆମ୍ଭେ କୋପାବିଷ୍ଟ ହୋଇ ପ୍ରହ୍ଲାଦକୁ ହାତି ଗୋଡ଼ ତଳେ ପକାଇ ଦେଲୁଁ । କୌଣସି ରୋଗରୁ ବା ହାତିଟି ମରିଯାଇ ପ୍ରହ୍ଲାଦ ବଞ୍ଚିଗଲା । କେତେ ମନା କଲେ ମଧ୍ୟ ଫେରି ହରିନାମ କୀର୍ତ୍ତନ କଲା । ତା ବାଦ ସର୍ପାଘାତ କରାଇଲି । ସେ କୌଣସି ବିଷ ହରଣ ଔଷଧ ବା ସର୍ବାଙ୍ଗରେ ଲଗାଇ ଥିବାରୁ ତହିଁରୁ ମଧ୍ୟ ବଞ୍ଚି ଆହୁରି ଆମ୍ଭ ଛାମୁରେ ହରି ଧ୍ୟାନ କଲା । ଆମ୍ଭେ ଅତି କ୍ରୋଧରେ ନିଜ ହସ୍ତେ ତୟାର କରିବା ବିଷ ମିଶ୍ରିତ ପ୍ରପାନ ପାନ କରାଇଲୁଁ । ତେବେ-

ଲୀଳାବତୀ - ହା ! ପରମେଶ୍ୱର ! (ଭୂତଳେ ପତନ ଓ କ୍ରନ୍ଦନ ସ୍ୱରରେ) ଦୁଃଖିନୀର ଏକମାତ୍ର ଭେଳା, ନୟନ ପିତୁଳା, ଜୀବନର ଜୀବନ, ତାହାର କି ଲଲାଟରେ ବିଷ ପାନ ଥିଲା ? ମହାରାଜ ନିଶ୍ଚୟ ମୁଁ ତାହାର ଅନୁଗମନ କରିବି ହା ! ମହାରାଜ କେଡ଼େ କଥା କଲ ! ମୁଁ କିପରି ପ୍ରାଣ ଧରି ରହିପାରିବି ?

ରାଜା - ସୁନ୍ଦରି ! ଶାନ୍ତ ହୁଅ । (କରେ ଉଠାଇବା) ସେ ଦୁର୍ବୃତ୍ତ ବିଷପାନରୁ ମଧ୍ୟ ନ ମରି ବଞ୍ଚିଗଲା । ସେ ବିଷ ଭାଙ୍ଗୁଣୀ ଖାଇ ଥିବାରୁ ପରା ସେଥିରୁ ବଞ୍ଚିଗଲା । ତହିଁ ଉତ୍ତାରୁ ଅଧମ ପୁନଃ ପୁନଃ ହରିନାମ ଗାନ କରିବାରୁ ଆମ୍ଭେ ଶିର ଛେଦନ କରିବାକୁ ଉଦ୍ୟତ ଥିଲୁଁ । ମାତ୍ର ପାରିଷଦମାନେ ମନା କରିବାରୁ କ୍ଷାନ୍ତ ହେଲୁଁ ।

ରାଣୀ - କ'ଣ ! ସତ କହୁଅଛନ୍ତି ? ନା-

(ପ୍ରହ୍ଲାଦଙ୍କର ଆଗମନ)

ରାଣୀ - ହେଟି ! (ସକାତରେ ଉଠି ଯାଇ ପ୍ରହ୍ଲାଦଙ୍କୁ ଆଣି ନିଜ କ୍ରୋଡ଼ରେ ବସାଇବା) ବାବୁ ତୁ ଦୀର୍ଘାୟୁ ହୋଇଥାଅ । ମାତା ପାର୍ବତୀ ଆଉ ସରସ୍ୱତୀ ତୋର ମଙ୍ଗଳ କରନ୍ତୁ । (ମସ୍ତକେ ପ୍ରସାଦ ସ୍ପର୍ଶ କରାଇବା) ବାବୁ ! କେତେ କହିଲେ ହେଲେ ହରି ନାମ ସ୍ମରଣ କାହିଁକି ଛାଡୁ ନାହୁଁ ? ଶିବ

ନାମ ରଟନା କଲେ ପିତା ଶୁଣି ସନ୍ତୋଷ ହେବେ । କେତେ ଦଣ୍ଡ ସହିଲୁଣି ଆହୁରି ଜାଣୁ ନାହୁଁ ? କାହିଁ ଏଥର କାହାର ସ୍ମରଣ କରିବୁ କରେ ।

ପ୍ରହ୍ଲା - ଯେ ଆଜ୍ଞା !

**ରାଗ ଶଙ୍କରାଭରଣ । ଆଦିତାଳ ।**

ପ୍ରଭୁ ସଦୟ -ହୃଦୟ ସର୍ବେଶ । କ୍ଷମାବ୍ଧେ । ଗୁଣନିଧେ ।
ସରୋଜାନନ । ଭ୍ରମବିମୋଚନ ।୧।
ସକଳ ଭୁବନ ପାଳନ । ପରମଧରମ ଜନାର୍ଦ୍ଦନ ।
ଚିଦାନନ୍ଦ ସଦନ । ସନାତନ ।୨।
ନିର୍ବିକାର ଦେବ ସର୍ବକାରଣ । କୃପାମୟ ଜନାଶ୍ରୟ ପାବନ ।
କଞ୍ଜଗଞ୍ଜନେକ୍ଷଣ । ସୁରବନ୍ଦିତ ଚରଣ ।୩।

ରାଣୀ - **ରାଗ ଝଞ୍ଜୋଟୀ । ଆଦିତାଳ ।**

କି ବୁଦ୍ଧି ତୋତେ ଘେନି । ଆରେ କୁମରମଣି ।
ପଶିବି ଯାଇ କେଉଁ ଜଳଧିରେ ? ।୦।
କହିଲେ ଯେତେ ପରି । ହୋଇ ବାରଣ ପରି ।
ଘେନୁ ନାହୁଁ ତୁ ଚିତ୍ତେ କିଞ୍ଚିତରେ ।୧।
କେ ତୋତେ ଶିଖାଇଲା । ଆରେ ମୋ ଗଳାମାଳା ।
ନିରତେ ଭଜୁ ରମାସାଇଁ କିରେ ? ।୨।
ତେଜି ସକଳ ଭୟ । କୁଳ ଧରମଚୟ ।
ବାଦ କରୁଛୁ ପିତା ସହିତରେ ।୩।

ପ୍ରହ୍ଲାଦ - **ରାଗ ଝଞ୍ଜୋଟୀ । ଆଦିତାଳ ।**

ଶୁଣ ଗୋ ମାତ । ନାହିଁ ମୋର କିଛି ଆୟତ୍ତ ।୦।
ସରଧା ଲାଗେ କି ମୋତେ । ବିବାଦ ପିତା ସଙ୍ଗତେ ?
ଜାଣେ ନୁହେ ବୋଲି ଉଚିତ ।୧।
ତା ମନକୁ ସେ ହୁଏ ଜାତ । କେ ଜାଣି କି ଅଦଭୁତ ।
ଅଟେ ସେ ହରି ଚରିତ ।୨।

ଛାଡ଼ି ଦେବାକୁ ଗୋ ସତେ । ଉପାୟ କଲେ ହେଁ ଯେତେ ।
ପାସୋର ନୁହେଁ କଦାଚିତ ।୩।
ଯଦି ଶିଖାଶିଖି କଥା । ଜନନି ସେ ହୋଇଥାନ୍ତା ।
ତୁମ୍ଭେ କି ଏତେ କହୁଥାନ୍ତ ।୪।

ରାଣୀ - ରାଗ ଖମାଚ଼ । ଆଦିତାଳ ।

କାହୁଁ ଶିଖିଲୁ ସତେ ତୁ ଏ ବୁଦ୍ଧି । ଆରେ ମୋ ରଙ୍କରନିଧି ।
ନିଜ କୁଳ ଦେବତା । ଲାଗିଲା ତୋତେ ପିତା ।
ତେଜିଲୁତ ସକଳ ପାରମ୍ପରିକ ସିଦ୍ଧି ।୦।
ଯାର ପ୍ରତାପ ଶୁଣି । ନବଖଣ୍ଡ ମେଦିନୀ ।
ଥରେ । ଡରେ । ସୁର ନର କିନ୍ନର ସେବନ୍ତି ଯା ପୟରେ
ତାହା ସଙ୍ଗତେ ଏବେ । କେଉଁ ସାହାପଣେ ।
ଜାଣି ଜାଣି ହଟକୁ ହୋଇଅଛୁ ବିବାଦୀ ।୧।
ଦେଶ ଯାକ ତିଆରି । ଗଲେନି ଅପସରି ।
ଧାନେ । କାନେ ପକାଇଲୁତ ନାହିଁ କି ଭାବିଛୁଟି ମନେ ।
ଖଳିକାର ନ ହୋଇ । କଳା ନାଗକୁ ତୁହି ।
ଚାଳିବାକୁ ବସିଛୁ ହେଲାକି ଏହା ବିଧି ।୨।
ହେଟିଡ ଏବେ ଧନ । ହରାଉ ଥିଲୁ ପ୍ରାଣ ।
ହକନାକ-ନ ଥିଲେ ପାରିଷଦେ ବୁଡ଼ିଥାନ୍ତା ତୋ ଭେକ ।
ଆସି ନାହିଁକି ଜ୍ଞାନ । ମେଣ୍ଟି ପିତା ବଚନ ।
ଫେରି ସେ ହରି କଥା କହୁ ତୁ ନିରବଧି ।୩।

ପ୍ରହ୍ଲା - ଜନନି ! ମୁଁ ହରିଙ୍କି ଛାଡ଼ି ପାରିବି ନାହିଁ । ପ୍ରାଣ ଗଲେ ଯିବ ପଛେ ସିନା ମୁ ଛାଡ଼ି ପାରିବି ନାହିଁ ।

ରାଗ ଶଙ୍କରାଭରଣ । ଆଦିତାଳ ।

ରାଜା - ସୁନ୍ଦରି ଦେଖ ତାର ଗରବ । ଆଉ କେତେ ମୁ ସହିବି ।
ବାଦ କରଇ ପାଦରେ ଦଳି । ପାଦପ ପରି ଛେଦିବି ।୧।

ରାଣୀ - ଦାନବେନ୍ଦ୍ର ତନୟ ଉପରେ । ରୋଷ ବହିବା ନ୍ୟାୟନା ।
ଯା ତୁଲେ କେତେ ବାଦ କରୁଛ ବାତୁଳ ସତେ ହେଲନା ? ।୨।

ରାଜା - ବୀର ପଣକୁ ଯାର ଶୁଣିଲେ । ଆରତେ ମହୀ କମ୍ପଇ ।
ତାର ଭୟ କି ଛାର ହରିକି । ପାମର କେତେ ଟେକଇ ।୩।

ରାଣୀ - ମାଗିଘେନଇ ରାଗ ନ କର । ଜଗତଯାକ ନିନ୍ଦିବେ ।
ଲାଗିବ ଯଦି ଦାଗ କୁଳରେ । ଭଗାରି ଲୋକ ଟାହିବେ ।୪।

ରାଜା - କାଳ ଅହିକି ଚାଳନ କରେ । ବାଳକ କେଡ଼େ ସାହସ ।
ଫାଳ କରିବି ବାଳ ଧରିଣ । ପେଶିବି ଶମନ ପାଶ ।୫।

ରାଣୀ - ଜାଣି ନଜାଣି ଦୋଷ କରିଲେ । ମାନସେ ତାହା ଆଣିବି ।
ଜ୍ଞାନ ରହିତ ବାଳ ତନୟ । ଦାରୁଣ ଏଡ଼େ କାହିଁକି ।୬।

ରାଜା - ସୁନ୍ଦରି ! ସ୍ୱକୁଳ ମତ ଭ୍ରଷ୍ଟ ପୁତ୍ରକୁ ଜୀବନରେ ରଖିବା କି ଭଲ ?
ମୁଁ ନିଶ୍ଚୟ ଏହାର ମୃତ୍ୟୁର ଉପାୟ ଚେଷ୍ଟା କରିବି ।

ରାଣୀ - ଆର୍ଯ୍ୟପୁତ୍ର ! ମୋ ଗୁହାରି ଶୁଣି ତାକୁ କ୍ଷମା କରନ୍ତୁ । ଏ ଅଳ୍ପ ଦିନରେ
ବାଟରେ ପଡ଼ିବ । ତା ପ୍ରତି କିଛି ରାଗ କରନ୍ତୁନା ।

ରାଜା - ରେ ପ୍ରହ୍ଲାଦ ! ହରି ଧ୍ୟାନ ଛାଡ଼ିଲେତ ଭଲ ହେଲା, ନୋହିଲେ ତୋର
ମରଣ ଅନିବାର୍ଯ୍ୟ । (ସକ୍ରୋଧେ ପ୍ରସ୍ଥାନ)

ରାଣୀ - (ପ୍ରହ୍ଲାଦଙ୍କର ହାତ ଧରି) ବାବୁ ! ତୋତେ ଟିକିଏ ଡର ନାହିଁ, ପିତା
ସମ୍ମୁଖରେ
ହରିଙ୍କର ଗୁଣ ଗାନ କରୁଁ ?

ପ୍ରହ୍ଲା - ମାତ ! ହରିଙ୍କ ଗୁଣ ଗାନ କରିବାକୁ ଭୟ କାହିଁକି ? ଯେ ହରିନାମ ରଟନା
କରିବା ମାତ୍ରେ ସକଳ ଭୟ ଦୂର ହୁଏ । ସେ ନାମ ରଟନା କରି କାହାକୁ
କାହିଁକି ଡରିବି ?

ରାଣୀ - **ରାଗ ହିନ୍ଦୁସ୍ଥାନ ଭୈରବୀ । ଆଦି ତାଳ ।**

କହନା ସରି ହେଲୁ ପିତା ବୈରୀ ।୦।
ଆଉ ତୋ ଗତି କେ । ଅଛି ଏ ତ୍ରିଲୋକେ ।
ଲବେତ ନ ଡରି । ସ୍ମରୁ ତୁ ମୁରାରି ।୧।

ରଜନୀ ଦିବସ । ବସି ତୋର ପାଶ ।
ନଶୁଣ କିଛିତେ । କହେ କେତେ ତିଆରି ।୨।
ଥାଉ ଲୋକ ପ୍ରଥା । କହ ସତ କଥା ।
ଶତ୍ରୁକୁ ଭଜିବା । ଦିଶେ ତୋତେ କିପରି ? ।୩।
କହୁଛି ନିକର । ଘେନ ତୁ ଏଥର ।
କଲେ ତୁ ଧ୍ୟାନ । ନିଶ୍ଚେ ଦେବେ ସେ ମାରି ।୪।

ପ୍ରହ୍ଲା - ଯାହା ହେଲେ ହେଉ ମୁଁ ହରିନାମ କେତେ ମାତ୍ର ଛାଡ଼ି ନ ପାରେ । ମୁ ତ କହିଅଛି ତା ମନକୁ ସେ ମୁଖରୁ ବାହାରି ପଡ଼େ । କେ କହିଲେ କିସ ହେବ । ମୋହର କି ଆୟତ୍ତ ?

**ରାଗ ହିନ୍ଦୁସ୍ଥାନୀ ଭୈରବୀ । ଝୁଲୁଆ ତାଳ ।**

ରାଣୀ - କୁମର । ତୋ ଗିର । ଦିଶେ ତୋତେ ଏକା ସୁନ୍ଦର ।
ପ୍ରହ୍ଲା - ଜନନି । ନ ଶୁଣି । କାହିଁକି କହୁଛ ଏ ବାଣୀ ? ।
ରାଣୀ - ତୁହି କେ । ହରି କେ ? । ତୁଚ୍ଛେ ହଟାଉ ତୁ ଜନକେ ।
ପ୍ରହ୍ଲା - ଅସତ । ଗୋ ମାତ । କହେ ନାହିଁ ମୁଁ କଦାଚିତ ।
ରାଣୀ - ଏପରି । ଆଚରି । ହସାଇବୁ ସିନା ବଇରୀ ।
ପ୍ରହ୍ଲା - ଯେ ଜାଣେ । ସେ ଜାଣେ । ପରତେ କରିବେ କି ଆନେ ।
ରାଣୀ - ନା ବାବୁ । ଏ ସବୁ । ଛାଡ଼ିଦେ ବିପଦେ ପଡ଼ିବୁ ।
ପ୍ରହ୍ଲା - କିପରି । ପାସୋରି । ଦେବି କହ ମୁ କିସ କରି ? ।
ରାଣୀ - ତୋ ମନ । ନନ୍ଦନ । ନିଶ୍ଚେ ହରାଇବୁ ପରାଣ ।

(ପ୍ରସ୍ଥାନ ଓ ଯବନିକା ପତନ ।)

## ତୃତୀୟ ଦୃଶ୍ୟ ।

(ରାଜା ହରିଣ୍ୟକଶିପୁ ଓ ପ୍ରହ୍ଲାଦ ପର୍ବତ ଉପରେ ଦଣ୍ଡାୟମାନ)

ରାଜା - **ରାଗ ଶଙ୍କରାଭରଣ । ଅଟତାଳ ।**

ରଖିବ କେ ? । ଦେଖିବି ତୋତେ ତିନି ଲୋକେ । ପଡ଼ି ।
ଛିନ୍ନ ବିଚ୍ଛିନ୍ନ କରି । କଳେବର ତୋହରି
କାଟିବି ଚାହୁଁ ଥିବୁ । ସତେ ଏ କ୍ଷଣକେ ।୦।

ଖିଆଲ କି ? କରୁ ମୋ ସଙ୍ଗତେ ଜାଣି ।
ନାହୁଁ ତୁ କି । କେ ବୋଲି ବିଚାରିଛୁ କି ? ।୧।
ତିଳେ ହେଲେ । ଘେନିଲୁ ନାହିଁ ତ ଯେତେ ।
କହୁଥିଲେ । ଫେରି ସେ କଥା ବାହାରେ ।୨।
ବାଳୁତ ତ । ବୋଲି, ବିଚାରିଲେ ବଳି ।
ଯାଉଛି ତ । ଦିନକୁ ଦିନ ଉତ୍ପାତ ।୩।
ଛାଡ଼ିବୁନା । କହ ମୋ ଆଗରେ ଏବେ ।
ଦୁଷ୍ଟମନା । କୁଳ ଶତ୍ରୁ ହରିର ନା ? ।୪।

ପ୍ରହ୍ଲାଦ - **ରାଗ ଆଶାବରୀ । ଆଦିତାଳ ।**

ସେ ମତେ । ରଖିବେ ନିଶ୍ଚେ ପିଅର ।୦।
ଅନାଦି ଆଦି ଅନନ୍ତ । ଅସୀମ ଅପରିମିତ ।
ମହିମା ଅଟେ ଯାହାର ।୧।
କରଣ କାରଣ କର୍ତ୍ତା । ସକଳ ବିପଦହର୍ତ୍ତା ।
ଯେ ଅଟେ ବିଶ୍ୱ-ଈଶ୍ୱର ।୨।
ପତିତଜନ ପାବନ । ଆଶ୍ରିତ ଜନ ରକ୍ଷଣ ।
ଯେ ଏହି ସଂସାର ସାର ।୩।
ସୃଷ୍ଟିସ୍ଥିତିଲୟକାରୀ । ସଚ୍ଚିଦାନନ୍ଦ ଶ୍ରୀହରି ।
ଯେ ସକଳ ମୂଳାଧାର ।୪।

ରାଜା - **ରାଗ ଭୈରବୀ । ଏକତାଳ ।**

ଜଣାଯିବରେ ପାମର ।୦।
ଆଉ ବା କେତେ କାଳ । ଦେବୁ ମୋତେ ଜଞ୍ଜାଳ ।
କ୍ଷଣକେ ବା ଘଡ଼ିକ ଭିତର ।୧।
ବେଳରେ ଥିବ ଗରୁ । ଏ ଶିଖରୀ ଶିଖରୁ ।
ପଡ଼ିବୁ ଯେବେ ଭୂମି ଉପର ।୨।
ପ୍ରାଣପ୍ରୟାଣ କାଳେ । ରଖ ବୋଲି ବିକଳେ ।
ଡାକିବୁ ଯେବେ ହୋଇ ଆତୁର ।୩।

ଅରକ୍ଷିତ ରକ୍ଷଣ । ପତିତ ପରିତ୍ରାଣ ।
ବାନା ଉଡ଼େ ଜଗତେ କାହାର ? ।୪।

ପ୍ରହ୍ଲା - ପିତା ! ତୁମ୍ଭର ଯାହା ଇଛା ତାହା କର । ମୋର କେବଳ ସେ ପରମାତ୍ମା ହରି ମାତ୍ର ଭରସା ।

ରାଜା - (କ୍ରୋଧରେ କମ୍ପମାନ ହୋଇ ପ୍ରହ୍ଲାଦଙ୍କୁ ଧରି ତଳକୁ ପକାଇ ପ୍ରସ୍ଥାନ ଓ ପ୍ରହ୍ଲାଦ କିଛି ଆଘାତ ନ ପାଇ ମହାନନ୍ଦରେ ଉପତ୍ୟକାରେ ଦଣ୍ଡାୟମାନ ହୋଇ ହରିନାମ ଗାନ କରିବା ।)

ପ୍ରହ୍ଲାଦ - ରାଗ ଶ୍ରୋଟ । ଅଟତାଳ ।

ନିଖିଳପତି ହରି । ଅଖିଳାର୍ତ୍ତିହାରି । ଭକ୍ତହୃଦୟନିବାସି ।
ସର୍ବ ଦୁଷ୍କୃତ । ଭାବି ମୁ ଦୁସ୍ତର । ଦୁଃଖାବ୍ଧି ମଧ୍ୟେ ଯାଏ ଭାସି ।୦।
ନିତ୍ୟ ନିର୍ମଳ । ସତ୍ୟ ମଙ୍ଗଳ । ସର୍ବ-ଜନ-ପାଳ ।
ହେ ଆଦିମୂଳ । ଆଶ୍ରିତଜନ - ମାନସ- କୁମୁଦ-ପୂର୍ଣ୍ଣ ଶଶି ।୧।
ଅଗତିଗତି । ଭକ୍ତ ସମ୍ପତ୍ତି । ଚିନ୍ମୟମୂରତି ।
ଦୁଷ୍ଟଅରାତି । କୃପା ଚିତ୍ତେ ଦୁଃଖ ଦିଅ ନାଶି ।୨।
ତୁମ୍ଭର କିଣା- । ଦାସତ ଜଣା । ବିତର କରୁଣା ।
ସାଗରୁ କଣା । ଦୀନ ହୀନକୁ ରଖ ପାଦ ତଳେ ଦିବା ନିଶି ।୩।
ନ ଦେଖି ଆନ । ସାହା ଭରସା । ଛାମୁକୁ ଆସିଛି ।
ବଢାଇ ଆଶା । ଯିବ ଦୁର୍ଦ୍ଦଶା ତାପତ୍ରୟ ଭୀତି ପାପରାଶି ।୪।

-୦-

(ମନ୍ତ୍ରୀ, ବିଦୂଷକ ଓ ନଗରସ୍ଥ ଜନେ ପ୍ରବେଶ)

ମନ୍ତ୍ରୀ - ଯୁବରାଜ ! ଏଠାରେ କିସ କରୁଅଛ ?

ପ୍ରହ୍ଲା - ଅମାତ୍ୟ ! ପିତା ମୋ ପ୍ରତି କ୍ରୋଧ କରି ମତେ ପର୍ବତ ଶିଖରୁ ଏ ସ୍ଥଳକୁ ଫୋପାଡ଼ି ଦେଲେ ।

ମନ୍ତ୍ରୀ - ତୁମ୍ଭର କୌଣସି ବାଧା ହୋଇ ନାହିଁ ତ ?

ପ୍ରହ୍ଲା - ନା, ସେହି ଦୁଃଖୀ-ଦୁଃଖ-ହାରୀ ହରିଙ୍କ ନାମ ଗାନ ମହିମାରୁ ମତେ କିଛି ଆଘାତ ହୋଇ ନାହିଁ ।

ମନ୍ତ୍ରୀ - ଯୁବରାଜ ! ଆପଣଙ୍କୁ ସଙ୍ଗେ ଧରି ମହାରାଜ ଏ ବନ ପ୍ରଦେଶ ପ୍ରତି ଆଗମନ କରିବାର ଲୋକ ମୁଖୁ ଶ୍ରବଣ କରି ଆମ୍ଭେ ସମସ୍ତେ ଦଉଡ଼ି ଆସିଲୁ । ଦୈବାନୁକୂଳରେ ତୁମ୍ଭେ ଥିବା ସ୍ଥଳରେ ପହୁଞ୍ଚି ପାରିଲୁ ।

ପ୍ରହ୍ଲା - ସବୁ ହରିଙ୍କ ମହିମା ।

ମନ୍ତ୍ରୀ - ସେ ରମାରମଣଙ୍କର ମହିମାତ ଅପାର । ନୋହିଲେ କି କୁସୁମସୁକୁମାର ରାଜକୁମାର ଏତେ ମାରାତ୍ମକ ଦଣ୍ଡରୁ ବଞ୍ଚି ପାରିଥାନ୍ତେ ?

ବିଦୂ - (ଅଙ୍ଗୁଳି ଦେଖାଇ) ହେଟି-ମହାରାଜ ଆସୁଅଛନ୍ତି, ତୁନି ହୁଅନ୍ତୁ ।

(ରାଜାଙ୍କ ପ୍ରବେଶ)

ରାଜା - ରେ ଦୁରାତ୍ମା ପ୍ରହ୍ଲାଦ ! ନ ମରି ଜୀଇଁଅଛୁ ? ନିର୍ଲଜ୍ଜ ଜୀବନ ! କେତେ ଦଣ୍ଡ ପାଇଲେ ମଧ ଯାଉନାହିଁ । ହେଉ ! ଏଥର କିପରି ନ ଯିବ ଦେଖିବି । (ମନ୍ତ୍ରୀ ପ୍ରତି ଚାହିଁ) ମନ୍ତ୍ରିନ୍ ! ଏହି କ୍ଷଣି ଶୁଷ୍କ କାଷ୍ଠ ଏବଂ.ଅଗ୍ନି ଅଣାଅ ।

ମନ୍ତ୍ରୀ - (ନମସ୍କାର କରି) ମହାରାଜ ! କାହିଁକି ?

ରାଜା - ସେ ପ୍ରଶ୍ନ କାହିଁକି ? ଶୀଘ୍ର ଅଣାଅ !

ମନ୍ତ୍ରୀ - ଯେ ଆଜ୍ଞା !

(ଶୁଷ୍କ କାଷ୍ଠ ଓ ଅଗ୍ନି ନିମନ୍ତେ କତିପୟ ଲୋକଙ୍କୁ ପ୍ରେରଣ କରିବା)

ରାଜା - ରେ ପ୍ରହ୍ଲାଦ ! ଏଥର ହେଲେ ତୁ ସେ ଅକିଞ୍ଚନ ହରିର ଧ୍ୟାନ ଛାଡ଼େ । ଯଦି ତୁ ନ ଛାଡ଼ିବୁ ତୁ ଜୀବନରେ ଥାଉ ଥାଉ ତତେ ପୋଡ଼ି ପକାଇବି ।

ପ୍ରହ୍ଲା - ପିତା ! ପୋଡ଼ ବା ମାର ମୁଁ ଛାଡ଼ି ନ ପାରେ ।

ରାଜା - **ରାଗ କାଫି । ମିଶ୍ରତାଳ ।**

ନନ୍ଦନ ନଜାଣି । ଦ୍ୱନ୍ଦ୍ୱ ତୁ କରନା ।
ମନ୍ଦ ପଣେ କାହିଁକି ସଦା କରୁ ତା ସ୍ମରଣ ।୦।
କହିଲେ କେତେ- । ପରି ମୁହିଁ ତୋତେ ।
ନ ଶୁଣି ତୁ କିଞ୍ଚିତେ । ହେଉ ତୁ ଏଡ଼େ ଅଜ୍ଞାନ ।୧।
ମୋର କଥା ରଖ । ହେବୁଟି ନିରେଖ ।
ଆହୁରି କେତେ ଦୁଃଖ । ପାଇବୁ ନିଶ୍ଚେ ତୋ ମନ ।୨।

କଲୁଣି ଦୋଷ । ପ୍ରାଣେ ଥିଲେ ଆଶ ।
ତେଜି ତୁ ରମାଈଶ । ଭଜ ଶମ୍ଭୁ ତ୍ରିଲୋଚନ ।୩।

ପ୍ରହ୍ଲା - ମୁଁ ହରିଙ୍କ ବିନୁ ଆଉ କାହାରିକୁ ଜାଣେ ନାହିଁ ।

ରାଜା - ରେ ଦୁରାତ୍ମା ! ତୁ କାହାକୁ ଭଜୁ ? କିଏ ସେ ହରି ? ସେ ଭୀରୁ ମୋର ଭୟରେ ଲୁଚି ରହିବା କି ଜାଣୁ ନାହୁଁ ?

ପ୍ରହ୍ଲା - **ରାଗ ଘଣ୍ଟାରବ । ଅଟତାଳ ।**

କହିଲେ ଶତବାର । ପଚାର କେତେ ଥର ।
ଦିଶେ କି ଏହା ସୁନ୍ଦର ?
ନିଖିଳଲୋକ ଶରଣ୍ୟ । ଅମର ବରେଣ୍ୟ ।
ନ ଛାଡ଼େ କେତେ ମାତର ।୦।
ଦଣ୍ଡିଲେ ବାରମ୍ବାର । କିଏ କରେ ଖାତର ।
ଯାହା ଇଚ୍ଛା ତାହା କର ।
ନିରଞ୍ଜନ ହୃଷୀକେଶ । ଦେବ ଶ୍ରୀନିବାସ ।
ବିନୁ କେ ନାହିଁ ଇତର ।୧।
ଜାଣି ନ ପାରେ ମୁହିଁ । କି ହେତୁ ତୁମ୍ଭେ ସେହି ।
ନାମ ଗାନେ କ୍ରୋଧେ ଥର ।
ସନାତନ ପରାତ୍ପର । ସର୍ବପାପହର ।
ଚରଣ ଗତି ମୋହର ।୨।
ସୁର ଅସୁର ନର । କିନ୍ନର ବିଦ୍ୟାଧର ।
ସେବନ୍ତି ଯାର ପୟର ।
ତ୍ରିଲୋକ ରକ୍ଷକ ପ୍ରଭୁ । ପାପ-ରବି-ରାହୁ ।
ମୋର କେବଳ ଆଧାର ।୩।

ରାଜା - **ରାଗ ଯମୁନାକଲ୍ୟାଣୀ । ରୂପକ ତାଳ ।**

ନିନ୍ଦା କରୁ ତୁ କିରେ ?
ପାପ ନାଶକ ପରାତ୍ପର । କୃପାପାରାବାର ।
ଅଭୟ ବରଦ ଶଙ୍କରନାମ ।୦।

ଯା ଜାତି କୁଳ ନାହିଁ । ଲୁଚିଛି ମୋ ଡରେ ଯେହି ।
ଭଜୁଛୁ ତାକୁ କିପାଇଁ । ରଜନୀ ଦିନ ହୋଇ ଭରମ ।୧।
ତିନିଲୋକ ବିଜୟୀ । ସକଳ ଭୁବନ ସାଇଁ ।
ଯା ଭୟେ ବିଶ୍ୱ କମ୍ପଇ । ତାର ବଚନ ଛାଡ଼ି ଅଧମ ।୨।
ଦେଉଥିଲେ ମୁଁ ଦଣ୍ଡ । ବଳି ଯାଇ ତୁ ଉଦ୍ଦଣ୍ଡ ।
ଧାଇ ସେ ପରମ ଭଣ୍ଡ । ତୋର କରମ ହେବାରୁ ବାମ ।୩।
ବ୍ରହ୍ମାବର ପ୍ରସାଦେ । ଜିଣିବେ କେ ମତେ ବାଦେ ?
ଆସୁ ସେ ମର୍ଦ୍ଦିବିପାଦେ । ଲକ୍ଷ୍ମୀରମଣ ହରି ହାରାମ ।୪।

ମନ୍ତ୍ରୀ - ମହାରାଜ ! କାଷ୍ଠ ଆଉ ଅଗ୍ନି ଅଣା ହେଲା ।

ରାଜା - କାଷ୍ଠ ଗୁଡ଼ିକୁ ଏକତ୍ରରେ ରଖି ଅଗ୍ନି ଲଗାଇ ଦିଅ ।

ମନ୍ତ୍ରୀ - ଯେ ଆଜ୍ଞା । (କାଷ୍ଠ ରାଶି କରାଇ ଅଗ୍ନି ଲଗାଇବା)

ଜନସମୂହ - ମହାରାଜ ! କ୍ଷମା କରନ୍ତୁ । ଯୁବରାଜଙ୍କୁ ଅଗ୍ନିରେ ପକାନ୍ତୁନା । ତାହାଙ୍କ ବଦଳରେ ଆମ୍ଭମାନଙ୍କୁ ସେ ଦଣ୍ଡ ଦିଅନ୍ତୁ । ମହାରାଜ ! ତାହାଙ୍କୁ ଏ ଦଣ୍ଡ ଦିଅନ୍ତୁନା ।

ରାଜା - (ସକ୍ରୋଧେ) ଆମ୍ଭଙ୍କୁ କେ ମନା କର ନାହିଁ । ତୁମ୍ଭେମାନେ ଯଦି ଫେରି ମନା କରିବ ଏହି କୃପାଣରେ ସମସ୍ତଙ୍କୁ ଖଣ୍ଡ ବିଖଣ୍ଡ କରି ଦେବି ।

ଜନସମୂହ - ଯେ ଆଜ୍ଞା ! (ହାହାକାର କରିବା)

ରାଜା - ପ୍ରହ୍ଲାଦ ! ଦେଖେ ଅଗ୍ନି କିପରି ଜଳୁ ଅଛି । ଏଥର ହେଲେ ତାର ଧ୍ୟାନ ଛାଡ଼ିବୁନା ?

ପ୍ରହ୍ଲା - ନା ! ମୁଁ ଛାଡ଼ି ନ ପାରେ । ତୁମ୍ଭର ଯାହା ଇଚ୍ଛା ତାହାର ।

ରାଜା - (ମହା କ୍ରୋଧରେ ପ୍ରହ୍ଲାଦଙ୍କୁ ଧରି ପ୍ରଜ୍ୱଳିତ କାଷ୍ଠରାଶି ଉପରେ ନିକ୍ଷିପ୍ତ କରି ପ୍ରସ୍ଥାନ)

ପ୍ରହ୍ଲା - (ପ୍ରଜ୍ୱଳିତ କାଷ୍ଠ ଉପରେ ଦଣ୍ଡାୟମାନ ହୋଇ)

**ରାଗ ଝଙ୍ଗୋଟୀ । ଆଦିତାଳ ।**

ମନ ମୋହନ । ଜଗତ କରତା ।
ଅରକ୍ଷରକ୍ଷକ । ସର୍ବାଶ୍ରୟ ହେ ପିତା ।୦।

କେହି ନାହିଁ । ମୋର ଆଉ ହରି ।

ସୁରାସୁର-ଚରାଚର ନିଖିଳ- କରତା ।୧।

ତ୍ରାହିକର । ଶୁଣି ମୋ ଗୁହାରି ।

ଭବଭୟ-ପରାଭବ- । କିଲ୍ବିଷ- ହରତା ।୨।

ରଖ ପ୍ରଭୁ । କରୁଣା ବିତରି ।

ଦେବାର୍ଚ୍ଚିତପଦତଳେ । ସକଳ-ବିଧାତା ।୩।

ମନ୍ତ୍ରୀ - (ପ୍ରହ୍ଲାଦଙ୍କୁ ଅଗ୍ନିରୁ ଉତ୍ତୋଳି ଆଣିବା) ଆୟୁଷ୍ମାନ ହୁଅନ୍ତୁ । ଆପଣଙ୍କ ଦାର୍ଢ୍ୟତା ଅତି ମହତ୍ । ଏତେ କଷ୍ଟ ସହି ମଧ୍ୟ ବିଷ୍ଣୁଙ୍କ ସ୍ମରଣ ଛାଡୁ ନାହିଁ । ଧନ୍ୟ ଯୁବରାଜ ଧନ୍ୟ !

ବିଦୂ - ସଖେ ! ଏପରି ଦୃଢ଼ଭକ୍ତି ପରାୟଣ ରାଜକୁମାରଙ୍କୁ ଯା ମୁଁ ନିଜ ଚକ୍ଷୁରେ ଦେଖି ପାରିଲି- ସେଥିଲାଗି ଆପଣ ମତେ ଶତବାର ଧନ୍ୟବାଦ ଦିଅନ୍ତୁ ।

ମନ୍ତ୍ରୀ - (ଈଷତ୍ ହାସ୍ୟ ପ୍ରକାଶ କରି) ମୁକ୍ତ କଣ୍ଠରେ ଦିଏ ।

ବିଦୂ - ରାଜକୁମାର ! ତୁମ୍ଭର ଏ ଦୃଢ଼ ଭକ୍ତି କିପରି ଜାତ ହୋଇଛି ?

ପ୍ରହ୍ଲା - ପରମାତ୍ମା ହରିଙ୍କ ବନ୍ଦନ, ଅର୍ଚ୍ଚନ, ଧ୍ୟାନ ଏବଂ ସ୍ମରଣ କରିବାରୁ ହୋଇଅଛି ।

ଜନସମୂହ - ଯାହା ହେଉ, ସଂସାର କି ପାସୋରା ଯାଇପାରେ ?

ପ୍ରହ୍ଲା - **ରାଗ ଆଶାବରୀ । ଆଦିତାଳ ।**

ଶ୍ରୀହରି ସ୍ମରି । ସଂସାର ଦିଅ ପାସୋରି ।୦।

ଛାଡ଼ି କପଟ କର୍ମ୍ମ । ହିଂସା ମାୟା ମର୍ମ୍ମ ।

ଧର୍ମ ପ୍ରଥାକୁ ଆଚରି ।୧।

ମାତା ପିତା କଳତ୍ର । ଭ୍ରାତା ବନ୍ଧୁ ପୁତ୍ର ।

କେହି ନୁହନ୍ତି କାହାରି ।୨।

ପ୍ରଭୁପଣ ବିଭବ । ଲୋଭ ମୋହ ଗର୍ବ ।

କାଳ ସବୁ ଦେବ ଚୂରି ।୩।

ଭଲ ମନ୍ଦ ପୌରୁଷ । ସୁଖ ଦୁଃଖ କିସ ।

ଏ କ୍ଷଣଭଙ୍ଗୁର ପରି ।୪।

ରକ୍ତ ମାଂସ ଶରୀର । ହେବ ଛାରଖାର ।

ଏକଥା ଆଗୁଁ ବିଚାରି ।୫।

ମନ୍ତ୍ରୀ - ଯୁବରାଜ ! ଏତିକିରେ ରଖନ୍ତୁ । ଚାଲ ବେଳ ଉଛର ହେଲାଣି (ପ୍ରହ୍ଲାଦ ସହ ସମସ୍ତଙ୍କର ପ୍ରସ୍ଥାନ ଓ ଯବନିକାପତନ)

## ଚତୁର୍ଥ ଦୃଶ୍ୟ

(ସଭା ଗୃହ)

(ରାଜା ହିରଣ୍ୟକଶିପୁ ସିଂହାସନ ଉପରେ ଆସୀନ, ପ୍ରହ୍ଲାଦ, ମନ୍ତ୍ରୀ ଓ ପାରିଷଦବୃନ୍ଦ ଉପବେଶନ)

ରାଜା - ବିପ୍ରଚିତ୍ ଅମାତ୍ୟପୁଙ୍ଗବ ! ପବିତ୍ର ଅସୁରକୁଳକଳଙ୍କ ପ୍ରହ୍ଲାଦକୁ କେତେ ଦଣ୍ଡ ଦେଲେ ମଧ ସାଧ ହେଲା ନାହିଁ । ଏହି ଦୁର୍ବୃତ୍ତ ଆତ୍ମ ଶତ୍ରୁର ସ୍ତବନ ଛାଡ଼ିବତ ଛାଡୁ- ନୋହିଲେ ଏହି ଶତ୍ରୁ-ରକ୍ତ ପିପାସୁ କୃପାଣରେ ଏହାର ଶିର ଛେଦନ କରିବି । ସେହି ଭୟାଳୁ ଛଦ୍ମ ବେଶଧାରୀ ରମାରମଣ ଯଦି ଏହାର ସପକ୍ଷରେ ବାହାରିବ ତାହାର ରକ୍ତରେ ଏହି ସଭା ଗୃହ ପ୍ଲାବିତ କରିବି ।

ମନ୍ତ୍ରୀ - ଯେ ଆଜ୍ଞା ।

ପ୍ରହ୍ଲା - **ରାଗ ତୋଡ଼ି । ରୂପକତାଳ ।**

ଅରଜ ଶ୍ରୀହରିଙ୍କ ଚରଣ । ବରଜିଦେଇ ଏହି ଦାମ୍ଭିକପଣ ।୦।

ଗର୍ବ-ଖର୍ବ-କାରକ ପ୍ରଭୁ । ସୃଷ୍ଟି -ସ୍ଥିତି-ପ୍ରଳୟ-କାରଣ ।୧।

ସରଳ ଭାବେ କର ଯୋଡ଼ି । ଅତି କାତରରେ ପଶି ଶରଣ ।୨।

ଥରକୁ ଥର ନିନ୍ଦି କେତେ । ମିଛେ ଲଭ ମାନସେ କଷଣ ।୩।

ରାଜା - (ସକ୍ରୋଧରେ ସିଂହାସନରୁ ଉଠି ପ୍ରହ୍ଲାଦଙ୍କୁ କର ଧରି ଝିଙ୍କି ଆଣି)

**ରାଗ ସାବେରୀ । ଆଦିତାଳ ।**

ହେଲା ଥିବା ବୁଦ୍ଧି ବାମ । ରେ ଅଧମ । ତୋର ।୦।

ସାରକୁ ଅସାର । କରି ଏ ବିକାର ।

କରୁ କେତେ କଲେ । ମୁ ମନା । ରଚନା । ତାରନା ଦୁଷ୍ଟମନା ।୧।

ନମାନି ତ୍ରିଲୋକ- । ଲାୟକ ନାୟକ ।

ଉଢ଼େ ସଦା ଯାର । ଶରଣ । ରକ୍ଷଣ । ସୁଗୁଣ । ଶୁକ୍ଳବାନା ।୨।

କରିକି ଯେପରି ଚିରିଦିଏ ହରି ।

ମାରିବି ସେପରି । ପରମ । ଭରମ । କରମ । ତୁ କରନା ।୩।

(କୃପାଣରେ ହାଣିବାକୁ ଉଦ୍ୟତ । ଏମନ୍ତ ସମୟରେ ଉନ୍ମୁକ୍ତକେଶା ଲୀଳାବତୀଙ୍କ ଦ୍ରୁତପ୍ରବେଶ ଓ ରାଜା ସକ୍ରୋଧରେ ପ୍ରହ୍ଲାଦକୁ ଛାଡ଼ି ସିଂହାସନରେ ପୁନଃ ଉପବେଶନ କରିବା ।

ଲୀଳା - (ପ୍ରହ୍ଲାଦକୁ ଆଲିଙ୍ଗନ କରି) ବାବୁ ! ଏ କ୍ଷଣି ସଂସାର ସରି ଯାଇଥାନ୍ତା ଯେ ।

ପ୍ରହ୍ଲା - ମାତ ! କେ କାର ସଂସାର ସାରୁଛି । ଏପରି କହିବା ବୃଥା ମାତ୍ର ।

ଲୀଳା - ଏବେ କିସ ହୋଇଥାନ୍ତା ଜାଣନ୍ତୁ ।

ପ୍ରହ୍ଲା - ଯେ ଜଗଦୀଶ୍ୱର ହରିଙ୍କ ଚରଣାଶ୍ରୟ କରିଅଛି ତାହାର ସଂସାର କେ ସାରିପାରିବ ?

ଲୀଳା - **ରାଗ ସାବେରୀ । ଆଦିତାଳ ।**

ମୋ ଗଳା ହାରା । ବଞ୍ଚି ପାରିବୁ ନାହିଁ ପରା ।୦।

କହିଲେ କେତେ ପରି । କୁଳ ବଇରୀ ହରି ।

ସଦା ତୁ ଭଜି କରି ।୧।

ପିତା ହିତ ବଚନ । ନଶୁଣି ଅନୁଦିନ ।

ଚିତ୍ତେ ତା ନାମ ସ୍ମରି ।୨।

ଅସହ୍ୟ ଦଣ୍ଡ ସହି । ଆଉ ଏଥର ତୁହି ।

ପିଣ୍ଡେ ପରାଣ ଧରି ।୩।

କାଟୁ ନ କାଟୁ ତୋତେ । ଦେଖି ବାଧୁଛି ମୋତେ ।

ମୋ ଦୁଃଖିର-ସଂଖାଳି ।୪।

ପ୍ରହ୍ଲା - ମାତ ! ହରିଙ୍କ ଆଶ୍ରୟ ନେଇଁ ନ ବଞ୍ଚିବିତ- ଆଉ କାର ?

ରାଜା - (ସିଂହାସନରୁ ଉଠି ଆସି)

ରାଗ ଶଙ୍କରାଭରଣ । ଅଟତାଳ ।

ଦେଖିଲୁ କିରେ । ତୋ (ନୟନର) ତନୟର । ରୀତି ସୁମନା ଆରେ ? ।୦।

ବାଳୁତ ବୋଲି ପରା । କହୁଥିଲୁ ତୁ ଧୀରା ।

ସାଧିବାକୁ ସେ ଏବେ । ବସିଛି କି ପ୍ରକାରେ ।୧।

ଦେଲିଣି କେତେ ଦଣ୍ଡ । କେଡ଼େ ନିର୍ଲଜ୍ଜ ପିଣ୍ଡ ।

ଆହୁରି ସେହି କଥା । କହୁଛି ମୋ ଆଗରେ ।୨।

ଛାଡ଼ିବା ଥାଉ ଦୂରେ । ଛଳାଇବା ଭଙ୍ଗିରେ ।

ସ୍ମରଣ କର ବୋଲି । ମୋତେ ଫେରି ତିଆରେ ।୩।

(ମହା କ୍ରୋଧରେ ଯାଇ ସିଂହାସନରେ ଫେରି ବସିବା)

ଲୀଳା - ରାଗ ଶଙ୍କରାଭରଣ । ଅଟତାଳ ।

ଆରେ ପ୍ରହ୍ଲାଦ । ଏଣିକି ହେଲେ । ଛାଡ଼ ସେ ହରି -ସଧ ।୦।

ପାଇ କ୍ଷତ୍ରିୟ ଜନ୍ମ । ନାହିଁକିରେ ଶରମ ।

ହୋଇଛୁ ଯାହା କୁଳ- । ଶତ୍ରୁ ସଙ୍ଗେ ସୁହୃଦ ।୧।

ତୋ ବୟସ କୁମରେ । କିପରି ପିତାଠାରେ ।

ଭୟ ଭକ୍ତି ରଖନ୍ତି । ତୁ ଆସି କରୁ ବାଦ ।୨।

ଅବୁଝା ତୁ ଯେପରି । କୋପିଷ୍ଟ ସେ ସେପରି

ଶୁଣୁ ନାହିଁ ତ କେହି । ପଡ଼ିଲା କି ପ୍ରମାଦ ।୩।

ପ୍ରହ୍ଲା- ରାଗ ଶଙ୍କରାଭରଣ । ଅଟତାଳ ।

କାହିଁକି ରୋଷ । ତାତ ଜନନି । ଦେଖିଲ କି ମୋ ଦୋଷ ? ।୦।

ଅଳୀକ ଏ ସଂସାର । କେହି ନୁହେ କାହାର ।

କେ ପୁତ୍ର ପିତା ମାତା । ଏ ସବୁ ମାୟାପାଶ ।।୧।।

ଏଣୁ ଯେ ତୁମ୍ଭ ବୈରୀ । ଅଟେ ସେହି କିପରି ।

ହେବ ଶତ୍ରୁ ମୋହର ? । ବିଚାର ଦାନବେଶ ।।୨।।

ଜାଣି ଏକଥାଯାକ ହୋଇ ମୁ ଜାଗରୂକ ।

ଯେ ଥାଏ ସବୁଠାରେ । ତା ପାଦେ ହେଲି ଦାସ ।।୩।।

ଲୀଳା - (ସଭାସଦମାନଙ୍କ ପ୍ରତି)

**ରାଗ ନବରୋଜ । ଆଦିତାଳ ।**

କା ଘରେ ଅଛି କି ଏହା ଆହେ ସଭ୍ୟଗଣ ? ।
ଦେଖିଛ କିଏ କାହିଁ ଏପରି ଆଚରଣ ? ।୦।
ଗୁରୁଜନ ମାନଙ୍କର । ସାର ଉପଦେଶ ଗିର ।
ନମାନି ନିଜ ପିଅର । ସଙ୍ଗେ ବାଦ ରଚିବାର ।୧।

ପ୍ରହ୍ଲା - ଅସାର ଏହି ସଂସାର । ସବୁ ବିନଶ୍ୱର ।
ଜାଣି ଯେ ଭଜଇ ନିତ୍ୟ । ସତ୍ୟ ମୂଳାଧାର ।୦।
ତାକୁ ଧରି ନିରନ୍ତର । ନାନାଦି ଦଣ୍ଡ ଦେବାର ।
ଯା ଅଟେ ଅହିତକର । କର ବୋଲି କହିବାର ।୨।

ଲୀଳା - ଯେ ଅଟନ୍ତି ଦେବ ଦେବୀ । ମାତା ପିତାଙ୍କର ।
ଯେ ରୀତି ନୀତି । ଧରମ ଅଟଇ କୁଳର ।୦।
ତାହା ଅହିତ ବିଚାର । କରି ବରଜି ଦେବାର ।
ଯେ ପିତାଶତ୍ରୁ ତାହାର । ନାମ ଜପ କରିବାର ।୩।

ପ୍ରହ୍ଲା - ଯେ ଅଟେ ସର୍ବବ୍ୟାପକ । ଅନନ୍ତ ଅନାଦି ।
ଏକେତ ଅବିଧି । ହେବା ତା ତୁଲେ ବିବାଦୀ ।୦।
ପୁଣି ଆପଣା କୁମର । ମାନଙ୍କୁ ଯା ନିରନ୍ତର ।
ଅରଜ ବୋଲି ବଇର । ଅନୁରୋଧ କରିବାର ।୪।

ରାଜା - (ସିଂହାସନରୁ ମହା କ୍ରୋଧରେ ଲମ୍ଫ ଦେଇ ଆସି)

**ରାଗ ଶଙ୍କରାଭରଣ । ଆଦିତାଳ ।**

ଅଛି କିରେ । ସବୁଠାରେ ସେ ପାମର ? ।୦।
କେଡ଼େ ସାହାସ ତୋହର । ନିର୍ଭୟେ ଛାମୁରେ ମୋର ।
ସର୍ବବ୍ୟାପକ ଯା ବୋଲି । କହୁ ଆସି ନିରନ୍ତର ।୧।
ସତେ କିରେ ? । ଦେଖାଇବୁ ନା ତୁ ମତେ ?
ଯଦି ଅଛି ସବୁଠାରେ । ଜଳେ ସ୍ଥଳେ ଆକାଶରେ ।
ମୋର ମନ ହେବ ଯହିଁ । ପଚାରିବି ସେହି ଠାରେ ।୨।

ଜାଣି ଥାରେ । କହିଲା ପରି ନୁହେଚି ।
ଯଦି ପଚାରିଲାପରି । ନ ଦେଖାଇବୁ ତୁ ହରି ।
ହାଣିବି ଏହି କୃପାଣରେ । ଦେଖିଥିବୁ ତୋତେ ଧରି ।୩।

ପ୍ରହ୍ଲା - **ରାଗ ଆହାରୀ । ଝୁଲାତାଳ ।**

କାହିଁକି ଏବେ ଏହିପରି କହୁଛ ପିଅର ।
ହେଲକି ସତେ ବାତୁଳ ମତି ଦାନବେଶ୍ୱର ? ।୦।
ଭାବ ଥିଲେ ଭକ୍ତି ଥିଲେ ଆବର ବିଶ୍ୱାସ ।
ଲୋଡ଼ିବ ଯହିଁ ପାଇବ ତହିଁ ପରମ ପୁରୁଷ ।୧।
ଲକ୍ଷ ଯୋଜନେ ସଙ୍କଟେ ପଡ଼ି ଡାକିଲା କରି ।
ତାରିଲେ ପରା ଜାଣିତ ଥିବ ତୁମ୍ଭ ବଇରୀ ।୨।
ଭାବ ଗ୍ରହଣକାରୀ ଯେ କି- ଭକତ ବାନ୍ଧବ ।
ଥାଏ ଭକ୍ତ ଯହିଁ ତହିଁ ଅବଶ୍ୟ ଦେଖିବ ।୩।

ରାଜ - **(ରାଗ କାମୋଦୀ । ଆଦିତାଳ ।)**

କାହିଁ ଅଛି ଦେଖା ମୋତେ ଏହି ସ୍ତମ୍ଭରେ ? ।
କହୁଛୁ ଏଡ଼େ ଦମ୍ଭରେ ।୦।
ଯେଉଁଠାରେ ତା ଭକତ । ଗଣ ଥାନ୍ତି ଅବିରତ ।
ସେଠାରେ ସେ ପାମରତ । ଥାଏ ପରାରେ ।
ତୁହିତ ଜଣେ ପରମ-ଭକ୍ତ ବୋଲାଉ ଅଧମ ।
ହୋଇଛୁ ବିରାଜମାନ । ଏହି ସଭା ମଣ୍ଡପରେ ।୧।
କେଭେଟି କୁମ୍ଭୀରଟାକୁ ମାରି ରଖିଲା ଗଜକୁ ।
କେତେ ଟେକି ସେ କଥାକୁ । ପୁକାରୁ ତୁରେ ?
ବୀରପଣକୁ ମୋହର । ଜାଣି ନାହୁଁ କି ପାମର ।
ଲକ୍ଷେ ହରିକି ତୋହର । ଦଳିଦେବି ଛଟକରେ ।୨।
ନାଶଯିବ ଭକ୍ତ ଜଣେ । ଲୁଚି ରହିଅଛି କେଣେ ?
ଛିଡ଼ା ହୋଇ ଯାଉ କ୍ଷଣେ । ଆସି ଆଗରେ ।
ବାତୁଳପଣ ମୋହର । ବୁଦ୍ଧି କୁଶଳତା ତୋର ।
ଭକ୍ତବାତ୍ସଲ୍ୟ ତାହାର । ଜଣାପଡ଼ିଯାନ୍ତା ଥରେ ।୩।

ପ୍ରହ୍ଲା - **ରାଗ ବିଳାହରି । ଏକତାଳ ।**

ଆହା ଶ୍ରୀଚରଣ ମାଧୁରୀ । ଚିତ୍ତ କରେ ଚୋରୀ ।
ଅମୃତ ସଦ୍ମ । ଅମଳପଦ୍ମ ।
ମନୋହର ରକ୍ତିମା -ଗର୍ବ-ଖରବ-କାରୀ । ୦।
ଅଶୋକ କଳି । ନିନ୍ଦେ ଅଙ୍ଗୁଳି ।
ଅବହେଳେ ବିତରେ । ଜନ-ନୟନ-ଶିରୀ ।୧।
ସୁନଖରାଶି । କି ଶଶି ଆସି ।
ଖଣ୍ଡ ବିଖଣ୍ଡ ହୋଇ । ପ୍ରକାଶେ ଦିଗ ଚାରି ।୨।
ଦୁଃଖବାରିଣୀ । ପାପ ନାଶିନୀ ।
ଗଙ୍ଗା ଯେଠାରୁ ଝରି । ମୁକ୍ତି ଦିଏ ବିତରି ।୩।
ଯାହାର ରେଣୁ । କଣା ପ୍ରଦାନୁ ।
ଜନ୍ମଜନ୍ମାନ୍ତ ପାପ- । ତରୁ ଦିଏ କତୁରି ।୪।

ରାଜା - ରେ ଡିମ୍ଭକ ! କାର ଚରଣ ଦେଖୁଛୁ ? (କୃପାଣରେ ସ୍ତମ୍ଭକୁ ନିର୍ଦ୍ଦେଶ କରି) ସେ ଭ୍ରାତୃହନ୍ତା ଭୀରୁ ହରି ଏଠାରେ ଅଛି ?

ପ୍ରହ୍ଲା - ଆଜ୍ଞା ! ସର୍ବ ଦିଗରେ ସେ ଦିଶୁ ଅଛନ୍ତି ।

ରାଜା - (ମହାକ୍ରୋଧରେ ସ୍ତମ୍ଭକୁ ପଦାଘାତ କରିବା, ନୃସିଂହମୂର୍ତ୍ତି ସେ ସ୍ତମ୍ଭରୁ ବାହାରି ହିରଣ୍ୟକଶିପୁକୁ ନିଜ ଉରୁଦେଶରେ ପକାଇ ନଖରେ ଉଦର ଚିରି ମାରି ପକାଇବା ଓ ନାରଦ, ଇନ୍ଦ୍ର ଏବଂ ଦେବଗଣଙ୍କ ପ୍ରବେଶ ।)

ନେପଥ୍ୟେ

**ରାଗ ପାନ୍ତୁବରାଡ଼ି । ଆଦିତାଳ ।**

ସକଳ-ଭୂତ-ଆଦି କାରଣ । ମୋ ବନ୍ଦନ ଘେନ ।୦।
ସୁର ନର ଦୁଃଖ ସହି ନ ପାରି । ଜଗତ ମଧ୍ୟେ ତୁ ଅବତରି ।
ଦାନବ କୁଳ କରି ସଂହାର । ସଂସାରେ ଧରମ କଲୁ ସ୍ଥାପନ ।୧।
ବରାହ ରୂପକୁ ଧରି ଶ୍ରୀହରି । ଦନ୍ତାଗ୍ରେ ପୃଥିବୀ ଉଦ୍ଧରି ଧରି ।
ତ୍ରିଲୋକ-କଣ୍ଟକ ଅସୁର ବୀର । ହିରଣାକ୍ଷ ଶିର କଲୁ ଛେଦନ ।୨।

ବ୍ରହ୍ମାଙ୍କ ବରରେ ଦାନବେଶ୍ୱର । ଭକତଙ୍କୁ ଦଣ୍ଡ ଦେଲା ଅପାର ।
ତା ଗର୍ବ ଖର୍ବ କରିବା ଛଳେ । ନରସିଂହରୂପ କଲୁ ଧାରଣ । ୩।
ଅଚିନ୍ତ୍ୟ ଅବ୍ୟକ୍ତ ଅନନ୍ତ ନାମ । ଚିଦାନନ୍ଦ ପ୍ରଭୁ ପବିତ୍ର ଧାମ ।
କରୁଣା ନିଧାନ ଲକ୍ଷ୍ମୀରମଣ । ଆଶ୍ରିତଜନ କରୁ ପୋଷଣ ।୪।

ପ୍ରହ୍ଲା - **ରାଗ ପୁରୀକଲ୍ୟାଣୀ । ଆଦିତାଳ ।**

ପଞ୍ଚବଦନାନନ । ସଦୟ ଜନାର୍ଦ୍ଦନ ।
ରଞ୍ଜିତାବ୍ଜପଦ । ନୃଦେହଧାରୀ ହେ ।୦।
ତାପ ଦୂର କର । ପାପ ଦୁଃଖ ହର ।
ସନ୍ତତ ଜଗତ । ପାବନକାରୀ ହେ ।୧।
ଭକ୍ତସଂରକ୍ଷକ । ଭୁବନପାଳକ ।
ଆନନ୍ଦ ସଦନ । ଦୁଷ୍ଟ ବଇରୀ ହେ ।୨।
ମୋର ଛାର ଲାଗି । ହୋଇ ଏଡ଼େ ରାଗୀ ।
ଧରିଛ ଏ ରୂପ । ଅନନ୍ତ ହରି ହେ ।୩।

ନାରଦ - **ରାଗ ଭୈରବୀ । ରୂପକତାଳ ।**

ଜଗନ୍ନାଥ ନିରଞ୍ଜନ । ପ୍ରଭୁ ଶ୍ରୀଧର ଚରାଚର- ସୁରବରାଶ୍ରିତ ।
ହୃଷୀକେଶ । ବିଷ୍ଣୁ ଲୋକେଶ । ଅମ୍ବୁଜଆସନ-ନୁତଚରଣ ହରି ।୦।
ସୃଷ୍ଟିକାରକ । ଚିଦାତ୍ମକ । ଭବଭୟବିନାଶକ । ନାରାୟଣ ।
ପାପବାରଣ । ଯାରଧ୍ୟାନେ । ନିତି ସତୀପତିମତି ପ୍ରତିକୃତ ।୧।
କରୁଣାମୟ । ସୁହୃଦୟ । ଯୋଗୀ ଜନମନାଶ୍ରୟ । ସନାତନ ।
ସର୍ବକାରଣ । ଜନାର୍ଦ୍ଦନ । ଗତିମୁକ୍ତିଦାତା । କ୍ଷିତିପାତା ପିତା ।୨।

ଇନ୍ଦ୍ର- **ରାଗ ନାଟକୁରଞ୍ଜୀ । ରୂପକତାଳ ।**

ଦାସେ ଏବେ ରଖ ପ୍ରଭୁ କରୁଣା ଚିତ୍ତରେ ।
ଘୁଞ୍ଚି ଯାଉ ପାପତାପ ନିମିଷମାତ୍ରରେ ।୧।
ଏକମାତ୍ର ମୁକ୍ତିଦାତା ଭବସିନ୍ଧୁତରେ ।
ଅନ୍ୟ ଗତି ଦେଖୁ ନାହିଁ ଜଗତ ଭିତରେ ।୨।

କାମ କ୍ରୋଧ ଲୋଭ ମୋହ କିପରି ଚିତ୍ତରେ ।
ଆକ୍ରମନ୍ତି-ଦୂରକର କଟାକ୍ଷପାତରେ ।୩।

ଦେବଗଣ - **ରାଗ ଆନନ୍ଦଭୈରବୀ । ରୂପକତାଳ ।**

ନିଗମବନ୍ଦ୍ୟ ନିରୂପମ କରୁଣାପ୍ରଦ ଧରମ ।
ନିଖିଳଲୋକ ଅଖିଳ ଶୋକ ତାପ ନାଶକ ପରମ ।୧।
ବିମଳ ଶୁକ୍ଳ ଦୁର୍ବାଦଳ ନିନ୍ଦଇ ରମ୍ୟ ବରନ ।
ଅଗତିଗତି ଜଗତପତି ଦୁର୍ମତିମତି ନାଶନ ।୨।
ଅନନ୍ତ ପ୍ରଭୁ ନିରଞ୍ଜନ ସକଳ ଜନ ପାଳନ ।
ପାପ-ତିମିର-ନାଶ ଭାସ୍କର ସଚରାଚର-ପାବନ ।୩।

ପ୍ରହ୍ଲାଦ - **ରାଗ ଘଣ୍ଟାରବ । ଆଦିତାଳ ।**

ହେ ପ୍ରଭୋ ଦେବ ଦୟାସାଗର ।
କେଶବ ଶ୍ରୀହରି ରମାବର ।୦।
ଶ୍ରୀନିକେତନ ଲୋକ ବିଧାତା ।
ହେ ଦେବପାଳକ ଶ୍ରୀଧର ।୧।
ଶ୍ରୀବତ୍ସାଙ୍କିତ କୌସ୍ତୁଭଧାରି ।
ହେ ଦେବ ପାପ ତମୋହର ।୨।

(ନୃସିଂହଙ୍କର ଶାନ୍ତି ଓ ଯବନିକାପତନ)

## ପଞ୍ଚମ ଦୃଶ୍ୟ

(ଶୁକ୍ରାଚାର୍ଯ୍ୟ ଓ ବିପ୍ରଚିତ)

ଶୁକ୍ରା - ବିଜ୍ଞବର ! ଅଭିଷେକ ନିମନ୍ତେ ସମସ୍ତ ଆୟୋଜନ କରାଇଛ ?

ବିପ୍ର - ଆଜ୍ଞା-ହଁ ! ହେଟି ଦେଖନ୍ତୁ ସ୍ୱର୍ଣ୍ଣ, ରୌପ୍ୟ, ତାମ୍ର ଏବଂ ଲୌହାଦି ଧାତୁମାନ, ନବରତ୍ନ, ସର୍ବୌଷଧି, ଘୃତ, ମଧୁ, ଲାଜା, ଶୁକ୍ଳ ବସ୍ତ୍ର, ଅସ୍ତ୍ର, ଶସ୍ତ୍ର, ଚାମର, ଆଲଟ, ପତାକା, ପାଣ୍ଡୁର ବର୍ଣ୍ଣଛତ୍ର, ଅଖଣ୍ଡ ବ୍ୟାଘ୍ରଚର୍ମ, ସ୍ୱର୍ଣ୍ଣ, ଘଟମାନ, ଶ୍ୱେତ ପଞ୍ଚବସ୍ତ୍ର, ହସ୍ତୀ, ଶୁକ୍ଳଗାଭୀ ଏବଂ ହୋମ ନିମନ୍ତେ ଆବଶ୍ୟକୀୟ ସମସ୍ତ ପଦାର୍ଥ ଆୟୋଜନ କରାଇଅଛି ।

ଶୁକ୍ରା - ଉତ୍ତମ ।

(ପ୍ରହ୍ଲାଦ, ନାରଦ, ଇନ୍ଦ୍ର, ଦେବଗଣ, ବିଦୂଷକ ଓ ପାରିଷଦଗଣ ଆଗମନ)

ପ୍ରହ୍ଲା - ନମସ୍କାର ଶୁକ୍ରାଚାର୍ଯ୍ୟ ।

ଶୁକ୍ରା - କଲ୍ୟାଣ ! କଲ୍ୟାଣ ରାଜନ ।

ବିଦୂ - ଅଭିଷେକ ନ ହେଉଣୁ ରାଜନ !

ଶୁକ୍ରା - ଅଭିଷେକ କାଳ ପହୁଞ୍ଚିଲାଣି । ସିଂହାସନ ଉପରେ ଉପବେଶନ କରନ୍ତୁ ।

ପ୍ରହ୍ଲା - ଯେ ଆଜ୍ଞା । (ଦେବତାମାନଙ୍କ ପ୍ରତି) ଆପଣମାନେ ସେହି ଆସନମାନଙ୍କରେ ବିରାଜମାନ କରନ୍ତୁ ।

(ସମସ୍ତଙ୍କ ଉପବେଶନ)

ବିଦୂ - କେହି ନ କହୁଣୁ ଆମ୍ଭେ ବିରାଜମାନ କରୁଅଛୁଁ ।

ପ୍ରହ୍ଲା - ଆପଣଙ୍କୁ ମଧ୍ୟ କହିଛି । ରୋଷ କରନ୍ତୁନା ।

ବିଦୂ - ମହାରାଜ ! ସନ୍ତୋଷ ବେଳେ କି ରୋଷର ଦରକାର ?

(ଶୁକ୍ରାଚାର୍ଯ୍ୟ ଅଭିଷେକାଦି କ୍ରିୟା କରିବା)

ବିଦୂ - (କ୍ଷୀଣସ୍ୱରେ) ଆଚାର୍ଯ୍ୟ ବାକ୍ୟ ପଢ଼ିଲାବେଳେ ଶଙ୍ଖ ବାଦ୍ୟ ବାଜିବାକୁ ଆଦେଶ ଦିଅନ୍ତି ।

ନାରଦ - (ଅଭିଷେକ ଉତ୍ତାରୁ ପଟ୍ଟବସ୍ତ୍ର ପ୍ରହ୍ଲାଦଙ୍କ ଶିରେ ବାନ୍ଧି ଆଶୀର୍ବାଦ କରିବା)

(ପ୍ରହ୍ଲାଦ ସମସ୍ତଙ୍କୁ ଯଥୋଚିତ ମାନ୍ୟ ଦର୍ଶାଇବା)

ନାରଦ - ରାଜନ୍ ! ଆଜ ଆପଣ ରାଜ୍ୟାଭିଷିକ୍ତ ହେବାର ବାର୍ତ୍ତା ଶୁଣି ସମସ୍ତଲୋକେ ଆନନ୍ଦ ସାଗରରେ ନିମଜ୍ଜିତ ଅଛନ୍ତି । କେତେ କାଳକୁ ତୁମ୍ଭ ଲାଗି ଦେବତା ଓ ମନୁଷ୍ୟମାନଙ୍କର ଦୁର୍ଦ୍ଦଶା ଘୁଞ୍ଚିଯାଇଅଛି ।

ବିଦୂ - ମାତ୍ର ଏଣିକି ଘୁଞ୍ଚିବ ନାହିଁ ।

ନାରଦ - ଯଥାର୍ଥ ! ପ୍ରହ୍ଲାଦଙ୍କ ପୁତ୍ର ହେତୁ ଅମଙ୍ଗଳ ଘଟିପାରେ । ଯାହା ହେଉ, ଆଜି ଗୋଟିଏ ଶୁଭ ଦିନ ।

ବିଦୂ - ଭୋଜନ ହେତୁ ବ୍ରାହ୍ମଣଙ୍କ ପକ୍ଷେ ?

ନାରଦ - ବ୍ରାହ୍ମଣ କ'ଣ ? ସର୍ବ ଜୀବ ପକ୍ଷେ । ରାଜନ ! ମନୋଯୋଗ ପୂର୍ବକ ଶ୍ରବଣ କରନ୍ତୁ । ରାଜା ସତ୍ୟବାନ୍, ସତ୍ୟ ପରାୟଣ, ସଚ୍ଚରିତ୍ରବନ୍ତ, ସରଳ,

ହୃଦୟ, ସତ୍ୟଶ୍ରୁତ, କ୍ଷମାଶୀଳ, ଦାନଶୀଳ, ପ୍ରଜାବତ୍ସଳ, ସୁଶାସକ ଏବଂ ଇନ୍ଦ୍ରିୟନିଗ୍ରହୀ ହେବା ବିଧେୟ । କୁଳୀନ, ଶିକ୍ଷିତ, ପ୍ରାଜ୍ଞ, କୃତଜ୍ଞ, ସୁଶ୍ରୋତା, ହିତୈଷୀ, ମେଧାବୀ, କାର୍ଯ୍ୟଦକ୍ଷ, ଧର୍ମାର୍ଥକାମବେତ୍ତା, ସ୍ୱାମି-ଐଶ୍ୱର୍ଯ୍ୟଲିପ୍‌ସୁ ଏବଂ ସ୍ୱଦେଶୀୟ ବ୍ୟକ୍ତି କି ଚିହ୍ନି ମନ୍ତ୍ରୀ ପଦରେ ନିଯୁକ୍ତ କଲେ ରାଜାର କୌଣସି ପ୍ରକାର ଅନିଷ୍ଟ ଘଟେ ନାହିଁ । ନବିଦ୍ୟ, ଅପ୍ରାଜ୍ଞ, କପଟୀ, ନିର୍ଲଜ୍ଜ, ସ୍ତବକାରୀ, କର୍ଣ୍ଣେଜପ ଓ ପରଦାରଗାମୀ ଲୋକଙ୍କୁ କୌଣସି କାଳେ ସଭାସଦରୂପେ ନିର୍ଣ୍ଣିତ କରିବ ନାହିଁ । ପରସ୍ୱହାରକ, ପାପାଚାରୀ, ଚଞ୍ଚକ, ଦୁରାତ୍ମା, ନିନ୍ଦୁକ, କ୍ରୂର, ମୂର୍ଖ ଓ ଧୂର୍ତ୍ତଲୋକ ସେବକ ହେଲେ ରାଜାର ସର୍ବବିଧ ଅମଙ୍ଗଳ ଅନିବାର୍ଯ୍ୟ । ପ୍ରଥମେ ମନୁଷ୍ୟଙ୍କୁ ଉତ୍ତମରୂପେ ଚିହ୍ନି ପରେ କାର୍ଯ୍ୟରେ ନିଯୁକ୍ତ କରିବାକୁ ହେବ । ରାଜା ସଦ୍‌ବ୍ୟବହାରଦ୍ୱାରା ତ୍ରିଲୋକ ଜୟକରିପାରନ୍ତି ।

ବିଦୂ - ଏ ତେବେ ହିରଣ୍ୟକଶିପୁ ହୋଇଯିବେ ।

ନାର - ସୁଶୀଳ ବ୍ୟକ୍ତି ପକ୍ଷେ କୌଣସି କାର୍ଯ୍ୟ ଅସାଧ୍ୟ ହୁଏ ନାହିଁ । ମୁହିଁ ରାଜା ବୋଲି ଅଭିମାନ ଧରି କଦାଚ୍ ଅନ୍ୟପ୍ରତି ଅସୂୟତା ପ୍ରକାଶ କରିବ ନାହିଁ । ପ୍ରଜାଗଣଙ୍କୁ ବୃଥା ଦୁଃଖ ଦେଇ ଧନାଦାୟ କରିବ ନାହିଁ । ରାଜା ପ୍ରଜାର ନିଜ ଶ୍ରମୋପାର୍ଜିତ ଧନ ଲୁଣ୍ଠନ କଲେ ପ୍ରଜାପୀଡ଼ନ ସନ୍ତାପ ସମୁଦ୍‌ଭୂତ ହୁତାଶନ ରାଜାର ବଳ, ପ୍ରାଣ ଏବଂ ସର୍ବସ୍ୱ ଦଗ୍ଧ ନକରି ନିବୃତ୍ତ ହୁଏ ନାହିଁ ।

ବିଦୂ - ପାଂଶୁ ଦଶାରେ ଶୀଘ୍ର ନିବୃତ୍ତ ହୁଏ ।

ନାର - ଅଦୃଷ୍ଟ ଅବଲମ୍ବନ କରି କୌଣସି କାର୍ଯ୍ୟରେ କୃତବିଦ୍ୟହେବା ଲାଗି ପ୍ରଯତ୍ନ କରିବା କାପୁରୁଷତାର ପରିଚାୟକମାତ୍ର । ଯେ କାର୍ଯ୍ୟ କଲେ ଧର୍ମର ବୃଦ୍ଧି ହେବ ସେ କାର୍ଯ୍ୟ କରିବା କର୍ତ୍ତବ୍ୟ । କୋଷ, ଦଣ୍ଡ, ବଳ, ପ୍ରଜା ଓ ହିସାବାଦି ଅନ୍ୟ ହସ୍ତରେ ନ୍ୟସ୍ତ କରି ନୀରବେ ରହିବା ନିତାନ୍ତ ମନ୍ଦ । ପ୍ରଜାଗଣଙ୍କୁ ଲାଳନ ପାଳନ ଓ ଆଶ୍ରିତଜନଙ୍କୁ ଭରଣ ପୋଷଣ କରିବା ରାଜାର ପ୍ରଧାନ ଧର୍ମ୍ମ ।

ବିଦୂ - ଆଉ ବିଦୂଷକର ଭରଣ ପୋଷଣ କାର କର୍ତ୍ତବ୍ୟ ?

ନାର - ବିଚକ୍ଷଣ ମହୀପାଳମାନେ ଦେଶ ଓ କାଳ ଅନୁସାରେ ବିକ୍ରମ ପ୍ରକାଶ କରନ୍ତି । ଦୋଷୀ, ଅପରାଧୀ ଓ ଚୋରକୁ ଉପଯୁକ୍ତ ଦଣ୍ଡ ଦେବ । ଦଣ୍ଡିତବ୍ୟକ୍ତି ଯେପରି ପରେ ଭୟ ଭକ୍ତି ଦେଖାଇ ପୁଣ୍ୟପଥରୁ ବହିର୍ଭୂତ ନ ହୁଏ ସେ ବିଷୟରେ ସତର୍କ ଥିବା ବାଞ୍ଛନୀୟ । ସ୍ଥଳ ବିଶେଷରେ ଦୋଷୀକୁ କ୍ଷମା ପ୍ରଦାନ କରିବା ଉଚିତ୍ ।

ବିଦୂ - ମହାରାଜ ! ସର୍ବ ସ୍ଥଳରେ ମୋ ଦୋଷ କ୍ଷମାକରିବେ ।

ରାଜା - ବିଦୂଷକର ଦୋଷ କିଏ ଧରେ ?

ବିଦୂ - ଆଜ୍ଞା ! ତେବେ ମହାମୁନିଙ୍କ ଶାପରୁ ବଞ୍ଚିଲି ।

ନାର - ଯାହା ହେଉ ଭକ୍ତାଗ୍ରଗଣ୍ୟ ପ୍ରହ୍ଲାଦ ! ପରମାତ୍ମା ନାରାୟଣଙ୍କ ଭକ୍ତି ସମ୍ପାଦନ କରିବା ରାଜାଙ୍କ ପକ୍ଷେ ଉଚିତ୍ କର୍ମ୍ମ ଦେଖନ୍ତୁ ଆପଣଙ୍କ ଦୃଢ଼ ଭକ୍ତିରୁ ଆଜି ସମଗ୍ର ବସୁନ୍ଧରା ହିରଣ୍ୟକଶିପୁର କୋପାଗ୍ନି-ଦହନ ପୀଡ଼ାରୁ ମୁକ୍ତି ପାଇଅଛି । ପ୍ରହ୍ଲାଦ ! ଆପଣ ସକଳ ବିଷୟରେ ପ୍ରବୀଣ ଅଟନ୍ତି । ଅଧିକ କହିବା ଅନାବଶ୍ୟକ । ପରିଶେଷରେ କଥା ଏହି ଯେ ମାତୃଦେଶୀୟ ଲୋକଙ୍କର ସର୍ବାଙ୍ଗୀନ ଉନ୍ନତି ସାଧନ କରି ସମସ୍ତଙ୍କର ପ୍ରଶଂସା ଭାଜନ ହେବ । ଆମ୍ଭେମାନେ ସ୍ୱର୍ଗପୁରକୁ ଯାଉଁ ।

ପ୍ରହ୍ଲା - ଯେ ଆଜ୍ଞା । (ନାରଦଙ୍କୁ ଓ ଦେବତାମାନଙ୍କୁ ନମସ୍କାର) (ନାରଦ, ଇନ୍ଦ୍ର ଓ ଦେବତାମାନେ ପ୍ରହ୍ଲାଦଙ୍କୁ କଲ୍ୟାଣ କହି ସ୍ୱର୍ଗପୁରକୁ ଗମନ)

ବିଦୂ - ମହାରାଜ ! ଅଦ୍ୟଦିନପରି ଆନନ୍ଦ ଦିନ ମୋ ଜୀବନରେ କସ୍ମିନ୍ କାଳେ ଘଟିନଥିଲା । ଏଣିକି ଘଟିବ ନାହିଁ । ଅବଶ୍ୟ ମହାରାଜ ଜାଣନ୍ତି-ଆନନ୍ଦ ଦିନରେ "ସୁଖିନୋ ସୁଖକାରୀ" । ସଙ୍ଗୀତର କିଛି ଚର୍ଚ୍ଚା ହେଲେ ଭଲ ହେବ । ମହାରାଜ ! ନର୍ତ୍ତକୀଦଳ ମଧ୍ୟ ଏହିଠାରେ ଅଛନ୍ତି । ଆଜ୍ଞା ହେଲେ ନୃତ୍ୟ ଗାନାଦି କରିବେ ।

ପ୍ରହ୍ଲା - ଉତ୍ତମ-କରାନ୍ତୁ ।

ବିଦୂ - (ସେମାନଙ୍କ ପ୍ରତି) ଆରମ୍ଭ କର ।

(ନର୍ତ୍ତକୀଦଳ ସମ୍ମୁଖେ ପ୍ରବେଶ ଓ ନୃତ୍ୟ କରିବା)

ରାଗ ହୁସେନୀ । ଅଟତାଳ ।

ହରି ଅସୀମ ମହିମା ଜନେ ଗାଇ ହେ ।
ଭବମାୟା ଛାଡ଼ି ତର  ତାଙ୍କୁ ଧ୍ୟାଇ ।୦।
ସର୍ବଭୟ ନାଶକ । ଆନନ୍ଦଦାୟକ ।
ନିଖିଳ-ମାନସ-ଗ୍ରାହୀ ହେ ।
ଭଜିଲେ କିଞ୍ଚିତେ । ଦୃଢ଼ଭକ୍ତି ଚିତ୍ତେ ।
ଘୁଞ୍ଚିବ କାମ କ୍ରୋଧ ଲୋଭ ବାଇ ହେ ।୧।
ମୋହଜାଲେପଡ଼ି । ପାପସନ୍ତାପେ ସଡ଼ି ।
ବୃଥା ଭ୍ରମ କାହିଁ ପାଇଁ ହେ ? ।
ଦୁଃଖିର ସମ୍ପତ୍ତି । ଅଗତିର ଗତି ।
ଚିଦାନନ୍ଦ ମୂରତି ବିଶ୍ୱସାଇଁ ହେ ।୨।
ପରମପିତା ମାତା । ଜୀବପରିତ୍ରାତା ।
ଚରଣାଶ୍ରୟ ସଦା ପାଇ ହେ ।
ତେଜି ଅସତକର୍ମ୍ମ । ଦ୍ୱେଷ ମାୟା ମର୍ମ୍ମ ।
ବସ ସ୍ୱର୍ଗଧାମରେ ଯାଇ ହେ ।୩।

●

# ପ୍ରାକ୍‌ସୂଚନା

**ବାଣ ଦର୍ପଦଳନ** ପଦ୍ମନାଭ ଦେବଙ୍କ ଦ୍ୱିତୀୟ ନାଟକ । ଏହା ପଦ୍ମନାଭ ରଙ୍ଗାଳୟରେ ଦୁଇଥର ଅଭିନୀତ ହୋଇ ଦର୍ଶକମାନଙ୍କୁ ଆପ୍ୟାୟିତ କରିଥିବା ଦେଖି ନାଟ୍ୟକାର ଏହାର ପ୍ରକାଶନରେ ଆଗ୍ରହୀ ହୋଇଥିବା କଥା 'ନିବେଦନ'ରେ ଉଲ୍ଲେଖ କରିଛନ୍ତି । ଏହାର ପ୍ରଥମ ସଂସ୍କରଣଟି ଆମର ହସ୍ତଗତ ହୋଇପାରିନାହିଁ । କିନ୍ତୁ ୧୯୦୨ ମସିହା ଫେବୃୟାରୀ ମାସରେ ଗୋଟିଏ ପତ୍ରିକା ଏହାର ପ୍ରାପ୍ତି ସ୍ୱୀକାର କରିଥିବା ଯୋଗୁଁ ୧୯୦୧ ମସିହାର ଶେଷ ବେଳକୁ ଏହା ପ୍ରକାଶ ପାଇଥିବା ଅନୁମାନ କରାଯାଇପାରେ । ଏହାର ପ୍ରାପ୍ତି ସ୍ୱୀକାର କରି **ଉତ୍କଳ ସାହିତ୍ୟ** ପତ୍ରିକାର ପଞ୍ଚମ ଭାଗ ଦ୍ୱାଦଶ ସଂଖ୍ୟାର (ଚୈତ୍ର-୧୩୦୯) **ସଂକ୍ଷିପ୍ତ ସମାଲୋଚନା** ସ୍ତମ୍ଭରେ ସଂପାଦକ ଶ୍ରୀ ବିଶ୍ୱନାଥ କର ଲେଖିଥିଲେ-

> *ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କଦ୍ୱାରା ପ୍ରଣୀତ । ବାଣକନ୍ୟା ଉଷାର ସ୍ୱୟମ୍ବର ଘଟିତ ପୌରାଣିକ ବୃତ୍ତାନ୍ତ ଘେନି ଏ କ୍ଷୁଦ୍ର ନାଟକ ଖଣ୍ଡି ରଚିତ ହୋଇଅଛି । ବିଷୟଟି ଏ ଦେଶରେ ସର୍ବଜନବିଦିତ । ସୁତରାଂ ତାହାର ବର୍ଣ୍ଣନ ଏଠାରେ ଅନାବଶ୍ୟକ । ସ୍ଥାନେ ସ୍ଥାନେ କିଞ୍ଚିତ ଅପ୍ରାସଙ୍ଗିକ କଥାର ସମାବେଶ ଛଡ଼ା ଚରିତ୍ରଗୁଡ଼ିକ ସ୍ଥୂଳରେ ସୁସଙ୍ଗତ ହୋଇଅଛି । ଭାଷା ସମ୍ବନ୍ଧରେ ଗ୍ରନ୍ଥଖଣ୍ଡି ନିର୍ଦ୍ଦୋଷ ହୋଇ ନାହିଁ । ଗ୍ରନ୍ଥକାରଙ୍କର ସଙ୍ଗୀତ ପ୍ରହ୍ଲାଦ ନାଟକର ସମାଲୋଚନାରେ ଆମ୍ଭେମାନେ ଯେଉଁସବୁ ଦୋଷର ଉଲ୍ଲେଖ କରିଅଛୁ ଏ ପୁସ୍ତକରେ ମଧ୍ୟ ସେହି ସମସ୍ତ ଦୋଷ ଲକ୍ଷିତ ହେଲା । ସେଗୁଡ଼ିକର ପୁନଃ ଉଲ୍ଲେଖ ନିଷ୍ପ୍ରୟୋଜନ । ତେବେ ଏଥିରେ ଦୋଷର ମାତ୍ରା ଖୁବ୍ ଅଳ୍ପ ଆଉ ଏହାର ଭାଷା ପୂର୍ବ ପୁସ୍ତକର ଭାଷା ଅପେକ୍ଷା ସୁନ୍ଦର ହୋଇଅଛି ।*

**ଉତ୍କଳ ଦୀପିକା** ମଧ୍ୟ ପୁସ୍ତକଟିର ପ୍ରାପ୍ତି ସ୍ୱୀକାର କରି ତା୧୫।୨।୧୯୦୨ରେ (୩୭/୭) 'ଧ୍ରୁବ ନାଟକ' ସହିତ ଆଲୋଚ୍ୟ ନାଟକଟି ସମ୍ପର୍କରେ ମନ୍ତବ୍ୟ ଦେଇଥିଲେ-

*ଏହି ଦୁଇ ନାଟକ ମଧ୍ୟରୁ ପ୍ରଥମଟି ଉପରିଲିଖିତ ଶ୍ରୀ ପଦ୍ମନାଭ ନାରାୟଣ ଦେବ ଏବଂ ୨ୟଟି ତାହାଙ୍କର ଅଗ୍ରଜ ଓ ପାରଳାଖେମୁଣ୍ଡିର ଅଧିଶ୍ୱର ଶ୍ରୀ ଶ୍ରୀ ଗୌରଚନ୍ଦ୍ର ଗଜପତି ଦେବଙ୍କଦ୍ୱାରା ରଚିତ ଏବଂ ପାରଳାଖେମୁଣ୍ଡି ଗଜପତି ଯନ୍ତ୍ରାଳୟରେ ମୁଦ୍ରିତ । ଏ ଦୁଇ ନାଟକର ଆକାର, ମୁଦ୍ରାଙ୍କନ କାର୍ଯ୍ୟ, ଭାଷା ଇତ୍ୟାଦି ପ୍ରାୟ ସମାନ ଏବଂ ପ୍ରହ୍ଲାଦ ନାଟକ ସମ୍ବନ୍ଧରେ ଯେ ମନ୍ତବ୍ୟ ଉପରେ ବ୍ୟକ୍ତ ହୋଇଅଛି ଏହି ପୁସ୍ତକଦ୍ୱୟ ପ୍ରତି ନ୍ୟୁନାଧିକରେ ଖଟୁଥିବାରୁ ଅଧିକ କିଛି କହିବା ଅନାବଶ୍ୟକ । ଉତ୍କଳ ସାହିତ୍ୟର ପୁଷ୍ଟି ବିଷୟରେ ଏମାନଙ୍କ ଯତ୍ନ ଓ ଅଧ୍ୟବସାୟ ଦେଖି ଆମ୍ଭେମାନେ ଏକାନ୍ତ ପ୍ରୀତ ହୋଇଅଛୁ ଏବଂ ଯଦ୍ୟପି କି ତାହା ଆଶାନୁରୂପ ସଫଳ ହେବାର କହିପାରୁ ନାହୁଁ । ତହିଁର କାରଣ ବୋଧକରୁ ଏ ଅଞ୍ଚଳର କୃତବିଦ୍ୟ ମଣ୍ଡଳୀ ସହିତ ସଦାଳାପର ଅଭାବ ବିନା ଆଉ କିଛି ନୁହେଁ । ଯେ ସ୍ଥଳେ ଗ୍ରନ୍ଥକାରମାନଙ୍କ ଇଚ୍ଛା ଓ ସଙ୍ଗତି ଅଛି ସେ ସ୍ଥଳେ ଅନାୟାସରେ ଏମାନେ ସେ ଅଭାବ ମୋଚନ କରିପାରନ୍ତି ।*

ଉଲ୍ଲିଖିତ ମନ୍ତବ୍ୟ ଦୁଇଟିକୁ ଅନୁଧ୍ୟାନ କଲେ ଜଣାଯାଏ ପ୍ରଥମ ନାଟକ 'ସଙ୍ଗୀତ ପ୍ରହ୍ଲାଦ ନାଟକ' ସମ୍ବନ୍ଧରେ 'ଉତ୍କଳ ଦୀପିକା' ପତ୍ରିକାର ସମ୍ପାଦକ ଶ୍ୟାମସୁନ୍ଦର ରାଜଗୁରୁଙ୍କ ସହ ଯେଉଁ ଆଲୋଚନା-ପ୍ରତ୍ୟାଲୋଚନା ହୋଇଥିଲା ତାହା ଦ୍ୱାରା ପ୍ରଭାବିତ ହୋଇ 'ବାଣ ଦର୍ପଦଳନ'କୁ ଯଥାସାଧ୍ୟ ସୀମିତ ଓ ମାର୍ଜ୍ଜିତ କରିବାପାଇଁ ଚେଷ୍ଟା କରିଛନ୍ତି । ନାଟକଟିର ଅଙ୍କସଂଖ୍ୟା, ଦୃଶ୍ୟ ସଂଖ୍ୟା ଏବଂ ସଙ୍ଗୀତ ସଂଖ୍ୟା ହ୍ରାସ ପାଇଛି । ଏହାର ପ୍ରଥମ ଅଙ୍କ ୩, ଦ୍ୱିତୀୟ ଅଙ୍କ ୩, ତୃତୀୟ ଅଙ୍କ ୪ ଓ ଚତୁର୍ଥ ଅଙ୍କ ୩ଟି ଦୃଶ୍ୟ ବିଶିଷ୍ଟ । ସେହିପରି ପ୍ରସ୍ତାବନାରେ ୪ଟି, ପ୍ରଥମ ଅଙ୍କରେ ୨ଟି, ଦ୍ୱିତୀୟ ଅଙ୍କରେ ୬ଟି, ତୃତୀୟ ଅଙ୍କରେ ୮ଟି ଏବଂ ୪ର୍ଥ ଅଙ୍କରେ ଗୋଟିଏ ମାତ୍ର ଗୀତ ସଂଯୋଜିତ । ଏଥିରୁ ଶିବ ତାଣ୍ଡବ ଏବଂ ସ୍ତବାଷ୍ଟକ (ଗୁରୁଦନ୍ତୀ ଚେଲମାୟା ଶାସ୍ତ୍ରୀଙ୍କ ଦ୍ୱାରା ରଚିତ) ଅନ୍ୟମାନଙ୍କ ରଚନାରୁ ଗୃହୀତ । ନାଟକୀୟ କଥାବସ୍ତୁର ଅଗ୍ରଗତିରେ ସଙ୍ଗୀତଗୁଡ଼ିକ ବିଶେଷ ପ୍ରତିବନ୍ଧକ ସୃଷ୍ଟି ନ କରି ସ୍ଥାନବିଶେଷରେ ସହାୟକ ହୋଇଛନ୍ତି । ଯେପରି ''ପ୍ରାଣ ସଙ୍ଗିନୀ'', ''ବାଇହେଲ କି ତୁମ୍ଭେ ସତେ'', ''ଅମ୍ବିକେ, ବରଦେ, ଶ୍ରୀଚଣ୍ଡିକେ'', ''ଘେନ କରୁଣାନିଧି ମୋହର ବନ୍ଦନ'' ଇତ୍ୟାଦି । ନାଟକଟି ଅଢ଼େଇରୁ ତିନିଘଣ୍ଟା ମଧ୍ୟରେ ଶେଷ ହୋଇପାରିବ । ଏଥିପାଇଁ ଏହାକୁ ଓଡ଼ିଶାର ବିଭିନ୍ନ ନାଟକ ଦଳଦ୍ୱାରା ମଞ୍ଚାୟନ ପାଇଁ

ଗୃହୀତ ହୋଇଛି । ୧୯୩୮ ମସିହାରେ ତୃତୀୟ ସଂସ୍କରଣ ପ୍ରକାଶ ପାଇବା ନାଟକଟିର ଲୋକପ୍ରିୟତାର ନିଦର୍ଶନ ।

ଉଷା ଓ ଅନିରୁଦ୍ଧଙ୍କ ପ୍ରଣୟ କାହାଣୀ ଭାରତୀୟ କବି ଓ ନାଟ୍ୟକାରମାନଙ୍କ ଦୃଷ୍ଟିରେ ଅଧିକ ଗ୍ରହଣୀୟ । ଉଭୟ ସମ୍ଭୋଗ ଓ ବିପ୍ରଲମ୍ଭ ଶୃଙ୍ଗାର, ରୌଦ୍ର, ବୀର, କରୁଣ ଓ ଶାନ୍ତ ରସର ଆସ୍ୱାଦନପାଇଁ ସୁଯୋଗ ସୃଷ୍ଟି କରୁଥିବାରୁ ଏହାର ଆଧାରରେ ସଂସ୍କୃତ ଓ ଆଞ୍ଚଳିକ ଭାଷାମାନଙ୍କରେ ବହୁ କାବ୍ୟ ଓ ନାଟକ ରଚନା କରାଯାଇଛି । ଓଡ଼ିଶାର ବିଦଗ୍ଧ ଲେଖକମାନେ ଏହାଦ୍ୱାରା କମ୍ ପ୍ରଭାବିତ ନୁହଁନ୍ତି । ଶିଶୁ ଶଙ୍କର ଦାସଙ୍କ ଉଷା ଅଭିଳାଷ, ଜଗନ୍ନାଥ ଦାସଙ୍କ ଉଷାଭିଳାସ, ବିଶ୍ୱମ୍ଭର ରାଜେନ୍ଦ୍ରଙ୍କ ଉଷାଭିଳାଷ ଏ ଦୃଷ୍ଟିରୁ ବିବେଚ୍ୟ । ପଦ୍ମନାଭ ନାଟକ ରଚନା ବେଳେ ମୂଳ କଥାବସ୍ତୁଠାରୁ ବିଶେଷ ଦୂରେଇ ଯାଇ ନାହାଁନ୍ତି । ଉଷା ଅନିରୁଦ୍ଧଙ୍କୁ ଲଜ୍ଜାବଶତଃ ସ୍ୱପ୍ନ ଦର୍ଶନ ବେଳେ ଦୂର ହୁଅ ବୋଲି କହିବା, ଚିତ୍ରଲେଖା ମନ୍ତ୍ର ପ୍ରୟୋଗ ନ କରି ଅନିରୁଦ୍ଧଙ୍କୁଧରି ଶୋଣିତପୁରରେ ଉପନୀତ ହେବା ଏବଂ ବାଣାସୁରର ସହସ୍ର ବାହୁ କର୍ତ୍ତନ ପରିବର୍ତ୍ତେ ତା'ର ମନରୁ ଅମାପ ଶକ୍ତିଜନିତ ଅହଙ୍କାର ଦୂର କରିବା ପରି କେତେକ ବ୍ୟତିକ୍ରମଦ୍ୱାରା ଅଲୌକିକତା ପରିହାର କରି ରଚୟିତା ନାଟକଟିକୁ ଅଧିକ ବାସ୍ତବ ଓ ମଞ୍ଚ ଉପଯୋଗୀ କରିପାରିଛନ୍ତି ।

# ନିବେଦନ

ହରିବଂଶାନ୍ତର୍ଗତ ବାଣୋପାଖ୍ୟାନକୁ ଅବଲମ୍ବନ କରି ଏହି "ବାଣ ଦର୍ପଦଳନ" ନାଟିକା ଲିଖିତ । ଏଥିରେ ରାବଣ କୃତ ଶିବତାଣ୍ଡବରୁ ଦୁଇଗୋଟି ଶ୍ଳୋକ ଏବଂ ଶ୍ରୀଗୁରୁଦନ୍ତି ଚେଲମୟା ଶାସ୍ତ୍ରୀଙ୍କ ବିରଚିତ ହରିହରସ୍ତବାଷ୍ଟକ ଉଦ୍ଧୃତ ହୋଇ ଅଛି । ନାଟିକାଟି ସ୍ଥାନୀୟ ରଙ୍ଗାଳୟରେ ଦୁଇଥର ଅଭିନୀତ ହୋଇଥିଲା । ଭଦ୍ରମଣ୍ଡଳୀ ଅଭିନୟ ଦେଖି ଆନନ୍ଦ ପ୍ରକାଶ କରିଥିବାରୁ ମୁ ଏହାର ମୁଦ୍ରାଙ୍କନରେ ପ୍ରବୃତ୍ତ ହେଲି ।

ଶ୍ରୀ ପଦ୍ମନାଭ ନାରାୟଣ ଦେବ

# ବାଣଦର୍ପଦଳନ ନାଟକ ।।

୰ ଶ୍ରୀପଦ୍ମନାଭ ନାରାୟଣ ଦେବଙ୍କ ଦ୍ୱାରା
ପ୍ରଣୀତ ।।

ତୃତୀୟ ସଂସ୍କରଣ ।

ଶ୍ରୀ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ
ମହାରାଜାଙ୍କ ଦ୍ୱାରା
ପ୍ରକାଶିତ ।

ଶ୍ରୀ ଗଜପତି ଯନ୍ତ୍ରାଳୟରେ
ବିନାୟକ ପଟ୍ଟନାୟକଙ୍କ ଦ୍ୱାରା
ମୁଦ୍ରଣ ।

ପାରଳାଖେମୁଣ୍ଡି ।
୧୯୩୪

# ମୁଖବନ୍ଧ

ଉତ୍କଳର ନାନା ସ୍ଥାନୀୟ ରଙ୍ଗାଳୟମାନଙ୍କରେ ଏହି "ବାଣ ଦର୍ପଦଳନ ନାଟକ" ଅଭିନୀତ ହେବାଦ୍ୱାରା ଦର୍ଶକ ମଣ୍ଡଳୀର ଆନନ୍ଦବର୍ଦ୍ଧନ କରିଥିବା ବିଷୟ ଅବଗତ ହୋଇ ତୃତୀୟ ସଂସ୍କରଣ ପ୍ରକାଶ କରିଅଛୁ ।

ପ୍ରାକୃତିକ ଉତ୍କଳର ଜନସାଧାରଣରେ ପୂର୍ବବତ୍ ଏହା ଆଦୃତ ହେଲେ ଶ୍ରମ ସଫଳ ମନେ କରିବୁ ।। ଇତି ।।

ପାରଳାଖେମୁଣ୍ଡି | ପ୍ରକାଶକ
--- | ---

---

# ଅଭିନୟୋଲ୍ଲିଖିତ ବ୍ୟକ୍ତିମାନେ

ପୁରୁଷଗଣ- ବ୍ରହ୍ମା, ମହାଦେବ, ଶ୍ରୀକୃଷ୍ଣ, ବଳରାମ, ନାରଦ, ଅନିରୁଦ୍ଧ, ଅକ୍ରୂର, ସାତ୍ୟକି, ବିପୃଥୁ, ବାଣ, କୁମ୍ଭାଣ୍ଡ, ଘଣ୍ଟାକର୍ଣ୍ଣ, ଦୌବାରିକ ଇତ୍ୟାଦି ।।

ସ୍ତ୍ରୀଗଣ- ପାର୍ବତୀ, ବାଣପତ୍ନୀ, ଉଷା, ଚିତ୍ରଲେଖା, ଅପ୍ସରାମାନେ ଓ ଦାସୀ ।।

# ବାଣ ଦର୍ପଦଳନ

ନାନ୍ଦୀ

**ରାଗ ଝଞ୍ଜୋଟୀ । ଆଦିତାଳ ।**

ଦେବ ଜନାର୍ଦ୍ଦନ । ଅଭୀଷ୍ଟ ପୂରଣ ।
କର ବାରେ ପ୍ରଭୁ ବିଶ୍ୱ-ପାଳନ ।୦।
ସର୍ବ ଲୋକ ପିତା । ସୁଖ ଶାନ୍ତି ଦାତା ।
ସକଳ ଭ୍ରାନ୍ତି-ବିଘ୍ନ-ତିମିର-ତପନ ।୧।
ପାପ ବିନାଶକ । ମୁକ୍ତି ପ୍ରଦାୟକ ।
ସୁର-ନର-କିନ୍ନର-ଦାନବ-ପାବନ ।୨।
ଅନନ୍ତ ଅପାର । କରୁଣା-ସାଗର ।
ଚିଦାନନ୍ଦ ମୂରତି ଭୁବନ ମୋହନ ।୩।
ସଂକଟ ତାରଣ । ଅନାଦି କାରଣ ।
ତ୍ରିଭୁବନ ଈଶ୍ୱର ପାଷାଣ୍ଡ ଦଳନ ।୪।

(ସୂତ୍ରଧାର ସଭାକୁ ଉଦ୍ଦେଶକରି ପୁଷ୍ପାଞ୍ଜଳୀ ବିକୀର୍ଣ୍ଣ କରିବା ଓ ପାରିପାର୍ଶ୍ୱିକମାନଙ୍କର ପ୍ରସ୍ଥାନ)

(ନାନ୍ଦ୍ୟନ୍ତେ ସୂତ୍ରଧାର)

ସୂ - ଆଜି ଗୋଟିଏ ସୁଦିନ । ଏହି ରଙ୍ଗାଳୟରେ ନିଖିଳ ଗୁଣାଳଂକୃତ ଭଦ୍ରମଣ୍ଡଳୀକି ଦେଖି ଆମ୍ଭ ମନରେ ଯେଉଁ ଆନନ୍ଦଲହରୀ ଉଚ୍ଛଳିତ ହେଉଅଛି ତାହା ଆମ୍ଭର ଇତି ପୂର୍ବେ ଅନୁଭୂତ ହୋଇଥିଲା ପରି ବୋଧ ହେଉ ନାହିଁ । ଏମାନଙ୍କ ସମ୍ମୁଖରେ କେଉଁ ନାଟକ ଅଭିନୟ କରି ଏମାନଙ୍କ ପ୍ରଶଂସାପାତ୍ର ହେବୁ ? (କିଛି କାଳ ବିଚାର କରି) ଆମ୍ଭେ କେତେପରି ବିଚାର କରି ଦେଖିଲେ ମଧ୍ୟ କୌଣସି ନାଟକର ଠିକଣା କରି ପାରୁନାହୁଁ ।

ବୋଧହୁଏ ପ୍ରିୟାକୁ ଡାକି ଜିଜ୍ଞାସାକଲେ ଆମ୍ଭର ସନ୍ଦେହ ଦୂର ହୋଇପାରେ । (ନେପଥ୍ୟକୁ ଚାହିଁ) ପ୍ରିୟେ । ତୁମ୍ଭର ବେଶଭୂଷା ସମାପନ ହେଲାନି ପରା ଏ ଆଡ଼େ ଥରେ ଆସ !

ନ - ରାଗ ମାଳବ । ଆଦିତାଳ ।

ପ୍ରାଣେଶ ମତେ କିସ ପାଇଁ । ଡାକିଲ ମୁଁ ଜାଣୁ ନାହିଁ ।
କି ଉଦ୍ଦେଶଟି ଅଛି ଚିତ୍ତେ । ଅନୁମାନ ମୋର ହେଉ ନାହିଁ ।
ପଡ଼ିଛି ଏବେ କି କାର୍ଯ୍ୟ ? । କହ ସତ୍ୱର ହେ ଆର୍ଯ୍ୟ ।
ବଳିଛି ମନେ ଅଭିଳାଷ । ମୋହର ଅଶେଷ ।
ସଂଶୟ ଦୂର କରାଇ । ନାଥ ଦିଅ ସମଜାଇ ।୧।
କାହିଁକି ଏ ରଙ୍ଗଭୂମି । ମଣ୍ଡିଛ ଏପରି ସ୍ୱାମି ।
କେଉଁ କାରଣେ ପଣ୍ଡିତମାନେ । ବସିଛନ୍ତି ମିଳି ଏହି ସ୍ଥାନେ ।
ଅତି ମଧୁର ସ୍ୱରରେ ଗାନ । ଶୁଭଇ ପୂରି ଲୟ ତାନ ।
ଉଜ୍ଜ୍ୱଳମୟ ଚଉପାଶ । ଦିଶଇ ହୃଦେଶ ।
ବିପଞ୍ଚି ତାଳ ବଜାଇ । ଦେଉଛ ଚିତ୍ତ ଚମକାଇ ।୨।

ସୂ - ପ୍ରିୟେ ! ଆଉ କିଛି ନୁହେ । ଆଜି କେଉଁ ନାଟକ ଅଭିନୟ କରି ଏହି ସଭ୍ୟବୃନ୍ଦଙ୍କର ପ୍ରୀତି ଜନ୍ମାଇପାରିବୁ ଏହା କେତେ ବିଚାର କଲେ ମଧ ଆମ୍ଭ ମନରେ ସ୍ଥିରୀକୃତ ହେଉନାହିଁ । ଏଣୁ ତୁମ୍ଭର ପରାମର୍ଶ ନେବା ଲାଗି ଡାକିଲୁ ।

ନ - ଆର୍ଯ୍ୟପୁତ୍ର ! ମୁ ଜଣେ ଛାର ଅବଳା । ମୁ ଆପଣଙ୍କୁ କି ପରାମର୍ଶ ଦେଇପାରିବି ? ଆପଣ ଭଲରୂପେ ବିଚାରି ଯେପରି ଏ ଭଦ୍ରଲୋକେ ସନ୍ତୁଷ୍ଟ ହେବେ ସେପରି ଗୋଟିଏ ନାଟକ ଅଭିନୟ କରନ୍ତୁ ।

ସୂ - ପ୍ରିୟେ ! ଆମ୍ଭେ ବିଚାରି ବିଚାରି କିଛି ନିଶ୍ଚୟ କରିପାରିଲୁ ନାହିଁ । ଏଣୁ ତୁମ୍ଭେ ଆମ୍ଭ ମନର ଆଶଙ୍କା ଦୂରକରିବ ବୋଲି ତୁମ୍ଭଙ୍କୁ ଡାକିଲୁ । ମାତ୍ର ତୁମ୍ଭର କଥା ଶୁଣି ଆମ୍ଭ ମନରେ ଅଧିକ ଆଶଙ୍କା ଜାତ ହେଉଛି ।

ନ - ରାଗ ସାବେରୀ । ଆଦିତାଳ ।

ହେ ପ୍ରାଣେଶ୍ୱର ଶୁଣି ମୋ ବିନତି ।
କର ତୁମ୍ଭର ମାନସୁ ଦୂର ।
ସକଳ ଶଙ୍କା ଏବେ ଝଟତି ।୦।

ଏ ସଭାଜନେ ଯେପରି ହରଷ ।
ଲଭିବେ ସେପରି ନାଟକ ନାମ ।
କହୁଛି ଶୁଣ ହେ ପ୍ରାଣପତି ।୧।
ଶ୍ରୀ ପଦ୍ମନାଭ ଦେବ ବିରଚିତ ।
''ବାଣଦରପଦଳନ'' ନାଟକ ।
କରନ୍ତୁ ଅଭିନୟ ହେ ସୁମତି ।୨।
ଯାହା ଲୋଡ଼ିବ ସେ ସବୁ ମୁହିଁ ।
ଜାଗ୍ରତରେ ଅନତି ବିଳମ୍ବେ ।
ପଠାଉଥିବି ତୁମ୍ଭର କତି ।୩।

ସୂ - ହଁ ! ଯଥାର୍ଥ କହିଅଛ । ''ବାଣ ଦର୍ପଦଳନ'' ନାଟକ ଅଭିନୟ କରି ଆମ୍ଭେମାନେ ଏହି ଭଦ୍ରଜନମାନଙ୍କର ପ୍ରୀତିଭାଜନ ହୋଇପାରିବା । ଆଚ୍ଛା ! ତୁମ୍ଭେ ନେପଥ୍ୟକୁ ଯିବା ପୂର୍ବରେ ଶରତ ଋତୁକୁ ଲକ୍ଷ କରି ଗୋଟିଏ ଗୀତ ଗାନକର ।

ନ - ଯେ ଆଜ୍ଞା ।

**ରାଗ ସାବେରୀ । ଆଦିତାଳ ।**

ଦେଖ ଏ ସୁଖଦ ସରତ୍-ଋତୁ କାଳ ।
ଦିଶଇ କି ସର୍ବ ଦିଗ ନିରମଳ ।୦।
ଭୂତଳ ଗାମିନୀ । ଗିରି ନିର୍ଝରିଣୀ ।
ଗର୍ଜି ସଦା ବହମାନ ।
କୂପ ସରୋବର । ସାଗର ଆବର ।
ପୂରିତ ହୋଇଣ ବାଜି, ସମୀରଣ,
ତରଙ୍ଗିତ ପ୍ରତିକୂଳ ।୧।
ଫୁଟି କାଶ କମଳ । ସୁଗନ୍ଧ ଉତ୍ପଳ ।
ସେଫାଳିକା କୁରୁବକ ।
କଦମ୍ବ କୁମୁଦ । କହ୍ଲାର ବନ୍ଧୁକ ।

ପୁଷ୍ପ ହରନ୍ତି ବିବେକ । ମଧୁପାନେ ।
ମାତିଛନ୍ତି ଅଳିଜାଳ ।୨।
ବିମଳ ରଜନୀଶ । ଉଜ୍ଜ୍ୱଳ ଆକାଶ ।
ତାରାବଳୀ ଶୋଭାଦିଶେ ।
ମୟୂର ରାବଇ । ସାରସ ଉଡ଼ଇ ।
ମନୋହରେ ବନ ଦେଶେ । ଖେଳୁଛନ୍ତି
ମରାଳୀ ସଙ୍ଗେ ମରାଳ ।୩।

ସୂ - ପ୍ରିୟେ ! ତୁମ୍ଭର ମଧୁରଗାନ ଶୁଣି ଆମ୍ଭେ ବିମୁଗ୍‌ଧ ହୋଇ ଅଛୁଁ । ଶୀଘ୍ରେ ଯାଇ ନେପଥ୍ୟରେ ସକଳ ବିଷୟ ଜାଗ୍ରତ କରିଦିଅ ।

ନ - ଯେ ଆଜ୍ଞା ।

ସୂ - ପ୍ରିୟେ ! ହେଟି ମହାଦେବ ପାର୍ବତୀଙ୍କ ସହିତ ଅପ୍‌ସରାମାନଙ୍କ ନୃତ୍ୟ ଦେଖୁଛନ୍ତି । ଚାଲ ଶୀଘ୍ର ଯବା । (ପ୍ରସ୍ଥାନ)

# ପ୍ରଥମାଙ୍କ

## [ପ୍ରଥମ ଦୃଶ୍ୟ]

(କୈଳାସ)

[ଶିବ ପାର୍ବତୀ ଉପବେଶନ, ନନ୍ଦୀ ଭୃଙ୍ଗୀ ସମୀପେ ଦଣ୍ଡାୟମାନ ଓ ଅପ୍ସରାମାନଙ୍କ ନୃତ୍ୟ ।]

ପା - ମହାରାଜ ! ଅପ୍ସରାମାନଙ୍କ ନୃତ୍ୟ ଦେଖି ମୁ ବଡ଼ ଆହ୍ଲାଦିତ ହୋଇଅଛି ।

ଶି - ପ୍ରିୟେ ! ଏମାନଙ୍କ ନୃତ୍ୟ ଦେଖି କାହାର ମନରେ ଆହ୍ଲାଦ ଜନ୍ମିନପାରେ ? ସେମାନଙ୍କ ହୃଦୟଗ୍ରାହୀ ଅଭିନୟ, ମନମୁଗ୍ଧକର ଏବଂ ତାନମାନ ପରିପୂର୍ଣ୍ଣ ମଧୁର ଗାନରେ ପାଷାଣବଦ୍ ହୃଦୟ ମଧ ତରଳି ଯାଇପାରେ ।

ପା - ଆଜ୍ଞା ବାସ୍ତବ ।

ଶି - ରେ ସେବକ ?

ଭୃ - ଆଜ୍ଞା ।

ଶି - ଅପ୍ସରାମାନଙ୍କୁ ଏଥର ଯିବାକୁ କହିଦେ ।

ଭୃ - ଯେ ଆଜ୍ଞା ! (ଅପସରାମାନଙ୍କ ପ୍ରତି) ଅପ୍ସରାମାନେ ! ତୁମ୍ଭେ ଯାଅ । (ନମସ୍କାର କରି ପ୍ରସ୍ଥାନ)

(ବାଣାସୁରର ପ୍ରବେଶ ଓ କରଯୋଡ଼ି ସ୍ତୁତିପଠନ)

(ଭୁଜଙ୍ଗପ୍ଲୁତ ବୃତ୍ତ )

ବା - ''ଜଟାକଟାହସଂଭ୍ରମଂ ଭ୍ରମନ୍ନିଲିମ୍ପନିର୍ଝରୀ ।
ବିଲୋଳବୀଚିବଲ୍ଲରୀବିରାଜମାନମୂର୍ଦ୍ଧନି ।
ଧଗଦ୍ଧଗଦ୍ଧଗଜ୍ଜ୍ୱଳଦ୍‌ଲଲାଟପଟ୍ଟପାବକେ
କିଶୋରଚନ୍ଦ୍ରଶେଖରେ ରତିଃ ପ୍ରତିକ୍ଷଣଂମମ ।''
''ନମାମି ପାର୍ବତୀପତିଂ ନମାମି ଜାହ୍ନବୀପତିଂ ।
ନମାମି ଭକ୍ତବତ୍ସଳଂ ନମାମି ରକ୍ତଲୋଚନଂ ।
ନମାମି ଚନ୍ଦ୍ରଶେଖରଂ ନମାମି ଦୁଃଖମୋଚନଂ ।
ତ୍ୱଦୀୟପାଦପଙ୍କଜଂ ସ୍ମରାମ୍ୟହଂ ମହେଶ୍ୱର ।''

(ଶିବପାର୍ବତୀଙ୍କି ନମସ୍କାର କରିବା)

ଶି - କଲ୍ୟାଣ କଲ୍ୟାଣ ! ବତ୍ସ ! ତୁ କିହେତୁ ଏଠାକୁ ଆସିଲୁ ?

ବା - ଦେବାଧିଦେବ ! ଆଜକୁ ଅନେକ ବର୍ଷହେଲା ମୁ କାହାରି ସଙ୍ଗେ ଯୁଦ୍ଧ କରିପାରିଲି ନାହିଁ । ଭବଦୀୟ ବରପ୍ରସାଦରୁ ମୁ ଯତ୍ପରୋନାସ୍ତି ବଳବୀର୍ଯ୍ୟ ପାଇବାର ଜାଣି ଶୁଣି ଇନ୍ଦ୍ର, ଚନ୍ଦ୍ର, ଦେବ, ମାନବ ସମସ୍ତେ ଭୀତ ହୋଇ କେହି ମୋ ସଙ୍ଗେ ଯୁଦ୍ଧ କରିବାକୁ ଆସୁନାହାନ୍ତି ଏଣୁ ଚରଣାରବିନ୍ଦରେ ନିବେଦନ ଏହି ଯେ ଏହି ରଣରଙ୍ଗ ଦାସର ସଙ୍ଗେ ଯୁଦ୍ଧ କରିବା ଲାଗି କୌଣସି ବୀରପୁରୁଷକୁ ଆଜ୍ଞାହେଉ ।

ଶି - ଆଚ୍ଛା ! ଯଦି ଯୁଦ୍ଧ କରିବାକୁ ତୋହର ଏଡ଼େ ଇଚ୍ଛା ହେଲା ତେବେ ହେଉ । ଅଳ୍ପଦିନ ଭିତରେ ଜଣେ ବୀର ପୁରୁଷ ତୋ ସଙ୍ଗେ ଯୁଦ୍ଧ କରିବାକୁ ଆସିବ । ଜାଣିଥା ଯେଉଁ ଦିନ ତୋହର କୁମାରଦତ୍ତ ଶିଖିଧ୍ୱଜ ଭଗ୍ନହେବ, ସେହି ଦିନ ସେ ବୀରପୁରୁଷ ଆସି ପହୁଞ୍ଚିବ । ତୁ ବର୍ତ୍ତମାନ ନିଜ ଭବନକୁ ଯାଅ ।

ବା - ଯେ ଆଜ୍ଞା । (ନମସ୍କାର କରି ପ୍ରସ୍ଥାନ)

(ଯବନିକାପତନ)

-୦-

## ଦ୍ୱିତୀୟ ଦୃଶ୍ୟ

(ଉଷା ଓ ଚିତ୍ରଲେଖା ଉପବେଶନ)

ଉ - ସଖି ! ଆଜକୁ କେତେଦିନ ହେଲା ମୋ ମନଟା ନିରନ୍ତର ବଡ଼ ଆକୁଳିତ ହୁଏ ।

ଚି - କାହିଁକି ସଖି ?

ଉ - କାହିଁକିଟି ମତେ କିଛି ଜଣାଯାଉନାହିଁ ସଖି !

ଚି - ସଖି ! ତୁମ୍ଭେ ମୋଠାରେ କପଟ କରୁଅଛ ?

ଉ - ନା ସଖି ମୋ ରାଣ । ମୁଁ କିଛି ବୁଝିପାରୁନାହିଁ ।

ଚି - ସଖି ! କେ ଶୁଣିଲେ ହସିବେ । ଯାହାର ମନକଥା ପୁଣି ତାହାକୁ ଜଣା ପଡୁନାହିଁ ।

ଉ - ନା ସଖି ମୁ ମିଛ କହୁନାହିଁ ।

ଚି - ମୁ ଜାଣିଲି ଯେ ।

ଉ - କିସ ଜାଣିଲ ସଖି ?

ଚି - ମୁ କହିବି ନାହିଁ ।

ଉ - ମୋ ରାଣ ସଖି କିସ ଜାଣଇ ?

ଚି - ତୁମ୍ଭ ମନର କଥା ତୁମ୍ଭେ ନ କହିଲେ ମୋ ମନର କଥା ମୁ କାହିଁକି କହିବି ?

ଉ - ମୁ ସତ କହୁଛି ସଖି ! ମୋ ମନରେ କି ହେତୁ ଏପରି ହେଉଛି ମୁ ଜାଣିପାରୁନାହିଁ ।

ଚି - ସଖି ମୁ ସତ କହୁଛି । ମୋ ମନରେ କି କଥା ଅଛି ତାହା ମୁ ମଧ୍ୟ ଜାଣିପାରୁନାହିଁ ।

ଉ - ମୋ ରାଣ ! କହିଲ ! କହିଲ !

ଚି - **ରାଗ ସାବେରୀ । ଆଦିତାଳ ।**

ପ୍ରାଣ ସଙ୍ଗିନି । ବାଇ ହେଲ କି ତୁମ୍ଭେ ସତେ ?
ତୁମ୍ଭ ମନରେ ରହି । ଥିବା କଥା କିପରି ।
ପଡ଼ିବ ଜଣା ମତେ ? ।୧।
ଟାପରା କରି ସିନା । ବୋଲି ଦେଲି ନବୀନା ।
ଧରି ବସିଛ କେତେ ।୨।
କେ ଶୁଣିଲେ ହସିବେ । କର ତାଳି ମାରିବେ ।
ଆତୁର କେଣେ ଏତେ ? ।୩।

ଉ - ନା ସଖି ! ତୁମ୍ଭେ ଅବଶ୍ୟ ମୋ ମନର କଥା ଅନୁମାନ କରିଅଛ । ନ କହିଲେ ମୁ ଛାଡ଼ିବି ନାହିଁ ।

ଚି - ଛାଡ଼ିବ ନାହିଁ ?

ଉ - ନା ।

ଚି - ତେବେ ଶୁଣ ।

ଉ - କହ ସଖି ।

ଚି - ଆପଣାର ବିବାହ କଥା ଲାଗି ତୁମ୍ଭେ ମନରେ ବ୍ୟଥିତା ହେଉଅଛ । ସତ ନା ମିଛ ?

(ଉଷା ଲଜ୍ଜାରେ ନତମସ୍ତକାହେବା)

ଚି - ସେ କଥାତ ଲାଜ କାହିଁକି ?

ଉ - (ନତମସ୍ତକା)

ଚି - ସଖି ! ଏ ଛାରକଥା ସକାଶେ ଏଡ଼େ ଆକୁଳ କାହିଁକି ? ଏତେ ଲଜ୍ଜା କାହିଁକି ? ଯଦି ତୁମ୍ଭେ ନିଜ କଳଦେବୀ ପାର୍ବତୀଙ୍କଠାରେ ପ୍ରାର୍ଥନା କରିବ

ତେବେ ସେ ତୁମ୍ଭର ବିବାହ ଅଳ୍ପକାଳରେ କରାଇଦେବେ । ତାହାଙ୍କ ଓ ମହାଦେବଙ୍କ ପ୍ରସାଦରୁ ପରା ତୁମ୍ଭ ପିତା ଏଡ଼େ ପରାକ୍ରମୀ ? ତୁମ୍ଭେ କାହିଁକି ଚିନ୍ତାକର ? ଚାଲ ଯିବା ତାହାର ଉପାୟ କହିବି । (ପ୍ରସ୍ଥାନ ଓ ଯବନିକାପତନ)

## ତୃତୀୟ ଦୃଶ୍ୟ

(କୈଳାସ ନିକଟସ୍ଥ ଉପବନ)

ଉ – (ସ୍ୱଗତ) ଚିତ୍ରଲେଖାଙ୍କ ଉପଦେଶ ଶୁଣି ଜଗଜ୍ଜନନୀ ପାର୍ବତୀଙ୍କି ପ୍ରାର୍ଥନା କରିବା ସକାଶେ ଏହି ଶାନ୍ତିମୟ ଉପବନରେ ଆସି ପହୁଞ୍ଚିଲି । ପ୍ରାର୍ଥନା କଲେ ସେ ପ୍ରସନ୍ନା ହେବେ । ଏଥିରେ କିଛି ସନ୍ଦେହ ନାହିଁ । ମାତ୍ର କିସବୋଲି ତାହାଙ୍କ ଛାମୁରେ ଜଣାଇବି ? ମୁ ଜାଣିପାରୁନାହିଁ । (କିଛି କାଳାନ୍ତର) ହଁ ! ସେତ ଅନ୍ତର୍ଯ୍ୟାମିନୀ ମୋର ମନର କଥା ମାତ୍ର ବୁଝିପାରିବେ ନାହିଁ କି ? (ସ୍ମରଣ କରିବା)

**ରାଗ ଧନାଶ୍ରୀ । ଆଦିତାଳ ।**

ଅମ୍ବିକେ । ବରଦେ । ବରଦେ । ଶ୍ରୀଚଣ୍ଡିକେ ।
ସୁଖଦେ । ଶୁଭଦେ ବିପଦ ବାରିଣି ।
କପର୍ଦ୍ଦିନି । ନିଖିଳ ଜଗତ କାରିଣି ।୦।
ଗୁଣଧାନି । ଦୁରିତ ନାଶିନି । ଭୁବନ ମୋହିନି ।
ବିପଦ ବାରିଣି । କପର୍ଦ୍ଦିନି । ନିଖିଳ ଜଗତ କାରିଣି ।୧।
ଶଙ୍କରିହେ । ପଙ୍କଜାକ୍ଷି । ଶଙ୍କରଙ୍କ ଅଙ୍କ ଶୋଭିନୀ ।
ଗିରି ତନୟେ । ଅୟି ବିଜୟେ ପତିତ ପାବିନି ।
ବିପଦ ବାରିଣି । କପର୍ଦ୍ଦିନି । ନିଖିଳ ଜଗତ କାରିଣି ।୨।
ଭବ ତରଣି । ହେ ଜନନି । ଶରଣ ପାଳିନି ।
ଦୁଃଖନିକର । ମୋଚନ କର । ମୋର ମା । ହେଉମା ।
ପରମା । ପରମ ମୋକ୍ଷଦାୟିନି ।
ବିପଦ ବାରିଣି । କପର୍ଦ୍ଦିନି । ନିଖିଳ ଜଗତ କାରିଣି ।୩।

(ପାର୍ବତୀଙ୍କ ଆବିର୍ଭାବ)

ଉ - ମାତଃ ! ନମସ୍କାର ।

ପା - ତୁମ୍ଭର ମଙ୍ଗଳ ହେଉ । ରାଜନନ୍ଦିନୀ ଉଷେ ! ତୁମ୍ଭେ ମତେ କାହିଁକି ସ୍ମରଣାକଲ ?

ଉ - ମାତଃ ଆପଣ ଅନ୍ତର୍ଯ୍ୟାମିନୀ ଅଟ । ମୁଁ ଛାମୁରେ କଣ ଜଣାକରିବି ? (ନତମସ୍ତକା)

ପା - ଉଷେ ! ଲଜ୍ଜା କାହିଁକି ? ମୁଁ ତୁମ୍ଭର ମନୋଗତକଥା ବୁଝିପାରିଅଛି । କିଛି ଚିନ୍ତା କର ନାହିଁ । ଅଳ୍ପଦିନରେ ଅନୁରୂପ ପାତ୍ର ପ୍ରାପ୍ତହୋଇ ସୁଖରେ କାଳହରଣ କରିବ ତୁମ୍ଭେ ଶୟନ କରିଥିବା ସମୟରେ ଯେଉଁ ବୀରପୁରୁଷଙ୍କୁ ସ୍ୱପ୍ନରେ ଦେଖିବ ସେ ତୁମ୍ଭର ପତି ହେବେ । ଏହା ମାତ୍ର ମନେ ରଖିଥାଅ । ବର୍ତ୍ତମାନ ଯାଅ କିଛି ଚିନ୍ତା କର ନାହିଁ ।

ଉ - ଯେ ଆଜ୍ଞା ! (ପାର୍ବତୀଙ୍କ ଅନ୍ତର୍ଦ୍ଧାନ ଓ ଚିତ୍ରଲେଖାର ପ୍ରବେଶ)

ଚି - ସଖି ଉଷେ ! କ'ଣ ମନୋରଥ ସିଦ୍ଧ ହେଲା ?

ଉ - (ଲଜ୍ଜାରେ) ସଖି -

ଚି - ମୁଖ ବିଳାସରୁ ଜଣା ଗଲାନି । ଲଜ୍ଜା କାହିଁକି ? ତେବେ ପାର୍ବତୀ କ'ଣ ଆଜ୍ଞା ଦେଲେ ?

ଉ - ସଖି ! ସେ କହିଲେ ତୁମ୍ଭର ଶୟନ ସମୟରେ ସ୍ୱପ୍ନରେ ଯେଉଁ ବୀରପୁରୁଷଙ୍କୁ ଦେଖିବ ସେ ତୁମ୍ଭର ପତି ହେବେ ।

ଚି - ତେବେ ଚାଲ ମନୋରଥ ସିଦ୍ଧ ହେଲା ।

(ପ୍ରସ୍ଥାନ ଓ ଯବନିକାପତନ)

●

# ଦ୍ୱିତୀୟାଙ୍କ

## [ପ୍ରଥମ ଦୃଶ୍ୟ]

(କୈଳାସ)

(ବାଣ ସିଂହାସନୋପରି ଉପବେଶନ । ପାର୍ଶ୍ୱେ କୁମ୍ଭାଣ୍ଡ ଓ ଘଣ୍ଟାକର୍ଣ୍ଣ ଉପବେଶନ)

ବା - ସଚିବ ଶ୍ରେଷ୍ଠ କୁମ୍ଭାଣ୍ଡ ! ଦୈତ୍ୟକୁଳ ହିତାକାଂକ୍ଷୀ ଦେବାଧି ଦେବ ଶୂଳପାଣି ଅଳ୍ପ ଦିନ ହେଲା ଆମ୍ଭଙ୍କୁ ଯେ ଅନୁକୂଳ ବର ପ୍ରଦାନ କରିଅଛନ୍ତି ତାହା ତୁମ୍ଭଙ୍କୁ ଜଣା ?

କୁ - ଦାନବେନ୍ଦ୍ର ! ମହାଦେବଙ୍କ କୃପାରୁ ଆପଣ ତ୍ରିଲୋକ ବିଜୟୀ ହୋଇଅଛନ୍ତି । ଫେରି ତାହାଙ୍କଠାରୁ ଆଉ କି ବର ପାଇଅଛନ୍ତି ?

ବା - ଅମାତ୍ୟ ପୁଙ୍ଗବ ! ଅନେକ ଦିନାବଧି କାହାରି ସଙ୍ଗେ ଯୁଦ୍ଧ ନ କରି ବଡ଼ ଉତ୍କଣ୍ଠିତ ହେଉଥିଲୁଁ । ତେଣୁ ଅତି ଆତୁରରେ ନୀଳକଣ୍ଠଙ୍କ ଛାମୁରେ ନିବେଦନ କରିବାରୁ ସେ କିଞ୍ଚିତ୍ ହାସ ପ୍ରକାଶକରି କହିଲେ ‘‘ଅଳ୍ପ ଦିନରେ ତୋହର ମନୋରଥ ସିଦ୍ଧ ହେବ ! ଯେବେ ତୋହର କୁମାରଦତ୍ତ ମୟୂରଧ୍ୱଜ ଭଗ୍ନ ହୋଇ ପଡ଼ିବ ତେବେ ତୋହର ସମକକ୍ଷ ଜଣେ ଯୋଦ୍ଧା ଆସି ତୋହର ରଣପିପାସା ଶାନ୍ତିକରିବ’’ ଅମାତ୍ୟ ଶ୍ରେଷ୍ଠ ! ମହାଦେବଙ୍କ ଠାରୁ ଏହି ବର ଲାଭ କରି ଯତ୍ପରୋନାସ୍ତି ପ୍ରୀତି ହୋଇଅଛୁ ।

ଘ - ଦାନବେନ୍ଦ୍ର ! କ୍ଷମାକରନ୍ତୁ । ଶ୍ରୀ ଛାମୁ ତ୍ରିଭୁବନ ବିଜୟୀ ଅଟନ୍ତି । ଶଚୀପତି ଇନ୍ଦ୍ର ଆପଣଙ୍କ ଭୟରେ ସବଦା ତ୍ରସ୍ତ । ଦିକ୍‌ପାଳଗଣ ଭୃତ୍ୟରପରି ଶ୍ରୀ ଛାମୁଙ୍କ ଆଜ୍ଞା ପରିପାଳନରେ ନିରତ ତତ୍ପର । ଶ୍ରୀଛାମୁ ଏଠାରେ ବିରାଜମାନ କରି ଅମରାବତୀର ସୁଖ ଭୋଗ କରନ୍ତି । ଏପରିସ୍ଥଳେ କି ହେତୁ ଏ ରଣକଣ୍ଡୁ ଉପସ୍ଥିତ ହୋଇଅଛି ମୁ ଜାଣିନପାରେ । ବିଧାତା ଆମ୍ଭ ଅସୁରକୁଳକୁ ଏଡ଼େ ଚଞ୍ଚଳପ୍ରକୃତି ବିଶିଷ୍ଟ କରିଅଛନ୍ତି ଯେ ସେମାନେ ଏକ ମୁହୂର୍ତ୍ତ ମଧ୍ୟ ସ୍ଥିର ଭାବେ ରହିପାରନ୍ତି ନାହିଁ ।

ବା - ଘଣ୍ଟାକର୍ଣ୍ଣ । ତୁମ୍ଭେ ବୃଦ୍ଧ । ତୁମ୍ଭର ସକଳ ଇନ୍ଦ୍ରିୟ ଅବଶ ଶରୀର ଶିଥିଳ । ପୂର୍ବର ଓଜ ବଳ ସବୁ ଗଲାଣି । ସୁତରାଂ ଶାନ୍ତିଦେବୀର କୋଳରେ

ବିଶ୍ରାମ ନେବାକୁ ତୁମ୍ଭେ ଚାହଁ । ଦାନବମାନେ କାପୁରୁଷ ଓ ଅଳସବ୍ୟକ୍ତିମାନଙ୍କ ପରି କୁତ୍ରାପି କାଳହରଣ କରନ୍ତି ନାହିଁ, କାର୍ଯ୍ୟ ମାତ୍ର ସେମାନଙ୍କ ଜୀବିକା । ଏହି ପରିବର୍ତ୍ତନଶୀଳ ଜଗତରେ ସମସ୍ତେ ଯଶ ପୌରୁଷ ଅର୍ଜିବାକୁ ଯତ୍ନ କରୁଥାନ୍ତି । ଏପରି କରିବା କି ତୁମ୍ଭ ମତରେ ଅବିଧି ? (କୁମ୍ଭାଣ୍ଡପ୍ରତି) କି ମନ୍ତ୍ରିନ୍ କୁମ୍ଭାଣ୍ଡ ! ଯୁଦ୍ଧ କରି ଯଶ ଲାଭ କରିବା କି ଅବିଧି ଅଟେ ?

କୁ - ଆଜ୍ଞା ନା ! ନିଶ୍ଚେଷ୍ଟବ୍ୟକ୍ତି ଅତୀବ ଅକର୍ମ୍ମଣ୍ୟ । ସେ ଆପଣାର ଉନ୍ନତ ପଥକୁ ନିଜେ କଣ୍ଟକାକୀର୍ଣ୍ଣ କରେ ସୁତରାଂ ତାହାର କୌଣସି କାଳେ ଶ୍ରୀବୃଦ୍ଧିର ସମ୍ଭାବନା ନାହିଁ । କିନ୍ତୁ ଦୈତ୍ୟେନ୍ଦ୍ର ! ମହାଦେବ ଛାମୁଙ୍କୁ ଯେଉଁ ବର ପ୍ରଦାନ କରିଅଛନ୍ତି ତାହା ଭାବି ଦେଖିଲେ କିଛି ସନ୍ଦେହ ଜାତହୁଏ ।

ବା - କାହିଁକି ସନ୍ଦେହ ? ଦେବାଧି ଦେବଙ୍କ ବରରେ ସନ୍ଦେହକର କଥା କ'ଣ ? ଅମଙ୍ଗଳ ଆଶଙ୍କା କର ନା ? ଭଗବାନ ଭୋଳାନାଥ ଯାହାର ପିତା, ବଳବାନ କାର୍ତ୍ତିକେୟ ଯାହାର ଭ୍ରାତା ଏବଂ ଆଦିଶକ୍ତି ଭଗବତୀ ଯାହାର ଜନନୀ ତାହାର କି କେବେ ଅମଙ୍ଗଳ୍ ଘଟିପାରେ ? ଏ ବୃଥା ସନ୍ଦେହ, ବୃଥା ଆଶଙ୍କା । ସେ ଯାହା ହେଉ ତୁମ୍ଭେ ଶୀଘ୍ର ଯାଇ ଗଡ଼ପରିଖାମାନ ଉତ୍ତମରୂପେ ଜଗି ରହିଥିବା ନିମନ୍ତେ ସେନାପତିଙ୍କି ଆଦେଶ ଦେଇ ଆସ । ଆମ୍ଭେ ଅନ୍ତଃପୁରକୁ ଯାଉଁ । (ଉଠିବା)

କୁ - ଯେ ଆଜ୍ଞା ।

(ପ୍ରସ୍ଥାନ ଓ ଯବନିକା ପତନ)

## ଦ୍ୱିତୀୟ ଦୃଶ୍ୟ

(ଉଷା ଓ ଚିତ୍ରଲେଖା)

ଉ - ସଖି ! ଏ ସଂସାରରେ ସ୍ତ୍ରୀଜନ୍ମପରି ହୀନଜନ୍ମ ନଥିବପରା ?

ଚି - ଆଜି ଏଡ଼େ ବିରକ୍ତ କାହିଁକି ସଖି ?

ଉ - ନା ସଖି ମୁ ବିରକ୍ତ ହେଉନାହିଁ । ତୁମ୍ଭେ ବିଚାର କର ଜନ୍ମଠାରୁ ମରଣ ପର୍ଯ୍ୟନ୍ତେ ପରାଧୀନା ହୋଇ ରହିବା କି ସୁଖର ବିଷୟ ଅଟେ ?

ଚି - କଅଣ ପୁରୁଷମାନଙ୍କ ପରି ସ୍ୱେଚ୍ଛାରେ ଥିବାକୁ ଇଚ୍ଛା କରନା ?

ଉ - ନା ସଖି ? କେବଳ ପରାଧୀନା ହୋଇ ରହିବା ଯେପରି ଅବାଞ୍ଛନୀୟ କେବଳ ସ୍ୱେଚ୍ଛାଚାରିଣୀ ହେବା ମଧ୍ୟ ସେପରି ଅନୁଚିତ ।

ଚି - ତେବେ ଅର୍ଦ୍ଧନାରୀ ହେବାକୁ ଇଚ୍ଛା ପରା ?

ଉ - ତୁନିହୁଅ ସଖି ! ତୁମ୍ଭଙ୍କୁ ସବୁ କଥା ହାସ୍ୟ ହୋଇଛି ।

ଚି - ହାସ୍ୟ ନ କରି କଅଣ କରିବି ? କାହାକୁ ନ ଥିବା କଥା ତୁମ୍ଭଙ୍କୁ କାହିଁକି ? ଆଉ କିଛି ବିଷୟ ନାହିଁ ପରା । ଏହି କଥା ହେବାକୁ ଏତେ ରାତି ପର୍ଯ୍ୟନ୍ତେ ଚେତା ରହିଛନା ?

ଉ - ସଖି ଏବେ କେତେ ରାତି ହେବ ?

ଚି - ପ୍ରାୟ ବାରଟା ସମୟ ।

ଉ - ତେବେ ଶୟନ କରିବା ସମୟ ହେଲାଣି ।

ଚି - ହେଲାଣି ନା ବଳିଗଲାନି ?

ଉ - ତେବେ ମୁ ଶୟନାଗାରକୁ ଯାଏ । (ପ୍ରସ୍ଥାନ)

ଚି - (ସ୍ୱଗତ) ଅବଶ୍ୟ ଆପଣାର ବିବାହ ବିଷୟ ଘେନି ଏ ଏତେ କଥା କହୁଅଛନ୍ତି । ନୋହିଲେ କି ନିରନ୍ତର ସ୍ତ୍ରୀନିନ୍ଦା ଓ ପୁରୁଷସ୍ତୁତି କରି ବସିଥାନ୍ତେ ? ପାର୍ବତୀଙ୍କ ଠାରୁ ବର ପାଇ ମଧ୍ୟ ଏହାଙ୍କର ଆତୁରତା ଊଣା ହୋଇନାହିଁ । ହେଉ ବର୍ତ୍ତମାନ ଏ ଶୟନାଗାରରେ କଣ କରୁଥିବେ ଦେଖିବା । (ପ୍ରସ୍ଥାନ)

(ଉଷା ପର୍ଯ୍ୟଙ୍କୋପରି ଶୟନା ଓ ଚିତ୍ରଲେଖା କିୟଦ୍ଦୂରେ ଦଣ୍ଡାୟମାନ)

ଉ - (ସ୍ୱପ୍ନରେ) କିଏ ? ଏକି ? ମହାଶୟ ଦୂର ହୁଅ ! ଦୂର ହୁଅ ! ମହାରାଜ -

ଚି - (ସ୍ୱଗତ) ହଁ ମୁ ଯାହା ଅନୁମାନ କରୁଥିଲି ତାହା ଯଥାର୍ଥ ।

ଉ - (ସ୍ୱପ୍ନରେ) ମହାରାଜ ! କେ ଦେଖିଲେ କଣ ବୋଲିବେ ? ଦୂର ହୁଅନ୍ତୁ ।

ଚି - (ନିକଟକୁ ଯାଇ) ସଖି ! ସଖି !

ଉ - (ଚମକି ଉଠି) ତୁମ୍ଭେ କି ସଖି ?

ଚି - ହଁ ମୁ ସିନା ! ତୁମ୍ଭେ କି ସ୍ୱପ୍ନ ଦେଖିଲ ?

ଉ - ହଁ ସଖି ।

ଚି - ସ୍ୱପ୍ନ ଦେଖି ଏଡ଼େ କାତର ?

ଉ - କେଜାଣିଚି ସଖି ମୋ ମନ ବଡ଼ ଆକୁଳିତ ହୋଇଯାଉଅଛି ।

ଚି - ତେବେ କିସ ବୋଲି ସ୍ୱପ୍ନ ଦେଖିଲ ?

ଉ - କିଛି ମନେ ନାହିଁ ସଖି ?

ଚି - ମୋଠାରେ କପଟ କାହିଁକି ?

ଉ - କିଛି ନାହିଁ ସଖି ।

ଚି - ମୁ ସ୍ୱପ୍ନକଥା କହିବାକୁ ତ ଏପରି ସତ ହେଲେ ଆଉ କହନ୍ତି ।

ଉ - ସଖି !

ଚି - ଭୟ କାହିଁକି ସଖି ? ମୋଠାରେ କହିବାକୁ ଅଭ୍ୟନ୍ତର କି ?

ଉ - (ରାଗ ବିହାଗ । ରୂପକ ତାଳ ।)

ପ୍ରାଣସଖି ସପନେ ଯା ଦେଖିଲି ମୁହିଁ ।
ତା କହି ନୁହଇ ।୦।
ହରଷ ହୋଇ କେହି ଜଣେ ଆସି ସଧୀରେ ।
ମୋର ପାଖରେ ବସିଲେ ଭୁଜେ କର ଦେଇ ।୧।
ଉରରେ ଉର ଭିଡ଼ି ସୁଧାବଚନ କହି ।
ଗଣ୍ଡେ ମୋ ଚୁମ୍ବିଲେ କେତେ ଭଙ୍ଗି ଦେଖାଇ ।୨।
କଞ୍ଜନୟନ ଢାଳି ରଦ ବାସ ପାନରେ ।
ମୋଦରେ ମତ୍ତ ହେଲେ ମାଦକୀପରି ହୋଇ ।୩।
କାତରେ 'ଦୂର ହୁଅ' ବୋଲି ଦେଲି ଲାଜରେ ।
ଅନ୍ତର ହେଲେ କି ତରତରେ କେଣେ ଯାଇ ।୪।
(କହି ଚିନ୍ତାରେ ବସିବା)

ଚି - ସଖି ! ତେବେ ଏଡ଼େ ଚିନ୍ତା କାହିଁକି ? ସ୍ୱପ୍ନରେ ତୁମେ ଯେଉଁ ପୁରୁଷକୁ ଦେଖିବ ସେ ତୁମ୍ଭର ପତି ହେବେ ବୋଲି ପାର୍ବତୀ କହିଥିଲେ ପରା ?

ଉ - (ମନେ ପକାଇ) ହଁ ସଖି ଯଥାର୍ଥ । ସେ କଥା ଏବେ ମନ ପଡ଼ିଲା ।

ଚି - ତେବେ ଆଉ ଚିନ୍ତା କାହିଁକି ?

ଉ - ସେ କେବେ ପତି ହେବେ ସିନା, ବର୍ତ୍ତମାନ ଥରେ ତାହାଙ୍କୁ ମୋ ପାଖକୁ ଆଣି ମୋହର ଆକୁଳିତ ମନ ସାନ୍ତ୍ୱନାକର ସଖି ।

ଚି - ଭଲ ହୋଇଛି ! ତୁମ୍ଭର ମନମୋହନଙ୍କୁ ମୁ ସ୍ୱପ୍ନରେ ସୁଦ୍ଧା ଦେଖିନାହିଁ । ମୁ କିପରି ତାହାଙ୍କୁ ଆଣି ତୁମ୍ଭ ପାଖରେ ଭେଟାଇବି ?

ଉ - ସଖି ତାହାର ଉପାୟ ତୁମ୍ଭେ ଏକା ଜାଣ । ଯଦି ମୋତେ ଜୀବିତାବସ୍ଥାରେ ଦେଖିବାକୁ ତୁମ୍ଭର ଇଚ୍ଛାଥାଏ ତେବେ କିପରି ହେଲେ ତାହାଙ୍କୁ ମୋତେ ଥରେ ଦେଖାଇଦେବ ।

ଚି - ସଖି ଏଡ଼େ ଅଧୈର୍ଯ୍ୟ କାହିଁକି ? ମନକୁ ସ୍ଥିର କର ତାହାଙ୍କର ନାମ ଧାମ ନୋହିଲେ ତାହାଙ୍କର ଛବି ବର୍ଣ୍ଣନା କରି କହିଲେ ସେ ଆସିବାର ବନ୍ଦୋବସ୍ତ କରିବା ?

ଉ - ମୋତେ କିଛି ଜଣା ନାହିଁ । ସ୍ୱପ୍ନରେ ଯେ ରୂପ ଦେଖିଥିଲି ତାହା ମତେ ଭଲ ରୂପେ ସ୍ମରଣା ହେଉନାହିଁ । ମୋ ମନର ତ ସ୍ଥିରତା ନାହିଁ ମୁଁ କିସ କହିପାରିବି ? ସଖି !

ଚି - ଆଚ୍ଛା ମୁଁ କେତେକ ରାଜକୁମାରଙ୍କ ଚିତ୍ରପଟ ଲେଖି ରଖିଅଛି । ତୁମ୍ଭଙ୍କୁ ସେ ସବୁ ଦେଖାଇବି । ଯଦି ସେମାଙ୍କରୁ କେ ତୁମ୍ଭର ମନୋହାରୀ ହୋଇଥିବେ କହିଲେ ଆଣିବା ପ୍ରଯତ୍ନ କରିବି । ଏହି କ୍ଷଣି ମୁ ଯାଇ ଚିତ୍ରପଟଗୁଡ଼ିକ ଘେନି ଆସିବି । ତୁମ୍ଭେ ଏଠାରେ ବସିଯାଅ ।

ଉ - ଶୀଘ୍ର ଆସିବଟି ।

ଚି - ହେଟି ଏହିକ୍ଷଣି ଆସିବି । (ପ୍ରସ୍ଥାନ)

ଉ - (ସ୍ୱଗତ)

**ରାଗ ଶାହାନା । ରୂପକ ତାଳ ।**

ଆରେ ବିଧାତା କେଡ଼େ ପରୁଷ ।<br>
ସତେ ତୋହରତ ଅଟଇ ମାନସ ।୦।<br>
ଭୋକିଲା ଲୋକକୁ ଦେଇ ପୀୟୂଷ ।<br>
ଭୁଞ୍ଜିବା ସମୟେ ମାରିଲୁ କୁଳିଶ ।୧।<br>
ଲୋଡୁଥିଲି କି ମୁଁ ବଳାଇ ଆଶ ।<br>
ରଖାଇଲୁ ଏବେ କରିଣ ନିରାଶ ।୨।

ମୁଁ ହତଭାଗିନୀ କେଡ଼େ କର୍ମ କଲି । କାହିଁକି ଦୂର ହୁଅ ବୋଲି କହିଲି ? ଆପଣା କର୍ମର ଫଳ ଏବେ ଭୋଗ କରୁଅଛି ।

(ଚିତ୍ରଲେଖାର ପ୍ରବେଶ)

ଚି - ସଖି ! ଘଡ଼ିକ ଭିତରେ ଏତେ ଆତୁର ? ହେଟି ଦେଖ ।

(ଚିତ୍ରପଟ ଦେଖାଇ)

**ରାଗ ଖମାଚ । ଅଟତାଳ ।**

ପଙ୍କଜାକ୍ଷି ଏ ମାଳବେଶ ଖ୍ୟାତ ପୁଷ୍କର ନାମରେ

ଏହି ମୂର୍ତ୍ତିକି ତୁମ୍ଭେ ଦେଖିଲ ସଙ୍ଗିନି କହ ସ୍ୱପ୍ନରେ ? ।୧।

ଉ - ନା ସଖି ! ଏ ନୁହନ୍ତି ।

ଚି - (ଅନ୍ୟ ପଟ ଦେଖାଇ)

ସଙ୍ଗିନି ଏ ଉତ୍କଳେଶ ରାଜବଂଶ ଅବତଂସରେ ।

ଅଙ୍ଗ ଦେଶର ଚକ୍ରବର୍ତ୍ତି ଏ ତପ୍ତକାଞ୍ଚନ ମୂର୍ତ୍ତିରେ ।୨।

ଉ - ନା ସଖି ! ଏ ନୁହନ୍ତି ।

ଚି - (ଅନ୍ୟ ପଟ ଦେଖାଇ)

ଚୋଳ ଦେଶର ନାଥ ଏ ସଖି ଭୂଷିତ ସବୁ ଗୁଣରେ

ବଙ୍ଗଈଶ ଏ ଏହି ରୂପକି ଦେଖିଲ କହ ସତ୍ୱରେ ? ।୩।

ଉ - ଏ ମଧ୍ୟ ନୁହନ୍ତି ସଖି !

ଚି - (ଅନ୍ୟ ପଟ ଦେଖାଇ)

ଏହି ରୂପକି ସଙ୍ଗିନି ଅଯେ ହେଜ ତୁମ୍ଭର ମନରେ ?

ଧୀର ବୀର ଏ ମାର ପୁତ୍ର ତୁଲ୍ୟ ନାହିଁ ତିନିଲୋକରେ ।୪।

ଉ - ନାଁ-ଆଁ-ଏ ନୁହନ୍ତି ପରା ! କାହିଁ- ମୁଁ ଦେଖେ (ପଟ ନିଜ ହସ୍ତରେ ଧରି କିଛି କାଳ ନିରୀକ୍ଷଣ କରି) ହ ସଖି ! ଏ ଏକା ! ଏ ଏକା ମୋ ପ୍ରାଣକୁ ହରି ନେଇ ଅଛନ୍ତି ।

**ରାଗ ଭୈରବୀ । ରୂପକ ତାଳ ।**

ସତେକି ମୋ ପାପନେତ୍ରେ ଦେଖିବି ଗୋ । ସଙ୍ଗିନି ।୦।

ନିନ୍ଦା କରେ ବିକଶିତ । ନିରଜ ଅତି ଲଳିତ ।

କାଶ ହାସରେ ପୂରିତ । ଏ ଲପନ ।୧।

ଉଚ୍ଚ ବିଶାଳ ସୁଗଠିତ । କୁଙ୍କୁମରେ ମାଳି ଯୁକତ ।

ନାନା ପୁଷ୍ପ ମାଳେ ଶୋଭିତ । ବକ୍ଷ ଦେଶ ।୨।

ପ୍ରେମ ଭରେ ଉତ୍ତୋଳିତ । କରିକର ବିଣିଛି ତ ।
ଜାନୁ ପର୍ଯ୍ୟନ୍ତ ଲମ୍ବିତ । ଏ ବାହୁକୁ ।୩।
ଚାରୁ ସୁରଙ୍ଗେ କଷାୟତ । ହୀରକ ନଖାଳି ରାଜିତ ।
ମଦନ ଗର୍ବ ଖର୍ବୀ କୃତ । ଏ ଚରଣ ।୪।

ଚି - କିଛି ଚିନ୍ତା କର ନାହିଁ । ଏହାଙ୍କୁ ମୁ ଖୋଜି ଆଣି ଅବଶ୍ୟ ଭେଟାଇବି । ଏ କାମଦେବଙ୍କ ପୁତ୍ର । ଏହାଙ୍କର ନାମ ଅନିରୁଦ୍ଧ । ଏ ଦ୍ୱାରକାରେ ଅଛନ୍ତି । ଜଗଜ୍ଜନନୀ ତୁମ୍ଭଙ୍କୁ ଉପଯୁକ୍ତପାତ୍ର ଘଟାଇ ଅଛନ୍ତି । କିଛି ଚିନ୍ତା କରନାହିଁ ।

ଉ - ସଖି ! ତୁମ୍ଭମନ । କିପରି ଏହାଙ୍କୁ ଏଠାକୁ ଆଣିବ ତାହା ତୁମ୍ଭଙ୍କୁ ଲାଗିଲା ।

ଚି - କିଛି ଭୟ ନାହିଁ ସଖି ! ମୁଁ ଯାଇ ସମସ୍ତ କଥା ବନ୍ଦୋବସ୍ତ କରିବି- ବର୍ତ୍ତମାନ ତୁମ୍ଭେ ଶୟନ କରିବାକୁ ଯାଅ-ମୁଁ ମଧ୍ୟ ଯାଏ ।

(ପ୍ରସ୍ଥାନ ଓ ଯବନିକାପତନ)

## ତୃତୀୟ ଦୃଶ୍ୟ

(ଚିତ୍ରଲେଖାର ଦ୍ୱାରକା ଗମନ)

(ବନପଥ)

ଚି - (ସ୍ୱଗତ) ଚନ୍ଦ୍ରଙ୍କୁ ଧରିବାକୁ ବାଳକର ଇଚ୍ଛା । ତାହାଙ୍କୁ ଆଣିବାରତ ସହଜ ବ୍ୟାପାର ନୁହେଁ ।

**ରାଗ ଆନନ୍ଦ ଭୈରବୀ । ରୂପକତାଳ ।**

ଜାଣିନପାରେ ମୁହିଁ କିପରି ଯିବି ଦ୍ୱାରକା ।
ଭାବେ ଯେତିକି ଲାଗେ ତେତିକି ମାନସେ ଦକା ।୦।
ଚେଷ୍ଟିତ ଥିବ ନିରନ୍ତରେ । ଚଉଦିଗ ଯଦୁଗଣରେ ।
କିପରି ମୁହିଁ ସେ ଭିତରେ ସାହାସିବି ଏକା ? ।୧।
ପରିଖା ଥିବତ ଗଭୀର । ପରବତ ପରି ପ୍ରାଚୀର ।
ପଶି ନ ପାରିବ ଯହିଁ ଅଲକ୍ଷେ ମକ୍ଷିକା ।୨।
କି ବିପତ୍ତି ଆସି ପଡ଼ିଲା । ଦେଖିଲେ ଅଟେ ମୁ ଅବଳା
ନଗଲେ ବୁଡ଼ିବ ଭେଳା ହେବ କେ ମୋ ସଖା ? ।୩।

(କିଛି କାଳ ଆଲୋଚନା କରି) ହଁ-

ଅଛନ୍ତି ବିରଞ୍ଚି କୁମର । ମୋର ପରମ ଗୁରୁବର ।
ସ୍ମରିବି ଉପାୟ କହିବେ ମୋତେ ସେହି ଏକା ।୪।

(କିଛିକାଳ ସ୍ମରଣା କରିବା)

ରାଗ ନାଦନାମକ୍ରିଆ । ଆଦିତାଳ ।

ଘେନି କରୁଣା ନିଧେ ମୋହର ବନ୍ଦନ ।
ଦିଅ ଦରଶନ ହେ ଭାରତ ନନ୍ଦନ ।୦।
ଖର୍ବ ହୋଇ ମୁ କରେ ଭୀକର ସାହସ ।
କିପରି ମୋର ଏବେ ପୂରିବ ମାନସ ? ।୧।
ଦେବ ତବ ଦାସୀକି ପାସୋରି ଦେଲ କି ?
ତାପସ ଗଣ-ବର ହେ ବସିଛି ବିଲୋକି ।୨।
ହେଉ କରୁଣା ଥରେ ଆହେ ବରଯତି ।
ଆଉ ଅଳସ କଲେ ବୁଡ଼ିବ ସମ୍ପତ୍ତି ।୩।

(ନାରଦଙ୍କ ପ୍ରବେଶ)

ଚି - ନମସ୍କାର ପ୍ରଭୋ ।

ନା - କଲ୍ୟାଣ-କଲ୍ୟାଣ-ଚିତ୍ରଲେଖେ- ତୁମ୍ଭେ ମୋତେ କି ହେତୁ ସ୍ମରଣା କଲ ?

ଚି - ଭଗବାନ ! ଆଉ କିଛି ନୁହେଁ । ଶୋଣିତ ପୁରାଧିପତି ଅସୁରରାଜ ବାଣର କନ୍ୟା ଉଷା ଅନିରୁଦ୍ଧଙ୍କୁ ସ୍ୱପ୍ନରେ ଦେଖି ତାହାଙ୍କ ପ୍ରତି ଏକାନ୍ତ ଅନୁରକ୍ତା ହୋଇ ବାତୁଳ ପରି ହୋଇ ଦିବା ନିଶି ଚିନ୍ତାକରି ବସିଅଛନ୍ତି । ମୁହିଁ ତାହାଙ୍କ ଦୂତି ହୋଇ ବର୍ତ୍ତମାନ ଦ୍ୱାରକାକୁ ଯାଉଅଛି । ଦ୍ୱାରକା ରାଜଭବନରେ କିପରି ପ୍ରବେଶ କରି ଅନିରୁଦ୍ଧଙ୍କୁ ଦେଖିପାରିବି ଆପଣ ଦୟାକରି ବୁଝାଇଦେବେ ବୋଲି ସ୍ମରଣା କଲି ।

ନା - ଏ ବଡ଼ ରହସ୍ୟଜନକ ବ୍ୟାପାର । ଶିବ ସେବକ ବାଣ ଅତ୍ୟନ୍ତ ଉଦ୍ଧତ ଏବଂ ଶ୍ରୀକୃଷ୍ଣଙ୍କର ଶତ୍ରୁ ଅଟେ । ଅନିରୁଦ୍ଧ ସେଠାରେ ପ୍ରବେଶ ହେବା ମାତ୍ରେ କଳହ ଜାତ ହେବ । କଳହ ଜାତ ହେଲେ ଭଙ୍ଗାଇବା ସହଜ କଥା ନୁହେଁ ।

ଚି - ଆଜ୍ଞା ଏ ସବୁ ମୁ ଜାଣେ । ମାତ୍ର ବାଣର ଦର୍ପ ଚୂର୍ଣ୍ଣ କରିବା ସକାଶେ ଏ ସବୁ ଘଟିଅଛି । ସେ ଯାହାହେଉ ଅନିରୁଦ୍ଧଙ୍କୁ ନ ଦେଖିଲେ ଉଷା ବଞ୍ଚିବାର ଆଶା ନାହିଁ ।

ନା - ଚିତ୍ରଲେଖେ ! ଆମ୍ଭର ବରପ୍ରସାଦରୁ ତୁମ୍ଭର କାର୍ଯ୍ୟ ସିଦ୍ଧ ହେବ । ଏଥିରେ କିଛି ସନ୍ଦେହ ନାହିଁ । ଯଦି ବାଣ ଜାଣିପାରି ଅନିରୁଦ୍ଧର କୌଣସି ଅନିଷ୍ଟ କରିବ ତେବେ ଆମ୍ଭଙ୍କୁ ସ୍ମରଣ କଲେ ଆମ୍ଭେ ତାହାର ପରିତ୍ରାଣ କରିବୁଁ ।

ଚି - ଯେ ଆଜ୍ଞା ! ମୁ ଛାମୁରୁ ବିଦାୟ ନିଏ ।

ନା - ଆଚ୍ଛା ଯାଅ । (ଚିତ୍ରଲେଖାର ପ୍ରସ୍ଥାନ)

(ସ୍ୱଗତ) ଏତେ ଦିନକୁ ଦୁର୍ଜ୍ଜୟ ଦାନବର ଦର୍ପ ଚୂର୍ଣ୍ଣ ହେବାର ସମୟ ଘଟିଅଛି । ଦେବାଧି ଦେବଙ୍କର ବରପ୍ରସାଦରୁ ଦୁରାତ୍ମା ଦର୍ପାନ୍ଧ ହୋଇ ଦେବତା ଓ ଋଷିମାନଙ୍କର ଅନେକ ଅନିଷ୍ଟ କରିଅଛି । ଯେବେ ବାଣର ବିନାନୁମତିରେ ଅନିରୁଦ୍ଧ ଗାନ୍ଧର୍ବବିଧାନରେ ଉଷାର ପାଣିଗ୍ରହଣ କରିବେ, ତେବେ ଯୁଦ୍ଧ ହେବାର ଅନିବାର୍ଯ୍ୟ ଯୁଦ୍ଧ ଉପସ୍ଥିତ ହେଲେ ଶ୍ରୀକୃଷ୍ଣଙ୍କୁ ଆଣି ପହୁଞ୍ଚାଇଦେବୁଁ । ସେ ଆସିଲେ ବାଣର ଦର୍ପଦଳନ ହେବ । ଆମ୍ଭେ ଏହି କ୍ଷଣି ଯାଇ ଦେବତାମାନଙ୍କୁ ଏହି ଶୁଭସମ୍ବାଦ ଦେଇ ତାହାଙ୍କର ମନ ସନ୍ତୋଷ କରାଇବୁଁ ।

(ପ୍ରସ୍ଥାନ ଓ ଯବନିକା ପତନ)

●

# ତୃତୀୟାଙ୍କ

## ପ୍ରଥମ ଦୃଶ୍ୟ

(ଚିତ୍ରଲେଖା ଦ୍ୱାରକାରେ ପ୍ରବେଶ)

(ଉଦ୍ୟାନବନ)

ଚି - (ସ୍ୱଗତ)

**ରାଗ ନବରୋଜ୍ । ଆଦିତାଳ ।**

କି ମନୋହର ଏ ବନ ଶୋଭା !
ଦିଶେ କି ସୁମ ପୁଞ୍ଜର ଆଭା ! ।
ନନ୍ଦନ କାନନ ସୁସମାକୁ ।
ଧିକ୍କାରି ନିଏ ପଦ ତଳକୁ ।
ବସନ୍ତ-ଉତ୍ସବ ଲକ୍ଷେ ।
କୁସୁମ ବୃକ୍ଷେ । ବିଳାସ ଉନ୍ମୁଖେ ।
ବସିଛନ୍ତି ପରା ଅତି ଉତ୍ସୁକେ ।୧।

ମନ୍ଦାନିଳ ବହଇ କି ଭାବେ ।
କ୍ୱଣିତ ବିହଙ୍ଗମ ଗଣ ରାବେ ।
ମତୁଆଳ ଭୃଙ୍ଗ ମଧୁପାନେ ।
ଗୁଞ୍ଜନ କରଇ ବସି ସୁମନେ ।
ସତେ କି ସୁନ୍ଦର ଦିଶେ !
ନିଆଳି ମାଳତୀ । କଞ୍ଚଣ ସେବତୀ ।
ହରି ନିଏ ମନ କେଡ଼େ ରଭସେ ।୨।

କଦଳୀ ବଦରୀ ନାରିକେଳ ।
ରସାଳ ତମାଳ ତରୁଜାଳ ।
ଦାଡ଼ିମ୍ବ ରୁଚକାଦି ବତାସ ।
ବେତସ ନାରଙ୍ଗ ପନସ ।

ଫଳ ପୁଷ୍ପଭରେ ହୋଇ ।
ପଡ଼ନ୍ତି ଲହସି । ଧରଣି ସ୍ପରଶି ।
ଦେଖିଦେଲେ ମନ ଫୁଲି ଉଠଇ ।୩।

ଆହା କି ମନୋହର ଦୃଶ୍ୟ ! ଏଠାକୁ ଆସି ପ୍ରାଣ ପୁଲକିତ ହେଲା । କିନ୍ତୁ ଅନିରୁଦ୍ଧ କେଉଁଠାରେ ଥିବେ ? (ଇତସ୍ତତଃ ଚାହିଁ) ସେ ଏକା ପରା ? ହଁ ଏଥିରେ ସନ୍ଦେହ ନାହିଁ । ଏକାକୀ ବସି ମନେ ମନେ କିସ ବିଚାର କରୁଅଛନ୍ତି । ଆହା କି କମନୀୟ କାନ୍ତି କେଉଁ ଯୁବତୀ ଏହାଙ୍କ ପକ୍ଷପାତିନୀ ନ ହେବ ? ଉଷା ଯଥାର୍ଥ ଭାଗ୍ୟବତୀ ଅଟେ । ଭଗବତୀ ଉପଯୁକ୍ତ ବର ଖଞ୍ଜି ଦେଇ ଅଛନ୍ତି । ହେଉ ଏଠାରେ ରହି ତାହାଙ୍କର ବର୍ତ୍ତମାନ ବ୍ୟବସ୍ଥା ବୁଝିବି । (ଦୂରେ ବୃକ୍ଷ ଉହାଡ଼ରେ ରହିବା) ।

ଅ - (ସ୍ୱଗତ)

**ରାଗ ନାଟକୁରଞ୍ଜି । ଅଟତାଳ ।**

ଜାଣି ନୋହେ ଆସି ଏକି ବିଷମ ଘଟିଲା !
ଚାହେଁ ଯେଣେ ସେହି ରୂପ ସତତ ଦିଶିଲା ।୦।
ଏକି ଚିତ୍ର କେଉଁଠାରେ ଶୁଣାତ ନଥିଲା !
ଚକ୍ଷୁ ବୁଜିଦେଲେ ଆସି ମନରେ ନାଚିଲା ।୧।
କାହିଁରେତ ଏବେ ମୋର ମନ ନ ରସିଲା ।
ସେହି ସ୍ୱପ୍ନ ସୁନ୍ଦରୀର ସ୍ନେହରେ ମାତିଲା ।୨।
ସ୍ୱପ୍ନ ଛାର ଦେଖି ଏହପରିତ ହୋଇଲା ।
ଚାରି ଚକ୍ଷୁ ମିଶିଥିଲେ କି ହୁଅନ୍ତା ଭଲା ।୩।

ଆହା ସେ କମଳଲୋଚନାର ମଧୁର ବଚନ ଶୁଣିଲାଠାରୁ ମୋ ଚିତ୍ତ ବଡ଼ ଅସ୍ଥିର ହେଲାଣି । (ଦୀର୍ଘନିଶ୍ୱାସ ଛାଡ଼ି) ପ୍ରାଣେଶ୍ୱରି ! କିହେତୁ ସ୍ୱପ୍ନରେ ଦିଶିଲ ? ଦିଶିଲ ଯେ ଫେରି କେଉଁଆଡ଼େ ଗଲ ? ଗଲାବେଳେ ତୁମ୍ଭର ନାମ ଧାମ ହେଲେ କହିଥାନ୍ତ । କହିଥିଲେ ଏହି ସନ୍ତାପିତ ପ୍ରାଣର କିଛି ହେଲେ ସାନ୍ତ୍ୱନା ହୋଇ ନଥାନ୍ତା ? ବୋଧକରେ ଏସବୁ ମାୟା ଅଟେ । ନୋହିଲେ ସ୍ୱପ୍ନରେ ଦେଖିବା କଥା କେବେ ସତ ହୋଇପାରେ ? କେଜାଣି

ସମୟେ ସମୟେ ଏପରି ସ୍ୱପ୍ନରେ ଦେଖିବା କଥା ସତ ହୋଇ ପଡ଼ିବା ସମ୍ଭାବନା-ଯାହାହେଉ-ମନଟା ବଡ଼ ଆନ୍ଦୋଳିତ ହେଉଅଛି ।

ଚି - (ସ୍ୱଗତ) ଉଷାଙ୍କର ଯେଉଁ ଅବସ୍ଥା ଏହାଙ୍କର ମଧ୍ୟ ସେହି ଅବସ୍ଥା । ଆଚ୍ଛା ଏଥର ନିକଟକୁ ଯାଇ ପରିଚୟ ଦେବା (ନିକଟକୁ ଯାଇ) ହେ ରାଜକୁମାର ! ଆପଣଙ୍କ ଛାମୁରେ ମୁଁ କେତେ କଥା ଜଣାଇବାକୁ ଇଚ୍ଛାକରେ ।

ଅ - (ସଚ୍‌କିତେ) ତୁମ୍ଭେ କିଏ ? କାହିଁକି ଏଠାକୁ ଆସିଲ ?

ଚି - ମହାରାଜ ! ମୁଁ, ବାଣାସୁରଙ୍କ ଦୁହିତା ଉଷାଙ୍କର ସଖୀ ମୋହର ନାମ ଚିତ୍ରଲେଖା ଅଟେ ।

ଅ - କିହେତୁ ଏଠାକୁ ଆସିଲ ?

ଚି - ମହାରାଜ ! କ୍ଷମାକରନ୍ତୁ । ମୋହର ସଖୀ ଦିନେ ଶୟନ କରିଥିବା ସମୟରେ ଆପଣଙ୍କୁ ସ୍ୱପ୍ନରେ ଦେଖି ଏକା ବେଳକେ ଆପଣଙ୍କ ଅଧୀନା ହୋଇଯାଇଅଛନ୍ତି । ଆପଣଙ୍କୁ ସାକ୍ଷାତ୍ ଦର୍ଶନ କରିବା ଲାଗି ନିତାନ୍ତ ଉତ୍ସୁକା ଅଛନ୍ତି । ଏମନ୍ତକି ଆପଣଙ୍କ ଦର୍ଶନ ବିନା ସେ ପ୍ରାଣ ଧାରଣ କରିପାରିବେ କି ନା ସନ୍ଦେହ ।

ଅ - ଚିତ୍ରଲେଖେ ! ମୋତେ ଏକା ସେ ସ୍ୱପ୍ନରେ ଦେଖିଲେ ବୋଲି ପ୍ରମାଣ କଅଣ ?

ଚି - (ଚିତ୍ରପଟ ବଢ଼ାଇ) ଏହି ଚିତ୍ରପଟ ଆପଣଙ୍କର ନୁହେ ?

ଅ - (କ୍ଷଣକାଳ ଦେଖି) ହଁ ମୋହର ଏକା ।

ଚି - ତେବେ ଏହି ଚିତ୍ରପଟ ଅନୁଯାୟୀ ଜଣେ ବୀରପୁରୁଷଙ୍କୁ ଦେଖିଲି ବୋଲି ସେ ବାରମ୍ବାର କହନ୍ତି ।

ଅ - ତୁମ୍ଭ ସଖୀଙ୍କ ଚିତ୍ରପଟ ତୁମ୍ଭଠାରେ ଅଛି ?

ଚି - ଆଜ୍ଞା ହେଟି । (ପଟ ଦେବା)

ଅ - (ଦୀର୍ଘ ନିଶ୍ୱାସ ଛାଡ଼ି) ଏ ତୁମ୍ଭ ସଖୀ ଉଷାଙ୍କର ପଟ ?

ଚି - ହଁ-ଆଜ୍ଞା ! ସେ ଆପଣଙ୍କୁ ସ୍ୱପ୍ନରେ ଦେଖି ନିତାନ୍ତ ଅଧୀରା ହୋଇଯାଉଅଛନ୍ତି । ଆପଣଙ୍କୁ ସାକ୍ଷାତ୍ ନ ଦେଖିଲେ ସେ କେତେ ମାତ୍ର

ରହିପାରିବେ ନାହିଁ । ତାହାଙ୍କର ଏ ଅବସ୍ଥା ଦେଖି ଆପଣଙ୍କୁ ସଙ୍ଗେ ନେବା ଲାଗି ମୁ ଆସିଅଛି ।

ଅ - ଚିତ୍ରଲେଖେ ! ତୁମ୍ଭଠାରେ ଆଉ କପଟ କାହିଁକି ? ମୁ ମଧ ତୁମ୍ଭର ଉଷାଙ୍କୁ ସ୍ୱପ୍ନରେ ଦେଖି ମୋହର ବାହ୍ୟ ଜ୍ଞାନ ଶୂନ୍ୟ ହୋଇଅଛି । ଯଦି ତୁମ୍ଭେ ଦୟାକରି ମୋତେ ନେଇ ତାହାଙ୍କୁ ଭେଟାଇଦେବ, ତେବେ ମୁ ଆଜୀବନ ତୁମ୍ଭଠାରେ ଋଣୀ ହୋଇଥିବି ।

ଚି - ମହାରାଜ ! ଏଡ଼େ କଥା କାହିଁକି ଆଜ୍ଞା କରନ୍ତି ? ଏଥିରେ ମୁ ଉପକାର କରିବା କଥା କିଛି ନାହିଁ ଏ ସବୁ ଈଶ୍ୱରଙ୍କ ଭିଆଣ । ବର୍ତ୍ତମାନ ବିଳମ୍ବ ନ କରି ବିଜେ କରନ୍ତୁ ।

ଅ - ଆଚ୍ଛା-ଆଗେ ଚାଲ ।

(ପ୍ରସ୍ଥାନ ଓ ଯବନିକା ପତନ)

## ଦ୍ୱିତୀୟ ଦୃଶ୍ୟ

(ଉଷା ପର୍ଯ୍ୟଙ୍କୋପରି ଅର୍ଦ୍ଧଶୟନା ଓ ଦାସୀ ପାର୍ଶ୍ୱେ ଦଣ୍ଡାୟମାନା ।)

ଦା - ଆଜ୍ଞା ! ଧୈର୍ଯ୍ୟ ଧରନ୍ତୁ ! ଶ୍ରୀଅଙ୍ଗ ଅସୁଖ ଥିବା ସମୟରେ ଏଡ଼େ ଅଧୀର ହେବା କି ବିଧି ? ଦେଖୁ ଦେଖୁ ଶ୍ରୀଅଙ୍ଗ କେବଳ ଶୁଖିଗଲାଣି ।

ଉ - ଦାସି-ତୁନି ହୁଅ ଆଉ ମତେ କିଛି କହନା ।

ଦା - ମୁଁ ଛାମୁଙ୍କ ଭଲ ସକାଶେ ସିନା କହିଲି ।

ଉ - **ରାଗ ଖରହରପ୍ରିୟା । ଏକତାଳ ।**

କି ପଚାରୁ ଆଉ ମୋର ଭଲରେ ।
ସରି ଯାଉଛି ତ ମୋ ହାଲରେ ।୦।
ଆଉ କ୍ଷଣେ ବା ଘଡ଼ିକୁ । ଛାଡ଼ି ବାହାରି ଯିବାକୁ
ହେଲା ଠାରେ ପ୍ରାଣ କଲବଲରେ ।୧।
କି ପାପ ବା କରିଥିଲି । ହେବାକୁତ ଏତେ ସରି ।
ଅରଜି ଆଣିଛି ମୋର ଭାଲରେ ।୨।

ଦା - ଏଡ଼େ କଥା କାହିଁକି ଆଜ୍ଞା ହେଉଚି ?

ଉ - ଦାସି-ଏ ମନ୍ଦ ସମୀରଣ କାହିଁକି ଏଡ଼େ ଉଷ୍ଣ ଲାଗେ ?

ଦା - ଆଜ୍ଞା ଶ୍ରୀଅଙ୍ଗ ସୁଖ ନ ଥିଲେ ସବୁ ଅହିତ ବୋଧ ହୁଏ । (ବାହାରକୁ ଚାହିଁ) ଆଜ୍ଞା ଚିତ୍ରଲେଖା ହେଟି ଆସୁଅଛନ୍ତି ।

ଉ - କିସ କହିଲୁ ?

ଦା - ଚିତ୍ରଲେଖା ଆସୁଛନ୍ତି ।

ଉ - କାହିଁ ? (ଉଠିଦେଖି) ତେବେ ତୁ ଯା ।

ଦା - ଯେ ଆଜ୍ଞା (ପ୍ରସ୍ଥାନ)

(ଚିତ୍ରଲେଖା ଅନିରୁଦ୍ଧଙ୍କୁ ଅଦୃଶ୍ୟେ ରଖି ପ୍ରବେଶ)

ଉ - (ପଲଙ୍କରୁ ଉଠି) ସଖି ! ତୁମ୍ଭର ଆସିବା ପଥକୁ ଚାହିଁ ଚାହିଁ ମୁଁ ବଡ଼ ଉତ୍କଣ୍ଠିତା ହେଉଥିଲି ।

ଚି - ଏଡ଼େ ଉତ୍କଣ୍ଠିତା କାହିଁକି ?

ଉ - ଏତେ ଦିନ ପର୍ଯ୍ୟନ୍ତେ କିସ କରୁଥିଲ ସଖି ?

ଚି - ଦ୍ୱାରକା କି ପାଖରେ ଅଛି ? ଯିବା କାର୍ଯ୍ୟ କି ହାତରେ ପଡ଼ିଛି ?

ଉ - (ହସ୍ତଧରି) ମୋଠାରେ ଏଡ଼େ ବିରକ୍ତ କାହିଁକି ସଖି ?

ଚି - ବିରକ୍ତ ନ ହୋଇ ହେବି କିସ ?

ଉ - ନା - ସଖି-ଯିବା କାର୍ଯ୍ୟ କ'ଣ ହେଲା ?

ଚି - ସବୁ ଠିକ୍ ହୋଇଅଛି ।

ଉ - (ହସ୍ତଧରି) ସତେକି ସଖି ?

ଚି - ହଁ ସବୁ ଠିକ୍ ହୋଇଅଛି । ମାତ୍ର ସ୍ତ୍ରୀମାନେ ପ୍ରଥମ ଦର୍ଶନରେ ନାନାଦି ହର୍ବର କରନ୍ତି ବୋଲି ସେ ଆସିବାକୁ ନିତାନ୍ତ ଅନିଚ୍ଛୁକ ।

ଉ - ସଖି ଏ ତୁମ୍ଭର ମନଗଢ଼ା କଥା ପରି ବୋଧହୁଏ ।

ଚି - ନା ସଖି ମୁଁ ସତ କହୁଛି ।

ଉ - ତେବେ ସେ କୋଠାରେ ଅଛନ୍ତି ସଖି ?

ଚି - ତୁମ୍ଭକୁ ସେ କଥା କାହିଁକି ? ହର୍ବର ନ କରିବା କଥା ଆଗେ କହ ।

ଉ - ହର୍ବର କାହିଁକି ସଖି ?

ଚି - ତେବେ ବସିଥାଅ ମୁଁ ଯାଇ ଆସେ ।

(ପ୍ରସ୍ଥାନ-କିଛି କାଳାନନ୍ତର ଅନିରୁଦ୍ଧ ସହ ପୁନଃ ପ୍ରବେଶ)

ଚି - ସଖି ତୁମ୍ଭେ ଯାହାଙ୍କ ଲାଗି ଏଡ଼େ ଉତ୍କଣ୍ଠିତା ହେଉଥିଲ ସେ ହେଟି - ଅନୁମତି ଦିଅ ମୁଁ ଯାଏ । (ଅନିରୁଦ୍ଧଙ୍କ ପ୍ରତି) ମହାରାଜ ! ସେଠାରେ ବିଜେ କରନ୍ତୁ । (ପ୍ରସ୍ଥାନୋନ୍ମୁଖ)

ଉ - ସଖି ମତେ ଏକୁଟିଆ ଛାଡ଼ି କେଉଁଆଡ଼େ ଯିବ ?

ଚି - ଏକୁଟିଆ କାହିଁକି ? ବୀରବର ଅନିରୁଦ୍ଧ ପାଖରେ ଥିବାଠାରେ ଏକୁଟିଆ କିପରି ? (ପ୍ରସ୍ଥାନ)

ଉ - (ଲଜ୍ଜାରେ ଅଳ୍ପ ଦୂରରେ ରହିବା)

ଅ - ଲୋଚନାନନ୍ଦକାରିଣି ! ତୁମ୍ଭଙ୍କୁ ମୁଁ ସ୍ୱପ୍ନରେ ଦେଖି ନିତାନ୍ତ ଚିନ୍ତିତ ଥିଲି । ଏମନ୍ତ ସମୟରେ ତୁମ୍ଭ ପ୍ରିୟସଖି ଚିତ୍ରଲେଖା ଆସି ତୁମ୍ଭେ ମଧ ମତେ ସ୍ୱପ୍ନରେ ଦେଖି କେବଳ ଅଧୀରା ହୋଇଥିବାର ମତେ କହିଲେ । ଆଉ ତୁମ୍ଭଠାକୁ ଆସିବାକୁ ସେ ମତେ ଅନୁରୋଧ କଲେ ।

ଉ - ମହାରାଜ ! ଚିତ୍ରଲେଖା ଆପଣଙ୍କଠାରେ ମିଥ୍ୟା କହିଅଛି ।

ଅ - ଚନ୍ଦ୍ରାନନେ ! ମିଥ୍ୟା ହେଉ ବା ସତ୍ୟ ହେଉ ତୁମ୍ଭର ରୂପ ଯୌବନ ଓ ଗୁଣ ବର୍ଣ୍ଣନାରେ ମୁ ମୁଗ୍ଧ ହୋଇ ଅୟସ୍କାନ୍ତ ଆକର୍ଷିତ ଲୋହ ପରି ତୁମ୍ଭର ସ୍ନେହାକର୍ଷଣରୁ ତାହାଙ୍କ ସଙ୍ଗେ ଆସି ଏଠାରେ ହାଜର ହୋଇଅଛି । ଏବେ ତୁମ୍ଭେ ଦୂରରେ ଛିଡ଼ା ହେଲେ କିପରି ହେବ ? ତୁମ୍ଭ ମୁଖ ଲାବାଣ୍ୟ ସନ୍ଦର୍ଶନ କରି ମୁ ଯେ ଆନନ୍ଦ ଲଭି ଅଛି ତାହା ଅନିର୍ବଚନୀୟ । ଚାରୁହାସିନି ! ବଚନ ସୁଧା ବିତରଣ ନ କରି ମୌନାବଲମ୍ବନ କର କାହିଁକି ?

**ରାଗ ଶଙ୍କରାଭରଣ । ଆଦିତାଳ ।**

ଥରେ ଶୁଣା ମଧୁର-ମୃଦୁ-ଭାଷ ।
ଆସି ରଭସେ ହରଷେ ମୋର ପାଶ ।
ଶାନ୍ତି କର ମୋର ତୁ ହର ପରତାପ ମୁ ତୋ ଦାସ ।୦।
ଗଜଗତେ ଅଳପ ପରକାଶ ।
ବାରେ ପୀୟୁଷ-ସରସ-କୁନ୍ଦ-ହାସ ।
ଆରେ ବର ବରନା ନ କର ବିନାଶ ମୋ ଉଲ୍ଲାସ ।୧।

ଦିଅ ଥରେ ଅଧର ମଧୁ ପାନ ।
ଧୀରେ ସଧୀରେ କର ତୁ ଆଲିଙ୍ଗନ ।
ମାରି ସ୍ମର ଶରରେ କରି ହଇରାଣ ନିଏ ପ୍ରାଣ ।୨।

(କର ଧରିବା)

ଉ - (କର ଝିଙ୍କିଆଣି) ମହାରାଜ କ୍ଷାନ୍ତ ହୁଅନ୍ତୁ । ମୁ ସ୍ୱାଧୀନା ନୁହେଁ । ପିତାମାତାଙ୍କ ଅଜଣାରେ ପର ପୁରୁଷର ଅଙ୍ଗ ସ୍ପର୍ଶ କଲେ କୁଳକଳଙ୍କିନୀ ହୋଇଯିବି ।

ଅ - ସୁନ୍ଦରି ଏଡ଼େ ଭୟ କାହିଁକି ? କ୍ଷତ୍ରିୟ କୁଳରେ ଚିରା ଚରିତ ପ୍ରଥା ଏହି ଯେ ସେମାନେ ସ୍ୱେଚ୍ଛାରେ ପିତାମାତାଙ୍କ ବିନାନୁମତିରେ ଗାନ୍ଧର୍ବବିଧାନରେ ପାଣିଗ୍ରହଣ କରିପାରନ୍ତି । ଏଥିକି କିଏ ନିନ୍ଦା କରିପାରିବେ ନାହିଁ ।

ଉ - ମହାରାଜ ! ଆପଣ ଯଥାର୍ଥ କହନ୍ତି ?

ଅ - ସନ୍ଦେହ କି ?

ଉ - ମହାରାଜ ! ଯାହା ହେଉ ମତେ ଭୟ ଲାଗୁଛି । କ୍ଷମା କରନ୍ତୁ ମୁ ମୋ ସଖୀଙ୍କି ପଚାରି ଆସେ ।

(କହି କିଛି ଦୂର ଯାଇ ମନେ ମନେ)

ଦେବୀ ପାର୍ବତୀ କହିଅଛନ୍ତି "ତୁମ୍ଭେ ସ୍ୱପ୍ନରେ ଯେଉଁ ବୀରପୁରୁଷଙ୍କୁ ଦେଖିବ ସେ ତୁମ୍ଭର ପତି ହେବେ " ପିତାମାତାଙ୍କ ଅନୁମତି ନାହିଁ ବୋଲି ମୁଁ ଅଙ୍ଗୀକାର ନ କଲେ ମଧ, ଭଗବତୀଙ୍କର ବାକ୍ୟ ଅନ୍ୟଥା ହେବ ନାହିଁ । ବିଶେଷତଃ ଯାହାଙ୍କ ପ୍ରତିମୂର୍ତ୍ତି ସ୍ୱପ୍ନରେ ଦେଖି ମନ ଏଡ଼େ ସନ୍ତାପିତ ହେଉଥିଲା ତାହାଙ୍କୁ ପ୍ରତ୍ୟକ୍ଷରେ ଦେଖି ଦେଖି କିପରି ବାହାରିଯିବି ? ଛଳରେ ଯିବି ବୋଇଲେ ମଧ ପାଦ ଚଳୁନାହିଁ । ଏବେ ମୁଁ କରିବି କି ? (କିଛି କାଳ ଚିନ୍ତା କରି ଫେରି ଅନିରୁଦ୍ଧଙ୍କ ପାଖରେ ପ୍ରବେଶ) ମହାରାଜ ! ଆପଣ କହିବା କଥା ମୁଁ ବିଶ୍ୱାସ କରୁନାହିଁ ବୋଲି ମନେ କରନ୍ତୁନା । ମାତ୍ର-

ଅ - "ମାତ୍ର" କଅଣ-ସୁନ୍ଦରି ?

ରାଗ ଶ୍ରୋଟ । ଆଦିତାଳ ।

ଉ - ସୁନ୍ଦର ବର ମତେ ଲାଗଇ ବଡ଼ ଭୟ ଏହି କଥାକୁ ସିନା
ସର୍ବଦା ହୋଇ ମୁ ପାରିବି ନାହିଁ ପରା
ତୁମ୍ଭର ସ୍ନେହାଧୀନା ।୦।

ଅ - କୁନ୍ଦଦଶନି ଘେନ ଆଜହୁଁ ମୋର ପ୍ରାଣ ବିକି ମୁ ଦେଲି
ତୋତେ । ସଂସାରେ କାହାକୁ ତୋହ ପରି ଜଣେ
ବିଲୋକି ନାହି ସତେ ।୦।

ଉ - ଥାଇପାରନ୍ତି କେତେ ତୁମ୍ଭର ଅନ୍ତଃପୁରେ ରମଣୀମଣି ଗଣ
କେଜାଣି ପାସୋରି ଦିଅନ୍ତି ତାଙ୍କୁ ଦେଖି
ନାଗର କୁଳରାଣ ।୦।

ଅ - ମନ୍ଦହସିନି ଶୁଣ ତୋହର ବିନା ମୋର ନାହିତ କେହି
ଆଉ ମାଗଇ ଏତକ ଜୀବନ ଥିବା ଯାକ
ମୋ ଠାରେ ଦୟା ଥାଉ ।୦।

ଉ - ପଙ୍କଜ ଚରଣରେ ଶରଣ ପଶିବା ଦାସୀର ଗତି କିସ ?
ତୁମ୍ଭର ସ୍ନେହ ବିନା ଆଉ କି ଲୋଡ଼ିବି
ଜାଣ ହେ ପ୍ରାଣଈଶ ।

ଅ - ପ୍ରାଣେଶ୍ୱରି ! ତୁମ୍ଭର ବଚନ ଶ୍ରବଣ କରି ମୁଁ ଅସାଧାରଣ ଆନନ୍ଦ ଲାଭ କରିଅଛି । ତୁମ୍ଭର ଅଙ୍ଗ ବଡ଼ ଅସୁସ୍ଥ ଦିଶୁଅଛି । ଏତେ ରାତିଯାଏ ଚେତି ରହିବା ଅବିଧି ଆସ ଶୟନ କରିବା ।

ଉ - ଆର୍ଯ୍ୟପୁତ୍ରଙ୍କ ଯେ ଅଭିରୁଚି ।
(ଅନିରୁଦ୍ଧ ଉଷାଙ୍କ କରଧରି ପର୍ଯ୍ୟଙ୍କ ନିକଟକୁ ଯିବା)
(ପ୍ରସ୍ଥାନ ଓ ଯବନିକା ପତନ)

## ତୃତୀୟ ଦୃଶ୍ୟ

(ବାଣ ଓ କୁମ୍ଭାଣ୍ଡ ଆସୀନ)

କୁ - ମହାରାଜ ! କି ଅଦ୍ଭୁତ ହେଲା । ଚତୁର୍ଦ୍ଦିଗରେ ବିନା ମେଘେ ମୁହୂର୍ମ୍ମୁହୁ ଅଶନିପାତ । ବସୁମତୀ ଘନଘନ କମ୍ପମାନା ! କି ସର୍ବନାଶ ! କୁମାରଦତ୍ତ ମୟୂରଧ୍ୱଜ ସହସା ଭୂତଳେ ନିପତିତ ହେଲା ।

ବା - ମନ୍ତ୍ରିନ୍ ! କୁଷ୍ମାଣ୍ଡ ! କାପୁରୁଷର ପରି ଏଡ଼େ ଭୟ କାହିଁକି ? କୁମାରଦତ୍ତ ଶିଖିଧ୍ୱଜ ଭୂପତିତ ହେବାର ଶୁଣି ମୁଁ ଅତି ଆନନ୍ଦିତ ହେଲି । ଅବଶ୍ୟ କୌଣସି ବୀର ଯୁଦ୍ଧକୁ ଆସିବାର ଜଣାଯାଏ । ଏତେ ଦିନକୁ ମହାଦେବଙ୍କ ବରପ୍ରସାଦରୁ ମୋହର ରଣପିପାସା ଦୂର ହେବ । ଦେଖ ! ଏହି ପ୍ରଚଣ୍ଡ କୃପାଣରେ ସେ ବୀର ପୁରୁଷର ଶିରଚ୍ଛେଦନ କରିବି ।

(ଦ୍ରୁତପଦେ ରାଣୀଙ୍କ ପ୍ରବେଶ ଓ ମନ୍ତ୍ରୀର ପ୍ରସ୍ଥାନ)

ବା - ପ୍ରିୟେ ! ଏଠାରେ ବସ ।

ରା - ମହାରାଜ ! ବସିବି କଅଣ ?

ବା - କଅଣ ହେଲା ! ପ୍ରିୟେ ?

ରା - ମହାରାଜ ! କଅଣ ହେବ ସର୍ବନାଶ ହୋଇଅଛି ।

ବା - ପ୍ରିୟେ ! ଏଡ଼େ ବିରକ୍ତ କାହିଁକି ? କିସ ହେଲା ?

ରା - ତୁମ୍ଭେ ସଂସାରର ସର୍ବଚିନ୍ତା ପରିତ୍ୟାଗ କରି ସମସ୍ତ ବିଷୟରେ ଜଳାଞ୍ଜଳି ଦେଇ ସର୍ବଦା ଯୁଦ୍ଧ ଯୁଦ୍ଧ ବୋଲି ରହିଲ । ଗୃହରେ ପୂର୍ଣ୍ଣଯୌବନା ଅବିବାହିତା କନ୍ୟାକୁ ରଖି ଆଜି ପର୍ଯ୍ୟନ୍ତ ତାହାର ବିବାହ ଲାଗି କୌଣସି ବନ୍ଦୋବସ୍ତ କଲ ନାହିଁ । ସେ ବର୍ତ୍ତମାନ ତୁମ୍ଭ ପବିତ୍ର କୁଳର ମର୍ଯ୍ୟାଦା ହରାଇ ବସିଅଛି । ସେହି ଲଜ୍ଜାହୀନ କନ୍ୟା ନିଶାସମୟରେ ନିଜ ଭବନରେ କୌଣସି ଅପରିଚିତ ଯୁବକର ସହିତ ଗାନ୍ଧର୍ବ ବିଧାନରେ ବିବାହ ହୋଇଅଛି ।

ବା - ପ୍ରିୟେ ! ଏହା ମତେ କିଛି ବିଶ୍ୱାସ ଲାଗୁ ନାହିଁ । ଉଷା ପବିତ୍ର ହୃଦୟା-ସେ ଏପରି କାର୍ଯ୍ୟ କରିବାର ସମ୍ଭାବନା ନାହିଁ ।

ରା - ମହାରାଜ ! ମୁ କି ଛାମୁରେ ମିଥ୍ୟା କହେ ? ଉଷା ମୋହର ଗର୍ଭଜାତ କନ୍ୟା । ତାହାକୁ ମୁ ପ୍ରାଣଠାରୁ ଅଧିକ ସ୍ନେହକରେ । ତାହାଠାରେ କି ମୁ ମିଥ୍ୟା ଦୋଷାରୋପଣ କରିବି ।

ବା - ତେବେ ସେ ଯୁବକ କିଏ ? ଦୁରାତ୍ମାର ଏଡ଼େ ସାହସ ! କ୍ଷୁଦ୍ର ମୂଷିକ କେଶରୀର ଗୁହାରେ ପ୍ରବେଶ କରି ଏଡ଼େ ଦାମ୍ଭିକ କାର୍ଯ୍ୟ କରିଅଛି ?

ଆଚ୍ଛା ଏହିକ୍ଷଣି ତାହାକୁ ଯମାଳୟକୁ ପ୍ରେରଣ କରିବି । ପ୍ରିୟେ ! ତୁମ୍ଭର ହତଭାଗିନୀ କନ୍ୟାର ଲାଗି ଆମ୍ଭ ପବିତ୍ର କୁଳରେ କଳଙ୍କ ଲାଗିବ ବୋଲି ମୁଁ କେବେ ଭାବିନଥିଲି । ହେଉ ତୁମ୍ଭେ ସେ କୁଳକଳଙ୍କିନୀକି ଉପଯୁକ୍ତ ଦଣ୍ଡଦେବ । ମୁଁ ସେ ଚୋରର କଥା ଦେଖିବି ?

ରା - ମହାରାଜ ! ଉଷାର କି ଦୋଷ ? ତାହାକୁ ଆଜି ପର୍ଯ୍ୟନ୍ତ ବିବାହ ନ କରି ରଖିବା ତୁମ୍ଭର ଦୋଷ ?

ବା - ଆଚ୍ଛା ତୁମ୍ଭେ ଅନ୍ତଃପୁରକୁ ଯାଅ ! ମୁଁ ଯାଇ ସେ ତିମ୍ୟକର ଶିରଚ୍ଛେଦନ କରି ଆସିବି ।

ରା - ଯେ ଆଜ୍ଞା (ପ୍ରସ୍ଥାନ ଓ ମନ୍ତ୍ରୀର ପୁନଃ ପ୍ରବେଶ)

ବା - ମନ୍ତ୍ରିନ୍ ! ଏହିକ୍ଷଣି ରାଣୀ କହିଗଲେ କୌଣସି ଏକ ଯୁବକ ଗୁପ୍ତ ଭାବରେ ଆସି ଗାନ୍ଧର୍ବ ବିଧାନରେ ଉଷାର ପାଣିଗ୍ରହଣ କରିଅଛି ।

ମ - ମହାରାଜ ! କେଡ଼େ ସାହସ କଲା !

ବା - ମନ୍ତ୍ରୀନ । ଚାଲ ! ଶୀଘ୍ର ଯାଇ ସେ ଦୁରାତ୍ମାକୁ ଯମାଳୟ ଦେଖାଇବା ।

ମ - ଯେ ଆଜ୍ଞା-(ଦୁହେଁ ଉଠିବା ଓ ଯବନିକା ପତନ)

## ଚତୁର୍ଥ ଦୃଶ୍ୟ

(ଉଷା ଓ ଅନିରୁଦ୍ଧ ପର୍ଯ୍ୟଙ୍କୋପରି ଉପବେଶନ)

ଅ - ପଙ୍କଜାନନି ! କୋକିଳର ପଞ୍ଚମତାନରେ ଗାନ, ମୟୂରର କେକାରବ, ଜନମନୋହର ଶଶାଙ୍କକିରଣ, ଗନ୍ଧବହ ମନ୍ଦସମୀରଣ, ଏବେ କି ହିତକର ବୋଧ ହେଉଅଛି ! ଯେବେ ମୁ ତୁମ୍ଭର ବିରହରେ ପୀଡ଼ିତ ଥିଲି, ତେବେ ଏମାନେ କେତେ ଦୁଃଖ ଦେଉଥିଲେ ଏବେ କେତେ ସୁଖ ଦେଉଅଛନ୍ତି । ଚାରୁହାସିନି ! ଏ ସବୁ ତୁମ୍ଭର କୃପାରୁ ନୁହେଁ କି ?

ଉ - ଆର୍ଯ୍ୟପୁତ୍ରଙ୍କର ଏ କେବଳ ଚାଟୁଉକ୍ତି ମାତ୍ର ।

ଅ - ନା-ମୁ ଯଥାର୍ଥ କହିଅଛି ।

**ରାଗ ଝଞ୍ଜୋଟୀ । ଆଦିତାଳ ।**

ପ୍ରାଣ ପ୍ରିୟେ ରମ୍ଭୋରୁ । ତୋର କୃପାରୁ ।
ପୂର୍ବ ପୁଣ୍ୟ ପୁଞ୍ଜ ଏବେ ଫଳିଲା ।୦।

ତୋ ମୃଦୁ ଅଙ୍ଗ । ଲାଗି ଅନଙ୍ଗ -।
ବାଧାକୁ ମୋହର ହୃଦୁ ନାଶିଲା ।୧।
ମୋ ଭାଗ୍ୟ ବଳେ । ବସାଇ କୋଳେ ।
ମଣଇ ଇନ୍ଦ୍ର ପଦ ମିଳିଲା ।୨।
ପ୍ରାଣ-ଆରାମ । ସୁଧା ବଚନ ।
ପାନରୁ କାମ-ତୃଷା ତୁଟିଲା ।୩।

ଉ - ମହାରାଜ ! ମୁଁ ତ ଆପଣଙ୍କ କିଣାଦାସୀ-ଦାସୀଠାରେ ଏପରି ବିନୟରେ କହିବା ଉଚିତ୍ ନୁହେଁ । ମୋଠାରେ ଯଦି ଆପଣଙ୍କ ଏହି ସ୍ନେହଭାବ ସବୁଦିନେ ରହିବ ତେବେ ମୋହର ସବୁ ହେଲା ।

ଅ - ଏତ ବଡ଼ ଆଶ୍ଚର୍ଯ୍ୟର ବିଷୟ । ମୁଁ ତୁମ୍ଭଠାରେ ପ୍ରାଣ ବିକିଦେଇଥିଲା ଠାରେ ଆଉ ଏପରି କାହିଁକି କହୁଅଛ ।
(ଚିତ୍ରଲେଖାର ଦ୍ରୁତ ପ୍ରବେଶ)

ଚି - ରାଜନନ୍ଦିନି ! ସର୍ବନାଶ ହେଲା ।

ଉ - କ'ଣ ସଖି ?

ଚି - ତୁମ୍ଭ ଗାନ୍ଧର୍ବବିଧାନରେ ବିବାହ ହେବା କଥା ରାଣୀ ଜାଣିପାରି, ମହାରାଜାଙ୍କ ଛାମୁରେ ସବୁ କହିଦେଲେ । ମହାରାଜ ଅତି କ୍ରୋଧରେ ମନ୍ତ୍ରୀଙ୍କି ସଙ୍ଗେ ଘେନି ଏଣେ ଆସୁଅଛନ୍ତି ।

ଉ - ସତେକି ସଖି ?

ଚି - କ'ଣ ମୁଁ ମିଛ କହୁଛି ?

ଉ - ହା ଦୈବ ! ହା ବିଧାତା ! କି ବିପତ୍ତି ଆଣି ଘଟାଇଲୁ । ଏବେ କି ବୁଦ୍ଧି କରିବି ? କେଣେ ଯିବି ? କେ ମତେ ରକ୍ଷା କରିବ ? ହା ପରମେଶ୍ୱରି ! ହା ଜଗଜ୍ଜନନି । (ଚିତ୍ରଲେଖାର ହସ୍ତ ଧରି)

**ରାଗ ହିନ୍ଦୁସ୍ଥାନ ଭୈରବି । ଅଟତାଳ ।।**

ଆହା ପ୍ରାଣ ସଖି ମୋର ।
କି ଗତି ଏବେ କହ ସତ୍ୱର ? ।୦।
ଲାଗୁ ଥିଲା ଭୟ ଯାହା ।
ଘଟିଲା ଆସି ନିକଟ ତାହା ।୧।

ଆଉ କି ରଖିବେ ତାତ ? ।
କରିବେ ନିଷ୍ଟେ ପ୍ରାଣରେ ହତ ।୨।
ଏହା ମୋର ଭାଲେ ଲିହି ।
ଥିଲା କି ସତେ ଦାରୁଣ ବିହି ।୩।

ସଖି ଚିତ୍ରଲେଖେ ! ଏବେ ମୋର କି ଗତି ? ଏ ବିପଦରୁ କିପରି ରକ୍ଷା ପାଇବି ?

ଅ - ସୁନ୍ଦରି, ଏଡ଼େ ଭୟ କାହିଁକି ? ନିଖିଳ ବ୍ରହ୍ମାଣ୍ଡ ନାଥ ଶ୍ରୀକୃଷ୍ଣଙ୍କର ପୌତ୍ର ଓ ବିଶ୍ୱବିଜୟୀ ମନ୍ମଥଙ୍କ ପୁତ୍ର ଅନିରୁଦ୍ଧ ଥିବାଠାରେ କାହାର ସାଧ ଯେ ତୁମ୍ଭର ଅନିଷ୍ଟ କରିବ ?

ଉ - ଆର୍ଯ୍ୟପୁତ୍ର, ଆପଣ ମୋ ପିତାଙ୍କୁ ଜାଣି ନାହାନ୍ତି । ଯେ କି ଅଣୁମାତ୍ର ଦୋଷ ଦେଖିଲେ ରୋଷରେ ପ୍ରଜ୍ୱଳିତ ହୋଇଯାନ୍ତି, ମୋର ଗୁପ୍ତ ପରିଣୟ କଥା ଶୁଣିଲେ ସେ କି ମତେ ଆଉ ପ୍ରାଣରେ ରଖିବେ ? ମହାରାଜ, ଏବେ ମୋହର ମରଣ ଧ୍ରୁବ । ଆପଣଙ୍କଠାରେ ମୋହର ଏହି ଶେଷ ବିଦାୟ (କହି ପ୍ରଣାମ କରିବା) । (ଉଠ) ମୋହର ସମସ୍ତ ଦୋଷ କ୍ଷମା କରି କେବେ ହେଲେ ମୋତେ ମନେ ପକାଉଥିବେ-ଏତିକି ଏକା ଏ ହତଭାଗିନୀର ମାଗୁଣି ।

ଅ - ସୁନ୍ଦରି, ତୁଚ୍ଛାଟାରେ କାହିଁକି ଏଡ଼େ ଭୟ ? ଚିତ୍ରଲେଖେ ଏହାଙ୍କୁ ଅଟ୍ଟାଳିକା, ଉପରକୁ ସତ୍ୱର ଘେନିଯାଅ ।

ଚି - ଯେ ଆଜ୍ଞା ! (ବାଣ ଓ କୁମ୍ଭାଣ୍ଡର ଘୋର ରଡ଼ି)

ଉ - (ସଭୟେ) ହା ଦେବି-ହା ପରମେଶ୍ୱରି-ଏ ଘୋର ସଙ୍କଟୁ ରକ୍ଷା କର-ରକ୍ଷା କର ।

ଚି - **ରାଗ ମହ୍ଲାର । ଅଟତାଳି ।**

ଜୀବ ସଖି ମୋ ବଚନ ଶୁଣ ।
ଏପରି ଚିନ୍ତାକର କି କାରଣ ? ।୦।
ବିପଦ ସମୟେ ସାହସ ହୀନ ।
ହେବା କାପୁରୁଷଙ୍କ ଲକ୍ଷଣ ।

ଯଦି ହେବ କରି ନୁହେ ଜାଣ ।
କେତେ ମାତର ପ୍ରତି ବିଧାନ ।
ତୁଚ୍ଛେ ହେବନା ଭୟ ଦ୍ୱିଗୁଣ ।
ଏହା ଅଟେ ସଖି ପରମାଣ ।୧।
ଯାହାଠାରୁ ବଳି ବୀର ନାହିଁ ।
ତିନିଲୋକ ବିଜୟୀ ଯେହି ।
ପାଖେ ଥାଉ ହାଜର ହୋଇ ।
କ୍ଷତି କରିବ ତୁମ୍ଭର କେହି ? ।
ହୋଇଯାଉଛ କାହିଁକି ଛନ୍ନ ।
ଏବେ ହୁଅ ସଖି ସାବଧାନ ।
ମନେ ନ ଘେନି କିଛି ହି ଆନ ।
ଚାଲ ଯିବା ଏଠାରୁ ବହନ ।୨।

ସଖି ! କିଛି ଭୟକରନାହିଁ । ସବୁ ଆପଦ ଘୁଞ୍ଚିଯିବ ଧୈର୍ଯ୍ୟଧରି ମୋ ସାଙ୍ଗେ ଚାଲ ଯିବା । (ଉଷାଙ୍କୁ ଧରି ପ୍ରସ୍ଥାନ) (ବାଣ ଓ କୁମ୍ଭାଣ୍ଡର ପ୍ରବେଶ) ।

ବା - (ଅନିରୁଦ୍ଧଙ୍କୁ ଦେଖି) ରେ ଧୂର୍ତ୍ତ ତସ୍କର ! ପ୍ରେତଭୂମିକି ଯିବାକୁ ପ୍ରସ୍ତୁତ ହୁଅ ।

ଅ - ଦୈତ୍ୟେନ୍ଦ୍ର ! ତିରସ୍କାର କରିବା କି ବୀରୋଚିତ କାର୍ଯ୍ୟ ।

ବା - ରେ ବର୍ବର ! ଯେବେ ତୁ ଆମ୍ଭର ବିନାନୁମତିରେ ଅନ୍ତଃପୁରରେ ପ୍ରବେଶ କରି ଆମ୍ଭର ପବିତ୍ର କୁଳରେ କଳଙ୍କ ଲଗାଇଛୁ, ତେବେ ତୋର ଶମନର ଆତିଥ୍ୟ ସ୍ୱୀକାର ବିନା ଅନ୍ୟଗତି ନାହିଁ । ରେ ପାଷାଣ୍ଡ । ଏହି କୃପାଣରେ ତୋର ଶିରଚ୍ଛେଦନ କରିବୁଁ ।

ଅ - ଅସୁରରାଜ ! ଏହି ବଜ୍ରସାର ନିର୍ମିତ ଦେହ ତୁମ୍ଭ କୃପାଣକୁ ଲକ୍ଷ୍ୟ କରେ ନାହିଁ । ଯେବେ ରଣକୁଶଳୀଅଟ ତେବେ ବୃଥା ପ୍ରଳାପ କଥାରେ କି କାର୍ଯ୍ୟ ?

ବା - ରେ ପାପିଷ୍ଠ ! ଏହିକ୍ଷଣି ତୋର ପ୍ରାଣନେବୁ ଆସେ । (କହି ଅନିରୁଦ୍ଧ ସଙ୍ଗେ ଯୁଦ୍ଧରେ ପ୍ରବୃତ୍ତ । କିଛି କାଳାନନ୍ତର ଅନିରୁଦ୍ଧକୁ ତଳେ ପକାଇ ହାଣିବାକୁ କୃପାଣ ଟେକିବା)

କୁ - ମହାରାଜ ! ଏ ଦାସର ଦୋଷ କ୍ଷମାକଲେ ମୁଁ କଥାଏ ନିବେଦନ କରିବି ।

ବା - ଆଚ୍ଛା-କିସ କହ !

କୁ - ମହାରାଜ ! ଏ ଯୁବକ କାହାର ପୁତ୍ର ? ଏହାର ବାସ ସ୍ଥାନ କେଉଁଠାରେ ? କେ ଏଠାକୁ ଆଣିଲା ? ଏ ସବୁ ବିଷୟ ବୁଝି ଏହାକୁ ଦଣ୍ଡ ଦେବା ଉଚିତ ବୋଧହୁଏ । ଯଦି ଏ ଗାନ୍ଧର୍ବ ବିଧାନରେ ଛାମୁଙ୍କ କନ୍ୟାଙ୍କ ପାଣିଗ୍ରହଣ କରିଅଛି ତେବେ ଏହାକୁ ବଧ କରି ଛାମୁଙ୍କ ଦୁହିତାଙ୍କୁ ବିଧବା କରି ରଖିବା ନିତାନ୍ତ ଅବିଧି । ଏହାର ବଳ, ରଣକୌଶଳ ଦେଖିଲେ ବୋଧହୁଏ ଏ କୌଣସି ଉତ୍ତମ କୁଳଜ ଅଟେ । ଅତଏବ ଏପରି ଲୋକକୁ ବଧ କରିବା ଛାମୁଙ୍କ ପରି ବୀର, ଧୀର, କ୍ଷମାଶୀଳ, ମହାନ୍ ଲୋକଙ୍କ ପକ୍ଷେ ଉଚିତ ନୁହେଁ । ଏଣୁ ଦାସର ନିବେଦନ ଶ୍ରବଣ କରି ଏହାର ପ୍ରାଣରକ୍ଷା ନିମନ୍ତେ ଅନୁମତି ପ୍ରଦାନ କରନ୍ତୁ ।

ବା - (କ୍ଷଣେ ବିଚାରି) ଆଚ୍ଛା । ଏ ଦୁରାତ୍ମାକୁ କାରାଗୃହରେ ଆବଦ୍ଧ କରି ରଖ ।

କୁ - ଯେ ଆଜ୍ଞା ! (ଅନିରୁଦ୍ଧକୁ ଧରି ପ୍ରସ୍ଥାନ)

(ଯବନିକା ପତନ)

●

# ଚତୁର୍ଥାଙ୍କ
## (ପ୍ରଥମ ଦୃଶ୍ୟ)
## (ଦ୍ୱାରକା)

(ଶ୍ରୀକୃଷ୍ଣ ଚିନ୍ତିତ ଭାବରେ, ବଳରାମ, ସାତ୍ୟକି, ବିପୃଥୁ ଓ ଅକ୍ରୁର ସହିତ ଉପବିଷ୍ଟ)

ବି - ପ୍ରଭୋ ! ସାମାନ୍ୟ ବ୍ୟକ୍ତିପରି କାହିଁକି ଚିନ୍ତାକରି ବିରାଜମାନ ହୋଇଅଛନ୍ତି ? ଆପଣଙ୍କ ଭୟରେ ଦାନବଗଣ ସଶଙ୍କ ଏବଂ ସୁରପତି ଇନ୍ଦ୍ର ଆପଣଙ୍କ କୃପା ଉପରେ ନିର୍ଭର କରି ସୁଖ ସ୍ୱଚ୍ଛନ୍ଦରେ ସ୍ୱର୍ଗ ରାଜ୍ୟ ପରିପାଳନ କରନ୍ତି ଆପଣ କିହେତୁ ଏପରି ଶ୍ରୀମୁଖ ମ୍ଳାନ କରିଅଛନ୍ତି ?

କୃ - ବିପୃଥୁ ! ଆମ୍ଭ ଚିନ୍ତାର କାରଣ ଏହି ଯେ ବୀରବର ଅନିରୁଦ୍ଧ ବର୍ତ୍ତମାନ ଦ୍ୱାରକାରେ ଦିଶୁନାହିଁ ।

ସା - ପ୍ରଭୋ ! ଏଥିକି ଚିନ୍ତା କାହିଁକି ? ଅନ୍ୱେଷଣାର୍ଥେ ଦୂତ ପ୍ରେରଣ କରାଯାଉ ।

ଅ - ତେବେ ବିଳମ୍ବ କରିବା ପ୍ରୟୋଜନକି ? ସତ୍ୱର ରାଜକୁମାରଙ୍କ ଅନ୍ୱେଷଣାର୍ଥେ ପ୍ରକାଶ୍ୟ ଓ ଗୁପ୍ତଚରମାନେ ଯାନ୍ତୁ ।
(ଦ୍ୱାରୀର ପ୍ରବେଶ) ।

ଦ୍ୱା - ମହାପ୍ରଭୋ ! ନାରଦ ମହାମୁନି ଶ୍ରୀଛାମୁଙ୍କ ଦର୍ଶନାର୍ଥେ ଦ୍ୱାର ପାଖରେ ଦଣ୍ଡାୟମାନ ଅଛନ୍ତି ।

କୃ - ଶୀଘ୍ର ଯାଇ ତାହାଙ୍କୁ ଘେନିଆ ।

ଦ୍ୱା - ଯେ ଆଜ୍ଞା (ପ୍ରସ୍ଥାନ)

ଦ୍ୱା - (ନାରଦଙ୍କୁ) ପ୍ରଭୋ ! ଭିତରକୁ ବିଜେ ହେନ୍ତୁ ।

ନା - ଆଚ୍ଛା- (କହି ଭିତରକୁ ଯିବା) ।

ନା - (ଆସନ ଗ୍ରହଣ କରି) ଭଗବାନ୍ ! ଆଜି ଉତ୍ସାହହୀନ ଏବଂ ଅନ୍ୟ ମନସ୍କ ହୋଇଥିଲା ପରି ବୋଧହୁଏ ।

କୃ - ମହାମୁନେ, ବର୍ତ୍ତମାନ ବତ୍ସ ଅନିରୁଦ୍ଧ ଦିଶୁନାହିଁ ବୋଲି ଶୁଣି ଚିନ୍ତିତ ଅଛି । ସେ କେଉଁଠାରେ ଥିବ ଆପଣଙ୍କୁ ଜଣାଥିବ ପରା ?

ନା - ଭଗବାନ୍, ମୁ ତାହାହିଁ ଶ୍ରୀଛାମୁରେ ଜଣାଇବା ସକାଶେ ଏଠାକୁ ଆସିଅଛି ।

କୃ - ସେ, କେଉଁଠାରେ ଅଛନ୍ତି ?

ନା - ଶୋଣିତାଧିପତି ଦୈତ୍ୟେନ୍ଦ୍ର ବାଣର କାରାଗୃହରେ ବନ୍ଦୀ ହୋଇଅଛନ୍ତି ।

ସ - (ସଚକିତେ) ସତେ ?

ନା - ଆଉ କଅଣ ଶୁଣୁଛ ?

କୃ - କିହେତୁ ମହାମୁନେ ?

ନା - ପ୍ରଭୋ ! ଶ୍ରବଣ କରନ୍ତୁ । ଉଷାନାମ୍ନୀ ବାଣର ଗୋଟିଏ କନ୍ୟା ଅଛି । ସେହି ଉଷାଙ୍କ ସହିତ ଅନିରୁଦ୍ଧଙ୍କର ସ୍ୱପ୍ନ ମେଳନ ହୋଇଥିଲା । ଉଷା ତାହାଙ୍କଠାରେ ଅନୁରାଗିଣୀ ହୋଇ ନିରନ୍ତର ଅଧୀରା ହୋଇଯାଉଥିଲେ । ଉଷାଙ୍କର ସଖି ଚିତ୍ରଲେଖା ଦ୍ୱାରକାକୁ ଆସି ଅନିରୁଦ୍ଧଙ୍କୁ ସଙ୍ଗେ ଧରି ଉଷାଙ୍କଠାକୁ ଘେନିଗଲା । ପରସ୍ପର ପ୍ରୀତି ଜାତ ହେବାରୁ ଅନିରୁଦ୍ଧ ଗାନ୍ଧର୍ବ ବିଧାନରେ ଉଷାଙ୍କର ପାଣିଗ୍ରହଣ କଲେ । ବାଣ ଏହା ଜାଣିପାରି ଅନିରୁଦ୍ଧଙ୍କ ସହିତ ଯୁଦ୍ଧ କରି ପରିଶେଷେ କୃତ୍ରିମ ଯୁଦ୍ଧରେ ଅନିରୁଦ୍ଧଙ୍କୁ ପାଶରେ ଆବଦ୍ଧ କରି ପ୍ରାଣରେ ମାରିବାକୁ ବସିଥିଲା । ମାତ୍ର ତାହାର ମନ୍ତ୍ରୀ କୁମ୍ଭାଣ୍ଡର ଉପଦେଶରେ ଦୁରାତ୍ମା ସେପରି ନକରି ଅନିରୁଦ୍ଧଙ୍କୁ କାରାଗାରରେ ବନ୍ଦୀ କରିଅଛି ।

କୃ - ପଶୁପତିଙ୍କ ପ୍ରସାଦରୁ ପରା ସେ ଏଡ଼େ ଦର୍ପାନ୍ଧ ହୋଇ ଅଛି ? ସାତ୍ୟକି- ତୁମ୍ଭେ ଦ୍ୱାରକାପୁର ଜାଗ୍ରତରେ ରକ୍ଷା କରୁଥାଅ । ଆମ୍ଭେ ବର୍ତ୍ତମାନ ଯାଇ ସେ ଦୁରାତ୍ମାର ଦର୍ପଦଳନ କରି ଆସିବୁ ।

ସା - ଯେ ଆଜ୍ଞା । (ସମସ୍ତଙ୍କର ପ୍ରସ୍ଥାନ) ।

ନା - (ସ୍ୱଗତ) ଚିତ୍ରଲେଖା ଆମ୍ଭଙ୍କୁ ସ୍ମରଣା କଲାକ୍ଷଣି ଆମ୍ଭେ ସକଳ ବିଷୟ ଧ୍ୟାନବଳରେ ଜାଣିପାରି ଶ୍ରୀକୃଷ୍ଣଙ୍କ ଠାରେ ଜଣାଇଦେଲୁ । ଏବେ ଆମ୍ଭର ମନସ୍କାମନା ପୂର୍ଣ୍ଣ ହେଲା ଆଜି ଦୁର୍ବୃତ୍ତ ବାଣର ଦର୍ପଗଞ୍ଜନ ହେବ । ଆଚ୍ଛା । ଆମ୍ଭେ ଯାଇ ଶ୍ରୀକୃଷ୍ଣ ବାଣର ସହିତ ଯୁଦ୍ଧ କରିବାକୁ ଯିବାର ବାର୍ତ୍ତା ଦେବତାମାନଙ୍କୁ ଓ ପିତା କମଳାସନଙ୍କୁ କହି ଆସିବା ।

(ପ୍ରସ୍ଥାନ ଓ ଯବନିକା ପତନ)

## ଦ୍ବିତୀୟ ଦୃଶ୍ୟ

(ବାଣ ଓ ଘଣ୍ଟାକର୍ଣ୍ଣ ଆସୀନ)

ବା - ଘଣ୍ଟାକର୍ଣ୍ଣ, ଦୁରାତ୍ମା କେଡ଼େ ସାହସକଲା ? ପାପିଷ୍ଠକୁ ପ୍ରାଣରେ ବିନାଶ କରିବାକୁ ବସିଥିଲୁ । ମାତ୍ର କୁମ୍ଭାଣ୍ଡ ଅନେକ ପ୍ରକାରେ କହିବାରୁ ମନା କରି ତାହାକୁ କାରାଗାରରେ ଆବଦ୍ଧ କରିବାକୁ ଆଦେଶ ଦେଲୁ । ଦେଖ ! ଦୁରାଚାରୀ କେଉଁ ଦେଶରୁ କିପରି ଆସି କେଡ଼େ ସାହାସ କର୍ମକଲା !

ଘ - ଆଜ୍ଞା ଯଥାର୍ଥ ! ତାହାର ସାହସ ଅସାଧାରଣ । ଯେଉଁ ଭବନରେ ମଶକ ଅଲକ୍ଷରେ ପ୍ରବେଶ କରିପାରେ ନାହି ସେହି ସ୍ଥଳରେ କି କୌଶଳରେ ସେ ପ୍ରବେଶ କରି ଗାନ୍ଧର୍ବ ବିଧାନରେ ଯେମା ଉଷାଙ୍କର ପାଣିଗ୍ରହଣ କରିଅଛି । ଏ ବଡ଼ ଆଶ୍ଚର୍ଯ୍ୟ ଅଟେ । (କୁମ୍ଭାଣ୍ଡର ପ୍ରବେଶ) ।

କୁ - (ନମସ୍କାର କରି) ମହାରାଜ ! ଏ କି ଆଶ୍ଚର୍ଯ୍ୟ ! ଅସମୟରେ ଯୁଗଳୟ ହେଲା ପରି ବୋଧହୁଏ । କାଳାନଳସମ ଉଜ୍ଜ୍ୱଳ ଅଗ୍ନିଶିଖା ଗଗନ ପଥ ପର୍ଯ୍ୟନ୍ତ ଆକ୍ରମଣ କରୁଅଛି ! ବିନାମେଘେ ପୁନଃପୁନ ଗମ୍ଭୀର ଗର୍ଜନ କରି କର୍ଣ୍ଣ କୁହରକୁ ଚମକାଇଦିଏ । ବର୍ଷାଧାର ପରି ପ୍ରଜ୍ଜ୍ୱଳିତ ଉଲ୍‌କାପାତ ହେଉଅଛି । କି ଭୟଙ୍କର ! ଦେଖନ୍ତୁ ! ହଠାତ୍ ଦେବଦୁନ୍ଦୁଭିର ଧ୍ୱନି ଶୁଭୁଅଛି । ନିଶ୍ଚୟ ଏ କୌଣସି ଦୁର୍ଦଶାର ପୂର୍ବଲକ୍ଷଣ । (ଦ୍ୱାରିର ପ୍ରବେଶ) ।

ଦ୍ୱା - ମହାରାଜ ! ଛାମୁ ଯାହାଙ୍କୁ କାରାଗୃହରେ ରଖିଅଛନ୍ତି ସେ ଅନିରୁଦ୍ଧ । କୃଷ୍ଣଙ୍କ ପୌତ୍ର । ତାହାଙ୍କୁ ଆବଦ୍ଧ କରି ରଖିଥିବା କଥା ଶୁଣି କୃଷ୍ଣ ଓ ବଳରାମ ଛାମୁଙ୍କ ଉପରକୁ ଚଢ଼ାଉ କରି ଆସୁଅଛନ୍ତି ।

କୁ - ସତେ ?

ଦ୍ୱା - ହଁ ମହାରାଜ !

ବା - କୁମ୍ଭାଣ୍ଡ-ଭୟକର ନାହିଁ । ଏତେ ଦିନକୁ ମହେଶ୍ୱରଙ୍କ ବର ସଫଳ ହୋଇଅଛି । ଏଥର ଆମ୍ଭେ ସମକକ୍ଷ ଯୋଦ୍ଧାଙ୍କୁ ଯୁଦ୍ଧ କରି ପରିତୃପ୍ତ ହେବୁଁ । କୁମ୍ଭାଣ୍ଡ ! ଯାହାର ବାହୁବଳରେ ବରୁଣ, କୁବେର, ଯମ, ହୁତାଶନ ଇତ୍ୟାଦି ଦେବତାମାନେ ପରାଜିତ ଓ ଦେବରାଜ ଆଖଣ୍ଡଳ ସର୍ବଦା

ସଂସ୍ଥାପିତ ତାହାର କି କୌଣସି କାଳେ କେଉଁ ବୀର ଆସି ଅପମାନ କରିପାରିବ ? ବୃଥା ଭୟ କରନାହିଁ । ତୁମ୍ଭେ ଯାଇ ଗଡ଼ ରକ୍ଷା କରୁଥାଅ । ଆମ୍ଭେ ଯାଇ ଆଗନ୍ତୁକ ଯୋଦ୍ଧାର ଶିରଚ୍ଛେଦନ କରି ଆସିବୁ ।

କୁ - ଯେ ଆଜ୍ଞା । (ପ୍ରସ୍ଥାନ ଓ ଯବନିକା ପତନ)

## ତୃତୀୟ ଦୃଶ୍ୟ

(ରଣଭୂମି କୃଷ୍ଣ ଓ ବଳରାମ)

ବ - କୃଷ୍ଣ, ଆମ୍ଭର ଇଚ୍ଛା ହୁଏ ଆମ୍ଭେ ବାଣର ସହିତ ଯୁଦ୍ଧ କରିବୁ ।

କୃ - ଆର୍ଯ୍ୟ ! ଆମ୍ଭେ ମନରେ ସ୍ଥିର କରିଅଛୁଁ ଆମ୍ଭେ ଏକା ବାଣର ପିପାସା ଶାନ୍ତ କରିବୁ । ଆପଣ ଅନ୍ୟ ଅସୁରମାନଙ୍କୁ ବିନାଶ କରିବାରେ ପ୍ରବୃତ୍ତ ହେବେ । ଏପରି କଲେ ଅସୁର ବୀରମାନଙ୍କୁ ସହଜରେ ବିନାଶ କରିପାରିବା ଏବଂ ପରସ୍ପର ରକ୍ଷା ମଧ୍ୟ କରିପାରିବା । (ନେପଥ୍ୟେ ବାଣର ଘୋର ରଡ଼ି)

ବ - କୃଷ୍ଣ, ହେଟି ଦେଖ ! ବାଣ ଘୋର ରଡ଼ି କରି ଯୁଦ୍ଧକୁ ଆସୁଅଛି । ଆମ୍ଭେମାନେ ସାବଧାନ ହୋଇ ମାୟା ଯୋଦ୍ଧାର ସହିତ ଯୁଦ୍ଧ କରିବାକୁ ହେବ ।

କୃ - ଆର୍ଯ୍ୟ ! ଛାର ବାଣର ଲାଗି ଆମ୍ଭେମାନେ ସାବଧାନ ହେବା ଅନାବଶ୍ୟକ । (ଘଣ୍ଟାକର୍ଣ୍ଣ ଓ ବାଣ ରଡ଼ି କରି ପ୍ରବେଶ) ।

ବା - ରେ କୃଷ୍ଣ ! କୃତାନ୍ତ ଆସି ତୋ ସମ୍ମୁଖରେ ଉପସ୍ଥିତ ଅଛି । ଆଜି ଆଉ ଜୀବନ ଧରି ଦ୍ୱାରକାକୁ ଯାଇ ପାରିବୁ ନାହିଁ ।

ବ - ରେ ଦୁଷ୍ଟଦାନବ, ବୃଥା ତର୍ଜନ ଗର୍ଜନରେ କି ପ୍ରୟୋଜନ ? ଯଦି ଶକ୍ତି ଅଛି ଅଗ୍ରସର ହୁଅ । ଆଜି ଆମ୍ଭ ହସ୍ତରୁ ତୁ ନିସ୍ତାର ପାଇବୁ ନାହିଁ ।

କୃ - ଆର୍ଯ୍ୟ, କ୍ଷାନ୍ତ ହୁଅନ୍ତୁ । ଆମ୍ଭେ ଏହାର ଦର୍ପ ଚୂର୍ଣ୍ଣ କରିବୁ ।

ବା - ରେ କୃଷ୍ଣ, ଆଜି ତୋର ମାନବଲୀଳା ସମ୍ବରଣ ହେବ ।

କୃ - ରେ ଅସୁରାଧମ, ଥରେ ତୋର ଇଷ୍ଟଦେବଙ୍କୁ ସ୍ମରଣ କରି ଅଗ୍ରସର ହୁଅ ।

ବା - (କ୍ରୋଧରେ) ଆଚ୍ଛା ! ଛିଡ଼ାହୁଅ ।
(ବାଣ ଓ କୃଷ୍ଣଙ୍କର, ବଳଦେବ ଓ ଘଣ୍ଟାକର୍ଣ୍ଣର ଯୁଦ୍ଧ । ଘଣ୍ଟାକର୍ଣ୍ଣ ପଳାୟନ, ବାଣରମୂର୍ଚ୍ଛା ଓ ଶିବଙ୍କ ପ୍ରବେଶ) ।

ଶି - କୃଷ୍ଣ ! ଆମ୍ଭର ପରମଭକ୍ତକୁ ପରାସ୍ତ କରି ଆମ୍ଭଙ୍କୁ ଅପମାନ କରିଅଛ । ଏ ଅପମାନ ଆମ୍ଭେ ସହ୍ୟ କରିବୁ ନାହିଁ । ବର୍ତ୍ତମାନ ଆସି ଆମ୍ଭ ସଙ୍ଗେ ଯୁଦ୍ଧକର ।

କୃ - ଭଲ ହୋଇଛି । ଆପଣ କାହିଁକି ଲଣ୍ଡଭଣ୍ଡ ହେବାକୁ ଆସିଲେ ?

ଶି - ବାସୁଦେବ, ଆମ୍ଭର ଭକ୍ତକୁ ପରାସ୍ତ କରି ଆମ୍ଭଙ୍କୁ ଅପମାନ କରିଅଛ । ଯାହା ହେଉ ଆସ ଆପଣଙ୍କ ପରାକ୍ରମ ଥରେ କଷିବା ।

କୃ - ତେବେ ତୟାର ହୁଅ ।

(ଉଭୟେ ଯୁଦ୍ଧରେ ପ୍ରବୃତ୍ତ ହେବା । ହଠାତ୍ ବ୍ରହ୍ମାଙ୍କ ପ୍ରବେଶ) ।

ବ୍ର - ମହାଦେବ ! ଏକି ଏକି ? କ୍ରୋଧ ସମ୍ବରଣ କରନ୍ତୁ । ଉମାକାନ୍ତ ଯୁଦ୍ଧରୁ କ୍ଷାନ୍ତ ହୁଅନ୍ତୁ । ହରିହର ଏକ ଆତ୍ମା ଏକ ମୂର୍ତ୍ତି ହୋଇ ଯୁଦ୍ଧ କରିବା ବିଧି ହୋଇନାହିଁ । ଶାନ୍ତ ହୁଅନ୍ତୁ ଶାନ୍ତ ହୁଅନ୍ତୁ ।

(ଉଭୟେ ଶସ୍ତ୍ର ନିକ୍ଷେପ କରି) ।

ଶି - ହେ ପୁରୁଷୋତ୍ତମ, ହେ ନିଖିଳ ସୃଷ୍ଟିପାଳକ କୃଷ୍ଣ ! ଆମ୍ଭେ ନ ଜାଣି ଆପଣଙ୍କ ସଙ୍ଗେ ଯୁଦ୍ଧ କରିବାକୁ ଉଦ୍ୟତ ଥିଲୁ । ଏ ଆମ୍ଭ ପକ୍ଷେ ନିତାନ୍ତ ମନ୍ଦକଥା । ଆପଣ ଅନାଦି, ଅନନ୍ତ ନିତ୍ୟ ଏବଂ ସନାତନ । ତ୍ରିଲୋକରେ କେ ଅଛି ଆପଣଙ୍କୁ ପରାସ୍ତ କରିପାରିବ ?

କୃ - ମହାଦେବ ! ଆପଣଙ୍କର କିଛି ଦୋଷ ନୁହେ । ଅବଶ୍ୟ ଆପଣା ଭକ୍ତକୁ ରକ୍ଷା କରିବା ସକାଶେ ସମସ୍ତେ ଚେଷ୍ଟା କରୁଥାନ୍ତି ।

ଶି - ଯାହା ହେଉ, ଭଗବାନ୍, ବାଣ ଅଧାର୍ମିକ ବା ପୌରଷ ହୀନ ଲୋକ ନୁହେଁ । ମାତ୍ର ସେ ନିତାନ୍ତ ଦର୍ପାନ୍ଧ । ଏହି ହେତୁରୁ ସେ ଆପଣଙ୍କଠାରେ ଦୁର୍ବୁଦ୍ଧି କଲା । ଆମ୍ଭର ନିବେଦନ ଏହି ଯେ ତାହାକୁ ମୁମୂର୍ଷୁ ଅବସ୍ଥାରୁ ବଞ୍ଚାଇ ସୁବୁଦ୍ଧି ପ୍ରଦାନ କରନ୍ତୁ ।

କୃ - ଭୋଳାନାଥ ! ଆମ୍ଭେ ଆପଣଙ୍କ କଥା କେବେ ଅନ୍ୟଥା କରିବୁ ନାହିଁ । ଆପଣଙ୍କ ସେବକକୁ ମୁମୂର୍ଷୁ ଅବସ୍ଥାରୁ ବଞ୍ଚାଇ ସୁବୁଦ୍ଧି ପ୍ରଦାନ କରୁଅଛୁ ।

(କୃଷ୍ଣ ବାଣର ମସ୍ତକରେ କର ମାରିବା ଓ ବାଣ ଉଠିବା) ।

ବା - (କରଯୋଡ଼ି) ହେ ଜଗଜ୍ଜନପାଳକ, ମୁଁ ନଜାଣି ଆପଣଙ୍କ ପୌତ୍ରଙ୍କୁ କାରାଗୃହରେ ଆବଦ୍ଧ କରି ଆପଣଙ୍କ ସଙ୍ଗେ ଯୁଦ୍ଧରେ ପ୍ରବୃତ୍ତ ହେଲି । ମୋହର ମହାଦୋଷ ହୋଇଅଛି । ହେ କ୍ଷମାଶୀଳ କ୍ଷମାକରନ୍ତୁ । (ଚରଣ ତଳେ ପଡ଼ିବା) ।

(ଘଣ୍ଟାକର୍ଣ୍ଣ, କୁମ୍ଭାଣ୍ଡ, ବଳରାମ, ଅନିରୁଦ୍ଧ, ଊଷା ଓ ଚିତ୍ରଲେଖାକୁ ସଙ୍ଗେ ଘେନି ପ୍ରବେଶ) ।

କୁ - (କରଯୋଡ଼ି) ପ୍ରଭୋ ! ହେଟି ଆପଣଙ୍କ ପୌତ୍ର ଓ ପୌତ୍ରବଧୂ । ଆମ୍ଭ ମହାରାଜ ନ ଜାଣି ଆପଣଙ୍କଠାରେ ଦୋଷ କରିଅଛନ୍ତି । ଏଣୁ ତାହାଙ୍କୁ କ୍ଷମା କରନ୍ତୁ । (ଚରଣତଳେ ପଡ଼ିବା) ।

ଚି - (କରଯୋଡ଼ି) ଆପଣ କ୍ଷମା ନ କଲେ କରିବ କିଏ ?

ଊ - (କରଯୋଡ଼ି)

**ରାଗ ଘଣ୍ଟାରବ । ଆଦିତାଳ ।।**

ହେ ପ୍ରଭୋ ଦେବ ଦୟା ସାଗର ।
କେଶବ ଶ୍ରୀହରି ରମାବର ।୦।

ଶ୍ରୀନିକେତନ ଲୋକ ବିଧାତା ।
ହେ ଦେବ ଯାଦବ ଶ୍ରୀଧର ।୧।

ଶ୍ରୀବତ୍ସାଙ୍କିତ କୌସ୍ତୁଭଧାରି ।
ହେ ଦେବ ପାପ ତମୋହର ।୨।

ପ୍ରଭୋ ! ମୋହର ପିତାଙ୍କ ଦୋଷ କ୍ଷମା କରନ୍ତୁ । (ନମସ୍କାର କରିବା)

କୃଷ୍ଣ - କୁମ୍ଭାଣ୍ଡ-ଉଷେ-ଚିତ୍ରଲେଖେ-ଆମ୍ଭେ ଏହି ପ୍ରମାଣ କରିଅଛୁ ଯେ ଭକ୍ତ ପ୍ରହ୍ଲାଦଙ୍କ ବଂଶରେ ଜନ୍ମଗ୍ରହଣ କରିଥିବା କାହାରିକୁ ନିଜ ହସ୍ତରେ ବଧ କରିବୁ ନାହିଁ । ବାଣ ପ୍ରହ୍ଲାଦଙ୍କ ବଂଶଜ ଅଟେ । ଏଣୁ ଏହାର କେବଳ ଦର୍ପଦଳନ କରି ପ୍ରାଣରେ ବଞ୍ଚାଇଅଛୁ । ବୋଧହୁଏ ଏ ଉତ୍ତମ ଜ୍ଞାନ ପାଇ ଏଣିକି ଆଉ ଗର୍ବ ପ୍ରକାଶ କରିବ ନାହିଁ ।

ବାଣ - (ଉଷା ଓ ଅନିରୁଦ୍ଧଙ୍କୁ ସମର୍ପଣ କରି, କରଯୋଡ଼ି)

ଭୁଜଙ୍ଗ ପ୍ରୟାତବୃତ୍ତ ।।

ବିହଙ୍ଗେଶବାହଂ ଭୁଜଙ୍ଗ ବୃତାଙ୍ଗଂ ।
ରମାଙ୍କଂ ମହୀଶଂ ବିଷାଙ୍କଂ ମହେଶଂ ।
ଦ୍ୱିନେତ୍ରଂ ବିଧୀଶଂ ତ୍ରିନେତ୍ରଂ ଗିରୀଶଂ ।
ଭଜାମୋ ହରିଂ ତଂ ଭଜାମୋ ହରିଂ ତଂ ।୧।

ସୁଶାର୍ଙ୍ଗଂ ବହନ୍ତଂ ପିନାକଂ ଦଧଂତଂ ।
ଅବନ୍ତଂ ଗଜେନ୍ଦ୍ରଂ ହରନ୍ତଂ ଗଜେନ୍ଦ୍ରଂ ।
ଅଘାରିଂ ସୁରେଶଂ ମଖାରିଂ ଗଣେଶଂ ।
ଭଜାମୋ ହରିତଂ ଭଜାମୋ ହରିଂତଂ ।୨।

ମହେନ୍ଦ୍ରୋପ ଲାଭଂ ସୁଧା-ଧାମ-ଶୋଭଂ ।
ଶିଖାବଦ୍ଧବର୍ହଂ ସ୍ୱନ ମାସ୍ତଗର୍ହଂ ।
ପଦାବ୍ଜୋଥିଥଗଙ୍ଗଂ ଦୃଗୁଥିଥାଗ୍ନି ଲିଙ୍ଗଂ ।
ଭଜାମୋ ହରିଂତଂ ଭଜାମୋ ହରିଂତଂ ।୩।

ପିବନ୍ତଂ ଦାବାଗ୍ନିଂ ଜ୍ୱଳନ୍ତଂ ବିଷାଗ୍ନିଂ ।
ଭୁଜଙ୍ଗେ ନଟନ୍ତଂ ପ୍ରଦୋଷେ ରଟଂତଂ ।
ସମୁଦ୍ରେ ସ୍ୱପନ୍ତଂ ମହୀଧ୍ରେ ବସନ୍ତଂ ।
ଭଜାମୋ ହରିଂତଂ ଭଜାମୋ ହରିଂତଂ ।୪।

ଧରନ୍ତଂଚ ଚକ୍ରଂ ବହନ୍ତଂ ତ୍ରିଶୂଳଂ ।
ବନାନ୍ତେ ରମନ୍ତଂ ଶ୍ମଶାନେ ଚରନ୍ତଂ ।
ମଧୁଂସଂହରନ୍ତଂ ଯମଂତାଡ଼ୟନ୍ତଂ ।
ଭଜାମୋ ହରିତଂ ଭଜାମୋ ହରଂତଂ ।୫।

ଛିଦନ୍ତଂ ଚଦୈତ୍ୟଂ ଜୟନ୍ତଂ ଚମୃତ୍ୟୁଂ ।
ଦଦଂତଂଚମୁକ୍ତିଂ ସୁଜଂତଂଚଭକ୍ତିଂ ।

ଶ୍ରୀୟାସଂଲଲନ୍ତଂ ଭବାନ୍ୟାଲସନ୍ତଂ ।
ଭଜାମୋ ହରିଂତଂ ଭଜାମୋ ହରଂତଂ ।୬।

ଅନନ୍ତେ ଶୟାନଂ ଫଣୀନ୍ଦ୍ରଂ ଦଧାନଂ ।
କନନ୍ତଂ ମରାରିଂ ବିଭାନ୍ତଂ ପୁରାରିଂ ।
ସୁବର୍ଣ୍ଣାମ୍ବରଂତଂ ଦିଗନ୍ତମ୍ବରଂତଂ ।
ଭଜାମୋ ହରିଂତଂ ଭଜାମୋ ହରଂତଂ ।୭।

ହରିଂ ବିଷ୍ଣୁ କୃଷ୍ଣଂ ଶିବଂ ଶମ୍ଭୁଚନ୍ଦ୍ରଂ ।
ଜଗନ୍ନାଥମେଶଂ ଭବଂବିଶ୍ୱନାଥଂ ।
ଅବନ୍ତଂ ସଦା ପାଦପଦ୍ମାଶ୍ରିତଂତଂ ।
ଭଜାମୋ ହରିଂତଂ ଭଜାମୋ ହରଂତଂ ।୮।
(ଯବନିକା ପତନ)

●

# ପ୍ରାକ୍‌ସୂଚନା

୧୯୦୨ ମସିହାରେ ପ୍ରକାଶିତ ନାଟକଟିର ପ୍ରସ୍ତାବନାରେ ନଟ ଏହାକୁ ''ଅହଲ୍ୟା ଶାପ ଓ ମୋଚନ'' ବୋଲି ସୂଚିତ କରିଥିଲେ ହେଁ ନାଟକଟିର ପ୍ରଚ୍ଛଦ ପୃଷ୍ଠାରେ ଏହାକୁ **ଅହଲ୍ୟା ଶାପ ଓ ବିମୋଚନ ନାଟକ** ବୋଲି ଉଲ୍ଲେଖ କରାଯାଇଛି । ଭ୍ରମବଶତଃ କେହି କେହି ଆଲୋଚକ ଏହାକୁ ''ଅହଲ୍ୟା ଶାପ ବିମୋଚନ'' ବୋଲି ଗ୍ରହଣ କରିଥିବା ଦେଖାଯାଏ । ଏହା ନାଟ୍ୟକାରଙ୍କ ଶିକ୍ଷାଗୁରୁ ଶ୍ୟାମସୁନ୍ଦର ରାଜଗୁରୁଙ୍କୁ ଉତ୍ସର୍ଗ କରାଯାଇଛି । ପ୍ରଥମ ସଂସ୍କରଣ ଶେଷ ହେବା ପରେ ମାନ୍ୟବର ପାରଳାଧିପତି କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କଦ୍ୱାରା ଏହାର ଦ୍ୱିତୀୟ ସଂସ୍କରଣ ୧୯୨୧ ମସିହାରେ ଗଜପତି ପ୍ରେସରୁ ପ୍ରକାଶିତ ହୋଇଥିଲା । ପ୍ରକାଶକ ଏହା ଉତ୍କଳର ନାନା ସ୍ଥାନୀୟ ରଙ୍ଗମଞ୍ଚରେ ଅଭିନୀତ ହୋଇ ଦର୍ଶକମଣ୍ଡଳୀର ଆନନ୍ଦବର୍ଦ୍ଧନ କରିଥିବା ସୂଚାଇ ଅଛନ୍ତି ।

ନାଟକଟି ରାମାୟଣର ଅହଲ୍ୟା ଉପାଖ୍ୟାନ ଉପରେ ଆଧାରିତ । ଅହଲ୍ୟାଙ୍କ ପ୍ରତି ଗୌତମଙ୍କ ଅଭିଶାପ ବୃତ୍ତାନ୍ତ ପୁରାଣମାନଙ୍କରେ ଭିନ୍ନ ଭିନ୍ନ ରୂପେ ବର୍ଣ୍ଣିତ । ନାଟ୍ୟକାର ଏହାକୁ ସରସ ନାଟ୍ୟରୂପ ଦେବାପାଇଁ ଉପାଖ୍ୟାନଟିରେ କେତେକ ପରିବର୍ତ୍ତନ ଆଣିଛନ୍ତି । ଦେବତାମାନଙ୍କଠାରୁ ସ୍ୱର୍ଗସୁଖ ଅପେକ୍ଷା ମର୍ତ୍ତ୍ୟବାସୀଙ୍କ ଦୁଃଖମିଶ୍ରିତ ସୁଖ ଅଧିକ ଆନନ୍ଦପ୍ରଦ ହେବା ଶୁଣି ଦେବରାଜ ଇନ୍ଦ୍ରଙ୍କ ମର୍ତ୍ତ୍ୟାବତରଣ ଏବଂ ଉପବନରେ ପୁଷ୍ପଚୟନରତା ଅହଲ୍ୟାଙ୍କ ଦର୍ଶନରେ କାମବିମୋହିତ ହେବା (ମହାରାଜ ଦୁଷ୍ମନ୍ତଙ୍କ ଶକୁନ୍ତଳା ଦର୍ଶନ ଅନୁରୂପ), ଗୌତମଙ୍କ ଶିଷ୍ୟତ୍ୱ ଗ୍ରହଣ ଏବଂ ପୁରନ୍ଦର ଛଦ୍ମ ନାମରେ ଅହଲ୍ୟାଙ୍କ ଗୃହରେ ରହି ଇନ୍ଦ୍ରଙ୍କ ବିଦ୍ୟା ଅଧ୍ୟୟନ, ଶୁଶ୍ରୂଷା ବ୍ୟାଜରେ ଅହଲ୍ୟାଙ୍କ ମନରେ କାମୋଦ୍ରେକ, ଅସମୟରେ ରାତ୍ରି ଶେଷର ପରିବେଶ ସୃଷ୍ଟି କରି ଗୌତମଙ୍କୁ କୁଟୀରରୁ ଦୂରୀକରଣ ଇତ୍ୟାଦି ମୂଳରାମାୟଣର ଅନୁରୂପ ନୁହେଁ । ଆହୃତ ବିଷୟବସ୍ତୁକୁ ଅଭିନବ ରୂପ ଦେବାତ ପ୍ରତିଭାଧର ଲେଖକମାନଙ୍କ ବିଶେଷତ୍ୱ । ଆଲଙ୍କାରିକମାନେ ଲେଖକମାନଙ୍କ ଏହି ସ୍ୱାଧୀନତାକୁ ସ୍ୱୀକୃତି ଦେଇଛନ୍ତି । ଆନନ୍ଦବର୍ଦ୍ଧନଙ୍କ ପାଇଁ ଏହା ପ୍ରବନ୍ଧ ଧ୍ୱନି ଏବଂ

କୁନ୍ତକଙ୍କ ପାଇଁ ପ୍ରବନ୍ଧ ବକ୍ରତା । ଅହଲ୍ୟାଙ୍କ ମନରେ ଭାବାନ୍ତର ସୃଷ୍ଟି କରି ନ ଥିଲେ ବିନା କାରଣରେ ତାଙ୍କୁ ଅଭିଶପ୍ତା କରିବା ଦ୍ୱାରା ଗୌତମଙ୍କ ଚାରିତ୍ରିକ ମର୍ଯ୍ୟାଦା କ୍ଷୁଣ୍ଣ ହୋଇଥାଆନ୍ତା । ପୁରାଣର କାଳ୍ପନିକତାକୁ ବାସ୍ତବାୟିତ କରିବାପାଇଁ ନାଟ୍ୟକାରଙ୍କ ଏ ପରିବର୍ତ୍ତନ ନିଶ୍ଚିତଭାବରେ ପ୍ରଶଂସନୀୟ । ଏହା ମଧ୍ୟ ନାଟକଟିର ମଞ୍ଚ ସଫଳତା ନିମିତ୍ତ ଅନ୍ୟତମ କାରଣ ।

ନାଟକ ରଚନା ଓ ସେଗୁଡ଼ିକର ମଞ୍ଚାୟନର ଅନୁଭୂତି ଆଲୋଚ୍ୟ ନାଟକଟିକୁ ଏକ ସଫଳ ମଞ୍ଚୋପଯୋଗୀ ନାଟକ କରିବାରେ ସାହାଯ୍ୟ କରିଛି । ଏହା ଛଅଟି ଅଙ୍କରେ ବିଭକ୍ତ । ପ୍ରଥମ ଚାରୋଟି ଅଙ୍କ ଅହଲ୍ୟାଙ୍କ ଅଭିଶାପ ପାଇଁ ପରିବେଶ ସୃଷ୍ଟି କଲାବେଳେ ଶେଷ ଦୁଇଟି ଅଙ୍କ ଶାପ ମୁକ୍ତି ପାଇଁ ଉଦ୍ଦିଷ୍ଟ । ଏଥିପାଇଁ ନାଟ୍ୟକାର ନାମକରଣବେଳେ ମଝିରେ 'ଓ'ଟିଏ ରଖିଛନ୍ତି । ଶାପମୁକ୍ତ ଅହଲ୍ୟାଙ୍କ ସ୍ତୁତିକୁ ଭରତବାକ୍ୟରୂପେ ଗ୍ରହଣ କରି ନାଟକଟିର ପରିସମାପ୍ତି ଘୋଷଣା କରାଯାଇଛି । ଏହାର ପ୍ରଥମ ଅଙ୍କ ତିନି, ଦ୍ୱିତୀୟ ଅଙ୍କ ଦୁଇ, ତୃତୀୟ ଅଙ୍କ ଦୁଇ, ଚତୁର୍ଥ ଅଙ୍କ ଦୁଇ, ପଞ୍ଚମ ଅଙ୍କ ଦୁଇ ଓ ଷଷ୍ଠ ଅଙ୍କ ଦୁଇଟି ଦୃଶ୍ୟ ବିଶିଷ୍ଟ । ପ୍ରସ୍ତାବନାରେ ତିନୋଟି, ପ୍ରଥମ ଅଙ୍କରେ ଛଅଟି, ଦ୍ୱିତୀୟ ଅଙ୍କରେ ତିନୋଟି, ତୃତୀୟ ଅଙ୍କରେ ଗୋଟିଏ, ଚତୁର୍ଥ ଅଙ୍କରେ ଚାରୋଟି, ପଞ୍ଚମ ଓ ଷଷ୍ଠ ଅଙ୍କରେ ଗୋଟିଏ ଗୋଟିଏ ସଂଗୀତ, ଏହିପରି ଊଣେଇଶିଟି ସଂଗୀତର ସଂଯୋଜନା କରି ସଙ୍ଗୀତପ୍ରିୟ ଦର୍ଶକମାନଙ୍କୁ ଆମୋଦିତ କରିବାପାଇଁ ନାଟ୍ୟକାର ଚେଷ୍ଟା କରିଛନ୍ତି । ଅନ୍ୟାନ୍ୟ ନାଟକ ପରି ଏଥିରେ ମଧ୍ୟ ସ୍ତୁତିସ୍ତୋତ୍ର ଏବଂ ପ୍ରାକୃତିକ ଶୋଭାବର୍ଣ୍ଣନା ପାଇଁ ସଙ୍ଗୀତ ସଂଯୋଜନା କୌଶଳ ଅବଲମ୍ବିତ । ଚରିତ୍ର ସଂଖ୍ୟା ପ୍ରାୟ ତିରିଶ ହେଲେ ମଧ୍ୟ ମଞ୍ଚାୟନ ବେଳେ ଅଭିନେତାମାନଙ୍କ ଦ୍ୱୈତ ଭୂମିକା ଦ୍ୱାରା ସୀମିତ କରାଯାଇପାରେ । ଅନ୍ୟାନ୍ୟ ନାଟକ ତୁଳନାରେ ନାଟ୍ୟକାର ସଂଳାପଗୁଡ଼ିକୁ ଯଥାସାଧ୍ୟ ସୀମିତ ରଖିବା ସହିତ ପାତ୍ରୋନ୍ମୁଖୀ କରିବାପାଇଁ ଚେଷ୍ଟା କରିଛନ୍ତି ।

ଗୌତମ ଭାରତୀୟ ଷଟ୍ ଦର୍ଶନ ମଧ୍ୟରୁ ନ୍ୟାୟ ଦର୍ଶନର ପ୍ରବକ୍ତା । ନାଟ୍ୟକାର ଚତୁରତାର ସହିତ ପ୍ରଥମ ଅଙ୍କର ତୃତୀୟ ଦୃଶ୍ୟରେ ନ୍ୟାୟଦର୍ଶନର କିଛିତତ୍ତ୍ୱକୁ ଗୌତମଙ୍କ ମୁଖରେ ଉପସ୍ଥାପନ କରିଛନ୍ତି । ଏଥିରୁ ପଦ୍ମନାଭ ଦେବଙ୍କ ଦର୍ଶନ ଶାସ୍ତ୍ର କୁଶଳତାର ପରିଚୟ ମିଳିଥାଏ ।

ପ୍ରସ୍ତୁତ ନାଟକର ପ୍ରସ୍ତାବନାଟି ଅନ୍ୟାନ୍ୟ ନାଟକର ପ୍ରସ୍ତାବନା ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ । ସାଂପ୍ରତିକ ସମୟର ନାରୀଜାଗରଣ, ନାରୀ ସଶକ୍ତିକରଣ, ନାରୀ

ନିର୍ଯ୍ୟାତନା, ନାରୀର ଅଧିକାର ସମ୍ପର୍କରେ ବିଚାରବିମର୍ଶ, ଆଲୋଚନା ପ୍ରତିଆଲୋଚନା, ବିରୋଧ ପ୍ରତିରୋଧ ଚାଲିଛି । ଶହେ ବର୍ଷ ପୂର୍ବେ ଲେଖାଯାଇଥିବା ଏହି ନାଟକର ପ୍ରସ୍ତାବନାରେ ତାହା ପ୍ରତିଫଳିତ । ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ଓଡ଼ିଶାରେ ନାରୀ ଶିକ୍ଷାପାଇଁ ଯେଉଁ ପଦକ୍ଷେପ ନିଆଯାଉଥିଲା ସେଥିରେ ପଦ୍ମନାଭ ନାରାୟଣ ଦେବଙ୍କ ଭୂମିକା ମଧ୍ୟ ଗୌଣ ନଥିଲା । ସେ ସହଶିକ୍ଷାର ବିରୋଧୀ ନଥିଲେ, କିନ୍ତୁ ପୁରୁଷମାନଙ୍କ ପରି ନାରୀର ଚରିତ୍ରକୁ ନିର୍ମଳ ଓ ପବିତ୍ର ରଖିବାର ଥିଲେ ପକ୍ଷପାତୀ । ତେଣୁ ଶ୍ରୀକାକୁଳମ୍ ଟାଉନହଲ୍‌ର ବାର୍ଷିକ ଅଧିବେଶନରେ ସଭାପତିତ୍ୱ କରି ସେ ବାଳିକା ପାଠଶାଳା ପରିଦର୍ଶନବେଳେ 'କୁଳବାଳିକାମାନଙ୍କ ସହିତ ବାରସ୍ତ୍ରୀ-ବାଳିକାମାନଙ୍କୁ ଏକତ୍ର ଶିକ୍ଷା ଦେବା' ରୀତିର ସମାଲୋଚନା କରିଥିଲେ । ଏହି ମର୍ମରେ ମାନ୍ଦ୍ରାଜ ସରକାରଙ୍କୁ ସେ ଲେଖିଥିବା ନିବେଦନ ପତ୍ର ବ୍ୟର୍ଥ ଯାଇନଥିଲା । ରାଜ୍ୟତନ୍ତ୍ରରେ ନାରୀ ଓ ପୁରୁଷଙ୍କପାଇଁ ସମାନ ଶାସ୍ତିର ସେ ଥିଲେ ପକ୍ଷପାତୀ । ତେଣୁ ବୃଷଣହୀନ ଇନ୍ଦ୍ର ଏବଂ ପାଷାଣୀ ଅହଲ୍ୟାଙ୍କୁ ସେ ନାଟକର ନାୟକନାୟିକା ରୂପେ ଗ୍ରହଣ କରିଛନ୍ତି । ଜଣେ ଅପରାଧୀକୁ ନାୟକର ପ୍ରତିଷ୍ଠା ଦେବା ନାଟ୍ୟକାରଙ୍କ କମ୍ ଦୁଃସାହସିକତାର ପରିଚାୟକ ନୁହେଁ । ନଟୀ ମୁଖରେ ଯାହା ''ପୁରୁଷମାନେ କେବଳ ମୁଖରେ ମାତ୍ର କହନ୍ତି 'ଅର୍ଦ୍ଧାଙ୍ଗୀ' - ମାତ୍ର କାର୍ଯ୍ୟରେ ଦାସୀଠାରୁ ଊଣା ଦେଖନ୍ତି ।'', କୁହାଯାଇଛି ତା'ର ସତ୍ୟତା ଲୋକସଭାରେ ମହିଳା ସଂରକ୍ଷଣ ବିଲ୍‌କୁ ଘେନି ହେଉଥିବା ଆଲୋଚନା-ପ୍ରତି ଆଲୋଚନାକୁ ସ୍ମରଣ କରାଇଦେଇଥାଏ । ନାଟକ ମାଧ୍ୟମରେ ସାମାଜିକ ସଂସ୍କାରର ବାର୍ତ୍ତା ପ୍ରଚାର କରାଇବା କୌଶଳ, ତାହା ପୁଣି ପୌରାଣିକ ନାଟକ ମାଧ୍ୟମରେ, ଥିଲା ଯୁଗୋପଯୋଗୀ; ଏଥିପାଇଁ ନାଟ୍ୟକାର ନିଶ୍ଚିତଭାବେ ଅଭିନନ୍ଦନୀୟ ।

●

# ଉତ୍ସର୍ଗପତ୍ର

ବିଦ୍ୟୋତ୍ସାହୀ, ସ୍ୱଦେଶହିତୈଷୀ,

ଭକ୍ତିଭାଜନ

ଶ୍ରୀଶ୍ୟାମସୁନ୍ଦରରାଜଗୁରୁ ବି.ଏ.

ମହୋଦୟଙ୍କ

କର କମଳରେ

ରଚକ ସବିନୟରେ ଏ ପୁସ୍ତକ

ଅର୍ପଣ କଲା ।

# ମୁଖବନ୍ଧ

ଉତ୍କଳର ନାନା ସ୍ଥାନୀୟ ରଙ୍ଗାଳୟମାନଙ୍କରେ ଏହି "ଅହଲ୍ୟାଶାପ ଓ ବିମୋଚନ ନାଟକ" ଅଭିନୀତ ହେବା ଦ୍ୱାରା ଦର୍ଶକ ମଣ୍ଡଳୀର ଆନନ୍ଦ ବର୍ଦ୍ଧନ କରିଥିବା ବିଷୟ ଅବଗତ ହୋଇ ତୃତୀୟ ସଂସ୍କରଣ ପ୍ରକାଶ କରିଅଛୁ । ପ୍ରାକୃତିକ ଉତ୍କଳର ଜନସାଧାରଣରେ ପୂର୍ବବତ୍ ଏହା ଆଦୃତ ହେଲେ ଶ୍ରମ ସଫଳ ମନେ କରିବୁ ।।ଇତି ।।

ପାରଳାଖେମୁଣ୍ଡି — ପ୍ରକାଶକ

# ଅଭିନୟୋଲ୍ଲିଖିତ ବ୍ୟକ୍ତିମାନେ

ପୁରୁଷଗଣ- ଇନ୍ଦ୍ର, କୁବେର, ବରୁଣ, ବୃହସ୍ପତି, ଗୌତମ, ଦଶରଥ, ବଶିଷ୍ଠ, ସୁମନ୍ତ, ରାମ, ଲକ୍ଷ୍ମଣ, ବିଶ୍ୱାମିତ୍ର, ମାତଳି, ସଙ୍ଗିଗଣ, ଶିଷ୍ୟଗଣ, ଋଷିଗଣ, ଦୌବାରିକ ଇତ୍ୟାଦି ।

ସ୍ତ୍ରୀଗଣ- ଅହଲ୍ୟା, କଳକଣ୍ଠୀ, କଳାବତୀ, କୌଶଲ୍ୟା, ସୁମିତ୍ରା, ତାଡ଼କା ଇତ୍ୟାଦି ।

# ଅହଲ୍ୟାଶାପ ଓ ବିମୋଚନ ନାଟକ

## ନାନ୍ଦୀ

ରାଗ କାମ୍ବୋଦି । ଆଦିତାଳ ।

(ଶ୍ରୀମନୋହରାଶୁଭାକରା ପ୍ରତି)

ହେ ମହେଶ୍ୱର କୃପାକର । କରୁଣାର ସାଗର ।।୦।।

ବିମଳାଙ୍ଗଶିବ । ପାମରପୋଷକ

ବିପଦ ବାରକ । ବନ୍ଧ୍ୟ ପରାପୃର ।

ନିଖିଳଜନପାତା । ଅଖିଳଶୁଭଦାତା ।

ଦୁଃଖି ଜନଙ୍କ ତ୍ରାତା । ଭୁବନ କରତା ।

ଗର୍ବଖର୍ବକାରକ ଲୋକପିତା ।

ତ୍ରିଲୋକ, ପାଳକ, ତାରକ, ଶ୍ରୀହର ।।୧।।

ପଡ଼ି ଭବସାଗରେ । ବୁଡ଼ି ଅଗାଧନୀରେ ।

ସଡ଼ି ଡାକେ କାତରେ । ରଖ ମତେ ଥରେ ।

ଦେଖିବି କିପରି ପାପ ନେତ୍ରରେ ।

ତରୁଣ-ଅରୁଣ ଚରଣ ତୁମ୍ଭର ।।୨।।

ନାନ୍ଦ୍ୟନ୍ତେ ସୂତ୍ରଧାର

ସଙ୍ଗିଗଣ - (ଇତସ୍ତତଃ ଭ୍ରମଣକରି) ରଙ୍ଗାଳୟ କି ଅପୂର୍ବ ଶ୍ରୀ ଧାରଣ କରିଅଛି । ବିବିଧ-ବିଦ୍ୟା-ବିଶାରଦ ଓ ଗୁଣଗ୍ରାହୀ ସଭ୍ୟବୃନ୍ଦ ସମବେତହୋଇ ସଭାକୁ ଅଳଂକୃତ କରିଅଛନ୍ତି । ଆଲୋକମାଳା ତାରକା ମାଳା ପରି ବୋଧ ହେଉଅଛି । ଚନ୍ଦ୍ରାତପ ଇନ୍ଦ୍ରଧନୁର ଶୋଭା ଧାରଣ କରିଅଛି । ଏମାନେ ସମସ୍ତେ ଆମ୍ଭର ସାମାନ୍ୟ ନାଟକାଭିନୟ ଦର୍ଶନ କରିବାକୁ ଶ୍ରମ ସ୍ୱୀକାରକରି ସମାଗତ ହୋଇ ଅଛନ୍ତି । ଏହା ଆମ୍ଭର ସୌଭାଗ୍ୟର ବିଷୟ । ଆଉ ବିଳମ୍ବ କରିବା ପ୍ରୟୋଜନ ନାହିଁ । (ନେପଥ୍ୟକୁ ଚାହିଁ) ପ୍ରିୟେ ! ତୁମ୍ଭର ବେଶଭୂଷା ସରିଲାପରା ଏଣେ ଥରେ ଆସ ! (କିଞ୍ଚିତ୍ ଅପେକ୍ଷାକରି) ପ୍ରିୟେ ! ଶୀଘ୍ର ଆସ !

ନଟୀ - ରାଗ ଝଞ୍ଜୋଟୀ । ଆଦିତାଳ ।।
(କୌନସା ବାବାସେ ଇହା ବୁଲାୟା ପ୍ରତି)
ଚିରପରାଧୀନା କୁଳ-ଅଙ୍ଗନା ।
କହିବି କାହାକୁ ହୃଦ ବେଦନା ।୦।
ବାଲ୍ୟେ ପିତାଙ୍କର । ଯୌବନେ ପତିର ।
ବାର୍ଦ୍ଧକ୍ୟେ ପୁତ୍ରର ହୁଏ ସ୍ୱାଧୀନା ।।୧।।
ଛାର ଦାସୀ ମତ । ଗୃହକାର୍ଯ୍ୟେ ରତ ।
ରାତ୍ରଂଦିବା ସହି କେତେ ଯାତନା ।।୨।।
ଅର୍ଦ୍ଧାଙ୍ଗୀ ପୁଂସର । ବୋଲି ନିରନ୍ତର ।
ଯାହା କହନ୍ତି ହାସ୍ୟାସ୍ପଦ ସିନା ।।୩।।

ନଟ - ପ୍ରିୟେ ! ଚମତ୍କାର ସଙ୍ଗୀତଟି ଗାନ କରିଅଛି । ଯଥାର୍ଥ ସ୍ତ୍ରୀଲୋକ ନିତ୍ୟାନ୍ତ ପରାଧୀନା । ସେ ବାଲ୍ୟ କାଳରେ ପିତାର, ଯୌବନ ସମୟରେ ପତିର ଆଉ ବୃଦ୍ଧାବସ୍ଥାରେ ପୁତ୍ରର ଅଧୀନରେ ଥାଏ ।

ନଟୀ - ଆର୍ଯ୍ୟପୁତ୍ର ! ସ୍ତ୍ରୀ ପରି ଦୁଃଖିନୀ ସଂସାରରେ ଆଉ କିଏ ଅଛି ? ପୁରୁଷମାନେ କେବଳ ମୁଖରେ ମାତ୍ର କହନ୍ତି "ଅର୍ଦ୍ଧାଙ୍ଗୀ"- ମାତ୍ର କାର୍ଯ୍ୟରେ ଦାସୀ ଠାରୁ ଊଣା ଦେଖନ୍ତି ।

ନଟ - ପ୍ରିୟେ ! ସମସ୍ତେ କାହିଁକି ସେପରି ବ୍ୟବହାର କରିବେ ? କୌଣସି ୨ ନିର୍ଦ୍ଦୟ ପୁରୁଷ ସେପରି କରନ୍ତି । ସେଥିଲାଗି କି ସକଳ ପୁରୁଷ ନିନ୍ଦ୍ୟ ହେବେ ? ଆମ୍ଭମାନଙ୍କର ଶାସ୍ତ୍ରାଦିରୁ ଜଣାଯାଏ ଯେ ପୂର୍ବକାଳରେ ସକଳ କାର୍ଯ୍ୟରେ ପୁରୁଷମାନଙ୍କର ଯେ ଅଧିକାର ଥିଲା ସ୍ତ୍ରୀମାନଙ୍କର ମଧ୍ୟ ସେ ଅଧିକାର ଥିଲା । ମାତ୍ର କାଳାନୁକ୍ରମେ ପୁରୁଷମାନେ ଅଶିକ୍ଷିତ ଏବଂ ସ୍ୱାର୍ଥପର ହେବାରୁ ସେମାନେ ସ୍ତ୍ରୀମାନଙ୍କ ସ୍ୱାଧୀନ-ଧନ ଅପହରଣ କରି ନେଇ ଅଛନ୍ତି ।

ନଟୀ - ଆର୍ଯ୍ୟପୁତ୍ର ! ଆମ୍ଭମାନଙ୍କର ଆର୍ଯ୍ୟ ମହର୍ଷିମାନେ ତ ସ୍ତ୍ରୀମାନଙ୍କୁ ପୁରୁଷମାନଙ୍କ ପରି ସକଳ କାର୍ଯ୍ୟ କରିବାକୁ ଅଧିକାର ଦେଇଥିଲେ ତେବେ ପୁରୁଷମାନେ କେତେ ବ୍ୟଭିଚାର କାର୍ଯ୍ୟ କଲେ ମଧ୍ୟ କାହିଁକି ସେମାନେ ଅଦଣ୍ଡ୍ୟ-ଆଉ ସ୍ତ୍ରୀମାନେ ଅଳ୍ପ ଦୋଷରେ କାହିଁକି ଦଣ୍ଡ୍ୟ ?

ନଟ - ପ୍ରିୟେ ! ସେପରି ନୁହେଁ । ଆର୍ଯ୍ୟମାନଙ୍କ ମତରେ ପୁରୁଷ କିମ୍ବା ସ୍ତ୍ରୀ ଯଦି ବ୍ୟଭିଚାର କର୍ମ୍ମ କରିବ ସେ ଅବଶ୍ୟ ଦଣ୍ଡ ଭୋଗକରିବ । ପ୍ରିୟେ ! ଦେଖ

ବ୍ୟଭିଚାର କର୍ମ୍ମ ହେତୁ ଗୌତମ ପତ୍ନୀ ଅହଲ୍ୟାଙ୍କୁ ଏବଂ ଦେବରାଜ ଇନ୍ଦ୍ରଙ୍କୁ କି ଅସହ୍ୟ ଦଣ୍ଡ ସହିବାକୁ ପଡ଼ିଥିଲା- ତାହା ଆଜିର ନାଟକାଭିନୟରୁ ଜାଣିପାରିବ ।

ନଟୀ - ଆର୍ଯ୍ୟପୁତ୍ର ! ଆଜି ଶ୍ରୀ ପଦ୍ମନାଭ ଦେବଙ୍କ ''ଅହଲ୍ୟା ଶାପ ଓ ମୋଚନ'' ନାଟକ ଅଭିନୟ କରିବେ କି ?

ନଟ - ହଁ ପ୍ରିୟେ !

ନଟୀ - ତେବେ ଦାସୀ  କିସ କରିବାକୁ ହେବ ?

ନଟ - ପ୍ରିୟେ ! ତୁମ୍ଭଙ୍କୁ ନାଟକାଭିନୟର ସକଳ ଆୟୋଜନ କରିବାକୁ ପଡ଼ିବ ।

ନଟୀ - ତେବେ ମୁ ଯାଏ ।

ନଟ - ପ୍ରିୟେ ! ତୁମ୍ଭେ ଯିବା ପୂର୍ବେ ବର୍ତ୍ତମାନ ଋତୁକୁ ଲକ୍ଷ୍ୟ କରି ଗୋଟିଏ ଗୀତ ଗାନ କରି ସମବେତ ସଭ୍ୟବୃନ୍ଦଙ୍କ ମନ ଆନନ୍ଦିତ କରାଇ ଯାଅ ।

ନଟୀ - ଆଚ୍ଛା ।

**ରାଗ ଝଞ୍ଜୋଟି । ଆଦିତାଳ ।।**

(ଚିନ୍ତାନାଗନା ଜନାକୁ କାଟତା ପ୍ରତି)

ମନ ଦୀପନ କରେ ଏ ବସନ୍ତ ।
ଅବହେଳେ ହରି ନିଏ ସକଳ ପ୍ରାଣୀ ଚିତ୍ତ ।୦।
ଦେଖ ଅଳି କରେ କେତେ ଅଳି ।
ସୁମନମଧୁ ପାନରେ ହୋଇଣ ପ୍ରମତ୍ତ ।୧।
ପିକକୁଳ ଆକୁଳେ ମଞ୍ଜୁଳ ।
ବକୁଳ ମୁକୁଳ ଖାଇ ଡାକନ୍ତି ସନ୍ତତ ।୨।
କାମୀ ଶଶି କି ଉନ୍ମାଦେ ରସି ।
କରଇ କ୍ରୀଡ଼ା ତାରକାଗଣଙ୍କ ସହିତ ।୩।
ଏ ଲତିକା ବୃକ୍ଷ ସ୍ନେହେ ବିକା ।
ହୋଇ ଅଭିସାରକରେ ଅଲାକୁକୀ ବଡ ।୪।

ନଟ - ପ୍ରିୟେ ! ତୁମ୍ଭର ଗାନ ଶୁଣି ସମସ୍ତେ ସାତିଶୟ ଆନନ୍ଦ ଲାଭ କରିଥିଲା ପରି ବୋଧହୁଏ । ଚାଲ ଏଥର ଯାଇ ନାଟକାଭିନୟର ଆୟୋଜନ କରିବା ।

(ଉଭୟେ ନିଷ୍କ୍ରାନ୍ତ)

●

# ପ୍ରଥମାଙ୍କ

## (ପ୍ରଥମ ଦୃଶ୍ୟ)

## (ଇନ୍ଦ୍ରଲୋକ)

(ଇନ୍ଦ୍ର, ବରୁଣ, କୁବେର ଓ ବୃହସ୍ପତି ଉପବେଶନ)

ଇନ୍ଦ୍ର - ହେ ସୁରଗଣ ! ଆମ୍ଭେ ବିଚାରକରୁଁ ଭଗବାନ ଆମ୍ଭଠାରେ ଯେତେ ପକ୍ଷପାତୀ ଅନ୍ୟ କାହାରି ଠାରେ ତେଡ଼େ ପକ୍ଷପାତୀ ନୁହନ୍ତି । ଦେଖନ୍ତୁ ଆମ୍ଭ ଛାର କେତେ ? ଆମ୍ଭଙ୍କୁ ଉପଦେଶ ଦେବା ସକାଶେ ବୃହସ୍ପତିଗୁରୁ, ସମସ୍ତ ବିଷୟରେ ସହାନୁଭୂତି ପ୍ରଦାନକରିବା ଲାଗି ଆପଣମାନେ ଆରୋହଣାର୍ଥେ ଐରାବତ ହସ୍ତୀ, ଉଚ୍ଚୈଃଶ୍ରବା ଅଶ୍ୱ, ପୁଷ୍ପବିମାନ, ବିହାରାର୍ଥେ ନନ୍ଦନବନ, ଆମୋଦ ପ୍ରମୋଦାର୍ଥେ ରମ୍ଭା ମେନକାଦି ଅପ୍ସରାଗଣ ଇତ୍ୟାଦି କିପରି ଖଞ୍ଜି ଦେଇଅଛନ୍ତି ? ଭଗବାନଙ୍କ ଉଦ୍ଦେଶ ଏହି ଯେ ଆମ୍ଭେ ଏ ସମସ୍ତଙ୍କୁ ଘେନି ନିରାପଦରେ ଶାସନ କାର୍ଯ୍ୟ ଚଳାଇ ସୁଖ ସ୍ୱଚ୍ଛନ୍ଦରେ କାଳ ଯାପନ କରିବୁଁ । ଏପରି କାହା ଭାଗ୍ୟରେ ଘଟିଅଛି ବା ଘଟିବ ?

ବରୁଣ - ଦେବରାଜ-ଭଗବାନ ଏସବୁ କେବଳ ଖଞ୍ଜି ଦେଇ ଅଛନ୍ତି ଏମନ୍ତ ନୁହେ- ଯଦି ଆପଣଙ୍କୁ କୌଣସି ବିପଦ ଆସି ଘଟିଯାଏ ତେବେ ସେ ନିଜେ ଆପଣଙ୍କୁ ଉଦ୍ଧାର କରିବା ସକାଶେ ସନ୍ତତ ତତ୍ପର ଥାନ୍ତି । ଆପଣ କହିଲା ପରି ଏହା କାହା ଭାଗ୍ୟରେ ଘଟିବ ?

କୁବେର - ନୋହିଲେ କି ଆପଣଙ୍କ ପଦବୀ ପ୍ରାପ୍ତ ହେବା ଲାଗି ସମସ୍ତେ ଚେଷ୍ଟା କରୁଥାନ୍ତେ ?

ବୃହସ୍ପତି - ଦେବରାଜ ! ଆପଣ ବିଚାର କରନ୍ତି କି ଭଗବାନ ଆପଣଙ୍କଠାରେ ନିତାନ୍ତ ପକ୍ଷପାତୀ । ଏହା କେତେମାତ୍ର ନୁହେ । ଭଗବାନ ଯେ ସେ ନିଷ୍ପକ୍ଷପାତୀ । ଆପଣଙ୍କଠାରେ ତାହାଙ୍କର ଯେତେ ଦୟା ଅନ୍ୟଠାରେ ମଧ୍ୟ ତେତେ ଦୟା । ଆପଣ କେବେହେଲେ ଦୁଃଖ ଭୋଗ ନକରି କେବଳ ସୁଖରେ ଲୋଳାୟିତ ହେଉ ଅଛନ୍ତି ବୋଲି ଏପରି ବିଚାର କରନ୍ତି ପରା ? ଆପଣଙ୍କୁ ଭଲରୂପେ ବୁଝିବାକୁ ହେବ ଯେ ଦୁଃଖ ନଥିଲେ ସୁଖର ଆଧିକ୍ୟତା କେତେମାତ୍ର

ଜଣାଯାଏ ନାହିଁ । ଆପଣ ଥରେ ମର୍ତ୍ତ୍ୟଲୋକକୁ ଯାଇ ସେଠାରେ କିଛିଦିନ ଅତିବାହିତ କଲେ ଏଥିର ପ୍ରତ୍ୟକ୍ଷ ପ୍ରମାଣ ପାଇପାରିବେ ।

ଇନ୍ଦ୍ର - ଗୁରୋ-ଏହା କି ଯଥାର୍ଥ ଅଟେ ?

ବୃହସ୍ପତି - ଯଥାର୍ଥ ଅଟେ ଆମ୍ଭେ ସାହସ କରି କହୁଅଛୁଁ , ଆପଣ ମର୍ତ୍ତ୍ୟ ଲୋକରେ ପଦାର୍ପଣ କରି ସେଠାର ଲୋକଙ୍କ ବିଷୟ ତଦନ୍ତ କରି ଦେଖିଲେ ଆପଣ ସ୍ୱର୍ଗର ସୁଖ ଏକାବେଳକେ ପାସୋରି ପକାଇବେ ।

ଇନ୍ଦ୍ର - ତେବେ ମର୍ତ୍ତ୍ୟଲୋକକୁ ଯାଇ ଆପଣଙ୍କ କଥା ଥରେ ବିଚ଼ି ଦେଖିବା ।

ବୃହସ୍ପତି - ଆପଣଙ୍କର ଯେ ଅଭିରୁଚି ।

ଇନ୍ଦ୍ର - ଆଜିକ ନିମନ୍ତେ ସଭାବନ୍ଦ ହେଉ । ଆପଣମାନଙ୍କଠାରୁ ବିଦାୟ ନେଉଁ ।

(ପ୍ରସ୍ଥାନ ଓ ଯବନିକାପତନ)

## (ଦ୍ୱିତୀୟ ଦୃଶ୍ୟ)

(ଗୌତମାଶ୍ରମ ନିକଟସ୍ଥ ପୁଷ୍ପବନ)

(ଇନ୍ଦ୍ରଙ୍କ ପ୍ରବେଶ)

ଇନ୍ଦ୍ର - (ସ୍ୱଗତ) ଗୁରୁ ବୃହସ୍ପତି କହିଥିଲେ ଦୁଃଖ ବିନା ସୁଖାନୁଭବ ହୋଇପାରେ ନାହିଁ । ଏଥିର ଯଥାର୍ଥ୍ୟ ଆମ୍ଭେ ଏବେ ଜାଣୁ ଅଛୁଁ । ସଙ୍ଗେ ଆସିବା ଲୋକଙ୍କୁ ଦୂରେ ରଖି, ଛଦ୍ମବେଶ ଧରି ପଦବ୍ରଜରେ ଏକାକୀ କଣ୍ଟକସମାକୀର୍ଣ୍ଣ ବନ ପର୍ବତରେ ଭ୍ରମଣ କରି ୨ ନିତାନ୍ତ କ୍ଳାନ୍ତ ହୋଇଯାଇଥିଲୁଁ । ପ୍ରଚଣ୍ଡ ମାର୍ତ୍ତଣ୍ଡଙ୍କର ଉଗ୍ରତା ହେତୁ ଅସାଧାରଣ ପିପାସା ଜାତ ହୋଇଥିଲା; କିନ୍ତୁ ଏହି ପୁଷ୍ପବନ ନିକଟସ୍ଥ ପୁଷ୍କରିଣୀର ସୁଶୀତଳ ଓ ସୁସ୍ୱାଦୁ ଜଳ ପାନକରି ଯେଉଁ ଆନନ୍ଦ ଲାଭ କରିଅଛୁଁ ତାହା ସ୍ୱର୍ଗ ଲୋକରେ ଥାଇ ଦିନେ ହେଲେ ଅନୁଭବ କରିନାହୁଁ; (ନେପଥ୍ୟ ଆଡ଼େ ଦେଖି) ସଙ୍ଗେ ଆସିବା ଲୋକେ ଆହୁରିତ ପହୁଞ୍ଚି ନାହାନ୍ତି- ହେଉ ଏହି ବୃକ୍ଷମୂଳରେ ପ୍ରସ୍ତର ଉପରେ କ୍ଷଣକାଳ ସେମାନଙ୍କୁ ନିରେଖି ବସିବା- (ଉପବେଶନ) ଆହା ! କି ମନୋହର ପୁଷ୍ପୋଦ୍ୟାନ ! କେତେ ଜାତି ପୁଷ୍ପମାନ ପ୍ରସ୍ଫୁଟିତ ହୋଇଅଛନ୍ତି ! ଏ ମନ୍ଦାନୀଳ ପ୍ରକୃତିଦେବୀର କର୍ପୂରଜଳାର୍ଦ୍ର ବ୍ୟଜନଚାଳନରୁ ଜାତ ହେବା ପବନପରି ବୋଧ ହୁଏ । ଆହା ପ୍ରାଣକୁ କିପରି ଆରାମ ଦିଏ ? ପୁଷ୍ପମାନଙ୍କର ସୌରଭରେ ଚତୁର୍ଦ୍ଦିଗ ପରିପୂରିତ; ବିବିଧ ଲତା କୁଞ୍ଜରେ

ପରିଶୋଭିତ; ଏଣେ ଭ୍ରମର ଗୁଞ୍ଜନ ତେଣେ ପିକର କଳରବ-ନିଶ୍ଚୟ
ଏହି ପୁଷ୍ପବନ ଆମ୍ଭର ନନ୍ଦନବନକୁ ଏକାବେଳକେ ପରାସ୍ତ କରୁଅଛି ।

(ସଙ୍ଗିଗଣ ସହ ମାତଳିର ପ୍ରବେଶ)

ଇନ୍ଦ୍ର - ଓହୋ ! ଏଣେ ଆସ ୨ । ଆମ୍ଭେ ଏଠାରେ ଅଛୁଁ ବୋଲି ତୁମ୍ଭେମାନେ କିପରି ଜାଣିପାରିଲ ?

ମାତଳି - ଦେବରାଜ ! ଛାମୁଙ୍କୁ ଅନ୍ୱେଷଣ କରି ବନରେ ଇତସ୍ତତଃ ଭ୍ରମଣ କରିବା ଯୋଗୁଁ ଆମ୍ଭେମାନେ ଭୟାନକ ତୃଷାର୍ତ୍ତ ହୋଇଥିଲୁଁ-କିୟଦ୍‌ଦୂରରୁ ଏହି ମନୋହର ପୁଷ୍ପବନ ନିକଟସ୍ଥ ପୁଷ୍କରିଣୀ ଦେଖିପାରି ସେହିଠାକୁ ଯାଇ ଜଳପାନ କଲୁଁ । ଶ୍ରୀଛାମୁଙ୍କୁ ଖୋଜିବା ଲାଗି ଏହି ବାଟେ ଆସୁ ୨ ଦୈବାତ୍ ଛାମୁଙ୍କ ଦର୍ଶନ ହେଲା ।

ଇନ୍ଦ୍ର - ଆଜି ଆମ୍ଭମାନଙ୍କୁ ଅସାଧାରଣ କ୍ଳେଶ ସହିବାକୁ ପଡ଼ିଲା ।

ମାତଳି - ଆଜ୍ଞା ଯଥାର୍ଥ ଏପରି କଷ୍ଟ କେବେ ଘଟିନଥିଲା ।

ଇନ୍ଦ୍ର - ଯାହା ହେଉ ସେ ପୁଷ୍କରିଣୀ ଏବଂ ଏହି ଉପବନ ଆମ୍ଭମାନଙ୍କର କ୍ଳେଶ ଏକାବେଳକେ ଦୂର କରି ଅଛି । ପୁଷ୍କରିଣୀର ଅମୃତମୟ ଜଳ ପାନ କରିବାରୁ ପ୍ରାଣ ଶାନ୍ତ ଏବଂ ମନ ପ୍ରକୃତିସ୍ଥ ହେଲା ।

ମାତଳି - ଦେବରାଜ ! ସେପରି ନିର୍ମ୍ମଳ, ଶୀତଳ, ସୁମଧୁର ଏବଂ ସୁବାସିତ ଜଳ ଆମ୍ଭେମାନେ କେବେ ପାନ କରିନଥିଲୁଁ ।

ଇନ୍ଦ୍ର - ଏସ୍ଥାନଟି କି ମନୋହର ! ଚତୁର୍ଦ୍ଦିଗରେ ବୃକ୍ଷଗୁଡ଼ିକ ଶ୍ରେଣୀ ବଦ୍ଧ ଏବଂ ପୁଷ୍ପ ମୁକୁଳରେ ସୁଶୋଭିତ, ଶାଖାମାନଙ୍କ ଉପରେ ବସି ବିହଙ୍ଗମଗଣ ମଧୁର ସ୍ୱରରେ ଗାନ କରୁଅଛନ୍ତି । ଆହା କି ଆହ୍ଲାଦଜନକବୋଧ ହୁଏ ।

ମାତଳି - ଆଜ୍ଞା ଅତି ମନୋହର ହୋଇଅଛି । ନନ୍ଦନବନ ପରି ଦିଶିଯାଏ ।

ଇନ୍ଦ୍ର - ନନ୍ଦନବନ ? ତାହାଠାରୁ ଶତଗୁଣ ଅଧିକ ମନୋହର ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ମାତଳି - ଆଜ୍ଞା ଯଥାର୍ଥ ।

ଇନ୍ଦ୍ର - ଆଚ୍ଛା ତୁମ୍ଭେମାନେ ବର୍ତ୍ତମାନ ଯାଅ । ଆମ୍ଭେ ଏହି ପୁଷ୍ପବନରେ କେତେ କାଳଯାପନ କରି ନିଜ ଭୁବନକୁ ପ୍ରତ୍ୟାଗମନ କରିବୁଁ ।

ମାତଳି - ନମସ୍କାର ପ୍ରଭୋ । (ପ୍ରସ୍ଥାନ)

ଇନ୍ଦ୍ର - (ସ୍ୱଗତ) ଆହା ! କି ସୁନ୍ଦର ପୀତ କନିଅର ପୁଷ୍ପ ମନ୍ମଥର ସ୍ୱର୍ଣ୍ଣ ଚଷକ ପରି ଦିଶିଯାଏ । (ନେପଥ୍ୟେ-ସଖି ଶୀଘ୍ର ଆସ-ଶୀଘ୍ର ଆସ)

ଇନ୍ଦ୍ର - (ସଚକିତେ) ଏ କି ? ସ୍ତ୍ରୀ କଣ୍ଠପରି ଶୁଭୁଅଛି । (ନେପଥ୍ୟେ-ସଖି ! ମୁକୁଳଗୁଡ଼ିକ ତୋଳିବୁ ନାହିଁଟି)

ଇନ୍ଦ୍ର - ହଁ ସ୍ତ୍ରୀମାନେ ପୁଷ୍ପଚୟନ କରିବାକୁ ଏ ପୁଷ୍ପବନ ଆଡ଼େ ଆସୁଅଛନ୍ତି । ଆଚ୍ଛା ଆମ୍ଭେ ଏହି ଲତାନ୍ତରାଳରେ ରହି ସେମାନଙ୍କର ବିଷୟ ଦେଖିବା । (ଲତାନ୍ତରାଳରେ ଲୁଚି ରହିବା )

(ଅହଲ୍ୟା, କଳକଣ୍ଠୀ ଓ କଳାବତୀର ପ୍ରବେଶ)

ଅହଲ୍ୟା - ସଖି କଳକଣ୍ଠୀ ! ସଖି କଳାବତୀ ! ମୁକୁଳ ଗୁଡ଼ିକ ତୋଳିବ ନାହିଁଟି ?

କଳକଣ୍ଠୀ - ନା ସଖି ! ମୁକୁଳ ଗୁଡ଼ିକ ତୋଳି କିସ କରିବା ?

କଳାବତୀ - ଆଜି ମୁକୁଳଗୁଡ଼ିକ ତୋଳି ଦେଲେ କାଲିକି ତୋଳିବା କିସ ?

ଅହଲ୍ୟା - ହଁ ସଖି ମୁ ସେହି ଉଦ୍ଦେଶ୍ୟରେ ଏକା କହୁଛି ।

(ଅହଲ୍ୟା ଓ କଳାବତୀ ପୁଷ୍ପଚୟନ କରିବା)

କଳକଣ୍ଠୀ - (ଏଣେ ତେଣେ ଦେଖି) ସଖି !

**ରାଗ ମାଳବ । ଆଦି ତାଳ ।**

(ମତେ କାହିଁକି ଥରେ ଆସ ପ୍ରତି)

ଦେଖ ଦିଶେ କି ଶୋଭାବନ । ଏହି ସୁନ୍ଦର ପୁଷ୍ପବନ ।
ଫୁଟିଅଛି ନାନା ଜାତି ମନୋହର ସୁମନ ।୦।
ଜାଇ ଜୁଇ ମଲ୍ଲି ଅଶୋକ । କୁନ୍ଦ ଚମ୍ପକ କୁରୁବକ ।
କରବୀର କନିଅର ଜବା ପ୍ରଭା -ସଦନ ।୧।
ମନ୍ଦବାତେ ହଲି ଗୋଲାପ । ତତ୍ରୁ ନିର୍ଲଜ୍ଜ ସେ ମଧୂପ ।
ତାର ଚାରି ପାଶେ ଉଡ଼ି ପ୍ରେମେ କରେ ଗୁଞ୍ଜନ ।୨।
ସଖି କରତୁ ଅନୁମାନ । ଏହି ମଞ୍ଜୁଳ ଲତାମାନ ।
ପୁଷ୍ପଭରେ ନତ ହୋଇ କରେ ମନକୁ ରଞ୍ଜନ ।୩।

କଳା - ସଖି କଳକଣ୍ଠି ! ଦେଖ ଏ ମାଧବୀଲତାଟି ପୁଷ୍ପଭାରରେ କିପରି ନତ ହୋଇଅଛି ।

କଳକଣ୍ଠୀ - ମାଧବୀଲତାଟି କାହିଁକି ? ସବୁ ଲତାଗୁଡ଼ିକ ଲହିଁ ଯାଇଅଛି ।

କଳା - ସଖି କଳକଣ୍ଠି ! ଆଜି ଆମ୍ଭମାନଙ୍କ ପ୍ରିୟସଖି ସ୍ୱର୍ଣ୍ଣଲତାଙ୍ଗୀ କାହିଁକି ମୁଖ ମ୍ଳାନ କରି ନୀରବ ହୋଇଅଛି ?

ଇନ୍ଦ୍ର - (ସ୍ୱଗତ) ହଁ ସେ ମନମୋହିନୀ ଗୌତମ ପତ୍ନୀ ଅହଲ୍ୟା । ଆଚ୍ଛା ! ସେ କିହେତୁ ମୁଖ ମ୍ଳାନ କରି ଅଛନ୍ତି ଜାଣିବା ।

ଅହଲ୍ୟା - ନା ସଖି- କିଛି ନାହିଁ ।

କଳ - କହିଲୁ କହିଲୁ ସଖି କି ହେତୁ ମୁଖ ଶୁଖାଇ ଅଛ ?

ଅହଲ୍ୟା - **ରାଗ କାଫି । ଅଟତାଳ ।**

(ଥିବେ ପରା ଏଠାରେ ପ୍ରତି)

ସଖି ଏକି ଶକୁନ । ଡିଁଏ ଦକ୍ଷିଣ ନୟନ ।୦।

ଟେକିଲେ ପୟର । ହୁଏ ଥରହର ।

ଦେହ କମ୍ପେ ଘନଘନ ୧।

ତୁଚ୍ଛାଟାରେ ସଖି । ଭୟ ଲାଗୁଅଛି ।

ମନହୁଏ ଛନଛନ ।୨।

ଦୁଃଖିନୀ ଲଲାଟେ । କେଜାଣି କି ଘଟେ ।

ନଜାଣି ଉଡେ ମୋ ଜ୍ଞାନ ।୩।

ଏ ହେତୁରୁ ସଖି ମୋ ମନଟା ବଡ଼ ଆକୁଳିତ ହେଉଅଛି ।

କଳ - ଏଥିକି ଚିନ୍ତା କାହିଁକି ? ଯାହା ହେବାକୁ ଅଛି ତାହା କେ ଆନ କରିପାରିବ ?

ଅହଲ୍ୟା - ହଁ, ତୁ ଯାହା କହିଲୁ ତାହା ସତ୍ୟ ।

କଳ - କେଜାଣି ତୋ ଉପରେ କାହାର ଅମଙ୍ଗଳକର ଦୃଷ୍ଟି ପଡ଼ିଥିବ ପରା; ନୋହିଲେ ତୁଚ୍ଛାଟାରେ କାହିଁକି ଏପରି ହୁଅନ୍ତା ?

ଇନ୍ଦ୍ର - (ସ୍ୱଗତ) ଆମ୍ଭେ ଏଠାରେ ଥିବାର କି ସେମାନେ ଜାଣି ଦେଲେ ନା ପରିହାସରେ ସେପରି କହିଲେ ? ଆଚ୍ଛା ଆହୁରି କଣ ଚଳିବ ଶୁଣିବା ।

କଳ - ସଖି କଳାବତି ! ଆଉ କାହାର ଦୃଷ୍ଟି ପଡ଼ିବ ? ଏକା ଗୌତମଙ୍କ ଦୃଷ୍ଟିରେତ ପ୍ରିୟସଖୀର ଶରୀର ପାଣ୍ଡୁର ଦିଶୁଅଛି । ଆଉ କାହାର ଦୃଷ୍ଟି ପଡ଼ିଲେ ସେ କି ସହିପାରିବ ?

ଅହଲ୍ୟା - ସଖି ଏପରି କେବେ କହିବୁ ନାହିଁ ।

କଳ - ସତ କହିଲେ ମନୁଷ୍ୟ ଚଳେ,ମିଛ କହିଲେ ଦେବତା ଚଳେ ।

କଳାବତୀ - **ରାଗ ଆଶାବରୀ । ରୂପକତାଳ ।**

(ବରଜି ଅରଜିଲି କଦନ ପ୍ରତି)

ବିଧିର ଅବିଧି ବିଧାନ ।
ଯା ବୋଲ ପଛେ ମୁ କହେ ନିଦାନ ।୦।
ଗଢ଼ି କେଡ଼େ ସୁନ୍ଦର ଶଶି ।
ମଧ୍ୟରେ କଳା କଳଙ୍କ ଲେପନ ।୧।
ଅଗାଧ ଅସୀମ ସମୁଦ୍ରେ ।
ଲବଣ ଜଳ କଲା ସୃଜନ ।୨।
ମନୋହର ମୃଦୁ ଗୋଲାପ ।
ସର୍ବାଙ୍ଗରେ କଣ୍ଟକ ବେଷ୍ଟନ ।୩।
ସୁନ୍ଦରୀ ଅହଲ୍ୟାକୁ ପୁଣି ।
ବୃଦ୍ଧ ଗୌତମ ଅଙ୍କରେ ସ୍ଥାନ ।୪। ।

ଇନ୍ଦ୍ର - (ସ୍ୱଗତ) କଳାବତୀ ଯଥାର୍ଥ କହିଅଛ । ଏ ବିଧିର ଅବିଧି ବିଧାନ ।

ଅହଲ୍ୟା - **ରାଗ କାଫି । ଏକତାଳ ।**

(ସଜନି ମୁକୁଡ଼ାବତ ଲାଜାରେ ପ୍ରତି)

କହନା କେବେ ଏପରି ସଖିରେ ।
ଭଲ ନଥିବଟି ଦେଖିରେ ।୦।
ଯଦି ତୋମନ ହେଲା । କରିବାକୁ ଟାପରା ।
ଆଉ ବିଷୟ କିଛି ନାହିଁ କିରେ ।
କହୁଅଛି ମୁ । ଏବେ ହେଲେ ତୁ ।
ରଖିଥା ମନରେ ଲେଖିରେ ।୧।
ପତିତ ହେଉ ଅବା । ପଙ୍ଗୁ ବୃଦ୍ଧ ହେଉ ବା ।
ପତି ଠାରୁ ବଳି ଅଛି କିରେ ।
ଜାଣି ଶୁଣି ଯା । ବୋଲି ଦେଲୁ ସତେ ।
ଅପ୍ରୋଧ କିଛି ନ ରଖିରେ ।୨।

କଳାବତି ! ଏପରି ପାପ କଥା କେବେ ତୁଣ୍ଡରେ ଧରିବୁ ନାହିଁ । ତୋ ମନଟି । ଜାଣିଥା ।

କଳାବତୀ - ସଖି ! ପାପ ହେଉ ବା ପୁଣ୍ୟ ହେଉ ମତେ ଯେପରି ଦିଶିଲା ସେପରି କହିଦେଲି । ଏହି କଥାଟାକୁ ଏଡ଼େ ଛଳ କାହିଁକି ?

ଅହଲ୍ୟା - ଏହି କଥାରୁ ବଳି ଆଉ ଛଳ ଜାତ ହେବା କଥା କିସ ଅଛି ?

କଳ - ସଖି ଅହଲ୍ୟେ ! ଫୁଲ ତୋଳାତ ସରିଗଲାଣି ଚାଲ ଏଥର ଯିବା ।

(ସମସ୍ତେ ପ୍ରସ୍ଥାନ)

ଇନ୍ଦ୍ର - (ଲତାନ୍ତରାଳରୁ ବାହାରି) କି ସୁନ୍ଦର ରୂପ ! ସ୍ୱର୍ଗଯାକ ଖୋଜିଲେ ମଧ୍ୟ ଏପରି ରୂପବତୀ ଜଣେ ହେଲେ ମିଳିବ ନାହିଁ । ରମ୍ଭା ମେନକା ଏହାଙ୍କ ପାଦତଳେ ଦାସୀ ସ୍ୱରୂପ ଖଟିବାକୁ ଯୋଗ୍ୟ ହେଲେ ହୋଇପାରନ୍ତି । ଏ ଭଗବାନ୍ ଗୌତମଙ୍କ ସହଧର୍ମିଣୀ ଅହଲ୍ୟା ଅଟନ୍ତି । କଳାବତୀ ଯଥାର୍ଥ କହିଅଛି । ଏପରି ରୂପବତୀ ରମଣୀରତ୍ନ ବୃଦ୍ଧ ଗୌତମଙ୍କ ପତ୍ନୀ ହେବା ବିଧିର ଅବିଧି ବିଧାନ ।

ରାଗ ଖମାଚ । ଆଦିତାଳ ।

(ସାରସ ସମ ମୁଖ ପ୍ରତି)

ଆହା କି ସୁନ୍ଦର ରମଣୀମଣି । ମୋ ମନ ନେଲା କିଣି ।
ଦେଖି ଶ୍ରୀମୁଖ ମାଧୁରୀ । ମନେ ହେଉଛି ଏପରି ।
ଗଢ଼ିଛିକି ବେଦବର ପୀୟୂଷକରକୁ ଛାଣି ।୦।
ଅଳପ ଚାହିଁବା ମାତ୍ରେ । ଆକର୍ଣ୍ଣ ବିଶାଳ ନେତ୍ରେ ।
ପ୍ରାଣ ତ୍ରାଣ ପାଇ କି ସୁଖେ ପୁଲକିଲା ମୋର ଅପଘନ ।
କାମ ଅମଳ ଭୋଳେ । ଚାରି ଚକ୍ଷୁ ମିଶି ଗଲେ ।
ଲୋଡ଼ିବ କେ ସ୍ୱର୍ଗଭୂତି ବିଲୋକି ତାହାର ଠାଣି ।୧।
ହାସ ବିଳାସର ସ୍ଥଳ । ଅଧର କେଡ଼େ ମଞ୍ଜୁଳ ।
ବିମ୍ବ-ଦମ୍ଭ ଚୁରି ଡାଳିମ୍ବ ଦଶନକୁ କରି ପରିରମ୍ଭ ।
ଅଳପ ବକ୍ର କରି । ସୁଧା ଯାଚିଦେଲା ପରି ।
ଥରାଇ ବଳକ୍ଷ ସ୍ମିତେ ମଦନ ତାପ ବାରିଣୀ ।୨।
ଜାନୁ ପର୍ଯ୍ୟନ୍ତ ଲମ୍ବିତ । କରିକର ବିନିନ୍ଦିତ ।
କରେ ଧୀରେ ସୁମନ ଚୟନ କରି ସେ କେତେ ପରକାରେ ।
କଞ୍ଜ ଚରଣ ଫେଇ । ଧରା ଶିର ଚମକାଇ ।
ବକ୍ରରେ ଗମନ କରି ମଣ୍ଡି ଯା ଦେଲା ସରଣୀ ।୩।

ବିଧାତାର କି ବିଚିତ୍ର ଲିଖନ । ଏ ଅତୁଲ୍ୟା ରୂପବତୀ କି ଜଣେ ପର୍ଣ୍ଣକୁଟୀରବାସୀ ତପସ୍ୱୀର ଭୋଗ୍ୟା ! ଏ କେବଳ ଆମ୍ଭର ଲାୟକ,

କିନ୍ତୁ, କି ପ୍ରକାରେ ଏ ଦୁର୍ଲଭରତ୍ନ ଭୋଗ କରିପାରିବୁଁ ? ଏହି ଅମୂଲ୍ୟ ମଣିତ ସର୍ବଦା କାଳଫଣୀଦ୍ୱାରା ସୁରକ୍ଷିତ । କି ଉପାୟ ଅବଲମ୍ବନ କରି ସେ ଚାରୁହାସିନୀକି ଆମ୍ଭ ଆୟତ୍ତାଧୀନ କରିପାରିବୁଁ ? (କିଛି କାଳ ଚିନ୍ତା କରି) ହଁ ହେଉ । ପ୍ରଥମେ ଆମ୍ଭେ ଯାଇ ମହର୍ଷି ଗୌତମଙ୍କ ଶିଷ୍ୟତ୍ୱ ସ୍ୱୀକାର କରି ପରେ ମନୋରଥ ସିଦ୍ଧ ହେବାର ଆଲୋଚନା କରିବୁଁ । ମାତ୍ର ଏତିକି ଭୟ ହୁଏ । ଗୌତମଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ ଅହଲ୍ୟା ଗୁରୁ ପତ୍ନୀ ହେବେ । ଗୁରୁପତ୍ନୀ ହରଣ କରିବା ଭୟାନକ ପାପ କାର୍ଯ୍ୟ । (କିଛି କାଳ ଆଲୋଚନା କରି) ହଁ ହେଲେ କଣ ହେଲା ? ଆମ୍ଭେ କି ପ୍ରକୃତ ଶିଷ୍ୟତ୍ୱ ଗ୍ରହଣ କରିବୁଁ ? ନାମ ମାତ୍ରକୁ ସିନା, ଏଥିରେ ଆସିବା ଦୋଷ କଣ ? ଯାହା ହେଉ ମନୋରଥ ସିଦ୍ଧ ହେଲେ ଗଲା ।

(ପ୍ରସ୍ଥାନ ଓ ଯବନିକା ପତନ)

## (ତୃତୀୟ ଦୃଶ୍ୟ)

(ଗୌତମାଶ୍ରମ)

(ଶିଷ୍ୟଗଣ ସହିତ ଗୌତମ ଆସୀନ)

ଗୌତମ - ତୁମ୍ଭେମାନେ ତୁନି ହୋଇ ବସିଲ କାହିଁକି ? ପ୍ରଥମେ ସରସ୍ୱତୀଙ୍କୁ ବନ୍ଦନାକର ପଛେ ନୂଆଁ ପାଠ କହିବୁଁ ।

ଶିଷ୍ୟଗଣ - **ରାଗ ଝଞ୍ଜୋଟି । ଆଦିତାଳ ।**

(ରାଢ଼ ଗଜାନନ ପ୍ରତି)

ମାତ ସରସ୍ୱତି ଦେବି ସରସ୍ୱତି ।
ଭଗବତି ଭାରତି ନମସ୍ତେ ।୦।
ତାପ ବିମର୍ଦ୍ଦନି । ପାପବିମୋଚନି ।
ବୀଣାପୁସ୍ତକରଂଜିତହସ୍ତେ ।୧।
ଜାଡ଼୍ୟାପହାରିଣି । କେଶବ ମୋହିନି ।
ଦେହି ପଦପଦ୍ମ ମମ ମସ୍ତେ ।୨।

ଗୌତମ - ଆଚ୍ଛା ତୁମ୍ଭେମାନେ ନ୍ୟାୟ କାହାକୁ କହନ୍ତି ଜାଣ ?

ଶିଷ୍ୟଗଣ - ଆଜ୍ଞା ! ନା ।

ଗୌତମ - ତେବେ ଶୁଣ ! ପ୍ରମାଣଦ୍ୱାରା ପଦାର୍ଥ ପରୀକ୍ଷା କରିବା ଅଥବା ପର ପ୍ରତ୍ୟାୟନାର୍ଥ ଅର୍ଥାତ୍ ଅନ୍ୟଲୋକଙ୍କୁ ବୋଧ କରାଇବା ଲାଗି ପ୍ରତିଜ୍ଞା, ହେତୁ, ଉଦାହରଣ, ଉପନୟ ଓ ନିଗମନ ଏହି ପଞ୍ଚ ବାକ୍ୟର ଅବତାରଣାର ନାମ ନ୍ୟାୟ । ନ୍ୟାୟ ଦର୍ଶନର ଅପର ନାମ ଆନ୍ୱୀକ୍ଷିକୀ । ଅନ୍ୱୀକ୍ଷିକୀ ଶବ୍ଦର ବ୍ୟୁତ୍ପତ୍ତି ଏହି; ଅନୁଶ୍ରବଣାଦନୁ ଈକ୍ଷା ମନନଂ ଆନ୍ୱୀକ୍ଷାତନ୍ନିର୍ବାହିକା ଆନ୍ୱୀକ୍ଷିକୀ ଏହି ଶାସ୍ତ୍ରଦ୍ୱାରା ଈଶ୍ୱରଙ୍କର ତ୍ରିବିଧ ଉପାସନା ପ୍ରତିପାଦିତ ହୁଏ । ଏହି ତ୍ରିବିଧ ଉପାସନାର ମଧ୍ୟରେ ପ୍ରଥମ ଉପାସନା 'ଶ୍ରବଣ'; ଏହା ଶ୍ରୁତି ବାକ୍ୟଦ୍ୱାରା ନିର୍ବାହିତ ହୁଏ । ଦ୍ୱିତୀୟ ଉପାସନା ''ମନନ''; ଏହା ମନନ ଶାସ୍ତ୍ର ଦ୍ୱାରା ନିର୍ବାହିତ ହୁଏ । ଏହି ମନନ ଶାସ୍ତ୍ର ଆନ୍ୱୀକ୍ଷିକୀ ପଦରେ ଅଭିହିତ ଓ ସୂତ୍ର ଦ୍ୱାରା ଗଠିତ ।

ଶିଷ୍ୟଗଣ - ଆଜ୍ଞା ! ସୂତ୍ର ବୋଇଲେ କଅଣ ?

ଗୌତମ - ''ସୂଚନାଦ୍ଧିସୂତ୍ରଂ'' ଅର୍ଥାତ୍ ବହୁ ଅର୍ଥର ସୂଚନାକାରୀ ଶବ୍ଦ ସନ୍ଦର୍ଭର ନାମ ସୂତ୍ର । ଜ୍ଞାନ ଦୁଇ ପ୍ରକାର ।

ଶିଷ୍ୟଗଣ - ଆଜ୍ଞା କିପରି ?

ଗୌତମ - ଅଯଥାର୍ଥ ଓ ଯଥାର୍ଥ ଜ୍ଞାନ । ଯେଉଁ ଉପାୟଦ୍ୱାରା ଅଯଥାର୍ଥ ଜ୍ଞାନ ଉତ୍ପନ୍ନ ହୁଏ ତାହା ପ୍ରମାଣାଭାସ, ଅର୍ଥାତ୍ ପ୍ରମାଣବତ୍ ପ୍ରତୀୟମାନ; ବସ୍ତୁତଃ ପ୍ରମାଣ ନୁହେ । ବସ୍ତୁ ଯେ ରୂପ ଜ୍ଞାନ ସେହି ରୂପ ହେଲେ ତାହାକୁ ଯଥାର୍ଥ ଜ୍ଞାନ ବୋଲି । ଯେଉଁ ଉପାୟଦ୍ୱାରା ଯଥାର୍ଥଜ୍ଞାନ ଉତ୍ପନ୍ନ ହୁଏ ତାହାକୁ ପ୍ରମାଣ ବୋଲି । ନ୍ୟାୟ ଦର୍ଶନ ମତରେ ପ୍ରମାଣ ଚାରିପ୍ରକାର । ଯଥା ପ୍ରତ୍ୟକ୍ଷ୍ୟ, ଅନୁମାନ, ଉପମାନ ଓ ଶବ୍ଦ ।

(ଛଦ୍ମବେଶରେ ଇନ୍ଦ୍ରଙ୍କ ପ୍ରବେଶ)

ଇନ୍ଦ୍ର - ଭଗବନ୍ ନମୋନମଃ ।

ଗୌତମ - ତୋର ମଙ୍ଗଳ ହେଉ । କେ ତୁ ?

ଇନ୍ଦ୍ର - ଭଗବନ୍ ମୁ ଜଣେ ବ୍ରାହ୍ମଣ, ଆପଣ ସର୍ବଶାସ୍ତ୍ର ବେତ୍ତା ଥିବାର ମୁ ଜାଣିପାରି ଆପଣଙ୍କ ନିକଟରେ କେତେ କାଳ ଅଧ୍ୟୟନ କରିବା ଲାଗି ଆସିଅଛି । ଯଦି ଭବଦୀୟ ଅନୁଗ୍ରହରେ ମୁ କୃତକାର୍ଯ୍ୟ ହେବି, ତେବେ ମୋର ସାଧ୍ୟାୟତ୍ତ ଗୁରୁ ଦକ୍ଷିଣା ଦେବାରେ କେତେ ମାତ୍ର ତ୍ରୁଟି କରିବି ନାହିଁ ।

ଗୌତମ - ତୋର ନାମ କଣ ? ତୋର ନିବାସ ସ୍ଥାନ କୋଠାରେ ?

ଇନ୍ଦ୍ର - ଆଜ୍ଞା, ମତେ ପୁରନ୍ଦର ବୋଲି ଲୋକେ ଡାକନ୍ତି, ମୋର ନିବାସ ସ୍ଥାନ ଅମରା ନଗରୀ ଅଟେ ।

ଗୌତମ - ଆଚ୍ଛା ବସେ ।

ଇନ୍ଦ୍ର - ଆଜ୍ଞା । (ଉପବେଶନ)

ଗୌତମ - କେତେଦୂର ଅଧ୍ୟୟନ କରିଅଛୁଁ ?

ଇନ୍ଦ୍ର - ଆଜ୍ଞା । ବେଦଶାସ୍ତ୍ରାଦିରେ କିଞ୍ଚିତ୍ ପ୍ରବେଶ ଅଛି, ବର୍ତ୍ତମାନ ଆପଣଙ୍କ କରୁଣାରୁ ଜ୍ଞାନ ଲାଭ କରି ମନବୃତ୍ତିକି କାର୍ଯ୍ୟରେ ପରିଣତ କରିବି ।

ଗୌତମ - ବତ୍ସ, ଆମ୍ଭେ ତୋହର କଥା ଶୁଣି ସାତିଶୟ ସନ୍ତୁଷ୍ଟ ହେଲୁଁ । ଆଜିଠାରୁ ତୁ ଆମ୍ଭଠାରେ ପଠନ କରିବା ସକାଶେ ଆମ୍ଭେ ତୋତେ ଅନୁମତି ଦେଲୁଁ ।

ଇନ୍ଦ୍ର - ଏବେ ମୁଁ କୃତକୃତ୍ୟ ହେଲି ।

ଗୌତମ - ଶିଷ୍ୟବୃନ୍ଦ ତୁମ୍ଭେ ସମସ୍ତେ ଅନେକ ଦୂର ଅଧ୍ୟୟନ କରି କିଛି ଜ୍ଞାନ ଲାଭ କରିଅଛ । ଏବଂ ତୁମ୍ଭେମାନେ ଯୌବନାବସ୍ଥା ପ୍ରାପ୍ତ ହେଲଣି । ଆଚ୍ଛା କହତ କିହେତୁ ଲୋକେ ଦାର ପରିଗ୍ରହ କରନ୍ତି ? ଆଉ ସଂସାରରେ ସ୍ତ୍ରୀର ପ୍ରୟୋଜନ କଣ ?

(ସମସ୍ତଙ୍କର ମସ୍ତକ କଣ୍ଡୁୟନ)

ଇନ୍ଦ୍ର - ଆଜ୍ଞା "ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା ପୁତ୍ର ପିଣ୍ଡ ପ୍ରୟୋଜନଂ" ଏହି ହେତୁରୁ ଲୋକେ ଦାର ପରିଗ୍ରହ କରନ୍ତି ।

ଗୌତମ - ଆଚ୍ଛା ଦ୍ୱିତୀୟ ପ୍ରଶ୍ନର ଉତ୍ତର କହ ?

ଇନ୍ଦ୍ର - ଆଜ୍ଞା ଭବଦୀୟ ଶ୍ରୀମୁଖରୁ ଶୁଣିବାକୁ ଇଚ୍ଛା କରେ ।

ଗୌତମ - ଦେଖ ଶ୍ରୀ ଏବଂ ସ୍ତ୍ରୀ ଏହି ଦୁଇ ଶବ୍ଦର ଅର୍ଥ ଏକ । ଏହି ଶ୍ରୀରୂପା ସ୍ତ୍ରୀ ନଥିଲେ ସଂସାର ଶୂନ୍ୟ ବୋଧ ହେଉଥାନ୍ତା । ଅତଏବ ଲୋକେ ସ୍ତ୍ରୀ ବିୟୋଗରେ ଗୃହ ଶୂନ୍ୟ ବୋଲି କହନ୍ତି ।

ଇନ୍ଦ୍ର - ଆଜ୍ଞା ଯଥାର୍ଥ ।

ଶିଷ୍ୟ - ଭଗବନ୍ ମାଧ୍ୟାହ୍ନିକ କ୍ରିୟାର ସମୟ ଉପସ୍ଥିତ ହେଲାଣି ।

ଗୌତମ - ତେବେ ସମସ୍ତେ ନିଜ ୨ କୁଟୀରକୁ ଯାଇ ସ୍ନାନାଦି କ୍ରିୟା ସମାପନ କର । ବତ୍ସ ପୁରନ୍ଦର ! ତୁ ଆମ୍ଭ ମନ୍ଦିରରେ ରହି ଆମ୍ଭଠାରେ ଅଧ୍ୟୟନ କରୁଥିବୁ ଚାଲେ ଯିବା ।

(ପ୍ରସ୍ଥାନ ଓ ଯବନିକା ପତନ)

## ଦ୍ୱିତୀୟାଙ୍କ

### (ପ୍ରଥମ ଦୃଶ୍ୟ)

(ବିଷ୍ଣୁ ମନ୍ଦିର ଅହଲ୍ୟା ସଖିମାନଙ୍କ ସହିତ ପୂଜା କରିବା)

ଅହଲ୍ୟା - **ରାଗ ବିଳାହରି । ଏକତାଳ ।।**

(ହେ ମହାପ୍ରଭୋ ବନ୍ଦନ ଘେନ ପ୍ରତି)

ହେ ମହାପ୍ରଭୋ । କରେ ମୁ ଆରତି ବନ୍ଦନ ।୦।

ଧୂପ ଦୀପ ଥୋଇ । ନଇବେଦ୍ୟ ଦେଇ ।

ଛାମୁରେ କରେ ନିବେଦନ ।୧।

ପାପ ନିବାରଣେ । ଶରଣ ଚରଣେ ।

ପଶେ ମୁ ପତିତପାବନ ।୨।

ନାରୀଙ୍କର ଗତି । ଅଟେ ନିଜ ପତି ।

କରନ୍ତୁ ତାଙ୍କ ଆୟୁଷ୍ମାନ ।୩।

(ନମସ୍କାର କରିବା ଓ ସଖିମାନଙ୍କୁ ଆରତି ପ୍ରସାଦ ଦେଇ ନିଜେ ଗ୍ରହଣ କରିବା ।)

ଅହଲ୍ୟା - ସଖି ! ଶ୍ରୀରାଧାରମଣଙ୍କ ସେବାରେ ଆମ୍ଭ ପବିତ୍ର ହୋଇଅଛି ।

କଳ - ସନ୍ଦେହ କି ?

କଳା - ଆମ୍ଭ ପବିତ୍ର ହେବାର ଆଶ୍ଚର୍ଯ୍ୟ କି ?

କଳ - ସଖି ଅହଲ୍ୟା ! ଆସ ଏଠାରେ ବସି ରାଧାରମଣଙ୍କର ଭଜନା କରିବା ।

କଳାବତୀ - ହଁ ଭଲ ହେବ । ମହର୍ଷିଙ୍କ ପୂଜାତ ଆଜି ବିଳମ୍ବ ହେବ ।

ଅହଲ୍ୟା - (ଆତୁରେ) କାହିଁକି ?

କଳାବତୀ - ମୁ ଆସିବା ସମୟରେ ଦେଖିଥିଲି ମହର୍ଷି ଆଜି ଜଣେ ନୂତନ ଶିଷ୍ୟକୁ ପାଠ ପଢ଼ାଉଥିଲେ ।

ଅହଲ୍ୟା - ତେବେ ଅବଶ୍ୟ ବିଳମ୍ବ ହେବ । ସେତ ଶିଷ୍ୟମାନଙ୍କୁ ପାଠ ପଢ଼ାଇ ବସିଲେ କାଳ ବେଳ ଜାଣନ୍ତି ନାହିଁ ତହିଁରେ ନୂଆଶିଷ୍ୟ ଆସିଲେ ଆଉ ପଚାରୁଛୁ, ସଖି ଆସ ତେବେ ଅଳ୍ପକାଳ ଭଜନ କରିବା ।

(ସମସ୍ତେ ବସିବା)

କଳ - ସଖି ଅହଲ୍ୟା ପ୍ରଥମେ ତୁ ଭଜନାରମ୍ଭ କରେ ।

ଅହଲ୍ୟା - ମୁଁ ଗାଇଲା ଉତ୍ତାରୁ ତୁମ୍ଭେ ଦୁହେଁ ମଧ ଗାଇବଟି ?

କଳ - ହଁ ସେପରି ଏକା । ଆଗ ତୋର ହେଉ ।

ଅହଲ୍ୟା - **ରାଗ ଘଣ୍ଟାରବ । ଆଦି ତାଳ ।**

(ପାବନା ଦୀନଜନ ପାଳନ ପ୍ରତି)

ହେ ପ୍ରଭୋ ଦୀନଜନପାଳନ ।
କେଶବ କରୁଣା-ନିକେତନ ।୦।
ଶ୍ରୀବତ୍ସାଙ୍କିତ କୌସ୍ତୁଭଧାରକ ।
ଯୋଗୀଜନମନୋରଞ୍ଜନ ।୧।
ହେ ଦେବ ପୀତକୌଷେୟବାସ ।
ସର୍ବପାପନିବାରଣ ।୨।

ସଖି ତୁମ୍ଭେ ଦୁହେଁ ଗୋଟିଏ ଗୀତ ଗାଅ ।

କଳ ଓ କଳା - ହେଉ (ଗଳା ମାଜି)

**(ରାଗ ନଟ । ଆଦିତାଳ ।।)**

(ରାଧେକୃଷ୍ଣ ହାମାରେ ମୁରାରେ ପ୍ରତି)

ରାଧେକୃଷ୍ଣ କେଶବ ମୁରାରେ ।
ବୋଲ ହେ ସୁଜନେ ଧାଇ ମନରେ ।୦।
ପାପତିମିରହର । ନବଘନ ସୁନ୍ଦର ।
ଗୋକୁଳକଳାକର । ବରଜବିହାରେ ।୧।
ଜୀବ କ୍ଷଣ ଭଙ୍ଗୁର । କେହି ନୁହେ କାହାର ।
ଜାଣି ଭ୍ରମୁଛ କେଣେ ନଶ୍ୱର ଭବରେ ।୨।
ମୁକ୍ତି-ଗତି-ଦାୟକ । ତ୍ରିଭୁବନନାୟକ ।
ଚିଦାନନ୍ଦମୂରତି । ନଟବରଶୌରେ ।୩।

ଅହଲ୍ୟା - କୋକିଳକଣ୍ଠ ପରି ଅତି ମନୋହର ହୋଇଅଛି ।

କଳ - ସଖି ଏ ତୋର ମନଧରା କଥା ।

ଅହଲ୍ୟା - ମନଧରା କଥା କାହିଁକି ? ମୁଁ ଯଥାର୍ଥ କହିଛି । ଏଥର ଭଜନା ବନ୍ଦ କର, ମୁ ଯାଇ ଆର୍ଯ୍ୟପୁତ୍ରଙ୍କର ପୂଜା ନିମନ୍ତେ ସବୁ ବନ୍ଦୋବସ୍ତ କରିବାକୁ ହେବ ।

କଳ - ତେବେ ଚାଲ । (ସମସ୍ତେ ପ୍ରସ୍ଥାନୋନ୍ମୁଖ)

କଳାବତୀ - ହେଟି ମହର୍ଷି ଏ ଆଡ଼େ ଆସିଲା ପରି ବୋଧେ ହେଉଅଛି । ସଖି ଅହଲ୍ୟା ଆମ୍ଭେମାନେ ଯାଉଁ ।

(ଇନ୍ଦ୍ରସହ ଗୌତମଙ୍କ ପ୍ରବେଶ)

ଗୌତମ - ପ୍ରିୟେ ! ଏଣେ ଆସ ।

ଅହଲ୍ୟା - (ନମସ୍କାର କରିବା)

ଗୌତମ - ପ୍ରିୟେ ଏହି ବାଳକଟି ଆମ୍ଭଠାରେ ବିଦ୍ୟାଭ୍ୟାସ କରିବାକୁ ଆସିଅଛି । ଆମ୍ଭ ଆଶ୍ରମରେ ରହି ଅଧ୍ୟୟନ କରିବ । ବୁଝିଲ ?

ଅହଲ୍ୟା - ଆଜ୍ଞା ସବୁ ବୁଝିଲି ମାତ୍ର ଏହାର ଜାତି କି ?

ଗୌତମ - ବ୍ରାହ୍ମଣ ।

ଅହଲ୍ୟା - ନାମ ?

ଗୌତମ - ପୁରନ୍ଦର ।

ଅହଲ୍ୟା - ଦେଶ ?

ଗୌତମ - ଅମରା ନଗରୀ ।

ଅହଲ୍ୟା - ଆର୍ଯ୍ୟପୁତ୍ର ଗୁଣ କିପରି ?

ଗୌତମ - ପ୍ରିୟେ ! ବତ୍ସ ପୁରନ୍ଦର ବଡ଼ସାଧୁ । ବେଦାଦି ଶାସ୍ତ୍ରରେ ମଧ୍ୟ ପ୍ରବେଶ ଅଛି ।

ଅହଲ୍ୟା - ହଁ ସାଧୁପରି ଦିଶୁଅଛି ।

ଗୌତମ - ଏହା ବିଷୟରେ ତୁମ୍ଭେ ସବୁ ଜାଗ୍ରତ କରିବାକୁ ପଡ଼ିବ ।

ଅହଲ୍ୟା - କାହିଁକି ନ କରିବି ?

ଗୌତମ - ବତ୍ସ ପୁରନ୍ଦର ! ତୁ ଯାଇ ନିତ୍ୟାନୁଷ୍ଠାନ କରି ଶୀଘ୍ର ଆସେ ।

ପୁରନ୍ଦର - (ନମସ୍କାର କରି ପ୍ରସ୍ଥାନ)

ଗୌତମ - ପ୍ରିୟେ ପୂଜାର ଆୟୋଜନ ସବୁ ଠିକ୍ କର ମୁ ଏହିକ୍ଷଣି ଆସିବି ।

ଅହଲ୍ୟା - ଯେ ଆଜ୍ଞା । (ପ୍ରସ୍ଥାନ ଓ ଯବନିକା ପତନ) ।

-୦-

(ଦ୍ୱିତୀୟ ଦୃଶ୍ୟ)

(ଆଶ୍ରମର ଅନ୍ତଃପୁର; ଅହଲ୍ୟା ଓ ପୁରନ୍ଦର ଉପବେଶନ)

ଅହଲ୍ୟା - ଓଃ ଏ ବସନ୍ତ କାଳରେ ଭୟାନକ ଗରମ ବୋଧ ହେଉଅଛି । ବତ୍ସ ତୁମ୍ଭ ଦେଶ ଗରମ ନା ?

ପୁରନ୍ଦର - ଆଜ୍ଞା ନା ବସନ୍ତ କାଳରେ ଏତେ ଗରମ ମୁ କେବେ ଜାଣିନାହିଁ ।

ଅହଲ୍ୟା - ତେବେ ଏ ଦେଶରେ କାହିଁକି ଏଡ଼େ ଗରମ ?

ପୁରନ୍ଦର - ଆଜ୍ଞା । ପାର୍ବତୀୟ ଦେଶ ହେବାରୁ ପରା ?

ଅହଲ୍ୟା - (ନିଜ ଅଞ୍ଚଳରେ ବିଞ୍ଚି ହୋଇ) ବସନ୍ତ କାଳରେ ତ ଏପରି, ଗ୍ରୀଷ୍ମ କାଳରେ କଅଣ ନ ହେବ ?

ପୁରନ୍ଦର - ଅତି ଅଧିକ ହେଲାପରି ବୋଧହୁଏ । (ବ୍ୟଜନ ଚାଳନ କରିବା)

ଅହଲ୍ୟା - ନା ବାବୁ ରଖିଦେ, ବିଞ୍ଚିବାର ଦରକାର ନାହିଁ ।

ପୁରନ୍ଦର - ଆଜ୍ଞା କିଛି ଚିନ୍ତା ନାହିଁ, ସମୀରଣ ସେବନ କରି ଶ୍ରମ ଅପନୋଦନ କରନ୍ତୁ ।

ଅହଲ୍ୟା - ବତ୍ସ ସରି ଏଥର ରଖିଦେ, ମୁ ଅଞ୍ଚଳରେ ଝାଳ ପୋଛି ନେଉଅଛି ।

ପୁରନ୍ଦର - ଆପଣ ଏପରି ଆଜ୍ଞା କରନ୍ତୁନା; ଗୁରୁପତ୍ନୀଙ୍କ ସେବା କରିବା ସକାଶେ ଏପରି ଅବସର ମୁଁ କେବେ ପାଇବି ?

ଅହଲ୍ୟା - ଆଚ୍ଛା ତୁ ଯଦି ଇଚ୍ଛା କଲୁଣି ତେବେ ବିଞ୍ଚେ ।

ପୁରନ୍ଦର - ମୁ କୃତାର୍ଥ ହେଲି । ସୁଧାର ଆଧାର ଶଶଧର ସର୍ବଦା ଅମୃତ ବର୍ଷଣ କରେ ପ୍ରଫୁଲ୍ଲ ସରୋଜ ମଧୁ ବିତରଣରେ କେବେ କୁଣ୍ଠିତ ହୁଏ ନାହିଁ ।

ଅହଲ୍ୟା - ବତ୍ସ ଏକଥା ତୋତେ କେ ଶିଖାଇଲା ?

ପୁରନ୍ଦର - ଆଜ୍ଞା ଶିଖାଇବ କେ ? ଶଶଧର ଏବଂ ପଙ୍କଜ ଚକୋର ଆଉ ଭ୍ରମରକୁ କେବେ ନିରାଶ କରନ୍ତି ନାହିଁ ।

ଅହଲ୍ୟା - ତେବେ ଶଶଧର ଆଉ ସରୋଜର ସହିତ ମୋର ତୁଳନା କିପରି ହେଲା ?

ପୁରନ୍ଦର - ଦେବି, ଯାହାର ନେତ୍ର ଯୁଗଳ ଇନ୍ଦୀବରକୁ ନିନ୍ଦା କରୁଅଛି, ଯାହାର ସୁରମ୍ୟ ମୁଖମଣ୍ଡଳର ସ୍ୱେଦ ବିନ୍ଦୁ ମୁକ୍ତାଫଳର ଆଭା ବିସ୍ତାର କରୁଅଛି; ଯାହାର ଭ୍ରୂ ଯୁଗଳ ଓ ରତ୍ନରାଗ ଖଂଜିତ ଲୋଚନ କଟାକ୍ଷ ମିଶି କାମଦେବର

ଶରସଂଯୁକ୍ତ କୁସୁମ ଚାପ ବୋଲି ଭ୍ରମ ଜନ୍ମାଉଅଛି, ବିନା ତାମ୍ବୁଳ ରାଗରେ ଯାହାର ଅଧରୋଷ୍ଠ ବିମ୍ବଫଳକୁ ଧିକ୍କାର କରୁଅଛି; ବିଧାତାର କାରୁକାର୍ଯ୍ୟର ସମଷ୍ଟି ସ୍ୱରୂପ ଯାହା ପ୍ରତିମୂର୍ତ୍ତି, ଯେକି ଦେବରାଜ ଇନ୍ଦ୍ରଙ୍କ ହୃଦୟ ମନ୍ଦିରରେ ପ୍ରତିଷ୍ଠିତା ହେବାକୁ ଯୋଗ୍ୟା ତାହାର ତୁଳନା କି ତ୍ରିଭୁବନରେ ଖୋଜିଲେ ମିଳିବ ? ଛାର ଚନ୍ଦ୍ର ଓ ପଙ୍କଜ କେତେ ? ମାତ୍ର ଦୁଃଖର ବିଷୟ ଏହି ଯେ ତପଃକ୍ଲେଶାନୁଭୋଗୀ ଜଣେ ଋଷିଙ୍କର ସହଧର୍ମିଣୀ ହୋଇ ଆପଣଙ୍କୁ ଅନେକ ବାଧା ସହ୍ୟ କରିବାକୁ ହୁଏ ।

ଅହଲ୍ୟା - ତୋର ବିଚିତ୍ର ବର୍ଣ୍ଣନା ଶ୍ରବଣ କରି ମୁ କ୍ଷଣକ ନିମନ୍ତେ ଆତ୍ମବିସ୍ମୃତ ହୋଇଅଛି । କିନ୍ତୁ ବାବୁ କହତ, ସୁରନରବନ୍ଦିତା ଗଙ୍ଗା ବ୍ରହ୍ମକମଣ୍ଡଳୁ ପରିତ୍ୟାଗ ପୂର୍ବକ ଧୂର୍ଜଟୀଙ୍କ ଜଟାରେ କାହିଁକି ବିହାର କରନ୍ତି ? ସେ ସ୍ଥାନଟି ଭଲ ଲାଗିବାରୁ ନୁହେ କି ?

ପୁରନ୍ଦର - କିନ୍ତୁ ଦେବି, ଏକଦା ସେହି ଗଙ୍ଗା ଶଙ୍କରଶିରୋଦେଶ ପରିତ୍ୟାଗ କରି ଶାନ୍ତନୁରାଜାଙ୍କର ଅଙ୍କଲକ୍ଷ୍ମୀ ହୋଇଥିଲେ ।

ଅହଲ୍ୟା - ହଁ ସେ ଅଖଣ୍ଡନୀୟ ବିଧିବଳରୁ ହୋଇଥିଲେ ।

ପୁରନ୍ଦର - ତେବେ ଯାହା ଘଟିବାକୁ ନ ଥାଏ ତାହା ବିଧିବଳ ଘଟାଇପାରେ ?

ଅହଲ୍ୟା - ସନ୍ଦେହ କି ?

ପୁରନ୍ଦର - ଦେବି, ଆପଣ ସ୍ତ୍ରୀ ହୋଇ ଏଡ଼େ ଦିବ୍ୟ ଜ୍ଞାନ କିପରି ପ୍ରାପ୍ତ ହେଲେ ?

ଅହଲ୍ୟା - ସବୁ ତୋ ଗୁରୁଙ୍କ ଶିକ୍ଷା ?

ପୁରନ୍ଦର - ଆଜ୍ଞା, ମୋର ଆଉ କିଛି ପଚାରିବାର ଇଚ୍ଛା ରହିଲା । ଅନୁମତି ଦେଲେ ପଚାରନ୍ତି ।

ଅହଲ୍ୟା - ପଚାରେ ।

ପୁରନ୍ଦର - ଆଜ୍ଞା, ବିଧାତାର ଅପୂର୍ବ ସୃଷ୍ଟି ମଧ୍ୟରେ ଦୁଇଗୋଟି ପଦାର୍ଥ ମାତ୍ର ମନକୁ ସନ୍ତତ ଆକର୍ଷଣ କରେ :- ଯଥା କାନନ ଓ କାମିନୀ । ତେବେ ଏ ଦୁହିଙ୍କ ମଧ୍ୟରେ କିଏ ବଡ଼ କିଏ ସାନ ?

ଅହଲ୍ୟା - ଦୁଇ ପଦାର୍ଥ ସମାନ; ମାତ୍ର ପ୍ରଜାପତି ପ୍ରଜା ବୃଦ୍ଧି କରିବା ଲାଗି କାମିନୀର ଅବୟବ ମଧ୍ୟରେ ଏପରି କୌଣସି ଅନିର୍ବଚନୀୟ ଶକ୍ତି ସନ୍ନିବେଶନ କରି

ଅଛନ୍ତି  ଯେ କେବଳ ଦୃଷ୍ଟିପାତରେ ପୁରୁଷର ମନ ଆକର୍ଷଣ କରି ନିଏ । କିନ୍ତୁ ପୁରୁଷ ବିଦ୍ୟା ଓ ଜ୍ଞାନ ବଳରୁ ଅବିଦ୍ୟାର ପ୍ରଲୋଭନ ଅତିକ୍ରମ କରି ଅନନ୍ତ ବ୍ୟାଧିରୁ ମୁକ୍ତ ହୁଏ ।

ପୁରନ୍ଦର - ଆଜ୍ଞା, ପରଦାରାଗମନ ନିତାନ୍ତ ପାପ କାର୍ଯ୍ୟ ବୋଲି ଶାସ୍ତ୍ରାଦିରେ ଲେଖା ହୋଇଅଛି । ସେଥିରେ ଦୋଷ କଣ ?

ଅହଲ୍ୟା - ସେପରି ଯେ କରେ ତାହାର ଅଧଃପତନ ହୁଏ; ସୋମଦେବ କଣ ହେଲେ ଜାଣିନାହୁଁ ?

(ନେପଥ୍ୟେ-ନାରାୟଣ ୨, ରାଧେକୃଷ୍ଣ)

ପୁରନ୍ଦର - ଦେବି ! ଆଚାର୍ଯ୍ୟ ଆସୁଅଛନ୍ତି ମୁ ବିଦାୟ ନିଏ ।

ଅହଲ୍ୟା - ହଁ ଯା ।

(ପ୍ରସ୍ଥାନ ଓ ଯବନିକା ପତନ)

●

## ତୃତୀୟାଙ୍କ

### (ପ୍ରଥମ ଦୃଶ୍ୟ)

(ପଠନାଗାର)

ଇନ୍ଦ୍ର - (ପୁସ୍ତକ କରେ ପ୍ରବେଶ) ଆହା କି ମନୋହରରୂପ ! ମୁଖମଣ୍ଡଳ କଳଙ୍କରହିତ ଶାରଦୀୟ ପୂର୍ଣ୍ଣିମା ଚନ୍ଦ୍ରକୁ ଧିକ୍କାର କରିଦିଏ । କଥୋପକଥନ କରିବା ସମୟରେ ନୟନ ଯୁଗଳ ଉର୍ଦ୍ଧ୍ୱ ନିମ୍ନ ପାର୍ଶ୍ୱ ଓ ବକ୍ର ଗତି କରି ପରିଶେଷରେ ମୋ ହୃଦୟ ଦେଶରେ ପ୍ରବେଶ କରି ମତେ ହତଚେତା କରି ଦେଲା । ଆଃ କି ମନଭେଦି ଯନ୍ତ୍ରଣା ! (କରୁ ପୁସ୍ତକ ନିକ୍ଷେପକରି) କିସ କରିବି ? ପାଠ ପଢ଼ିବାକୁ ମନ ଯାଉନାହିଁ । କନ୍ଦର୍ପାନଳ ଏକାବେଳକେ ଦହ୍ୟ କରି ଦେଉଅଛି ।

**ରାଗ ମୋହନା । ରୂପକତାଳ ।**

(କମଳାନନ କରୁଣିଂପୁମୁ ପ୍ରତି)

କିଯୋଗେ ସେହି ରମଣୀବର ନୟନେ ମୋର ପଡ଼ିଲା ।୧।
ସେ କି ମନ୍ତର ବଳରେ ମୋର ଅନ୍ତରଗତ ହୋଇଲା ।୨।
ଦେଖିଲେ ପ୍ରତି ଦିଗରେ ସେହି ଆଗରେ ମୋର ଢାଗିଲା ।୩।
ଶୟନେ ସେହି ସ୍ୱପନେ ସେହି ହୃଦୟେ ମୋର ନାଚିଲା ।୪।
ଅଶନେ ପରିପଠନେ କିବା ବସନେ ମନ ନୋହିଲା ।୫।
ବିରତେ ସ୍ମର କରତେ ପଡ଼ି ନିପଟେ ବୁଦ୍ଧି ହଜିଲା ।୬।

କି ଅସହ୍ୟ ଯନ୍ତ୍ରଣା ! କି ମର୍ମଭେଦି ବେଦନା ! କି ଉପାୟ ଅବଲମ୍ବନ କରି ଏହା ଶାନ୍ତ କରିବି ? କି ରୂପେ ସେ ଦୁଷ୍ପ୍ରାପ୍ୟ ସରଳପ୍ରତିମା ମୋର ହୃଦୟ ମନ୍ଦିରରେ ପ୍ରତିଷ୍ଠିତା ହୋଇପାରିବ । (ପୁସ୍ତକ ଟୋଳି ପଠନ କରିବା) କିସ ପଢ଼ିବ ? ଯହୁଁ ଦେଖିଲେତ ସେହି ରୂପ ଦିଶିଲା, ଯେତେବେଳେ ଦେଖିଲେ ସେହି ଚିନ୍ତା ହେଲା ।

(ଅନ୍ୟ ଶିଷ୍ୟମାନଙ୍କର ପ୍ରବେଶ)

୧ଶିଷ୍ୟ - କି ପୁରନ୍ଦର ! କେତେବେଳୁଁ ଆସିଅଛ ?

ପୁରନ୍ଦର - (ସଚକିତେ) ପ୍ରାୟ ଘଡିଏ ହେବ ।

୨ଶିଷ୍ୟ - ଆସ ସମସ୍ତେ ବସିବା ।

ସମସ୍ତେ - ହେଉ (ବସିବା)

୧ଶିଷ୍ୟ - ଯାହାହେଉ ପୁରନ୍ଦର ବଡ଼ ଅଦୃଷ୍ଟବନ୍ତ ଲୋକ ।

୨ଶିଷ୍ୟ - ଯଥାର୍ଥ ନୋହିଲେ କି ଏ ଆଚାର୍ଯ୍ୟଙ୍କ ଓ ମା ଠାକୁରାଣୀଙ୍କ ପ୍ରିୟପାତ୍ର ହୋଇଥାନ୍ତା । ଆଗେ ଆସିବା କାନଠାରୁ ପଛେ ଆସିବା ଶିଙ୍ଗ ବଡ଼ ।

୩ଶିଷ୍ୟ - ଭାଇ ଯେ ଭଲଲୋକ ତାକୁ ସମସ୍ତେ ଭଲ ମଣନ୍ତି । ଆମ୍ଭର ପୁରନ୍ଦର ଶିଷ୍ଟ, ଶାନ୍ତ, ସଭ୍ୟ ଓ ଶ୍ରୀମାନ୍ ଅଟେ । ଆଚାର୍ଯ୍ୟ ତାହାକୁ ଭଲ ନ ମଣି ଆଉ କାହାକୁ ଆଦର କରନ୍ତେ । ତତେ ନା ମତେ ?

୨ଶିଷ୍ୟ - ଏହା ଯଥାର୍ଥ ।

ପୁରନ୍ଦର - ତୁମ୍ଭେମାନେ ମୋର କି ସୁଗୁଣ ଦେଖି ଏତେ ପ୍ରଶଂସା କରୁଅଛ ମୁ ବୁଝିପାରୁନାହିଁ ।

(ନେପଥ୍ୟେ ହରେକୃଷ୍ଣ ୨ ରାଧେକୃଷ୍ଣ)

ଶିଷ୍ୟଗଣ - ହେଟି ଆଚାର୍ଯ୍ୟ ଆସୁଅଛନ୍ତି ପଢ଼ ପଢ଼ ।

(ପୁସ୍ତକାବଲୋକନ ଓ ଗୌତମଙ୍କ ପ୍ରବେଶ)

ଗୌତମ - କଣ ସମସ୍ତେ ପଢୁଅଛ ?

ଶିଷ୍ୟଗଣ - ହଁ ଆଜ୍ଞା ।

ଗୌତମ - ଆଜି ଅନଧ୍ୟୟନ ତିଥି ଚତୁର୍ଦ୍ଦଶୀ । ପଠନ କରିବାକୁ ହେବ ନାହିଁ, ତୁମ୍ଭେମାନେ ଏଥର ଯାଅ ।

ଶିଷ୍ୟଗଣ - ନମସ୍କାର ଗୁରୋ । (ପ୍ରସ୍ଥାନ)

ଗୌତମ - ବତ୍ସ ପୁରନ୍ଦର, କାଲି ପୂର୍ଣ୍ଣିମା ହେବ । ସ୍ନାନ ତର୍ପଣ ପୂଜାଦି ପ୍ରାତଃକାଳରୁ କରିବାକୁ ହେବ । ଏହି ହେତୁ ଆମ୍ଭେ ଆଜିରାତ୍ରି ତୃତୀୟ ପ୍ରହରରେ ଶଯ୍ୟା ତ୍ୟାଗ କରିବୁଁ । ତୁ ମଧ ପ୍ରାତଃକାଳୁ ଉଠି ସ୍ନାନାଦି ସାରିଥିବୁଁ ।

ପୁରନ୍ଦର - ଯେ ଆଜ୍ଞା ।

ଗୌତମ - (ଯାଉଁ ୨) ହୋମର ସମସ୍ତ ବିଷୟ ଆୟୋଜନ କରିଦେଇଥିବୁଁ ।

ପୁରନ୍ଦର - ହଁ ଆଜ୍ଞା । (ଗୌତମଙ୍କ ପ୍ରସ୍ଥାନ)

(ଏଣେତେଣେ ଭ୍ରମଣ କରି) ମତେ ଗୋଟିଏ ଭଲ ଉପାୟ ସ୍ମରଣ ହେଉଅଛି । ଆଜି ରାତ୍ରି ଅବଶ୍ୟ ସେ ଚନ୍ଦ୍ରାନନଠାରୁ ଅମୃତ ପାନ କରି

ମଦନ ବାଧା ଶାନ୍ତ କରିବି । ଛଦ୍ମରେ ଗୌତମଙ୍କ ବେଶ ଧାରଣ କରି ମନ୍ଦିରରେ ଲୁଚି ରହିବି, ଗୌତମ ସ୍ନାନକୁ ଯିବା ପଛେ ୨ ମୁଁ ଅହଲ୍ୟାଙ୍କ ଶୟନାଗାରରେ ପ୍ରବେଶ ହେବି । (କ୍ଷଣେ ଚିନ୍ତାକରି) ଆଚ୍ଛା ଏହିକ୍ଷଣି ଯାଇ ଗୌତମ ପୂଜାଦି ସାରି ଶୀଘ୍ର ଶୟନ କଲାପରି ଉପାୟ ପାଞ୍ଚିବି ।

(ପ୍ରସ୍ଥାନ ଓ ଯବନିକାପତନ)

## (ଦ୍ୱିତୀୟ ଦୃଶ୍ୟ)

(ଅହଲ୍ୟା, ବୃଦ୍ଧତାପସୀ ଓ ସଖୀର ଉପବେଶନ)

କଳାବତୀ - ସଖି ! ତୋ ମନ୍ଦିରରେ ନବକାର୍ତ୍ତିକେୟ ପରି ଜଣେ ଯୁବକକୁ ମୁଁ ପ୍ରାୟ ସବୁଦିନ ଦେଖେ ସେ କେ ? ନିତି ପଚାରିବି ବୋଲି ବିଚାରି ଫେରି ପାସୋରିଯାଉଥାଏ, ଆଜି ମନେ ପଡ଼ିଲା ।

ଅହଲ୍ୟା - ସଖି ! ତୁ କହୁଥିବା ନୂତନ ଶିଷ୍ୟ ସେ । ଆର୍ଯ୍ୟପୁତ୍ର ତାହାକୁ ବଡ଼ ଭଲ ମଣନ୍ତି; ସେ ଅତି ସୁଶୀଳ ଅଟେ । ମତେ "ଗୁରୁମା" ବୋଲି ଡାକି ଅଜ୍ଞାନ ହୋଇଯାଏ । ମୋ ଠାକୁ ଆସି କେବେ, ସେ ପଢ଼ିବା ପାଠ କହୁଥାଏ ।

ବୃଦ୍ଧତାପସୀ - ବଟେ ତାର ନାମ କଣ ?

ଅହଲ୍ୟା - ପୁରନ୍ଦର ।

କଳାବତୀ - ପଢ଼ାପଢ଼ି ଭଲ କରେନା ?

ଅହଲ୍ୟା - ହଁ ଉତ୍ତମ ରୂପେ ପଢୁଅଛି । ସେ ପ୍ରଥମେ ଅନ୍ୟ କୌଣସିଠାରେ ଅନେକ ଦୂର ପଢ଼ିଥିଲା ପରି ବୋଧ ହୁଏ ।

ବୃଦ୍ଧତାପସୀ - ବଟେ ମହର୍ଷି ତାହାକୁ ଧର୍ମାର୍ଥରେ ପଢ଼ାଉଅଛନ୍ତି ନା ତାହାଠାରୁ କିଛି ଚାହାଁନ୍ତି ?

ଅହଲ୍ୟା - ସେ ପଢ଼ା ଶେଷରେ କିଛି ଗୁରୁ ଦକ୍ଷିଣା ଦେବାକୁ ପ୍ରତିଶ୍ରୁତ ହୋଇଅଛି ।

ବୃଦ୍ଧତାପସୀ - ତେବେ ଭଲ ହେଲା- ମୁଁ ମଧ୍ୟ ଦେଖିଅଛି ବାଳକଟି ବଡ଼ ସୁନ୍ଦର ।

ଅହଲ୍ୟା - ରୂପ ଯେପରି ଗୁଣ ମଧ୍ୟ ସେପରି ।

ବୃଦ୍ଧତାପସୀ - ତା ପିତାର ନାମ କଣ ?

ଅହଲ୍ୟା - ମତେ ଜଣା ନାହିଁ ।

ବୃଦ୍ଧତାପସୀ - ବଟେ ତାର ଘର କେଉଁଠାରେ ?

ଅହଲ୍ୟା - ଅମରା ନଗରୀ ବୋଲି କହେ ।

(ନେପଥ୍ୟେ ନାରାୟଣ ୨)

କଳାବତୀ - ସଖି ହେଟି ମହର୍ଷି ଏଆଡ଼େ ଆସୁଅଛନ୍ତି । ଆମ୍ଭେମାନେ ଯାଉଁ । (କଳାବତୀ ଓ ବୃଦ୍ଧ ତାପସୀର ପ୍ରସ୍ଥାନ ଓ ଗୌତମଙ୍କ ପ୍ରବେଶ ।)

ଗୌତମ - ପ୍ରିୟେ ଆଜି ଚତୁର୍ଦ୍ଦଶୀ ହେବା ଯୋଗୁଁ ପୂଜା କରିବାରେ ଅନେକ ସମୟ ଲାଗିଗଲା । ତର୍ପଣାଦି ସକଳ ବିଷୟ ଶୀଘ୍ର ସମାପନ କରି ଆସିଅଛି । ତୁମ୍ଭର ସାୟଂକାଳ ଅନୁଷ୍ଠାନାଦି ସମାପନ କରିଅଛ ?

ଅହଲ୍ୟା - ଆର୍ଯ୍ୟପୁତ୍ର ଏତେ ରାତ୍ରି ହେଲାଣି ଆଉରି ଅନୁଷ୍ଠାନାଦି ସାରି ନଥାନ୍ତି ?

ଗୌତମ - ପ୍ରିୟେ ତେବେ ଚାଲ ଶୀଘ୍ର ଭୋଜନ କରି ଶୟନ କରିବା ।

ଅହଲ୍ୟା - ଆଜି ଏଡ଼େ ଶୀଘ୍ର କାହିଁକି ?

ଗୌତମ - କାଲି ପୂର୍ଣ୍ଣିମା- ଏଣୁ ରାତ୍ରି ତୃତୀୟ ପ୍ରହରରେ ଶଯ୍ୟା ତ୍ୟାଗ କରିବାକୁ ହେବ । ଶୀଘ୍ର ଶୟନ ନ କଲେ ଶୀଘ୍ର ଉଠିବାକୁ କଷ୍ଟ ବୋଧ ହେବ ।

ଅହଲ୍ୟା - ଯେ ଆଜ୍ଞା ।

(ପ୍ରସ୍ଥାନ ଓ ଯବନିକାପତନ)

●

# ଚତୁର୍ଥାଙ୍କ
## (ପ୍ରଥମ ଦୃଶ୍ୟ)

(ଇନ୍ଦ୍ର ଗୌତମ ବେଶରେ ପ୍ରବେଶ)

ଇନ୍ଦ୍ର - ବୋଧହୁଏ ଏଥର ମୋର ମନୋରଥ ସିଦ୍ଧହେବ । ଗୌତମ ଶୟନାଗାରରୁ ବାହାରିଯିବା ପଛେ ୨ ମୁଁ ଯାଇ ପ୍ରବେଶ କରି ଅହଲ୍ୟାଙ୍କ ଜବାଧରରୁ ଅମୃତ ପାନ କରିବି । କେତେ ପ୍ରକାର ଚେଷ୍ଟା କଲେ ମଧ ସେ ଭିତରେ ଅଙ୍ଗିକାର ରଖି ବାହ୍ୟକୁ ଅନିଚ୍ଛା ପ୍ରକାଶ କରନ୍ତି-ତେବେ ଏହି ଛଦ୍ମବେଶ ଛାଡ଼ି ଅନ୍ୟ ଉପାୟ ନାହିଁ । ଅସହ୍ୟ କାମ ଯନ୍ତ୍ରଣା ହୃଦୟକୁ ବିଦୀର୍ଣ୍ଣ କରୁଅଛି । ରେ ବୃଦ୍ଧ ଗୌତମ ସେ ଅପୂର୍ବ ରମଣୀରତ୍ନ ତୋ ପକ୍ଷେ ବିଡ଼ମ୍ବନାମାତ୍ର । ଦେଖ ମଧୁକର କିପରି ପ୍ରଫୁଲ୍ଲ ଚିତ୍ତରେ ମଧୁପାନ କରେ ସେହିପରି-ଓଃ

**ରାଗ ହିନ୍ଦୁସ୍ଥାନି ଭୈରବୀ । ଆଦିତାଳ ।**

(ନୀଳବେଣୀ ପ୍ରତି)

ସତେ ଏକି ଦୁର୍ନିବାର ଦାରୁଣ ମର୍ମଭେଦି ଯନ୍ତ୍ରଣା ।୦।
ପୀୟୂଷକରର ମୟୁଖଜାଳ ହଜାଉଛି ମୋ ଚେତନା ।୧।
ମଳୟ ମରୁତ ଅନଳ ପରିତ କରି ଦିଏ ବିମନା ।୨।
କୁସୁମ ବିଶିଖ ଧରି ମନମଥ ଦେଉଛି କି ଯାତନା ।୩।

କି ମର୍ମଭେଦି ବେଦନା ! ବେଳକୁ ବେଳ ଅସହ୍ୟ ହୋଇପଡୁଛି । (କ୍ଷଣେ ଚିନ୍ତାକରି) ହଁ ଏ ମନ୍ଦିର ପାର୍ଶ୍ୱସ୍ଥ ବୃକ୍ଷମାନଙ୍କ ଉପରେ ବିନିଦ୍ରିତ ପକ୍ଷିମାନଙ୍କୁ ଉଡ଼ାଇଦେବି- ସେମାନଙ୍କର କଳରବ ଶୁଣି ଉଷା କାଳ ହେଲା ବୋଲି ମହର୍ଷି ସ୍ନାନକୁ ଗମନ କରିବେ । ଏବେ ରାତ୍ରି ଆସି ଦୁଇପ୍ରହର, ଆଉ ବିଳମ୍ବ କରିବାକୁ ହେବନାହିଁ । ଅବଶ୍ୟ କୌଣସି ପ୍ରକାରେ ଗୌତମଙ୍କୁ ଗୃହରୁ ପଠାଇ ଦେଇ ଅଭିଳାଷ ପୂର୍ଣ୍ଣ କରିବି ।

(ପ୍ରସ୍ଥାନ ଓ ନେପଥ୍ୟେ କଳରବ)

(ଗୌତମଙ୍କ ପ୍ରବେଶ)

ଗୌତମ - ପ୍ରିୟେ ହେଟି ଶୁଣ ? ବିହଙ୍ଗଗଣ ପ୍ରଫୁଲ୍ଲଚିତ୍ତରେ ଉଷାଦେବୀର ମଙ୍ଗଳଗାନ କରୁଅଛନ୍ତି । ଆଉ ବିଳମ୍ବ କରିବା ଭଲ ନୁହେ । ସ୍ନାନର ସମୟ ଆସି ଉପସ୍ଥିତ ହୋଇଅଛି । ଶୀଘ୍ର କମଣ୍ଡଳୁ ଆଣି ଦିଅ ।

ଅହଲ୍ୟା - (ପ୍ରସ୍ଥାନ) (କମଣ୍ଡଳୁ ଧରି ପୁନଃପ୍ରବେଶ)

ଗୌତମ - ପ୍ରିୟେ କାହିଁ ? ଦିଅ ।

ଅହଲ୍ୟା - ଆଜ୍ଞା - ହେଟି- ନିଅନ୍ତୁ ।

ଗୌତମ - ତୁମ୍ଭେ ଆଉ କିଛିକାଳ ଶୟନ କରିଥାଅ । ମୁ ସ୍ନାନ କରି ଆସିଲାବାଦ ତୁମ୍ଭେ ଉଠିବ । (ପ୍ରସ୍ଥାନ)

ଇନ୍ଦ୍ର - (ସ୍ୱଗତ) ଏବେ ଉତ୍ତମ ସମୟ ଘଟି ଅଛି- ଗୌତମ ସ୍ନାନକୁ ଗଲେଣି; ଏବେ ଛଦ୍ମବେଶରେ ଶୟନାଗାରରେ ପ୍ରବେଶ କରିବି । (ପ୍ରକାଶ୍ୟେ) ପ୍ରିୟତମେ ଅହଲ୍ୟା ଏଣେ ଆସ । ମୁ କି ଭ୍ରମରେ ପଡ଼ିଥିଲି ।

(ତ୍ରସ୍ତବ୍ୟସ୍ତେ ଅହଲ୍ୟାଙ୍କ ପ୍ରବେଶ)

ଅହଲ୍ୟା - ନାଥ ! ଆପଣ ଏତେ ଶୀଘ୍ର ଫେରି ଆସିଲେ କାହିଁକି ? ମୁଁ କି ଅପରାଧ କଲି ନା ?

ଇନ୍ଦ୍ର - (ସହାସ୍ୟେ) ପ୍ରିୟେ ତୁମ୍ଭର କୌଣସି କାର୍ଯ୍ୟରେ କେବେ ତ୍ରୁଟି ନଥାଏ ।

ଅହଲ୍ୟା - ତେବେ କିହେତୁ ଫେରି ଆସିଲେ ?

ଇନ୍ଦ୍ର - ପ୍ରିୟେ ଏବେ ରାତ୍ରି ଦ୍ୱିତୀୟ ପ୍ରହର । ବିହଙ୍ଗମ ଗଣଙ୍କ କଳରବ ଶୁଣି ପ୍ରଭାତ ହେଲା ବୋଲି ଭ୍ରମରେ ପଡ଼ିଥିଲି । ମନ୍ଦିର ବାହାରକୁ ଯିବାରୁ ନିଜ ଭ୍ରମ ଜାଣିପାରି ଫେରି ଆସିଅଛି ।

ଅହଲ୍ୟା - ତେବେ ଫେରି ଶୟନ କରନ୍ତୁ । ଶୀଘ୍ର ଉଠିବା ହେତୁ ମତେ ଏକପ୍ରକାର ପୀଡ଼ା ବୋଧହୁଏ । ମୁ ମଧ୍ୟ ଅଳ୍ପ ଶୋଇବି ।

ଇନ୍ଦ୍ର - ପ୍ରିୟେ ତୁମ୍ଭର ଭଙ୍ଗି ଦେଖି ମୁଁ ଅନୁମାନ କରେ ତୁମ୍ଭେ ଶୟନାଭାବ ପୀଡ଼ାରେ ପୀଡ଼ିତ ନୁହ ।

ଅହଲ୍ୟା - (ଅବନତ ମୁଖୀହେବା ।)

ଇନ୍ଦ୍ର - ଆଉ ଲଜ୍ଜା କାହିଁକି ଚାଲ ଶୟନାଗାରକୁ ଯିବା ।

ଅହଲ୍ୟା - (ମନେ ୨) ମହର୍ଷିଙ୍କ ମୁଖରୁ ଏପରି ରସପୂରିତ ମଧୁର ଆଳାପ ମୁଁ କେବେ ହେଲେ ଶୁଣିନାହିଁ । ଆଜି ଏ କି ଅଦ୍ଭୁତ ! ମନର ଅବସ୍ଥାନ୍ତର

ଘଟି ଅଛି । ବୋଧହୁଏ ସେହି କାରଣରୁ ପରା ମହର୍ଷିଙ୍କ କଥା ମିଷ୍ଟ ଲାଗେ ।

(ପ୍ରସ୍ଥାନ ଓ ଯବନିକା ପତନ)

**(ଦ୍ୱିତୀୟ ଦୃଶ୍ୟ)**

(ଗୌତମ କମଣ୍ଡଳୁକରେ ମନ୍ଦିର ଦ୍ୱାରଦେଶରେ ଦଣ୍ଡାୟମାନ ।)

ଗୌତମ - ଭ୍ରମବଶରୁ ପକ୍ଷିମାନଙ୍କ କଳରବ ଶୁଣି ଏବଂ ମେଘାବୃତ ଶଶଧରକିରଣ ଦେଖି ସ୍ନାନକୁ ଯାଇଥିଲି । ରଜନୀର ତୃତୀୟ ପ୍ରହର ଭୋଗ ନ ହେଉଣୁ ଶଯ୍ୟାତ୍ୟାଗ କରି ଅନେକ କ୍ଳେଶ ସହ୍ୟ କରିବାକୁ ହେଲା । ଆହୁରି ଅରୁଣୋଦୟ ହୋଇନାହିଁ । ଅହଲ୍ୟା ମଧ୍ୟ ଶଯ୍ୟା ତ୍ୟାଗ କରିନାହିଁ । ଆଚ୍ଛା ଦ୍ୱାରଦେଶରେ ଥାଇ ଡାକିବା । ପ୍ରିୟତମେ ଅହଲ୍ୟା-କବାଟ ଫିଟାଅ ।

ଅହଲ୍ୟା - କେ ସେ ?

ଗୌତମ - ନିଦ୍ରାଳସତା ଛାଡ଼ି ନାହିଁ ?

ଅହଲ୍ୟା - କେ ସେ ?

ଗୌତମ - ତୁଣ୍ଡବାରି ପଚାର ।

ଅହଲ୍ୟା - ନାଥ ! ତୁମ୍ଭେ ବାହାରେ ଅଛ ? ତେବେ ଏ ଭିତରେ କିଏ ?

ଗୌତମ - ହରି ହରି କି ଆଶ୍ଚର୍ଯ୍ୟ ! ଭିତରେ ଗୌତମ ବାହାରେ ଗୌତମ-ଅହଲ୍ୟା- ସତ କହ ଘର ଭିତରେ କେ ? ଶୀଘ୍ର କବାଟ ଫିଟାଅ । (ହଠାତ୍ କବାଟ ଫିଟାଇ ସବଳେ ଗୌତମଙ୍କୁ ପେଲିଦେଇ ଇନ୍ଦ୍ରଙ୍କ ପଳାୟନ ।)

ଗୌତମ - ହରି ହରି କି ଦୁର୍ଯ୍ୟୋଗ- କି ତେଜପୁଞ୍ଜ କଳେବର ! ମୋ ବେଶରେ ବାହାରିଗଲା । କୌଣସି ପାପିଷ୍ଠ କପଟରେ ଅହଲ୍ୟାର ଧର୍ମ ନାଶ କରି ପଳାଇଅଛି । ଆଚ୍ଛା ସେ ମୂଢ଼ କେ ଏହିକ୍ଷଣି ଯୋଗବଳରେ ବୁଝିବା ।

(ଯୋଗଧ୍ୟାନରେ ବସିବା)

ଗୌତମ - (କ୍ଷଣକାଳ ଉତ୍ତାରୁ ଉଠି) ଓଃ -ପାପିଷ୍ଠ ଇନ୍ଦ୍ର ଅହଲ୍ୟାକୁ ଦେଖି ବିମୋହିତ ହୋଇ, ମୋଠାରେ ଶିଷ୍ୟତ୍ୱ ଗ୍ରହଣ କରି ପରିଶେଷରେ ଏହି ଗୁରୁ ଦକ୍ଷିଣା ଦେଇ ବାହାରି ଯାଇଅଛି । (ସକ୍ରୋଧେ) ରେ ପାପିଷ୍ଠ ଇନ୍ଦ୍ର ତୁ ଦେବରାଜ ହୋଇ ଜଘନ୍ୟ ପିଶାଚପରି ନିକୃଷ୍ଟ ପ୍ରବୃତ୍ତି ସାଧନ କରିବା ସକାଶେ

ପରସ୍ତ୍ରୀର ଅମୂଲ୍ୟ ଧର୍ମ ସତୀତ୍ୱ ନାଶ କରି ଅଛୁଁ । ବିଶେଷତଃ ଗୁରୁପତ୍ନୀକୁ ଏଡ଼େ ଅପମାନିତ କରିଅଛୁଁ । ତୋର ଏହି ଜଘନ୍ୟ କର୍ମ ପୃଥିବୀରେ ଚନ୍ଦ୍ର ସୂର୍ଯ୍ୟ ଥିବା ଯାଏ ଲୋକେ ନିନ୍ଦା କରୁଥିବେ; ପୁଣି ତୋର ଦେବଶରୀରରେ ଦୁର୍ଗନ୍ଧ ଯୁକ୍ତ କ୍ଳେଦପୂର୍ଣ୍ଣ ସହସ୍ର ଯୋନିର ଚିହ୍ନ ପରିଲକ୍ଷିତ ହେବ । (ମନ୍ଦିର ଭିତରକୁ ଯାଇ ଅହଲ୍ୟାଙ୍କୁ କରଧରି ଝିଙ୍କିଆଣି) ରେ ପାପିଷ୍ଠା ଦୁଷ୍ଟାରିଣି କେଡ଼େ କର୍ମକଲୁ ।

ଅହଲ୍ୟା - ପ୍ରଭୋ ମୁଁ ଜାଣି କିଛି ଦୋଷ କରି ନାହିଁ । ଆପଣ ବୋଲି ଭ୍ରମରେ ପଡ଼ି ମୁ ଅପରାଧିନୀ ହୋଇଅଛି ।

ଗୌତମ - ପାପୀୟସି ତୋର ଅନ୍ତଃକରଣରେ ଅବଶ୍ୟ ପାପ ସଞ୍ଚାର କରିଥିଲା । ସ୍ତ୍ରୀର ଧର୍ମ କେବେ ନଷ୍ଟ ହୁଏ ନାହିଁ ।

ଅହଲ୍ୟା - ପ୍ରଭୋ ମୋର ଦୋଷ ମାର୍ଜ୍ଜନା କର । ମୁ ନ ଜାଣି ଦୋଷ କରିଅଛି । (ଚରଣ ତଳେ ପଡ଼ିବା ।)

ଗୌତମ - (ସକ୍ରୋଧେ) ରେ ନାରୀକୁଳକଳଙ୍କିନି ! ତୁ ଲୋକାଳୟରେ ଏହି ଲଜ୍ଜାହୀନ ମୁଖଧରି ରହିବା ଉଚିତ ନୁହେ । ତୁ ପାଷାଣ ରୂପରେ ନିର୍ଜ୍ଜନ ବନରେ ଯାଇ ପଡ଼ିରହ ।

ଅହଲ୍ୟା - ହା ବିଧାତା ! ହା ପରମେଶ୍ୱର !

(ଚରଣତଳେ ପଡ଼ି)

**ରାଗ ଶାହାନା । ରୂପକତାଳ ।**

(କହତି ଯୋ ତୁମି ପ୍ରତି)

ଦେଲ ଯେ ଶାପକୁ ପ୍ରାଣ ଈଶ୍ୱର ।
ହେଲାକି ଉଚିତ କରହେ ବିଚାର ।୦।

ତୁମ୍ଭ ରୂପେ ଆସି ପାପୀ ଇନ୍ଦର ।
ନାଶିଲା ଅଖଣ୍ଡ ସତୀତ୍ୱ ମୋହର ।୧।

କହୁଛି ମୁଁ ଛୁଇଁ ତୁମ୍ଭ ପୟର ।
ଜାଣି ନଥିଲି ମୁଁ କପଟ ତାହାର ।୨।

ସଦୟେ ଶାପରୁ ମୋଚନ କର ।
ତୁମ୍ଭ ବିନା ଗତ୍ଦ ଅଛି କେ ମୋହର ।୩।

ଗୌତମ - ରେ ପାପୀୟସି ! ମୋର ବଚନ କେବେ ଅନ୍ୟଥା ହେବ ନାହିଁ । ଅବଶ୍ୟ ତୁ ପାଷାଣ ହେବୁଁ ।

ଅହଲ୍ୟା - **ରାଗ ହିନ୍ଦୁସ୍ଥାନ ଭୈରବୀ । ଅଟତାଳ ।**

(ଆହା ପ୍ରାଣ ସଖି ମୋର ପ୍ରତି)
କର ତ୍ରାଣ ନାଥ ମୋର ।
ବିନୟ ଘେନି ବାରେ ଏଥର ।୦।

ପଦ୍ମପାଦ ସେବାରୁ ଦୂର ।
ନକର ମୋତେ କୃପାସାଗର ।୧।

ବିଧି ବକୁ ଏ ପାପାଚାର ।
କରିଛି ମୁହିଁ ଛୁଁଏ ପୟର ।୨।

ମୁଁ ପାପିନୀକି ମୋଚନ କର ।
ପଶେ ଶରଣ ପାଦେ ତୁମ୍ଭର ।୩।

ହେ ପ୍ରଭୋ ! ମୁଁ ନ ଜାଣି ଦୋଷ କରି ଦେଇଅଛି । ଅଜ୍ଞାନରେ କରିବା ଦୋଷ କେବେ କୌଣସିଠାରେ ଦଣ୍ଡ୍ୟ ନୁହେ । ଏଣୁ କୃପାକରି ମୋତେ ଶାପରୁ ମୋଚନ କରନ୍ତୁ ।

ଗୌତମ - ରେ ଭ୍ରଷ୍ଟା ଦୁଷ୍ଟାରିଣି ! ଜଣକର ସହଧର୍ମିଣୀ ହୋଇ ଅନ୍ୟ ପୁରୁଷଠାରେ ମନ ବଳାଇବା ସ୍ତ୍ରୀପକ୍ଷରେ ଘୋରତମ ପାପକାର୍ଯ୍ୟ ଅଟେ । ସେପରି ସ୍ତ୍ରୀର ମୁଖାବଲୋକନ କରିବା କେତେମାତ୍ର ବାଞ୍ଛନୀୟ ନୁହେ- ମୁ ଜାଣିପାରିଅଛି ଅବଶ୍ୟ ସେ କପଟଚାରିଠାରେ ତୁ କୌଣସି ରୂପେ ଅନୁରକ୍ତ ଥିଲୁ । ଏଣୁ ମୋହର ଶାପକୁ ତୁ ଅର୍ହ । ତୁ ପ୍ରସ୍ତର ରୂପରେ ମହାରଣ୍ୟରେ ପଡ଼ିଥିବୁ । ଯେତେବେଳେ ଦଶରଥଙ୍କ ପୁତ୍ର ରାମଚନ୍ଦ୍ରଙ୍କ ଚରଣସ୍ପର୍ଶହେବ, ତେବେ ତୁ ତୋର ନିଜ ରୂପ ଫେରି ଧାରଣ କରିବୁ । ବର୍ତ୍ତମାନ ମୋଠାରୁ ଦୂରହୁଅ ।

ଅହଲ୍ୟା - **ରାଗ ରୀତିଗୌଡ । ଆଦିତାଳ ।**

(କ୍ୟାଂ ଗୁହ୍ନା ହୁଆ ମେରି ପ୍ରତି)

ମୁ କରିଥିଲି ପୂର୍ବେ ସତେ କି ଘୋର ପାପ ! ।
ପାଇଲି ନିଜ ପତିଠାରୁ ଏ ଅଭିଶାପ ।୦।

ଆହା ନାହା । ବରଜିଦେଲେ ।
ଆଉ କେ ଗତି ସାହା ।୧।

ଏହା ଏକା । ଭାଲରେ ମୋର ।
ହୋଇଥିଲା କି ଲେଖା ।୨।

କେବେଟି ସେ । ରାଘବ ଆସି ।
ତାରିବେ ପଦ ସ୍ପର୍ଶେ ।୩।

ହେ ପରମେଶ୍ୱର ! ହେ ଶରଣରକ୍ଷଣ ! ହେ କୃପାସାଗର ! ହେ ଦଶରଥନନ୍ଦନ ରାମ !!

(ପ୍ରସ୍ଥାନ ଓ ଯବନିକାପତନ)

●

## ମୋଚନ

### ପଞ୍ଚମାଙ୍କ

(ପ୍ରଥମ ଦୃଶ୍ୟ)

(ଯଜ୍ଞାରମ୍ଭ କରି ଋଷିମାନେ ସ୍ତୁତି କରିବା)

୧ଋଷି - ହେ ପ୍ରଭୋ ! ଦୁର୍ବୃତ୍ତ ରାକ୍ଷସମାନଙ୍କ ଘୋର ଅତ୍ୟାଚାର ଦିନକୁଦିନ ଅସହ୍ୟ ହୋଇ ପଡୁଅଛି । ଆମ୍ଭେମାନେ ଯେତେବେଳେ ଆପଣଙ୍କ ଆରାଧନାରେ ପ୍ରବୃତ୍ତ ହେଉଁ ତେତେବେଳେ ଦୁଷ୍ଟାଚାରୀ ରାକ୍ଷସମାନେ ଅନେକ ବିଘ୍ନ ଘଟାନ୍ତି । ହେ ଦୀନନାଥ ! ସେମାନେ ତପ ଓ ଯଜ୍ଞାନୁଷ୍ଠାନରେ ଯେ କଷ୍ଟ ଦେଉଅଛନ୍ତି ତାହା ବଚନାତୀତ ।

୨ଋଷି - ହେ ଭଗବନ୍ ! ଆମ୍ଭେମାନେ ଏତେ ବାଧା ଓ ବିଘ୍ନ ସହ୍ୟକରି କିପରି ଆପଣଙ୍କ ଆରାଧନା କରି ପାରିବୁଁ ।

୩ଋଷି - ହେ ପରମାତ୍ମନ୍ ! ଆମ୍ଭେମାନେ ଯଜ୍ଞାନୁଷ୍ଠାନରେ ପ୍ରବୃତ୍ତ ହୋଇ ଅଗ୍ନିରେ ଆହୂତି ପ୍ରଦାନ କରିବା କ୍ଷଣି, ଧୂମ ଦେଖି ଦୁରାତ୍ମା ମାରୀଚ଼ ତାଡ଼କାଦି ରାକ୍ଷସଙ୍କ ସହିତ ଆସି ଘୋରତର ଅତ୍ୟାଚାର ଉଠାଏ । ହେ ଭଗବନ୍ ଆପଣ ରକ୍ଷା ନ କଲେ ଅନ୍ୟ ଗତି ନାହିଁ ।

(ବିଶ୍ୱାମିତ୍ରଙ୍କ ପ୍ରବେଶ)

ଋଷିଗଣ - ନମସ୍କାର ମହର୍ଷେ ।

ବିଶ୍ୱାମିତ୍ର - ଈଶ୍ୱର ମଙ୍ଗଳ କରନ୍ତୁ ।

ଋଷିଗଣ - ରୋମହର୍ଷେ ! ଆସନ ଗ୍ରହଣ କରନ୍ତୁ ।

ବିଶ୍ୱାମିତ୍ର - (ଆସନ ଗ୍ରହଣ କରି) ଆଜି ଆପଣମାନେ ଯଜ୍ଞାନୁଷ୍ଠାନ ପରିତ୍ୟାଗ କରି କି ହେତୁ ବିଷର୍ଣ୍ଣ ବଦନରେ ବସିଅଛ ?

୧ଋଷି - ମହର୍ଷେ ! ଆପଣ ତ୍ରିକାଳଜ୍ଞ ଆମ୍ଭମାନଙ୍କର ବିଷର୍ଣ୍ଣ ଭାବର କାରଣ ଆପଣ ଉତ୍ତମରୂପେ ଜାଣନ୍ତି ।

ବିଶ୍ୱାମିତ୍ର - ହଁ ଆମ୍ଭେ ଜାଣୁଁ ! ଆସିଲା ସମୟରେ ଆମ୍ଭେ ଦେଖି ଅଛୁଁ ପୁଣ୍ୟମୟ ଯଜ୍ଞଭୂମି ଦୂଷିତ ଦ୍ରବ୍ୟରେ ପରିପୂରିତ ହୋଇଅଛି । ମାରୀଚ ଓ ତାଡ଼କାଦି ରାକ୍ଷସମାନଙ୍କର ଅତ୍ୟାଚାର ବଡ଼ ଅସହ୍ୟ ହେଉଅଛି ।

୧ ଋଷି - ମହର୍ଷେ ! ଆମ୍ଭମାନଙ୍କ ଏହି ଦାରୁଣ ଦୁଃଖ ଅପନୋଦନ କରିବା ଲାଗି କି ଉପାୟ କରିଅଛନ୍ତି ? କହନ୍ତୁ ?

ବିଶ୍ୱାମିତ୍ର - ଶୁଣନ୍ତୁ ! ଯଜ୍ଞ ରକ୍ଷା କରିବା ହେତୁ ଯଜ୍ଞେଶ୍ୱର ଶ୍ରୀରାମଚନ୍ଦ୍ରଙ୍କୁ ଏହି ସ୍ଥାନକୁ ଆଣିବାକୁ ହେବ । ଆମ୍ଭେ ସେହି ହେତୁ ଆପଣମାନଙ୍କ ସଙ୍ଗେ ପରାମର୍ଶ କରିବାକୁ ଆସିଅଛୁଁ । କେବଳ ସେହି ମାତ୍ର ତାଡ଼କାଦି ରାକ୍ଷସମାନଙ୍କୁ ବିନାଶ କରିପାରନ୍ତି ।

୧ ଋଷି - ମହର୍ଷେ ! ଭକ୍ତବତ୍ସଳ ରାମଚନ୍ଦ୍ର ରାଜା ଦଶରଥଙ୍କ ଠାରେ ବାତ୍ସଲ୍ୟ ଭାବରେ ଆବଦ୍ଧ । ଏହି ହେତୁ ରାଜା ଦଶରଥ ରାମଚନ୍ଦ୍ରଙ୍କୁ ଏହି ସ୍ଥଳକୁ ଆସିବାକୁ ଅନୁମତି ଦେବେକି ନାହିଁ ସନ୍ଦେହ ।

ବିଶ୍ୱାମିତ୍ର - ଆମ୍ଭେ ନିଶ୍ଚୟ ଜାଣୁ ରାମଚନ୍ଦ୍ର ଲୀଳା ପ୍ରକାଶ କରିବା ହେତୁ ଅବନୀରେ ଅବତୀର୍ଣ୍ଣ ହୋଇଅଛନ୍ତି । ସେ କାର୍ଯ୍ୟ ଅନୁରୋଧରେ ରାଜା ଦଶରଥଙ୍କର ଅନୁମତି ନେଇ ଏଠାକୁ ଆସିବେ । ଏଥିରେ କିଛି ସନ୍ଦେହ ନାହିଁ ।

୧ ଋଷି - ମହର୍ଷେ ! ତେବେ ଆମ୍ଭମାନଙ୍କ ପ୍ରତି କୃପାକରି ଶୀଘ୍ର ଯାଇ ତାହାଙ୍କୁ ଘେନି ଆସନ୍ତୁ ।

ବିଶ୍ୱାମିତ୍ର - ଆପଣମାନେ ନିଶ୍ଚିନ୍ତ ଭାବରେ ଥାଅ; ଆମ୍ଭେ ଯାଉଁ ।

ସମସ୍ତେ - ଯେ ଆଜ୍ଞା । (ପ୍ରସ୍ଥାନ ଓ ଯବନିକା ପତନ)

### ଦ୍ୱିତୀୟ ଦୃଶ୍ୟ ।

(ଅଯୋଧ୍ୟା)

(ରାଜା ଦଶରଥ, ବଶିଷ୍ଟ ଓ ସୁମନ୍ତ ଆସୀନ)

ଦଶରଥ - ମହର୍ଷେ ! ଆମ୍ଭ ରାମଚନ୍ଦ୍ର ଏଡ଼େ ଅଳ୍ପ ବୟସରେ ନାନା ଶାସ୍ତ୍ରରେ ଏତେଦୂର ପାରଗ ହେବେ ବୋଲି ଆମ୍ଭେ ଆଶା କରି ନଥିଲୁଁ ।

ବିଶ୍ୱାମିତ୍ର - ମହାରାଜ ! ତାହାଙ୍କୁ କି କୌଣସି ସୁବିଦ୍ୟା ନ ଆସିବ ? ସେ ଯେଡ଼େ ଶାନ୍ତ, କ୍ଷମାଶୀଳ ଏବଂ ବଦାନ୍ୟ ତେଡ଼େ ବୁଦ୍ଧିମାନ୍ ।

ସୁମନ୍ତ - ଧନୁର୍ବିଦ୍ୟାରେ ତାହାଙ୍କ ପାରଗତା ଭାବନାତୀତ । ଶସ୍ତ୍ରବିଦ୍ୟାରେ ତାହାଙ୍କର କୌଶଳତା ଦେଖି ବୀରପୁରୁଷମାନେ ଆଶ୍ଚର୍ଯ୍ୟାନ୍ୱିତ ହେଉଅଛନ୍ତି । ରାମଚନ୍ଦ୍ର ଯେପରି ସକଳ ବିଦ୍ୟାରେ ନିପୁଣ, ଲକ୍ଷ୍ମଣ ମଧ୍ୟ ସେହିପରି ।

(ବିଶ୍ୱାମିତ୍ରଙ୍କ ପ୍ରବେଶ)

ଦଶରଥ - (ଉଠି) ନମସ୍କାର ମହର୍ଷେ ।

ବିଶ୍ୱାମିତ୍ର - ଈଶ୍ୱର ଆପଣଙ୍କ ମଙ୍ଗଳ କରନ୍ତୁ ।

ଦଶରଥ - ମହର୍ଷେ ! ଏହି ଆସନରେ ଉପବେଶନ କରନ୍ତୁ ।

ବିଶ୍ୱାମିତ୍ର - (ଆସନ ଗ୍ରହଣ କରିବା ।)

ଦଶରଥ - ମହର୍ଷେ ! ଆପଣମାନଙ୍କର ଯଜନ ଯାଜନାଦି ନିର୍ବିଘ୍ନରେ ନିର୍ବାହିତ ହେଉଅଛିତ ?

ବିଶ୍ୱାମିତ୍ର - ମହାରାଜ ! ଆମ୍ଭେ ଛାମୁରେ କଣ କହିବୁଁ ? ପୁଣ୍ୟ ଯଜ୍ଞଭୂମିରେ ମାରୀଚ ତାଡ଼କାଦି ଅସୁରମାନେ ଆସି ମୁହୁର୍ମୁହୁ ଅନେକ ବିଘ୍ନ ଜନ୍ମାଉଅଛନ୍ତି । ଋଷିମାନେ ନାନା ପ୍ରକାର ଅସୁବିଧା ଓ ଅଶାନ୍ତି ଭୋଗ କରୁଅଛନ୍ତି ।

ଦଶରଥ - କଣ ରାକ୍ଷସମାନେ ଏତେ ଉପଦ୍ରବ ଜନ୍ମାଉଅଛନ୍ତି ?

ବିଶ୍ୱାମିତ୍ର - ହଁ ମହାରାଜ ।

ଦଶରଥ - ସୁମନ୍ତ ରଥ ତୟାର କରାନ୍ତୁ । ମହର୍ଷିଙ୍କ ସଙ୍ଗେ ଯାଇ ରାକ୍ଷସମାନଙ୍କୁ ଯମାଳୟକୁ ପ୍ରେରଣ କରି ଆସିବା ।

ବିଶ୍ୱାମିତ୍ର - ମହାରାଜ ! ଆପଣଙ୍କୁ ଏତେ କଷ୍ଟ ଦେବାକୁ ଆମ୍ଭେ ଆସିନାହୁଁ । ଆପଣଙ୍କ ଜ୍ୟେଷ୍ଠପୁତ୍ର ରାମଚନ୍ଦ୍ର ଓ ଲକ୍ଷ୍ମଣଙ୍କୁ ଆମ୍ଭ ସଙ୍ଗେ ଯିବାକୁ ଅନୁମତି ଦିଅନ୍ତୁ । ଏତିକି ମାତ୍ର ଆପଣଙ୍କଠାରେ ପ୍ରାର୍ଥନା କରିବାକୁ ଆସିଅଛୁଁ ।

ଦଶରଥ - ମହର୍ଷେ ! ସେମାନେ ନିତାନ୍ତ ବାଳକ । ସେମାନେ କି ରାକ୍ଷସମାନଙ୍କୁ ବିନାଶ କରି ଯଜ୍ଞ ଭୂମିରେ ଶାନ୍ତି ସଂସ୍ଥାପନା କରିବେ ? ଆମ୍ଭେ ନିଜେ ଯାଇ ସେମାନଙ୍କୁ ବିନାଶ କରିବୁଁ ।

ବିଶ୍ୱାମିତ୍ର - ମହାରାଜ ! ରାମ ବିନା ସେମାନଙ୍କୁ ଆଉ କେ ନାଶ କରିପାରନ୍ତି ନାହିଁ । ଏହି ହେତୁ ଶୀଘ୍ର ରାମ ଓ ଲକ୍ଷ୍ମଣଙ୍କୁ ଆମ୍ଭ ସହିତ ଯିବାକୁ ଅନୁମତି ଦିଅନ୍ତୁ ।

ଦଶରଥ - ମହର୍ଷେ ! ସେମାନେ ଶସ୍ତ୍ର ଧରିବାର ଆହୁରି ଜାଣନ୍ତି ନାହିଁ । କିପରି କପଟାଚାରୀ ରାକ୍ଷସମାନଙ୍କ ସଙ୍ଗେ ଯୁଦ୍ଧ କରିବେ ?

ବିଶ୍ୱାମିତ୍ର - ମହାରାଜ ! ଆମ୍ଭେ ଜାଣୁଁ, ରାମ ଓ ଲକ୍ଷ୍ମଣ ଧନୁର୍ବିଦ୍ୟାରେ ସମ୍ପୂର୍ଣ୍ଣ ପାରଗତା ଲାଭ କରି ଅଛନ୍ତି । ସେମାନେ ରାକ୍ଷସମାନଙ୍କୁ ଦେଖି କେତେ ମାତ୍ର ଭୟ ପଡ଼ିବେ ନାହିଁ ।

ଦଶରଥ - ମହର୍ଷେ ! ଦାସର ଦୋଷ କ୍ଷମା କରନ୍ତୁ । ରାମ ଓ ଲକ୍ଷ୍ମଣ ଆମ୍ଭର ଜୀବନସର୍ବସ୍ୱ । ସେମାନଙ୍କ ବିନା ଆମ୍ଭେ ଏକ ମୁହୂର୍ତ୍ତ ରହିନପାରୁଁ । ସେମାନଙ୍କ କମନୀୟ ମୁଖ ଦେଖି ଆମ୍ଭେ ପ୍ରାଣଧାରଣ କରୁଁ । ଋଷିବର ! କହନ୍ତୁ କିପରି ସେମାନଙ୍କୁ ଆପଣଙ୍କ ସଙ୍ଗେ ନିର୍ଜ୍ଜନବନକୁ ପଠାଇବୁଁ ?

ବିଶ୍ୱାମିତ୍ର - (ସକ୍ରୋଧେ) ଏହି ସୂର୍ଯ୍ୟାବତଂସ ଓ ତୁମ୍ଭର ପୂର୍ବ ପୁରୁଷ ରାଜା ହରିଶ୍ଚନ୍ଦ୍ର ଅକୁଣ୍ଠିତ ଚିତ୍ତରେ ସମଗ୍ର ରାଜ୍ୟ ଦାନ କରି ଆମ୍ଭ ପୂଜା କରିଥିଲେ । ଆଉ ନିଜ ରାଣୀ ଓ ପୁତ୍ରକୁ ବିକ୍ରୟ କରି ଆମ୍ଭକୁ ଦକ୍ଷିଣା ଦେଇଥିଲେ । ତୁମ୍ଭେ ସେହି ବଂଶରେ ଜନ୍ମଗ୍ରହଣ କରି ରାମ ଓ ଲକ୍ଷ୍ମଣଙ୍କୁ ଆମ୍ଭ ସଙ୍ଗେ ପ୍ରେରଣ କରିବାକୁ କୁଣ୍ଠିତ ହେଉଅଛ । ବୋଧହୁଏ ତୁମ୍ଭର ହେତୁଁ ସୂର୍ଯ୍ୟବଂଶର କୀର୍ତ୍ତି ଲୋପ ହେବ ।

ଦଶରଥ - ମହର୍ଷେ ! ଆମ୍ଭେ ନିଜେ ଯାଇ ଯଜ୍ଞଭୂମିର ରକ୍ଷଣାବେକ୍ଷଣ କରିବାକୁ ପ୍ରସ୍ତୁତ ଥିବାଠାରେ ରାମ ଓ ଲକ୍ଷ୍ମଣଙ୍କୁ ନେଇ ଆଉ କଣ କରିବେ ?

ବିଶ୍ୱାମିତ୍ର - ମହାରାଜ ! ଆପଣ ଜାଣିପାରୁନାହାନ୍ତି । ରାମ ଓ ଲକ୍ଷ୍ମଣଙ୍କ ବିନା ଅନ୍ୟ କେହି ରାକ୍ଷସମାନଙ୍କୁ ବଧ କରିପାରିବେ ନାହିଁ । କିଛି ଆଶଙ୍କା କରନ୍ତୁ ନାହିଁ ।

ଦଶରଥ - ସୁମନ୍ତ ! ଶୀଘ୍ର ଯାଇ ରାମ ଓ ଲକ୍ଷ୍ମଣଙ୍କୁ ଏଠାକୁ ଘେନିଆସ ।

ସୁମନ୍ତ - (ପ୍ରସ୍ଥାନ ଓ ରାମ, ଲକ୍ଷ୍ମଣ, କୌଶଲ୍ୟା ଓ ସୁମିତ୍ରାଙ୍କ ସହିତ ପୁନଃପ୍ରବେଶ) (ରାମ, ଲକ୍ଷ୍ମଣ ଓ ରାଣୀମାନେ, ରାଜା ଓ ବିଶ୍ୱାମିତ୍ରଙ୍କୁ ପ୍ରଣାମ କରିବା) ।

ଦଶରଥ - ବାବୁ ରାମ, ଲକ୍ଷ୍ମଣ ଏଣେ ଆସ । ତୁମ୍ଭମାନଙ୍କୁ ଯଜ୍ଞଭୂମିକି ନେବାକୁ ମହର୍ଷି ବିଶ୍ୱାମିତ୍ର ଆସିଅଛନ୍ତି । (କୋଳକୁନେବା) ପ୍ରିୟେ କୌଶଲ୍ୟା ! ତାଡ଼କାଦି ଅସୁରମାନେ ଯଜ୍ଞଭୂମିରେ ମହାଅନିଷ୍ଟ ଜନ୍ମାଉଥିବାରୁ ମହର୍ଷି ବିଶ୍ୱାମିତ୍ର ରାମ ଓ ଲକ୍ଷ୍ମଣଙ୍କୁ ସଙ୍ଗେ ନେଇ ସେମାନଙ୍କର ଦର୍ପଚୂର୍ଣ୍ଣ କରିବାକୁ ମନସ୍ଥ କରିଅଛନ୍ତି । ଏଣୁ ରାମ ଓ଼ ଲକ୍ଷ୍ମଣଙ୍କୁ ତାହାଙ୍କ ସଙ୍ଗେ ଯିବାକୁ ହେବ ।

କୌଶଲ୍ୟା - ମହାରାଜ ! ଏମାନେ ତ ନିତାନ୍ତ ବାଳକ । ଯୁଦ୍ଧ କିସ ଜାଣନ୍ତିନାହି, କିପରି ରାକ୍ଷସମାନଙ୍କୁ ବିନାଶ କରିପାରିବେ ?

ବିଶ୍ୱାମିତ୍ର - ମହିଷି ! କିଛି ଚିନ୍ତା କର ନାହିଁ । ରାମ ଓ ଲକ୍ଷ୍ମଣ ଶସ୍ତ୍ର ବିଦ୍ୟାରେ ଅତ୍ୟନ୍ତ ନିପୁଣ ଅଟନ୍ତି । ନିଶ୍ଚୟ ରାକ୍ଷସମାନଙ୍କୁ ବିନାଶ କରି ଯଜ୍ଞଭୂମି ରକ୍ଷା କରିପାରିବେ ।

କୌଶଲ୍ୟା - ପ୍ରଭୋ ! ସେମାନଙ୍କର ଶରୀର ଅତି କୋମଳ । ଦୁରନ୍ତ ରାକ୍ଷସମାନଙ୍କର ବଜ୍ର ସମତୁଲ୍ୟ ବାଣ କିପରି ସହ୍ୟ କରିପାରିବେ ? ସେମାନେ ଯଦି ଯୁଦ୍ଧରେ କ୍ଳେଶ ପାଇ ନୟନରୁ ଅଶ୍ରୁମୋଚନ କରିବେ, ତା ଆପଣ ଦେଖି କି ସହିପାରିବେ ? ରାମ କ୍ଷଣେ ମୋ ଆଗରୁ ଅନ୍ତର ହେଲେ ମୋତେ ଜଗତଶୂନ୍ୟ ଦିଶେ । ତାହାକୁ ଛାଡ଼ି କି ହତଭାଗିନୀ କୌଶଲ୍ୟା କ୍ଷଣେ ରହିପାରିବ ? ପ୍ରଭୋ ! ଚରଣ ଧରି ମାଗିଘେନୁଛି । ପ୍ରାଣର ପ୍ରାଣ ରାମକୁ ନିଅନ୍ତୁନା ନିଅନ୍ତୁନା । (କ୍ରନ୍ଦନ)

**(ରାଗ ହିନ୍ଦୁସ୍ଥାନି ଭୈରବୀ । ଆଦିତାଳ ।)**

(ହେଲାଣି ସରି ପ୍ରତି)

କରୁଣା କରି । ରଖ ମୋର ଗୁହାରି ।
ନିଅ ନାହିଁ ପ୍ରଭୁ । ଶ୍ରୀରାମକୁ ମୋହରି ।୦।
ସେ କି ଜାଣେ ସମର । ବିଧାନ ଯତିବର ।
ଦେଖିଲେତ ଡରିବ । ବନରେ ନିଶାଚରୀ ।୧।
ସକଳ ଗତି ମୋର । ଅଟେ ରାମଚନ୍ଦର ।
ତାହାକୁ ବନ ଦେଶେ । ଛାଡ଼ିବି ମୁଁ କିପରି ? ।୨।
କ୍ଷଣେ ହେଲେ ଅନ୍ତର । ହୋଇଯାଏ ସକଳ ।
ଜଗତ ଶୂନ୍ୟ ମୋତେ । ମାଗେ ଚରଣ ଧରି ।୩।

ବିଶ୍ୱାମିତ୍ର - ରାଜ୍ଞି ! ଶାନ୍ତ ହୁଅନ୍ତୁ । ବିଚାର କରନ୍ତୁନା । ରାମଚନ୍ଦ୍ରଙ୍କ ଅନିଷ୍ଟ କେ କୌଣସି କାଳେ କରି ପାରିବ ନାହିଁ ।

କୌଶଲ୍ୟା - ବାବୁ ରାମ ! ମୋ କୋଳକୁ ଆସ । (କୋଳ କରି) ବାବୁ ! ତୋର ଚନ୍ଦ୍ରମୁଖ ନ ଦେଖି ମୁଁ ହତଭାଗିନୀ କିପରି ବଞ୍ଚିପାରିବି । ହାୟ ! ହାୟ ! ମୋର କି କଠିନ ହୃଦୟ ! ତୋତେ ଛାଡ଼ି ବଞ୍ଚିବି !! ହା ବିଧାତା ମୋର ହୃଦୟ କାହିଁକି ଫାଟି ଯାଉନାହିଁ । (କ୍ରନ୍ଦନ)

ସୁମିତ୍ରା - ଭଗିନୀ ଦୁଃଖ କର ନାହିଁ । ଶାନ୍ତହୁଅ ।

କୌଶଲ୍ୟା - ପ୍ରାଣାରାମ ରାମକୁ ଛାଡ଼ି ଦୁଃଖ ନ କରି କିପରି ରହିପାରିବି ?

କୈକେୟୀ - ଭଗିନି ଯଥାର୍ଥ । ମହାରାଜ ଅନୁମତି ଦେଇଅଛନ୍ତି ଓ ମହର୍ଷି ଆସି ଅନୁରୋଧ କରୁଅଛନ୍ତି । ଆଉ ଦୁଃଖ କଲେ କିସ ହେବ ? ଶାନ୍ତହୁଅ ! ତୁନିହୁଅ ! ଲକ୍ଷ୍ମଣ ମଧ୍ୟ ରାମ ସଙ୍ଗରେ ଯାଉଅଛି । ମହର୍ଷି ସେମାନଙ୍କୁ କୌଣସି ଅମଙ୍ଗଳ ନ ଘଟିବା ପରି ବନ୍ଦୋବସ୍ତ କରିବେ ।

ବିଶ୍ୱାମିତ୍ର - କିଛି ଚିନ୍ତା କର ନାହିଁ । ଆମ୍ଭେ ତୁମ୍ଭର ରାମ ଓ ଲକ୍ଷ୍ମଣଙ୍କୁ ସଙ୍ଗେ ଘେନି ସର୍ବ ଶୁଭରେ ଫେରି ସମର୍ପଣ କରିବୁଁ । ଶୀଘ୍ର ସେମାନଙ୍କୁ ଆମ୍ଭ ସଙ୍ଗେ ଯିବାକୁ ଅନୁମତି ଦିଅନ୍ତୁ ।

କୌଶଲ୍ୟା - ପ୍ରଭୋ ! ରାମ ଲକ୍ଷ୍ମଣ ଆପଣଙ୍କ ସେବକ ଅଟନ୍ତି । ସେମାନେ ଆପଣଙ୍କୁ ଲାଗିଲେ ।

ବିଶ୍ୱାମିତ୍ର - ରାମଚନ୍ଦ୍ର ! ଲକ୍ଷ୍ମଣ ! ଶୀଘ୍ର ଆସ ଯିବା ।

ଦଶରଥ - ନମସ୍କାର ମହର୍ଷେ ।

ବିଶ୍ୱାମିତ୍ର - ଈଶ୍ୱର ମଙ୍ଗଳ କରନ୍ତୁ ।

(ରାମ ଓ ଲକ୍ଷ୍ମଣ ସମସ୍ତଙ୍କୁ ମାନ୍ୟକରି ପ୍ରସ୍ଥାନ)

(ଯବନିକାପତନ)

●

# ଷଷ୍ଠାଙ୍କ

## (ପ୍ରଥମ ଦୃଶ୍ୟ)

(ବନପଥ)

(ରାମ, ଲକ୍ଷ୍ମଣ ଓ ବିଶ୍ୱାମିତ୍ର)

ବିଶ୍ୱାମିତ୍ର - ରାମ ! ଯଜ୍ଞଭୂମିକି ଯିବାର ଏ ଦୁଇଗୋଟି ପଥ । ଏହି ବାଟେ ଗଲେ କିଛି ବିଳମ୍ବ ହେବ ମାତ୍ର ଅତି ସହଜରେ ପହୁଞ୍ଚି ପାରିବା; କିନ୍ତୁ ଏହି ବାଟେ ଯିବାର ପ୍ରମାଦଜନକ ।

ରାମ - ଗୁରୋ ! କାହିଁକି ?

ବିଶ୍ୱାମିତ୍ର - ଏହି ପଥରେ ଅତି ଦୂରରେ ରାକ୍ଷସମାନେ ନିବାସ କରନ୍ତି (ଘୋର ରଡ଼ିନ୍ତି) । (କିଛି ଦୂର ଯାଇ) ଶ୍ରୀରାମ ! ଏହି ବନରେ ତାଡ଼କା ଥାଏ ।

ରାମ - ଗୁରୋ ! ଅନୁମତି ଦିଅନ୍ତୁ । ତାଡ଼କାକୁ ବଧ କରିବି ।

ବିଶ୍ୱାମିତ୍ର - ବତ୍ସ ! ଏହି କ୍ଷଣି ଧନୁଷ୍ଟଙ୍କାର ଶୁଣିଲେ ତାଡ଼କା ଆସି ପ୍ରବେଶ ହେବ ।

(ରାମଙ୍କର ଧନୁଷ୍ଟଙ୍କାର ଓ ତାଡ଼କାର ରଡ଼ି)

ବିଶ୍ୱାମିତ୍ର - ଓଃ ଅସହ୍ୟ ରଡ଼ି । ଆମ୍ଭେ ଏସ୍ଥଳରେ ରହି ପାରିବୁଁ ନାହିଁ । (ପ୍ରସ୍ଥାନ)

ରାମ - ଭାଇ ଲକ୍ଷ୍ମଣ ! ଗୁରୁ ଅତି ଭୟରେ ପଳାୟନ କରୁଅଛନ୍ତି । ତୁମ୍ଭେ ଶୀଘ୍ର ଯାଇ ତାଙ୍କୁ କୌଣସି ଅରିଷ୍ଟ ନ ଘଟିଲା ପରି ଦେଖ ।

ଲକ୍ଷ୍ମଣ - ମୁଁ ଶୁଣିପାରିଅଛି ତାଡ଼କା ବଡ଼ ଦୁଷ୍ଟା । ଆପଣ ଏକାକୀ ତାହା ସଙ୍ଗେ ଯୁଦ୍ଧ କରିବା ଉଚିତ ନୁହେ ।

ରାମ - ଲକ୍ଷ୍ମଣ ! ସେ ସାମାନ୍ୟ ନିଶାଚରୀ ? ତାହାଠାରେ ମୋର କି ଭୟ ? କିଛି ଚିନ୍ତାକର ନାହିଁ । ଶୀଘ୍ର ଯାଇ ଗୁରୁଦେବଙ୍କର ରକ୍ଷଣାବେକ୍ଷଣ କର ।

ଲକ୍ଷ୍ମଣ - ଆପଣଙ୍କ ଇଚ୍ଛା । (ପ୍ରସ୍ଥାନ)

(ତାଡ଼କା ଓ ଅନ୍ୟାନ୍ୟ ରାକ୍ଷସମାନେ ଘୋର ରଡ଼ିକରି ପ୍ରବେଶ ।)

ତାଡ଼କା - ରେ ନରାଧମ ତୁ କେ ? ଏହି ବନରେ ଧନୁଷ୍ଟଙ୍କାର କରି ମୋର ନିଦ୍ରାରେ ବ୍ୟାଘାତ ଜନ୍ମାଇଅଛୁଁ ? ଏହିକ୍ଷଣି ତୋତେ ବିନାଶ କରିବି ।

ରାମ - ପାପୀୟସି ନିଶାଚରି ! ସାଧୁଲୋକମାନେ ତୋର ଭୟରେ ଏ ପଥରେ ଗମନାଗମନ କରନ୍ତି ନାହିଁ । ଆଜି ତୋତେ ଯମାଳୟକୁ ପ୍ରେରଣ କରିବି ।

ତାଡ଼କା - ରେ ଅଭିମାନୀ ଅଧମ ବାଳକ ! ରକ୍ତ ମାଂସ ବିହୀନ ଅନେକ ମୁନିଶରୀର ଖାଇ ତୃପ୍ତି ଲଭି ନଥିଲି । ଆଜି ତୋର ହୃଷ୍ଟପୁଷ୍ଟାଙ୍ଗ ଖାଇ ମୁ ଅତି ଆନନ୍ଦ ଲଭିବି ।

(ଘୋର ରଡ଼ି କରି ଖାଇବାକୁ ଉଦ୍ୟତ ହେବା । ରାମ ତାଡ଼କା ଓ ଅନ୍ୟାନ୍ୟ ରାକ୍ଷସମାନଙ୍କୁ ବଧ କରିବା ।)

(ଲକ୍ଷ୍ମଣ ଓ ବିଶ୍ୱାମିତ୍ର ପ୍ରବେଶ)

ବିଶ୍ୱାମିତ୍ର - ଶ୍ରୀରାମ ! ତାଡ଼କା ମଲା ? ଅନ୍ୟାନ୍ୟ ରାକ୍ଷସମାନଙ୍କୁ ବଧ କରିଅଛ ?

ରାମ - ଗୁରୁଦେବ ! ଆପଣଙ୍କ ପ୍ରସାଦରୁ ମୁ ତାଡ଼କାକୁ ଓ ତାହାସଙ୍ଗେ ଥିବା ରାକ୍ଷସମାନଙ୍କୁ ବଧ କରିଅଛି ।

ବିଶ୍ୱାମିତ୍ର - ଧନ୍ୟ ଶ୍ରୀରାମ ଧନ୍ୟ ! ଆଜି ରାକ୍ଷସମାନଙ୍କ ଅତ୍ୟାଚାରରୁ ଯଜ୍ଞଭୂମି ରକ୍ଷା ପାଇଲା । ଶ୍ରୀରାମ ! ତାଡ଼କାତ ବଧହେଲା । ଚାଲ ଯଜ୍ଞଭୂମି ଓ କେତେକ ଆଶ୍ରମମାନ ଦର୍ଶନ କରିବାକୁ ଯିବା ।

ରାମ - ଆପଣ ଆଗେ ଚାଲନ୍ତୁ ।

(ସମସ୍ତଙ୍କ ପ୍ରସ୍ଥାନ ଓ ଯବନିକାପତନ)

## ଦ୍ୱିତୀୟ ଦୃଶ୍ୟ

(ଗୌତମାଶ୍ରମ)

(ବିଶ୍ୱାମିତ୍ର, ରାମ ଓ ଲକ୍ଷ୍ମଣ)

ରାମ - ହା ! କି ସୁରମ୍ୟ ସ୍ଥାନ । ଏଠାକୁ ଆସି ପ୍ରାଣ ଓ ମନ ପୁଲକିତ ହୋଇଗଲା । ଗୁରୁଦେବ ! ଏ କେଉଁ ଋଷିଙ୍କର ଆଶ୍ରମ୍ ?

ବିଶ୍ୱାମିତ୍ର - ଏ ଗୌତମ ଋଷିଙ୍କର ଆଶ୍ରମ ।

ରାମ - ଗୁରୁଦେବ ! ଯେବେ ଏ ଗୌତମ ଋଷିଙ୍କର ଆଶ୍ରମ, ତେବେ ଏପରି ଜନଶୂନ୍ୟ କାହିଁକି ହୋଇଅଛି । ଯଜ୍ଞବେଦି ନାହିଁ, ହୋମାଗ୍ନି ନାହିଁ, କି ଋଷିମାନଙ୍କର ଚହଳ ନାହିଁ ।

ବିଶ୍ୱାମିତ୍ର - ଜନଶୂନ୍ୟତାର କାରଣ ଏହିକ୍ଷଣି ଜାଣିବେ । ପ୍ରଥମେ ଗୋଟିଏ କଥା ଶ୍ରବଣ କରନ୍ତୁ ।

ରାମ - କି କଥା କହନ୍ତୁ ।

ବିଶ୍ୱାମିତ୍ର - ଏହି ନିକଟସ୍ଥ ନିର୍ଜନ ବନକୁ ଯାଇ ଆମ୍ଭେ ଦେଖାଇବା ପାଷାଣ ଖଣ୍ଡକୁ ପାଦରେ ଥରେ ସ୍ପର୍ଶ କରନ୍ତୁ ।

ରାମ - ଗୁରୁଦେବ ! କି ହେତୁ ?

ବିଶ୍ୱାମିତ୍ର - ସେ ପାଷାଣ ଖଣ୍ଡରେ ତୁମ୍ଭର ଶ୍ରୀପଦ ଲାଗିଲେ ଜଗତରେ ଗୋଟିଏ ଅକ୍ଷୟକୀର୍ତ୍ତି ସଂସ୍ଥାପିତ ହେବ ।

ରାମ - ଗୁରୋ କି କୀର୍ତ୍ତି ?

ବିଶ୍ୱାମିତ୍ର - ଗୋଟିଏ ପ୍ରାଣୀକୁ ଚିରନ୍ତନ ଦୁଃଖରୁ ମୋଚନ କରିବେ ।

ରାମ - ଗୁରୁଦେବ । କେଉଁ ପ୍ରାଣୀକୁ ?

ବିଶ୍ୱାମିତ୍ର - ଶ୍ରୀରାମ ! ଜୀବ ନିଜ ୨ ପ୍ରାରବ୍ଧ ଅନୁସାରେ କର୍ମଭୂମିକୁ ଆସି ସୁକୃତି ଓ ଦୁଷ୍କୃତି ଅନୁସାରେ ଅବଶ୍ୟ ସଂସାରରେ ସୁଖଦୁଃଖ ଅନୁଭୋଗ କରୁଥାଏ । ଏକମାତ୍ର ନାରାୟଣଙ୍କର ପଦପଙ୍କଜରେ ପ୍ରାଣୀ ନିୟତ ଚିତ୍ତ ସଂସ୍ଥାପନ କଲେ ଅଦୃଷ୍ଟ ଜନିତ ସୁଖ ଦୁଃଖରୁ ମୁକ୍ତି ପାଇପାରେ । ଅଦୃଷ୍ଟ ଦୋଷରୁ ଗୌତମପତ୍ନୀ ଅହଲ୍ୟା ପତିତା ହୋଇଅଛନ୍ତି ଏବଂ ଦେବରାଜ ଇନ୍ଦ୍ରଙ୍କ ସହବାସରେ ସ୍ତ୍ରୀମାନଙ୍କର ଅମୂଲ୍ୟ ଧନ ଯେଉଁ ସତୀତ୍ୱ ତାହା ହରାଇ ନିଜ ଭର୍ତ୍ତା ଗୌତମଙ୍କ ଶାପରୁ ପ୍ରସ୍ତରରୂପରେ ପଡ଼ିରହିଅଛନ୍ତି । ଶ୍ରୀରାମ ! ତୁମ୍ଭର ଚରଣସ୍ପର୍ଶ ହେଲେ ସେ ଉକ୍ତ ମହାପାପରୁ ମୁକ୍ତ ହେବେ । ଅତଏବ ଆମ୍ଭ ସଙ୍ଗେ ଆସନ୍ତୁ । ଏହି ଆଶ୍ରମ ନିକଟସ୍ଥ ନିର୍ଜନ ବନକୁ ଯିବା ।

ରାମ - ଯେ ଆଜ୍ଞା । (ସମସ୍ତେ ବନଆଡ଼େ ଯିବା)

ବିଶ୍ୱାମିତ୍ର - (କିଛି ଦୂର ଯାଇ) ରାମଚନ୍ଦ୍ର । ହେଟି ଏହି ପ୍ରସ୍ତର ଖଣ୍ଡିକ । ଏହାକୁ ଚରଣରେ ସ୍ପର୍ଶ କରନ୍ତୁ ।

(ରାମ ପଦରେ ସ୍ପର୍ଶ କରିବା ଓ ଅହଲ୍ୟା ନିଜରୂପ ଧାରଣ କରି ସ୍ତୁତି କରିବା)

ଅହଲ୍ୟା - (କରଯୋଡ଼ି) ରାଗ ମୋହନା । ରୂପକତାଳ ।

(କମଳାନନ କରୁଣିଂପୁମ୍ଭ ପ୍ରତି)

ହେ ରାମ ପ୍ରଭୁ ନିରୂପମ କରୁଣାପ୍ରଦ ଧରମ ।

ନିଖିଳ ଲୋକ ଅଖିଳ ଶୋକ ତାପ ନାଶକ ପରମ ।।

ଶାମଳ ନବ ଦୁର୍ବାଦଳ ନିନ୍ଦିତ ରମ୍ୟ ବରନ

ଅନନ୍ତ ପ୍ରଭୁ ନିରଞ୍ଜନ ଭୁବନ ଜନ ପାଳନ

ପାପ-ତିମିର-ଚୟ-ଭାସ୍କର ସଚରାଚର ପାବନ ।

ହେ ପ୍ରଭୋ । ଆପଣଙ୍କ ଶ୍ରୀଚରଣରେ ଶରଣ ପଶୁଅଛି । ରକ୍ଷା କରନ୍ତୁ ।

ବିଶ୍ୱାମିତ୍ର - ରାମ ! ଏବେ ଅହଲ୍ୟାଙ୍କୁ ସଙ୍ଗେ ନେଇ ଗୌତମଙ୍କଠାରେ ଛାଡ଼ି ଦେବା ।

ରାମ - ଚାଲନ୍ତୁ । (ପ୍ରସ୍ଥାନ ଓ ଯବନିକା ପତନ)

●

ନିମ୍ନଲିଖିତ ନାଟକ ପୁସ୍ତକ ଗୁଡିକ ଗଜପତି ଯନ୍ତ୍ରାଳୟରେ
ସୁଲଭ ମୂଲ୍ୟରେ ବିକ୍ରୟାର୍ଥେ ପ୍ରସ୍ତୁତ ଅଛି ।

---

| | | |
|---|---|---|
| ସଙ୍ଗୀତ ପ୍ରହ୍ଲାଦ ନାଟକ | ... | ୧ ୦—୮—୦ |
| ,, ନଳୋଦୟ ନାଟକ ... | | ୦—୪—୦ |
| ,, ଧ୍ରୁବ ନାଟକ | | ୦—୩—୦ |
| ,, ବାଣଦର୍ପ ଦଳନ ନାଟକ | | ୦—୨—୦ |
| ,, ଅହଲ୍ୟା ଶାପ ବିମୋଚନ ନାଟକ ... | | ୦—୨—୦ |
| ଶ୍ୟାମସୁନ୍ଦର ରାଜଗୁରୁଙ୍କ ପ୍ରବନ୍ଧାବଳୀ | ... | ୦—୧୨—୦ |

ସୁପରିଣ୍ଟେଣ୍ଡେଣ୍ଟ,
ଗଜପତି ଯନ୍ତ୍ରାଳୟ,
ପାରଳାଖେମୁଣ୍ଡି ।

# ପ୍ରାକ୍‌ସୂଚନା

''ଉତ୍କଳର ନାନା ସ୍ଥାନୀୟ ରଙ୍ଗାଳୟମାନଙ୍କରେ ଏହି 'ଦାନ ପରୀକ୍ଷା' ନାଟକ ଅଭିନୀତ ହେବାଦ୍ୱାରା ଦର୍ଶକମଣ୍ଡଳୀର ଆନନ୍ଦବର୍ଦ୍ଧନ କରିଥିବା ଅବହିତ ହୋଇ'' ପଦ୍ମନାଭ ନାରାୟଣ ଦେବଙ୍କ ଭ୍ରାତୃଷ୍ପୁତ୍ର ଏବଂ ପାରଳା ମହାରାଜା ମାନ୍ୟବର ଶ୍ରୀ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ୧୯୨୦ ମସିହାରେ ଏହାର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିଥିଲେ । ଏହାର ପ୍ରଥମ ସଂସ୍କରଣ ୧୯୦୨ ମସିହାରେ ମୁଦ୍ରିତ ହୋଇଥିଲା । ମାତ୍ର ତିନିବର୍ଷ ଭିତରେ ପୌରାଣିକ ବିଷୟବସ୍ତୁକୁ ଆଧୁନିକ ନାଟ୍ୟରୂପ ଦେବାରେ ଲେଖକ କିପରି ସଫଳତା ପାଇ ଆସୁଥିଲେ ଏହା ଏଥିରୁ ନିର୍ଦ୍ଧାରଣ କରାଯାଇପାରେ । 'ସଙ୍ଗୀତ ପ୍ରହ୍ଲାଦ ନାଟକ' ଏବଂ 'ଦାନ ପରୀକ୍ଷା ନାଟକ'ର ଶୈଳୀ ମଧ୍ୟରେ ତୁଳନାତ୍ମକ ଆଲୋଚନା କଲେ ଏହାର ସତ୍ୟତା ଉପଲବ୍ଧି କରିହେବ । ଲୀଳା ନାଟକରୁ 'ସଙ୍ଗୀତ ପ୍ରହ୍ଲାଦ ନାଟକ' ଦେଇ ପଦ୍ମନାଭ ନାରାୟଣ ଦେବ ଅନ୍ୟାନ୍ୟ ନାଟକ ମାଧ୍ୟମରେ ଓଡ଼ିଶାର ଦକ୍ଷିଣାଞ୍ଚଳର ଦର୍ଶକମାନଙ୍କ ରୁଚି କିପରି ପରିବର୍ତ୍ତନ କରି ପାରିଥିଲେ ତାହା ନାଟ୍ୟାରମ୍ଭରେ ଥିବା ସୂତ୍ରଧାରର ସଂଳାପରୁ ହିଁ ଅନୁମିତ ହୁଏ । ସେଥିରେ ଅଛି

> *ପାଶ୍ଚାତ୍ୟ ଶିକ୍ଷାର ଆଲୋକରୁ ବର୍ତ୍ତମାନ ନବ୍ୟ ଶିକ୍ଷିତ ମଣ୍ଡଳୀର ଦୃଶ୍ୟ କାବ୍ୟାସ୍ୱାଦନ ରୁଚି ଏତେଦୂର ପରିବର୍ତ୍ତିତ ହୋଇଯାଇଅଛି ଯେ ସେମାନେ ଯାତ୍ରା ବା ଲୀଳାର ଅଭିନୟକୁ ଘୃଣାଚକ୍ଷୁରେ ଦେଖନ୍ତି ।*

ଏହି ରୁଚି ପରିବର୍ତ୍ତନର ଦ୍ୱିତୀୟ ଦିଗଟି ପରବର୍ତ୍ତୀ ବାକ୍ୟରେ ଏପରିଭାବେ ଦିଆଯାଇଛି । ''ସେହି ହେତୁ ଅଭିନୀତ ନାଟକର ନାୟକ ଏବଂ ନାୟିକାର ଚରିତ୍ର ନିର୍ମଳ ହେବା ନିତାନ୍ତ ଆବଶ୍ୟକ ।''

ଅନ୍ୟତ୍ର ଊନବିଂଶ ଶତାବ୍ଦୀର ଶେଷ ପାଦରେ ପରମ୍ପରାଗତ ମୂଲ୍ୟବୋଧର ତିରୋଧାନ ଏବଂ ଇଂରେଜି ଶିକ୍ଷା, ପାଶ୍ଚାତ୍ୟ ସଭ୍ୟତା, ବ୍ରାହ୍ମଧର୍ମ ଇତ୍ୟାଦିର ପ୍ରଭାବରୁ ଅଭିନବ ମୂଲ୍ୟବୋଧର ଉଦ୍‌ବର୍ତ୍ତନ କିପରି ଜନଜୀବନର ରୁଚିକୁ ପରିବର୍ତ୍ତିତ କରିଥିଲା, ତାହା ସୂଚାଇ ଦିଆଯାଇଛି । ବ୍ରାହ୍ମଧର୍ମର ଅନ୍ୟତମ ଆଭିମୁଖ୍ୟ ଥିଲା ଚାରିତ୍ରିକ ଶୁଚିତା । ଏଥିପାଇଁ ବିଜୁଳି ଗୋଷ୍ଠୀର ପ୍ରାଚୀନ ସାହିତ୍ୟ ସମାଲୋଚକମାନେ ଉପେନ୍ଦ୍ରଭଞ୍ଜଙ୍କ ନାୟକ ନାୟିକାଙ୍କର, ଏପରିକି ରାମ ଓ ସୀତାଙ୍କର ଚରିତ୍ର ପ୍ରତି ଆକ୍ଷେପ କରିବାକୁ

ପଶ୍ଚାତ୍‌ପଦ ହୋଇ  ନାହାଁନ୍ତି । ପଦ୍ମନାଭ ନାରାୟଣଙ୍କ ସହିତ ବ୍ରାହ୍ମଧର୍ମର ଅନ୍ୟତମ ବିଶିଷ୍ଟ ପ୍ରବକ୍ତା ବିଶ୍ୱନାଥ କରଙ୍କ ସହିତ ବ୍ୟକ୍ତିଗତ ଘନିଷ୍ଠ ସମ୍ପର୍କରୁ ସେ ଏକାଧିକବାର ପାରଳାଖେମୁଣ୍ଡି ଯାଇ ବ୍ରାହ୍ମ ଦର୍ଶନ ସଂପର୍କରେ ବକ୍ତୃତା କରିଛନ୍ତି । ଏଣୁ ନାଟକୀୟ ଚରିତ୍ରଗୁଡ଼ିକର ଚାରିତ୍ରିକ ଶୁଦ୍ଧତା ପ୍ରତି ସଚେତନ ରହିବାପାଇଁ ନାଟ୍ୟକାର ବାଧ୍ୟ ହୋଇଛନ୍ତି । ଏଥିପାଇଁ ବୋଧହୁଏ 'ଚନ୍ଦ୍ରାବତୀ ସ୍ୱୟମ୍ବର' ଏବଂ 'ତାରକ ସଂହାର' ପ୍ରକାଶ ପାଇ ନାହିଁ । ଉଭୟରେ ଅବିବାହିତା ଯୁବତୀର ପ୍ରଣୟ ନିବେଦନ, ଯୁବକ ଓ ଯୁବତୀଙ୍କ ପରସ୍ପର ଦର୍ଶନରେ କାମ ବିମୋହନ, ସ୍ଖଳିତ ବୀର୍ଯ୍ୟ ମହାଦେବଙ୍କ ପୁତ୍ରୋତ୍ପତ୍ତି ଇତ୍ୟାଦି ଦର୍ଶକମାନଙ୍କପାଇଁ ଅଶ୍ଳୀଳ ଏବଂ ଦୁର୍ନିରୀକ୍ଷ ନ ହେଲେ ସୁଦ୍ଧା ଲେଖକଙ୍କ ମାନସିକତା ସେଗୁଡ଼ିକୁ ପ୍ରକାଶ କରିବାପାଇଁ ସମର୍ଥନ ଦେଇପାରିନାହିଁ ।

ପ୍ରସ୍ତୁତ ନାଟକଟି କର୍ଣ୍ଣଙ୍କ ଦାନଶୀଳତା ପ୍ରଦର୍ଶନ ଉଦ୍ଦେଶ୍ୟରେ ଲିଖିତ । କେବଳ ସାତ ଆଠୋଟି ପୁରୁଷ ଚରିତ୍ର ଏବଂ ତିନୋଟି ନାରୀ ଚରିତ୍ର ଅବଲମ୍ବନରେ ଏହା ମଞ୍ଚସ୍ଥ ହୋଇପାରିବ । ନାଟକଟି ମାତ୍ର ତିନୋଟି ଅଙ୍କରେ ବିଭକ୍ତ । ପ୍ରତ୍ୟେକ ଅଙ୍କର ଦୃଶ୍ୟ ସଂଖ୍ୟା ମଧ୍ୟ ବିଶେଷ ନୁହେଁ । ପ୍ରଥମ ଅଙ୍କରେ ଦୁଇଟି, ଦ୍ୱିତୀୟ ଅଙ୍କରେ ଚାରୋଟି ଏବଂ ତୃତୀୟ ଅଙ୍କରେ ତିନୋଟି ଦୃଶ୍ୟ ସଂଯୋଜିତ । ସେହିପରି ସଙ୍ଗୀତର ସଂଖ୍ୟା ମଧ୍ୟ ସୀମିତ । ନାନ୍ଦୀରେ ତିନୋଟି, ପ୍ରଥମ ଅଙ୍କରେ ଗୋଟିଏ, ଦ୍ୱିତୀୟ ଅଙ୍କରେ ତିନୋଟି ଏବଂ ତୃତୀୟ ଅଙ୍କରେ ପାଞ୍ଚୋଟି ସଂଗୀତ ସ୍ଥାନ ପାଇଛି । ଏଗୁଡ଼ିକରୁ କେତୋଟି ଅନାବଶ୍ୟକ ମନେହେଲେ ସୁଦ୍ଧା ତତ୍କାଳୀନ ଦର୍ଶକମାନଙ୍କ ଅଭିରୁଚି ଏବଂ ନାଟ୍ୟକାରଙ୍କ ସଙ୍ଗୀତ ପ୍ରିୟତାର ପରିଚାୟକ । ଦର୍ଶକମାନଙ୍କ ହୃଦୟରେ କରୁଣରସ ସଞ୍ଚାର କରାଇବାରେ ନାଟକର ସଂଳାପ ଓ ସଙ୍ଗୀତଗୁଡ଼ିକ ଏକାନ୍ତ ସହାୟକ । ନାଟ୍ୟକାର ଶେଷ ପର୍ଯ୍ୟନ୍ତ ନାଟକୀୟ ଉତ୍କଣ୍ଠାକୁ ଅବ୍ୟାହତ ରଖି ଶୀର୍ଷ ବିନ୍ଦୁରେ ପରିସମାପ୍ତି ଘଟାଇଛନ୍ତି । ଏସବୁ ଦୃଷ୍ଟିରୁ ଏହା ସମକାଳରେ ଏକ ମଞ୍ଚ ସଫଳ ନାଟକ ଭାବେ ଗୃହୀତ ହୋଇଥିଲା । ଦକ୍ଷିଣ ଓ ଉତ୍ତର ଓଡ଼ିଶାର ବହୁ ସୌଖୀନ୍ ନାଟ୍ୟଦଳ ଏହାକୁ ମଞ୍ଚସ୍ଥ କରି ଦର୍ଶକମାନଙ୍କୁ ଆମୋଦିତ କରିଥିବା ପ୍ରକାଶିତ ସମ୍ବାଦପତ୍ରଗୁଡ଼ିକରୁ ଜଣାଯାଇଥାଏ ।

**ଦାନ ପରୀକ୍ଷା** ପଦ୍ମନାଭ ନାରାୟଣ ଦେବଙ୍କ ଶେଷ ନାଟକ । ୧୯୦୩ ପରେ ରୋଗର ପ୍ରାବଲ୍ୟ ହେତୁ ଏବଂ ଚିକିତ୍ସାପାଇଁ ଇତସ୍ତତ ହେଉଥିବା ଯୋଗୁଁ ନାଟକ ରଚନା କରିବା ତାଙ୍କ ପକ୍ଷରେ ଆଉ ସମ୍ଭବପର ହୋଇନାହିଁ । ଦାନଶୀଳ ଚନ୍ଦ୍ର ମହାରାଜାଙ୍କ ବିକାଶୋନ୍ମୁଖୀ ନାଟ୍ୟ ପ୍ରତିଭା ଚିରଦିନ ପାଇଁ ମୂକ ହୋଇଯାଇଛି ।

●

# ଦାନପରୀକ୍ଷା ନାଟକ

ଶ୍ରୀ ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ ଦ୍ୱାରା

ପ୍ରଣୀତ

ଦ୍ୱିତୀୟ ସଂସ୍କରଣ ।

ଏବଂ ଶ୍ରୀ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ

ଦ୍ୱାରା ପ୍ରକାଶିତ ।

---

Second Edition--500 Copies.

*Printed at the Gajapaty Press*

*PARLAKIMEDI.*

Jan. 1920

ମୂଲ୍ୟ ଦୁଇ ଅଣା ମାତ୍ର

# ମୁଖବନ୍ଧ

ଉତ୍କଳର ନାନା ସ୍ଥାନୀୟ ରଙ୍ଗାଳୟମାନଙ୍କରେ ଏହି ''ଦାନ ପରୀକ୍ଷା ନାଟକ'' ଅଭିନୀତ ହେବାଦ୍ୱାରା ଦର୍ଶକ ମଣ୍ଡଳୀର ଆନନ୍ଦ ବର୍ଦ୍ଧନ କରିଥିବା ବିଷୟ ଅବଗତ ହୋଇ ତୃତୀୟ ସଂସ୍କରଣ ପ୍ରକାଶ କରିଅଛୁଁ ।

ପ୍ରାକୃତିକ ଉତ୍କଳର ଜନସାଧାରଣରେ ପୂର୍ବବତ୍ ଏହା ଆଦୃତ ହେଲେ ଶ୍ରମ ସଫଳ ମନେ କରିବୁଁ ।

। ଇତି ।

ପାରଳାଖେମୁଣ୍ଡି — ପ୍ରକାଶକ

---

# ନାଟ୍ୟୋଲ୍ଲିଖିତ ବ୍ୟକ୍ତିଗଣ ।

ପୁରୁଷମାନେ- ନାରାୟଣ, ନାରଦ, କର୍ଣ୍ଣ, ମନ୍ତ୍ରୀ, ବିଦୂଷକ, ବୃଦ୍ଧ, ବ୍ରାହ୍ମଣ, ବୃଷକେତୁ, ବ୍ରାହ୍ମଣମାନେ ଇତ୍ୟାଦି ।

ସ୍ତ୍ରୀମାନେ- ଲକ୍ଷ୍ମୀ, ପଦ୍ମାବତୀ, ମାଳତୀ ।

# ଦାନ ପରୀକ୍ଷା ନାଟକ

## ନାନ୍ଦୀ

ରାଗ କାମ୍ବୋଜି । ଆଦିତାଳ ।

(ଶ୍ରୀ ମନୋହରା ଶୁଭାକରା ପ୍ରତି)

ହେ ମହେଶ୍ୱର କୃପାକର । କରୁଣା ସାଗର ।୦।
ବିମଳାଙ୍ଗଶିବ । ପାମର ପୋଷକ ।
ବିପଦ ବାରକ । ବନ୍ଧ୍ୟ ପରାତ୍ପର ।
ନିଖିଳ ଜନପାତା । ଅଖିଳ ଶୁଭଦାତା ।
ଦୁଃଖି ଜନଙ୍କ ତ୍ରାତା । ଭୁବନକରତା ।
ଗର୍ବଖର୍ବକାରକ ଲୋକପିତା ।
ତ୍ରିଲୋକ, ପାଳକ, ତାରକ, ଶ୍ରୀହର ।୧।
ପଡ଼ି ଭବସାଗରେ । ବୁଡ଼ି ଅଗାଧନୀରେ ।
ସଡ଼ି ଡାକେ କାତରେ । ରଖ ମତେ ଥରେ ।
ଦେଖିବି କିପରି ପାପ ନେତ୍ରରେ ।
ତରୁଣ-ଅରୁଣ-ଚରଣ ତୁମ୍ଭର ।୨।

(ନାନ୍ଦ୍ୟନ୍ତେ ସୂତ୍ରଧାର)

ସୂ - ପାଶ୍ଚାତ୍ ଶିକ୍ଷାର ଆଲୋକରୁ ବର୍ତ୍ତମାନ ନବ୍ୟ ଶିକ୍ଷିତ ମଣ୍ଡଳୀର ଦୃଶ୍ୟକାବ୍ୟାସ୍ୱଦନ ରୁଚି ଏତେ ଦୂର ପରିବର୍ତ୍ତିତ ହୋଇଯାଇଅଛି ଯେ ସେମାନେ ଯାତ୍ରା ବା ଲୀଳାର ଅଭିନୟକୁ ଘୃଣା ଚକ୍ଷୁରେ ଦେଖନ୍ତି । ସେହି ହେତୁ ଅଭିନୀତ ନାଟକର ନାୟକ ଏବଂ ନାୟିକାର ଚରିତ୍ର ନିର୍ମଳ ହେବା ନିତାନ୍ତ ଆବଶ୍ୟକ । ତେବେ ଆମ୍ଭେ କେଉଁ ନାଟକ ଅଭିନୟ କରି ଉପସ୍ଥିତ ଭଦ୍ର ମଣ୍ଡଳୀର ମନରେ ଆନନ୍ଦ ଜନ୍ମାଇ ପାରିବୁ (କିଛି କାଳ ଚିନ୍ତା କରି)

ଉତ୍ତମ । ସତ୍ୟବାଦୀ, ଜିତେନ୍ଦ୍ରିୟ, ଶାନ୍ତ ଉଦାରଚେତା ଅଙ୍ଗାଧୀପ କର୍ଣ୍ଣଙ୍କର ଚରିତ ଅଭିନୟ କଲେ ସଭାସ୍ଥଜନଙ୍କର ମନୋରଞ୍ଜନ କରିପାରିବୁଁ । ଆଉ ବିଳମ୍ବ କରିବା ଅନାବଶ୍ୟକ । ଥରେ ପ୍ରିୟାକୁ ଡାକି ଏହି ବିଷୟ କହି ଦେଇ ଆମ୍ଭେ ନାଟକାଭିନୟରେ ପ୍ରବୃତ୍ତ ହେବୁଁ ।

(ନେପଥ୍ୟାଭିମୁଖେ ଆହ୍ୱାନ କରି) ପ୍ରିୟେ ! ତୁମ୍ଭର ବେଶଭୂଷା ସରିଥିଲେ ଏଣେ ଥରେ ଆସ ।

ନ - (ନମସ୍କାର କରି)

**(ରାଗ ହିନ୍ଦୁସ୍ଥାନି ଭୈରବୀ । ଆଦିତାଳ ।)**

(ଖାତାରା କାଉନାସେ ସାଭା କିଆହେ-ପ୍ରତି)

ନ - ପ୍ରିୟେ ଆସ ବୋଲି କାହିଁକି ଏବେ ଡାକିଲ
ନାଥ ତୁମ୍ଭ ଦାସୀକୁ । କହିଣ ମତେ ସକଳ
ବିଷୟ ଆନନ୍ଦ କର ମୋର ମନକୁ ।୧।

ସୂ - ଜାଣି ପାରିଛି ମୁହିଁ କରି ନପାରେ କୌଣସି
କାର୍ଯ୍ୟ ତୁମ୍ଭ ବିନାରେ । ସେ ହେତୁ ମୁହିଁ
ଡାକିଲି ତୁମ୍ଭଙ୍କୁ କହୁଛି ଶୁଣ ହରଷରେ ।୨।

ନ - ତାନପୂର୍ଣ୍ଣ ଗାନ ମର୍ଦ୍ଦଳ ତାଳ ବୀଣା ବାଜଇ
ଅତି ମଧୁରେ । ପଣ୍ଡିତଗଣ କାହିଁକି
ରଙ୍ଗାଳୟରେ ବସିଅଛନ୍ତି କହ ବାରେ ।୩।

ସୂ - ପ୍ରାଣେଶ୍ୱରି ଦେଖ ଶୁଭେ ସଙ୍ଗୀତ ନଟ ଗାୟକ
ଭଟ୍ଟ ପଣ୍ଡିତ । ନାଟକ ମୋର ଦେଖିବା
ନିମନ୍ତେ ହୋଇ ଅଛନ୍ତି ସମବେତ ।୪।

ନ - ପ୍ରାଣନାଥ ! ତେବେ ତୁମ୍ଭ ଦାସୀକୁ କିସ କରିବାକୁ ହେବ ?

ସୂ - ପ୍ରିୟେ ! ତୁମ୍ଭେ ଶୀଘ୍ର ଯାଇ ନାଟକାଭିନୟର ସକଳ ଆୟୋଜନ କର ।

ନ - ଯେ ଆଜ୍ଞା ।

ସୂ - ଆଚ୍ଛା ! ତୁମ୍ଭେ ନେପଥ୍ୟକୁ ଯିବା ପୂର୍ବେ କୌଣସି ଋତୁକୁ ଲକ୍ଷ୍ୟ କରି ଗୋଟିଏ ସଙ୍ଗୀତ ଗାନ କର ।

ନ - ଆଜ୍ଞା ।

ରାଗ ମାଳବ । ଆଦିତାଳ ।
(ମତେ କାହିଁକି ଥରେ ଆସ ପ୍ରତି)

ଦେଖ କିପରି ଋତୁରାଜ ।
ହୋଇଛି ରଙ୍ଗେ ସଜବାଜ ।
କରିବ କି ବିଚାରଇ ଦିଗ୍‌ବିଜୟ ସେ ଆଜ ।୦।
ଶଙ୍ଖ ବଜାଏ ମଧୁବ୍ରତ ।
ସ୍ତୁତି ପଢ଼ଇ ପରଭୃତ ।
ବଜାନ୍ତି ନାଗରା ଖଗ କୁମ୍ଭାଟୁଆ ସମାଜ ।୧।
ନାଗକେଶର-ଛତ୍ର ଚୂତ- ।
ପୁଷ୍ପ-ଚାମର ପ୍ରତିଭାତ ।
ଚଢ଼ି ମଳୟ-ମରୁତ-ମଦ-ଦ୍ୱିରଦରାଜ ।୨।
କିଂଶୁକାଙ୍କୁଶ ବିକରାଳ ।
ସଜ କେତକୀ ତିକ୍ଷଢେଲ ।
ଧରି ଅଛି ସଙ୍ଗେ ରଣରଙ୍ଗ କୁସୁମରାଜ ।୩।

**ପ୍ରସ୍ତାବନା ।**

**ନାରଦ**

(ସ୍ୱଗତ) ଅଦ୍ୟ ନିତ୍ୟକୃତ୍ୟ ବିଧାନ ସମାପନ କରି ପିତା କମଳଶନଙ୍କ ସେବା କଲାବାଦ କୈଳାସକୁ ଯାଇ ପାର୍ବତୀ ସହ ଭୋଳାନାଥଙ୍କ ଦର୍ଶନ କରି ସାରିଲୁଁ । ବର୍ତ୍ତମାନ ବୈକୁଣ୍ଠକୁ ଗମନ କରି ରମାରମଣଙ୍କ ଦର୍ଶନ କରିବାକୁ ହେବ । ସେ ଆମ୍ଭକୁ ଦେଖିବା ମାତ୍ରେ ଅବଶ୍ୟ କୌଣସି ସମାଚାର ପଚାରିବେ । ପଚାରିଲେ ତାଙ୍କ ଛାମୁରେ କି ବିଷୟ କହିବୁଁ ? (କିଛି କାଳ ଚିନ୍ତା କରି) ହଁ ମନେ ପଡ଼ିଲା । ଅଙ୍ଗ ରାଜ୍ୟାଧୀଶ୍ୱର ସୂତପୁତ୍ର କର୍ଣ୍ଣଙ୍କର ବିଷୟ ଛାମୁରେ ପକାଇବା । ସଂପ୍ରତି କର୍ଣ୍ଣଙ୍କ ପରି ସତ୍ୟବାଦୀ, ନ୍ୟାୟ ପରାୟଣ ଏବଂ ଦାନୀ ଆଉ କେହି କୌଣସିଠାରେ ନାହାନ୍ତି । ଆମ୍ଭେ ଯେତେଠାରେ ଦେଖୁଁ ତେତେ ଠାରେ କେବଳ କର୍ଣ୍ଣଙ୍କ ଦାତୃତ୍ୱ ଘୋଷଣା ଶୁଣୁଁ । ସେ ଜଣେ ଅଦ୍ୱିତୀୟ ଦାନୀ ବୋଲି କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ । ଏପରି ଲୋକଙ୍କ ପ୍ରସଙ୍ଗ ପଡ଼ିଲେ ଶେଷଶାୟୀ କୌତୂହଳାକ୍ରାନ୍ତ ହୋଇ ସବିଶେଷରେ ଶୁଣିବାକୁ ଅବଶ୍ୟ ଇଚ୍ଛା ପ୍ରକାଶ କରିବେ । ବର୍ତ୍ତମାନ ଆମ୍ଭେ ଯାଉଁ ।

●

# ପ୍ରଥମାଙ୍କ

(ପ୍ରଥମ ଦୃଶ୍ୟ )

(ବୈକୁଣ୍ଠ ଶେଷଶାୟୀ ନାରାୟଣ ଓ ଲକ୍ଷ୍ମୀ)

(ନାରଦଙ୍କ ପ୍ରବେଶ)

**ରାଗ ଶ୍ୟାମକଲ୍ୟାଣୀ । ଆଦିତାଳ ।**

(କମଳ ନୟନଂ ପ୍ରତି)

ଶରଣ ରକ୍ଷଣ । କଳୁଷହରଣ । ଜଳଦସୁନ୍ଦର ଶ୍ୟାମ ।
ଜଳଦ ସୁନ୍ଦର ଶ୍ୟାମ । ଜଳଦ ସୁନ୍ଦର ଶ୍ୟାମ ।
ଅସଂଖ୍ୟ ଅନନ୍ତ ନାମ । ପରମ ମୁକତି ଧାମ ।୧।
ଅଭୟ ବରଦ । ମଙ୍ଗଳ ପରଦ । ଭକତ ହୃଦୟ ଦାମ ।
ଭକତ ହୃଦୟ ଦାମ । ଭକତ ହୃଦୟ ଦାମ ।
ପତିତପାବନ ରାମ । ସକଳ ଗୁଣାଭିରାମ ।୨।

ଅଖିଳ ବ୍ରହ୍ମାଣ୍ଡ କର୍ତ୍ତା, ପାତା, ହର୍ତ୍ତା, ବିଧିର ବିଧାତା ନମୋନମଃ ।
ଜଗଜ୍ଜନ କାରିଣୀ, ଦୁଃଖୀ ଦୁଃଖାପହାରିଣୀ, ରମା, ପରମା, ନମୋନମଃ ।

ଲକ୍ଷ୍ମୀ ନାରା - କଲ୍ୟାଣ, ମହାମୁନେ କଲ୍ୟାଣ, ଆପଣ କି ଉଦ୍ଦେଶ୍ୟରେ ଆଗମନ କଲେ ?

ନା - ପ୍ରଭୁଙ୍କ ଚରଣାରବିନ୍ଦ ଦର୍ଶନ ବିନା ଆଉ କି ଉଦ୍ଦେଶ ଥାଇପାରେ ?

ନାରା - ଏହି ଆସନ ଗ୍ରହଣ କରନ୍ତୁ । ଆପଣ ଆଜି କି ଲୋକ ବାର୍ତ୍ତା ଆଣିଅଛନ୍ତି ?

ନା - ଭଗବନ୍, କେତେକ ବର୍ଷ ତଳେ କୁନ୍ତୀଦେବୀ ଅବିବାହ ଅବସ୍ଥାରେ ସୂର୍ଯ୍ୟଙ୍କ ଔରସରେ ଗୋଟିଏ ପୁତ୍ର ପ୍ରସବ କଲେ । ମାତ୍ର ଲଜ୍ଜାପରବଶ ହୋଇ ନବପ୍ରସୂତ ସନ୍ତାନକୁ ମଞ୍ଜୁଷରେ ପୁରାଇ ନଦୀରେ ଭସାଇଦେଲେ । ଉକ୍ତ ପେଟିକା ଚମ୍ପାନଗର ସନ୍ନିହିତ ପୁଳୀନରେ ଆସି ଲାଗିଲା । ସେହି ନଗରବାସୀ ଅଧିରଥ ନାମେ ଏକ ବ୍ୟକ୍ତି ଉକ୍ତ ମଞ୍ଜୁଷ ପ୍ରାପ୍ତ ହୋଇ ଶିଶୁଟିକି ବାହାର କରି ନେଇ ନିଜ ଅପୁତ୍ରିକା ପତ୍ନୀ ରାଧାକୁ ଅର୍ପଣ କଲା । ଅଧିରଥର ପତ୍ନୀ ରାଧା ତାହାକୁ ନିଜ ଗର୍ଭଜାତ ପୁତ୍ରବତ୍ ଲାଳନ

ପାଳନ କରୁଥାଏ । ଶିଶୁଟି କ୍ରମେ କ୍ରମେ ଶଶି-କଳାତୁଲ୍ୟ ନାନାଦି ବିଦ୍ୟାଭ୍ୟାସ କରି ଧର୍ମନୀତି, ରାଜନୀତି, ଶସ୍ତ୍ରବିଦ୍ୟାରେ ନିପୁଣ ହୋଇ ବାହାରିଲା । ରାଜା ଦୁର୍ଯ୍ୟୋଧନ ରାଧେୟର ସୁଗୁଣାବଳୀ ସବୁ ଶୁଣି ପାରି ତାହାକୁ ହସ୍ତିନାକୁ ଡକାଇ ନେଇ ଅଙ୍ଗରାଜ୍ୟ ପ୍ରଦାନ କରିଅଛନ୍ତି । ଅଙ୍ଗାଧିପ କର୍ଣ୍ଣ, ରାଧେୟ ଏବଂ ବସୁସେନ ନାମରେ ଖ୍ୟାତ ।

ଲକ୍ଷ୍ମୀ - ମହାମୁନେ କର୍ଣ୍ଣ ନାମ କିପରି ହେଲା ?

ନାରଦ - ମାତଃ କୁନ୍ତୀଙ୍କ କର୍ଣ୍ଣଦ୍ୱାର ଦେଇ ଜନ୍ମ ହେବାରୁ କର୍ଣ୍ଣ ନାମ ହେଲା ।

ଲ - ମୁନେ ! ସେ ବିବାହ ହୋଇଅଛି ନା ?

ନା - ହଁ ହୋଇଅଛି । ତାହାର ଗୋଟିଏ ପୁତ୍ର । ଭାର୍ଯ୍ୟାର ନାମ ପଦ୍ମାବତୀ ଓ ପୁତ୍ରର ନାମ ବୃଷକେତୁ ।

ଲ - ପୁତ୍ରର ବୟସ କେତେ ?

ନା - ମାତଃ ପ୍ରାୟ ଆଠବର୍ଷ ଥିଲାପରି ଅନୁମାନ ହୁଏ ।

ନାରା - ମହର୍ଷେ ଆଉ କ'ଣ ?

ନା - ଭଗବନ୍ ! ଯୁଦ୍ଧ ବିଶାରଦ କର୍ଣ୍ଣର ପରି ଦାତା ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳରେ କାହାରିକୁ ଦେଖୁ ନାହୁଁ । କର୍ଣ୍ଣ ଯେପରି ପଦ୍ମାବତୀ ମଧ୍ୟ ସେପରି ।

ନାରା - ସତେ ! କର୍ଣ୍ଣ ଏଡ଼େ ଦାନୀ ?

ନା - ଆଜ୍ଞା ! ଆମ୍ଭେ ଯହିଁ ଦେଖୁଁ ତହିଁ କର୍ଣ୍ଣର ଦାତୃତ୍ୱ ଘୋଷଣା ଶୁଣୁଁ ।

ଲ - ଧନ୍ୟ କର୍ଣ୍ଣ ଧନ୍ୟ ପଦ୍ମାବତୀ ।

ନାରା - ମହର୍ଷେ ! ଅଳ୍ପଦିନ ଭିତରେ ଆମ୍ଭେ ଯାଇ କର୍ଣ୍ଣ କିପରି ଦାତା ପରୀକ୍ଷା କରି ଦେଖିବୁଁ ।

ନା - ପ୍ରଭୁଙ୍କ ଇଚ୍ଛା ।

ନାରା - ଅବଶ୍ୟ ପରୀକ୍ଷା କରି ଦେଖିବା ।

ନାରଦ - (କିଛିକାଳାନନ୍ତର) ପ୍ରଭୋ ଆଜ୍ଞା ହେଲେ ଆମ୍ଭେ ଯିବୁଁ ।

ନାରାୟଣ - ଆଚ୍ଛା ! ଆପଣ ଯାଆନ୍ତୁ ।

(ପ୍ରସ୍ଥାନ ଓ ଯବନିକାପତନ)

## ଦ୍ୱିତୀୟ ଦୃଶ୍ୟ

ରାଜସଭା

(କର୍ଣ୍ଣ, ମନ୍ତ୍ରୀ ଓ ବିଦୂଷକ)

କ - ମନ୍ତ୍ରିନ୍ ! ନିମନ୍ତ୍ରିତ ଯୋଗୀ, ତପସ୍ୱୀ, ବ୍ରାହ୍ମଣ, ଅତିଥି, ଅଭ୍ୟାଗତ, ଦୀନ ଦରିଦ୍ର ସମସ୍ତଙ୍କର ସତ୍କାର ଉତ୍ତମରୂପେ କରୁଅଛତ ?

ମ - ମହାରାଜ ! ଛାମୁ କଳ୍ପତରୁ ହୋଇ ଦାନ ଧର୍ମ୍ମ କରୁଥିବା ସ୍ଥଳେ କୌଣସି କଥାରେ କି ଅଭାବ ରହିପାରେ ? ଛାମୁଙ୍କ ଅସାଧାରଣ ବଦାନ୍ୟତାରେ ନିମନ୍ତ୍ରିତ ବ୍ୟକ୍ତି ସମସ୍ତେ ଆଶାତିରିକ୍ତ ସନ୍ତୁଷ୍ଟ ହୋଇ ଛାମୁଙ୍କ ଗୁଣକୀର୍ତ୍ତନ କରି ଚାଲିଯାନ୍ତି ।

ବିଦୂ - ସମସ୍ତଙ୍କର ଉଦର ହୁଏ ପୂରିତ ।
ବିଦୂଷକ ମାରୁଥାଏ ପେଟରେ ହାତ ।

କ - ବୟସ୍ୟ କଣ କହିଲ ?

ବିଦୂ - ମହାରାଜ କିଛି ନୁହେ । ମାତ୍ର ଆଜିକାଲି ମନ୍ତ୍ରୀ କାର୍ଯ୍ୟଟା ବଡ଼ ସହଜରେ କରାଯାଇପାରେ ।

କ - କିପରି ?

ବିଦୂ - ଆଜ୍ଞା କେତେଗୁଡ଼ାଏ ଛନ୍ଦ କଥା କହି ଛାମୁଙ୍କ ଚିତ୍ତ ଭୁଲାଇଲେତ ହେଲା ।

କ - ମୁଁ ସକଳ ବିଷୟ ନିଜେ ଦେଖେ କିଏ କିପରି ଛନ୍ଦ କରିପାରିବ ? ଯାହା ହେଉ ତୁମ୍ଭେ କି କି ଅଭାବ ଦେଖିଅଛ ତାହା ଶୀଘ୍ର କହ । ଏହି କ୍ଷଣି ତାହାର ପ୍ରତିବିଧାନ କରିବାକୁ ଯତ୍ନବାନ୍ ହେବି ।

ବିଦୂ - ମହାରାଜ, ଛାମୁଙ୍କରତ ସଦା ଏହିମାତ୍ର ଚିନ୍ତା ହେଲା "ଦାନ କରିବି", "ଦାନ କରିବି" । ଛାମୁ ଦାନ ଦେଲେ ଅନ୍ୟ ଲୋକେ ଖାଇଗଲେ । କିନ୍ତୁ ତେତ୍ରିଶ କୋଟି ଦେବତାମାନଙ୍କ ମଧ୍ୟରେ ପ୍ରଧାନ ଯେ ଆମ୍ଭେ-ଆମ୍ଭରତ ପେଟ ପୂରିଲା ନାହିଁ ।

କ - ସଖେ ଆପଣଙ୍କ ଉଦର ପୂଜାର ସକଳ ଆୟୋଜନ ଆପଣଙ୍କ ଗୃହକୁ ପ୍ରେରଣ କରାଯାଇଅଛି ।

ବିଦୂ - ଛାମୁ କରିବା କୌଣସି କାର୍ଯ୍ୟରେ କେବେ ତ୍ରୁଟି ନଥାଏ ।

କ - ତେବେ ଆପଣଙ୍କୁ ସତ୍କାର କରିବାରେ ତ୍ରୁଟି ଥିଲା ବୋଲି ଜାଣିଥିଲ ?

ବିଦୂ - ତା ନୁହେ ଯେ ଆଉ କ'ଣ ?

କ - ଆଚ୍ଛା ଆପଣଙ୍କ କଥା ଆଜିକ ଏତିକି ହେଉ । (ମନ୍ତ୍ରୀପ୍ରତି) ମନ୍ତ୍ରିନ୍ ଆଜି ଆସିଥିବା ବ୍ରାହ୍ମଣମାନଙ୍କର ସତ୍କାର ଶେଷ ହୋଇଅଛି ?

ମ - ଆଜ୍ଞା ଶେଷ ହୋଇଅଛି ? (ହରିହର ମହାପାତ୍ର,ସୋମନାଥ ମିଶ୍ର ଓ ଜଗନ୍ନାଥ ମହାପାତ୍ର, ଓଡ଼ି ମାରି ପ୍ରବେଶ)

କ - ବ୍ରାହ୍ମଣ ପଣ୍ଡିତମାନଙ୍କୁ ନମସ୍କାର ।

ହ - ମହାରାଜ ଦୀର୍ଘାୟୁଭବ, ସର୍ବେ ତୃପ୍ତାସ୍ମ ।

ସୋମ - ମହାରାଜଙ୍କର ମଙ୍ଗଳ ହେଉ, ଆମ୍ଭେ ସମସ୍ତେ ଭୋଜନ କରି ଅତ୍ୟନ୍ତ ସନ୍ତୁଷ୍ଟ ହେଲୁଁ ।

ଜଗ - ମହାରାଜ ! ଭୋଜନଟି ଅତି ଭଲ ହୋଇଥିଲା ।

କ - ଆପଣମାନଙ୍କ ଆଶୀର୍ବାଦ ନେଇ ମୁଁ ଅନ୍ତଃପୁରକୁ ଯାଏ । ମନ୍ତ୍ରିନ୍ ଏମାନଙ୍କୁ ଯଥୋଚିତ ଦକ୍ଷିଣା ଦେଇ ପଠାଇଦିଅ ।

ମ - ଯେ ଆଜ୍ଞା ।

(ପ୍ରସ୍ଥାନ ଓ ଯବନିକା ପତନ)

# ଦ୍ୱିତୀୟାଙ୍କ

(ପ୍ରଥମ ଦୃଶ୍ୟ)

(ରାଜା ଓ ମନ୍ତ୍ରୀ ଆସୀନ)

ରା - ମନ୍ତ୍ରିନ୍ ! କାଲି ଆସିଥିବା ବ୍ରାହ୍ମଣମାନଙ୍କୁ ଉତ୍ତମ ରୂପେ ଦକ୍ଷିଣା ଦେଲ ?

ମ - ଆଜ୍ଞା ହଁ ! ସେମାନେ ଯଥୋଚିତ ଦକ୍ଷିଣା ପାଇ ଭାରି ସନ୍ତୁଷ୍ଟ ହୋଇ ମହାରାଜାଙ୍କୁ ଭୂରି ଭୂରି ଧନ୍ୟବାଦ ଦେଇ ଚାଲିଗଲେ ।

ରା - ମନ୍ତ୍ରିନ୍ ! ଆଜି ଦ୍ୱାଦଶୀ, ବେଳ ଆସି ଉଛର ହେଲାଣି, କିଏ ଜଣେ ହେଲେ ବ୍ରାହ୍ମଣ ଆସିଲେ ନାହିଁ ।

ମ - ମହାରାଜ, ମୁ ଏହିକ୍ଷଣି ଅନୁସନ୍ଧାନ କରି ଆସିଛି ଜଣେ ବ୍ରାହ୍ମଣଙ୍କୁ ହେଲେ ଦେଖି ପାରିଲି ନାହିଁ ।

ରା - ଜଣେ ହେଲେ ଆସି ନାହାନ୍ତି ?

ମ - ଆଜ୍ଞା ନା ଆସି ନାହାନ୍ତି ।

ରା - ଫେରି ଥରେ ଯାଇ ସିଂହଦ୍ୱାର ପାଖରେ ଦେଖି ଆସଟି, କେଜାଣି ଏବେ ହେଲେ କିଏ ଆସିଥିବେ ପରା ।

ମ - ଆଜ୍ଞା, ହଁ ଯାଇ ଦେଖି ଆସିବି । (ପ୍ରସ୍ଥାନ)

କ - (ସ୍ୱଗତ) କି ଆଶ୍ଚର୍ଯ୍ୟ ! କେହି ଜଣେ ବ୍ରାହ୍ମଣ ସୁଦ୍ଧା ଆସିଲେ ନାହିଁ । ବ୍ରାହ୍ମଣ ବିନା ଦ୍ୱାଦଶୀ ପାରଣା କିପରି ହେବ ? ପୂର୍ବେ ଦ୍ୱାଦଶୀ ତିଥିରେ ଅନେକ ବ୍ରାହ୍ମଣ ଆସିଥାନ୍ତି- ଆଜି କାହିଁକି ଜଣେ ହେଲେ ଆସି ନାହାନ୍ତି ? ଏହାର କାରଣ କ'ଣ ?

(ମନ୍ତ୍ରିର ପ୍ରବେଶ)

ରା - (ସଚକିତେ) କଣ କିଏ ଆସି ନାହାନ୍ତି ?

ମ - ଆଜ୍ଞା ନା କିଏ ଆସି ନାହାନ୍ତି ?

ରା - ବ୍ରାହ୍ମଣମାନଙ୍କ କୃପା ମୋ ପ୍ରତି କାହିଁକି ଊଣା ହେଲା ? ମୁଁ କି ଅପରାଧ କରିଅଛି କିଛି ଜାଣିପାରୁନାହିଁ । ମନ୍ତ୍ରିନ୍ ଏଥିର କାରଣ କ'ଣ ତୁମ୍ଭେ ଜାଣ ?

ମ - ଆଉ କାରଣ କ'ଣ ଥିବ ? ଆଜିତ ଦ୍ୱାଦଶୀ ବୋଧହୁଏ ବ୍ରାହ୍ମଣମାନେ କୌଣସି ଦାତାଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ରହିଯାଇଥିବେ- ନୋହିଲେ କାହିଁକି ଆସନ୍ତେ ନାହିଁ ।

ରା - (କିଛିକାଳ ତୁନି ହୋଇ) ମନ୍ତ୍ରିନ୍ ହେଟି ଶୁଣ ଦ୍ୱାରଦେଶରେ କୌଣସି ବ୍ରାହ୍ମଣ ବେଦ ଗାନ କରୁଥିଲା ପ୍ରାୟ ବୋଧହୁଏ । କିଏ ଆସିଥିଲେ ଶୀଘ୍ର ଯାଇ ତାଙ୍କୁ ସଙ୍ଗେ ଘେନି ଆସ ।

ମ - ଯେ ଆଜ୍ଞା । (ପ୍ରସ୍ଥାନ)

ରା - (ସ୍ୱଗତ) ଏବେ ଉତ୍କଣ୍ଠିତ ପ୍ରାଣ ଶାନ୍ତ ହେଲା । ବୋଧହୁଏ ମୋର ଅସୀମ ଆତୁରତା ଦେଖି ଈଶ୍ୱର କୃପା କରି ଏହି ଆଗନ୍ତୁକ ବ୍ରାହ୍ମଣଙ୍କୁ ପ୍ରେରଣ କରି ଅଛନ୍ତି ।

### ଦ୍ୱିତୀୟ ଦୃଶ୍ୟ

(ବୃଦ୍ଧ ବ୍ରାହ୍ମଣ ଓ ମନ୍ତ୍ରୀ ପ୍ରବେଶ)

ରା - (ନମସ୍କାର କରି) ଦ୍ୱିଜବର ! ଆପଣ ପଦାର୍ପଣ କରି ଏହି ରାଜ ଭବନ ଏକାବେଳକେ ପାବନ କରି ଅଛନ୍ତି ।

ବ୍ରା - ମହାରାଜ ଆପଣଙ୍କର ଜୟ ହେଉ । ଆପଣ ଦୀର୍ଘଜୀବୀ ହୋଇ ଅଖଣ୍ଡ ରାଜ୍ୟ ଭୋଗ କରନ୍ତୁ । ରାଜେନ୍ଦ୍ର ! ଆମ୍ଭେ କାଲିଠାରୁ ଏକାଦଶୀ ବ୍ରତରେ ବ୍ରତୀ ହୋଇ ଉପବାସୀ ଅଛୁଁ । ପାରଣା ଲାଗି ଛାମୁଙ୍କ ନିକଟରେ ପ୍ରବେଶ ହୋଇଅଛୁଁ ।

ରା - ପ୍ରଭୋ ! ଏ ଦାସ କି କି ଭକ୍ଷ ପଦାର୍ଥ ଆଣିଦେବ ଆଦେଶ କରନ୍ତୁ ।

ବ୍ରା - ସାଧୁ ସାଧୁ ନୃପଶ୍ରେଷ୍ଠ ! ଆପଣଙ୍କ ମଧୁମୟ ମିଷ୍ଟ ବାକ୍ୟରେ ଆମ୍ଭେ ଆପ୍ୟାୟିତ ହେଲୁଁ । ମହାରାଜ ! ଆପଣ ଜଣେ ଦାନଶୀଳ, ସତ୍ୟବାଦୀ, ଦୟାଳୁ, ସୁଶୀଳ, ଶାନ୍ତ, ସରଳ ପ୍ରକୃତି ବିଶିଷ୍ଟ ମହାତ୍ମା ବୋଲି ଆମ୍ଭେ ଦେଶ ଦେଶାନ୍ତରେ ଶୁଣି ଆସିଅଛୁଁ । ଦୀନର ଦୀନତା ନାଶକରି ଆପଣ ଅକ୍ଷୟ ବିମଳ ଯଶ ପ୍ରକାଶ କରି ଅଛନ୍ତି । ହେ ଦୁଃଖୀଦୁଃଖହର୍ତ୍ତା ! ଆପଣ ବାଞ୍ଛିତ ପଦାର୍ଥ ସନ୍ତୋଷ ଚିତ୍ତରେ ଯାଚକକୁ ଦିଅନ୍ତି ବୋଲି ଲୋକ ମୁଖରୁ ଶୁଣିପାରି ଦ୍ୱାଦଶୀ ପାରଣା କରିବା ଲାଗି ଏଠାକୁ ଆସିଅଛୁଁ !

ରା - ଭଗବନ୍ ମୋର ଏଡ଼େ ଭାଗ୍ୟ ଯେ ଆପଣଙ୍କୁ ଭିକ୍ଷା ଦେଇ କୃତାର୍ଥ ହେବି ।

ବ୍ରା - ମହାରାଜ ଆମ୍ଭେ ଜଣେ ତାନ୍ତ୍ରିକ-ମାଂସାଶୀ । ମାଂସ ଭିନ୍ନ ଅନ୍ୟ ଆହାରରେ ଆମ୍ଭର ଅଭିଳାଷ ନାହିଁ । ଏଣୁ ଅଭିଳଷିତ ମାଂସ ପ୍ରଦାନ କରି ସନ୍ତୁଷ୍ଟ କରାଇବେ ।

ମ - (ମନେ ମନେ) ଦ୍ୱାଦଶୀରେ ମାଂସ ଭୋଜନ ।

କ - ଦେବ ! ପକ୍ଷୀ ମାଂସ ନା ମୃଗମାଂସ ? ଆପଣଙ୍କର ଯହିଁରେ ଇଚ୍ଛା ଆଜ୍ଞା ଦିଅନ୍ତୁ ତାହା ଅନୁଷ୍ଠାନ କରାଇଦେବି ।

ବ୍ରା - ଆପଣ ରାଜାଧିରାଜ । ଆପଣଙ୍କର କୌଣସି ବିଷୟରେ ଅଭାବ ନାହିଁ । ମାତ୍ର ଆମ୍ଭେ ଜଣେ ଭିକ୍ଷୁକ ବ୍ରାହ୍ମଣ, କେଜାଣି ଆମ୍ଭ ଅଭିଳଷିତ ମାଂସ ପ୍ରଦାନ କରିବାରେ ଆପଣ ଅସ୍ୱୀକାର କରି ପାରନ୍ତି । ପ୍ରଥମେ ଆପଣ ଆମ୍ଭଠାରେ ଅଭିଳଷିତ ମାଂସ ଦେବାକୁ ପ୍ରତିଜ୍ଞା କରନ୍ତୁ ।

କ - ଭୂଦେବ ! ଏହି ସାମାନ୍ୟ ବିଷୟ ଘେନି ପ୍ରତିଜ୍ଞା କରିବା ଆବଶ୍ୟକ ? ଆପଣ ଯେଉଁ ମାଂସ ଇଚ୍ଛା କରନ୍ତି ତାହା ଦେବାକୁ ପ୍ରସ୍ତୁତ ଅଛି ଶୀଘ୍ର ଆଜ୍ଞା ଦିଅନ୍ତୁ ।

ବ୍ରା - ମହାରାଜ ଯାହାହେଉ ଆପଣ ସତ୍ୟ ନ କଲେ ଆମ୍ଭେ କିଛି କହିବୁଁ ନାହିଁ ।

କ - ଭୂଦେବ ! ଏହି ସାମାନ୍ୟ ବିଷୟ ଘେନି ସତ୍ୟ କରିବାର ପ୍ରୟୋଜନ ମୁଁ କିଛି ଦେଖିପାରୁନାହିଁ ।

ବ୍ରା - ମହାରାଜ ! ସତ୍ୟ କରିବାକୁ ଆପଣଙ୍କର ଇଚ୍ଛା ଅଛିକି ନାହିଁ ଶୀଘ୍ର କହନ୍ତୁ ଆମ୍ଭେ ଅନ୍ୟ ସ୍ଥାନକୁ ଯିବୁ ।

କ - (ମନେମନେ) ଅତିଥିଙ୍କି ନିରାଶ କରିବା ମହାପାପ । ବିଶେଷତଃ ଆଜି ଏହାଙ୍କ ବିନା ଆଉ କିଏ ଆସି ନାହାନ୍ତି, ସତ୍ୟ ନ କଲେ ଏ ଅନ୍ୟ ଦ୍ୱାରକୁ ଚାଲି ଯିବେ । ଚାଲିଗଲେ ଦ୍ୱାଦଶୀ ପାରଣା ହେବ ନାହିଁ । ଲୋକେ ନିନ୍ଦା କରିବେ । କଥାଟା କାଳକାଳକୁ ରହିଯିବ । ସୁତରାଂ ଅବଶ୍ୟ ପ୍ରତିଜ୍ଞା କରିବାକୁ ହେବ । (ପ୍ରକାଶେ) ଭୂଦେବ ! ଆପଣଙ୍କଠାରେ ମୁଁ ସତ୍ୟ କରି କହୁଅଛି ଆପଣ ଯେଉଁ ମାଂସ କହିବେ ମୁଁ ତାହା ଦେବି- ଏତିକି ମାତ୍ର ନୁହେ ଆପଣ ଯାହା ମାଗନ୍ତୁ-ପ୍ରାଣ ପର୍ଯ୍ୟନ୍ତ ମାଗିଲେ ମଧ ମୁଁ ଦେବାକୁ ପ୍ରସ୍ତୁତ ଅଛି ।

ବ୍ରା - ଧନ୍ୟ ଧନ୍ୟ ମହାରାଜ ! ଆପଣଙ୍କ ପ୍ରତିଜ୍ଞା ଧନ୍ୟ ଆପଣଙ୍କ ଦାତୃତ୍ୱ ଧନ୍ୟ । କିନ୍ତୁ ଅଙ୍ଗାଧିପ, ଦେଖନ୍ତୁ ଯେପରି ସତ୍ୟଭଙ୍ଗ-ପାପ ଆପଣଙ୍କୁ ସ୍ପର୍ଶ ନ କରେ ।

କ - ଭୂଦେବ ! ଯେଉଁ ବ୍ୟକ୍ତ ଆପଣା ପ୍ରତିଜ୍ଞା ପାଳନ କରିବାରେ ପଶ୍ଚାତ୍ପଦ ହୁଏ ସେ କି ମନୁଷ୍ୟରେ ଲେଖା ? ବିଶେଷତଃ ରାଜପଦବୀର ଯୋଗ୍ୟ ହୋଇପାରେ ? ଆପଣ ଜାଣିଥାନ୍ତୁ କର୍ଣ୍ଣ ଯେଉଁଦିନ ନିଜ ପ୍ରତିଜ୍ଞା ପାଳନ କରିବାରେ ବିମୁଖ ହେବ ସେହି ଦିନ ତାହାର କିଞ୍ଚିତ୍କାଳ ସ୍ଥାୟୀ ପ୍ରାଣର ଗତି କେବଳ ଜାହ୍ନବୀ ନଦୀ ।

ବ୍ରା - ମହାରାଜ ଏପରି ନ ହେଲେ କି ଆପଣଙ୍କ ନାମ ଦେଶ ଦେଶାନ୍ତରେ ଅଦ୍ୱିତୀୟ ସତ୍ୟବାଦୀ ଏବଂ ଦାତା ବୋଲି ଘୋଷିତ ହେଉଥାନ୍ତା ?

କ - ଭୂଦେବ ! ବେଳ ଗଡ଼ି ଯାଉଅଛି । କେଉଁ ମାଂସରେ ଆପଣଙ୍କ ଇଚ୍ଛା ଶୀଘ୍ର କହନ୍ତୁ ।

ବ୍ରା - ମହାରାଜ ଆମ୍ଭେ ଶୁଣିଅଛୁଁ ଆପଣଙ୍କର ବୃଷକେତୁ ନାମରେ ଆଠ ବର୍ଷର ପୁତ୍ର ଜଣେ ଅଛି ।

କ - ଆଜ୍ଞା ହଁ ।

ବ୍ରା - ମହାରାଜ ତାହାକୁ ଆଣି ଆପଣ ଏବଂ ଆପଣଙ୍କ ମହିଷୀ ପଦ୍ମାବତୀ ଉଭୟେ ବିଶୁଦ୍ଧ ଭାବରେ ସ୍ୱ ହସ୍ତରେ କର୍ତ୍ତରୀ ଧରି ତାହାର ଶିରଚ୍ଛେଦନ କରିବେ । ତାହାର କୋମଳ ମାଂସ ଉତ୍ତମରୂପେ ରନ୍ଧନ କରି ଆମ୍ଭକୁ ଭୋଜନ ସକାଶେ ଦେବେ, ଆମ୍ଭେ ପାରଣା କରିବୁଁ ।

ମ - (କର୍ଣ୍ଣରେ ହସ୍ତ ଦେଇ) ଓଃ ! ଓଃ !

କ - ଭୂଦେବ ! ଏହା ସତ୍ୟ ନା ପରିହାସ ? ଆମ୍ଭେତ ସତ୍ୟ କରିଅଛୁଁ ଆପଣ ଯାହା ମାଗିବେ ଆମ୍ଭେ ତାହା ଦେବୁଁ । ତେବେ ଏପରି ନିଦାରୁଣ ଲୋମହର୍ଷଣ ହୃଦୟ ବିଦାରକ କଥା କହି କାହିଁକି ପରିହାସ କରନ୍ତି ?

ବ୍ରା - ନା ମହାରାଜ ଆମ୍ଭେ ପରିହାସ କରୁନାହୁଁ । ଆମ୍ଭେ ଆମ୍ଭର ମନୋଗତକଥା କହିଅଛୁଁ । ଆମ୍ଭେ ଆପଣଙ୍କୁ ପ୍ରଥମେ ଜଣାଇ ଦେଇଅଛୁଁ ଆମ୍ଭେ ଜଣେ ତାନ୍ତ୍ରିକ ମାଂସାଶୀ । ପକ୍ଷୀ, ମୃଗାଦିର ମାଂସ ଭକ୍ଷଣ କରିଅଛୁଁ । ମାତ୍ର ମନୁଷ୍ୟ ମାଂସ କେବେ ଭକ୍ଷଣ କରିନାହୁଁ । ଅତ୍ୟୁତ୍କୃଷ୍ଟ ସୁଲଳିତ ନରମାଂସର ସ୍ୱାଦ ଗ୍ରହଣ କରିବା ଆଶାରେ ଆପଣଙ୍କୁ ପ୍ରାର୍ଥନା କରିଅଛୁଁ । ଆପଣ ମହାଦାନୀ ଯେ ଯାହା ମାଗିଲେ ତାହା ଦିଅନ୍ତି ବୋଲି ସମସ୍ତେ କହିବାରୁ ଆପଣଙ୍କଠାକୁ ଆସିଲୁଁ । ଅତଏବ ଅଭିଳଷିତ ମାଂସଦେଇ ଆମ୍ଭକୁ ସନ୍ତୁଷ୍ଟ

କରାନ୍ତୁ । ଯଦି କରିବେ ନାହିଁ କହନ୍ତୁ ଆମ୍ଭେ ଅନ୍ୟସ୍ଥାନକୁ ଯିବୁଁ । କିନ୍ତୁ ମନେ ରଖିଥିବେ ଯେ ସତ୍ୟ ଲଂଘନ କଲେ ମହାପାପରେ ପଡ଼ିବାକୁ ହେବ ।

କ - (ସ୍ତମ୍ଭୀଭୂତ ହେବା)

ବ୍ରା - ମହାରାଜ ତୁନିହୋଇ ରହିଲେ କାହିଁକି ?

କ - ପ୍ରଭୋ ! ମୋର ଗୋଟିଏ ନିବେଦନ ଅଛି । ଅପରାଧ ଗ୍ରହଣ ନ କଲେ କହିବି ।

ବ୍ରା - କ'ଣ କହନ୍ତୁ ?

କ - (ଶୋକ ଗଦ୍‌ଗଦ୍ ହୋଇ) ଭୂଦେବ ! ମୁଁ ପତ୍ନୀସହ ନିଜହସ୍ତରେ କିପରି ଆପଣା ପୁତ୍ରର ଶିରଶ୍ଛେଦନ କରିବି ? (ଦୀର୍ଘ ନିଶ୍ୱାସଛାଡ଼ି) ହା ! କି ନିଦାରୁଣ ବ୍ୟାପାର !

ବ୍ରା - ମହାରାଜ ସତ୍ୟପାଶରେ ବଦ୍ଧ ହୋଇ ଏପରି ଦୁଃଖ ପ୍ରକାଶ କରିବା ସତ୍ୟ ଧର୍ମର ବିରୁଦ୍ଧ କାର୍ଯ୍ୟ । ଆପଣ ଶୁଣିଥିବେ ରାଜା ହରିଶ୍ଚନ୍ଦ୍ର କିପରି ସତ୍ୟରକ୍ଷା କରିବା ଲାଗି ନିଜ ସ୍ତ୍ରୀ, ପୁତ୍ର ସର୍ବସ୍ୱ ତ୍ୟାଗ କରିଥିଲେ । ସତ୍ୟ ପଥାବିଲମ୍ବୀ ଲୋକ ସତ୍ୟ ପାଳନ କରିବା ସକାଶେ କଣ କରନ୍ତି ନାହିଁ ? ମହାଦାନୀ ହୋଇ ପୁତ୍ରଠାରେ ଯେବେ ଆପଣଙ୍କର ଏତେଦୂର ମମତା ଅଛି ତେବେ ଆଦୌ ସତ୍ୟ କରି ନ ଥାନ୍ତେ । ଯେଉଁ ବ୍ୟକ୍ତି ପ୍ରଥମେ ସତ୍ୟ କରି ପରେ ପଶ୍ଚାତ୍‌ପଦ ହୁଏ ତାର ଦାନ ଆମ୍ଭେ କଦାପି ଗ୍ରହଣ କରିବୁଁ ନାହିଁ । (ପ୍ରସ୍ଥାନୋନ୍ମୁଖ) ।

କ - ପ୍ରଭୋ ! ମୋହର ଦୋଷ ହେଲା କ୍ଷମାକରନ୍ତୁ । ଆପଣ କିଛିଂ କାଳ ମାତ୍ର ଅପେକ୍ଷା କରନ୍ତୁ । ମୁ ଯାଇ ରାଣୀଙ୍କି ଏ ବିଷୟ କହି ବୃଷକେତୁକୁ ସଙ୍ଗେ ଧରି ହାଜର ହେବି । ଆପଣ ସ୍ନାନାଦି ସମାପନ କରି ଶୀଘ୍ର ଆସନ୍ତୁ ।

ବ୍ରା - ତେବେ ଆମ୍ଭେ ଯାଉଁ । (ପ୍ରସ୍ଥାନ)

କ - ମନ୍ତ୍ରିନ୍ ତୁମ୍ଭେ ଯାଇ ବୃଷକେତୁକୁ ଡାକି ଆଣ ।

ମ - ଯେ ଆଜ୍ଞା । (ପ୍ରସ୍ଥାନ)

କ - (ସ୍ୱଗତ) ହା ବିଧାତା ! ତୁ ଏହା କେତେ ଦିନ ଠାରୁ ପାଞ୍ଚିଥିଲୁ ? ହା ! ବତ୍ସ ବୃଷକେତୁ ତୋର ଶମନ ସଦୃଶ ନିଷ୍ଠୁରପିତା ତୋର ନାଶର ଉପାୟ କରିଅଛି । କିପରି ଏହି ମର୍ମଭେଦୀ ଦାରୁଣ କଥା ରାଣୀଙ୍କଠାରେ କହିପାରିବି ? ସେ ଶୁଣିଲାକ୍ଷଣି କ'ଣ ହୋଇଯିବେ ? ହା ବିଧାତା କି ବିପତ୍ତିରେ ଆଣି ପକାଇଲୁ ।

(ଯବନିକାପତନ) ।

## ତୃତୀୟ ଦୃଶ୍ୟ

(ଅନ୍ତଃପୁର, ରାଣୀ ପଦ୍ମାବତୀ ଓ ସଖୀ ମାଳତୀ)

ପ - ମାଳତି ! ଆଜି ମୋ ମନଟା କାହିଁକି ଚଞ୍ଚଳ ବୋଧ ହେଉଅଛି ? ଦକ୍ଷିଣ ଚକ୍ଷୁ ମଧ୍ୟ ଘନ ଘନ ଡେଉଁଅଛି ।

ମା - ନା ସଖି ! କିଛି ଚିନ୍ତା କର ନାହିଁ । ଏପରି ସମୟେ ସମୟେ ସମସ୍ତଙ୍କର ହେଉଥାଏ । ଏଥିକି ଏଡ଼େ ଭାବନା କାହିଁକି ?

ପ - ଏକ ପ୍ରକାର ଦୁଃଖ ମଧ ଜାତ ହୁଏ । କେଜାଣି ଆଜି ମୋ କପାଳରେ କ'ଣ ଅଛିଟି ?

ମା - ସାମାନ୍ୟ ଆଖି ଡିଆଁରେ ଏଡ଼େ ଆକୁଳ ! ତୁମ୍ଭେ ରାଜମହିଷୀ ହୋଇ ସାମାନ୍ୟ ବିଷୟକୁ ଘେନି ଏତେ ବିଚାରି ବସିଛ ।

ପ - ନା ମାଳତି ! ମୁ ମନକୁ ଯେତେପରି ସ୍ଥିରକଲେ ହେଲେ ସ୍ଥିର ହେଉନାହିଁ । କିପରି ଜଗଦମ୍ବା ମହାରାଜଙ୍କ ଆଉ ବୃଷକେତୁର ସର୍ବ ଶୁଭକରିବେ ।

ମା - ଏ କି ସଖି ଏଡ଼େ କଥା କାହିଁକି କହୁଛ ?

**ରାଗ ହିନ୍ଦୁସ୍ଥାନିଭୈରବୀ । ଆଦିତାଳ ।**

(ଦରଶନଡେରା ପ୍ରତି)

ବାଇ ହେଲନା କି ସତେ ଜୀବସଖି ।
ଶୁଣିଲେ ହେଲେ କେ କହ ହସିବେ ନିକି ? ।୦।
ପରମେଶ୍ୱରଙ୍କ କୃପା ବଳୁ ।
ସବୁ ଶୁଭ ଥିବା ଦେଖି ଦେଖି ।
କି ଭାବିଣ ମନରେ ଏପରି ଅଶୁଭ ।
ବିଚାରିବା ଭଲ ହେଲା କି ? ।୨।
ସମୟେ ସମୟେ କାର ଦକ୍ଷିଣ ।
ନୟନ ଡେଉଁ ଥାଏ ନାହିଁକି ?
ଏ ଅଳପ ବିଷୟ ଧରିଣ ସଜନ ।
ଏ କାତର ଏବେ କାହିଁକି ।୩।

ମହାରାଜ ଆଉ ବୃଷକେତୁ ସର୍ବ ଶୁଭରେ ଥାଉ ଥାଉ ଏତେ ବିଚାର ? ମୋ କଥା ରଖି ତୁନି ରହ । ସେମାନଙ୍କ କିଛି ଅମଙ୍ଗଳ ଘଟିବ ନାହିଁ । ହେଟି ମହାରାଜ ବିଜେ କରୁଅଛନ୍ତି, ମୁ ଯାଏ ।

ପ - (ଦଣ୍ଡାୟମାନ ହୋଇ) ହଁ ସଖି ଯାଅ ।

ମା - ସଖି ! କିଛି ଦୁଃଖ କରିବ ନାହିଁ । ମନକୁ ଆନନ୍ଦ ରଖ । (ପ୍ରସ୍ଥାନ)

(କର୍ଣ୍ଣଙ୍କ ପ୍ରବେଶ)

ପ - (ନମସ୍କାର କରି) ନାଥ ଆଜି ଅସମୟରେ ବିଜେ ହେଲେ ?

କ - ପ୍ରିୟେ କିଛି ନାହିଁ ।

(କର୍ଣ୍ଣ ଓ ପଦ୍ମାବତୀ ବସିବା)

ପ - ଆର୍ଯ୍ୟପୁତ୍ର ଆଜି ଶ୍ରୀମୁଖ ମଳିନ ଦିଶୁଅଛି । ଦ୍ୱାଦଶୀ ପାରଣା ହୋଇନାହିଁ ବୋଲି ପରା ? କେହି ବ୍ରାହ୍ମଣ ଆସି ନାହାନ୍ତି କି ?

କ - ପ୍ରିୟେ କଣ କହିବି ? କହିବାକୁ ଗଲେ ହୃଦୟ ବିଦୀର୍ଣ୍ଣ ହୋଇଯାଏ । ନିଦାରୁଣ ବିଧାତା ଆମ୍ଭମାନଙ୍କର ଅଦୃଷ୍ଟରେ ଅନନ୍ତ ନରକ ଭୋଗ ଲେଖିଅଛି । ସେହି ହେତୁରୁ ଜଣେ ବ୍ରାହ୍ମଣ ଦ୍ୱାଦଶୀ ପାରଣା ଲାଗି ଆସି ମତେ ପ୍ରତିଜ୍ଞା ପାଶରେ ଆବଦ୍ଧ କରିଅଛନ୍ତି ।

ପ - ପ୍ରାଣ ବଲ୍ଲଭ ଆପଣଙ୍କ କଥାର ମର୍ମ୍ମ ମୁଁ କିଛି ବୁଝି ପାରୁନାହିଁ । ଆପଣଙ୍କ ପରି ଜିତେନ୍ଦ୍ରିୟ ବ୍ୟକ୍ତି ପ୍ରତିଜ୍ଞା ପାଳନରେ ମୁଖ ମ୍ଳାନ କରିବା ଅନୁଚିତ । ଯେବେ ସତ୍ୟ କରିଅଛନ୍ତି ତେବେ ପାଳନ କରନ୍ତୁ ।

କ - ପ୍ରିୟେ କିପରି ପାଳନ କରି ପାରିବି ?

ପ - ପ୍ରାଣେଶ୍ୱର ଏଡ଼େ ଅଧୀର କାହିଁକି ? ଆପଣ ସର୍ବଶାସ୍ତ୍ର ବିଶାରଦ ହୋଇ ସତ୍ୟ ପାଳନ କରିବାରେ ଏଡ଼େ କାତର କାହିଁକି ?

କ - ପ୍ରିୟତମେ ବ୍ରାହ୍ମଣର ଅଭିଳଷିତ ପଦାର୍ଥ କିପରି ପ୍ରଦାନ କରି ପ୍ରତିଜ୍ଞା ରକ୍ଷା କରିବି କିଛି ବୁଦ୍ଧି ସ୍ଫୁରୁ ନାହିଁ ।

ପ - ନାଥ କିସ ଦେବାକୁ ପ୍ରତିଜ୍ଞା କରି ଅଛନ୍ତି ? ଶୀଘ୍ର କହନ୍ତୁ ।

କ - ପ୍ରିୟେ ବ୍ରାହ୍ମଣକୁ ଯାହା ଦେବାକୁ ପ୍ରତିଜ୍ଞା କରି ଅଛି ତାହା ତୁମ୍ଭ ଆଗରେ କ'ଣ କହିବି ? ହୃତ୍‌କମ୍ପ ଜାତ ହେଉଅଛି । ବାକ୍ୟ ନିର୍ଗତ ହେଉନାହିଁ । ହାୟ କି ସର୍ବନାଶ ! ଏହି ପାପିଷ୍ଠର ମସ୍ତକରେ ବଜ୍ରାଘାତ କାହିଁକି ହେଲା ନାହିଁ ? (କ୍ରନ୍ଦନ)

ପ - (ସାତୁରେ ଉଠି) ପ୍ରାଣନାଥ ! ଏଡ଼େ ଦୁଃଖ କାହିଁକି ? କିସ ଦେବାକୁ ସତ୍ୟ କରିଅଛନ୍ତି ?

କ - ପ୍ରିୟେ ସେ ଜଣେ ତାନ୍ତ୍ରିକ ମାଂସାଶୀ ବୋଲି କହି ତାହାଙ୍କ ଅଭିଳଷିତ ମାଂସ ଦେବାକୁ ସତ୍ୟ କରାଇଲେ ?

ପ - ତେବେ !

କ - ହା ବିଧାତା ! କେଡ଼େ ଧାର୍ମିକ ହେଲେ ମଧ ମାତା ପିତା କିପରି ନିଜ ପୁତ୍ରକୁ ନିଜ ହସ୍ତରେ ହାଣି ପାରିବେ ? (କ୍ରନ୍ଦନ)

ପ - ହା ବତ୍ସ ବୃଷକେତୁ ! (ଭୂତଳେ ପତନ)

କ - (ନିଜେ ଶୋକାକୁଳିତ ହୋଇ) ପ୍ରାଣେଶ୍ୱରିଶାନ୍ତ ହୁଅ ଶାନ୍ତ ହୁଅ ଦୁଃଖ କର ନାହିଁ ।

ମୋର ବୃଷକେତୁ କାହିଁ ?

**ରାଗ ତୋଡ଼ି । ରୂପକ ତାଳ ।**

(ହାୟ ହାୟ ନାଶିବ ମେରା ପାଲଟ ହୋଗାୟା ପ୍ରତି )

କାହିଁ ନାଥ କାହିଁ ମୋର ନୟନ ସମ୍ପତ୍ତି ? ।
ରଙ୍କରତନ ଗଣ୍ଠିଧନ ମୋ ସକଳ ଗତି ? ।
କାହିଁ ମୋର ବୃଷକେତୁ ଦୁଃଖିସଂଖାଳି ? ।
ମୋ ଜୀବଜୀବ ମୋର ନେତ୍ରପିତୁଳି ।
ଆରେ ମୋର ଗଳାହାର ।
ସୁକୁମାର ଗୁଣଶେଖର ।୧।

କ - (ଉଠାଇ ବସାଇ) ପ୍ରିୟେ କାତର ହେବା ଉଚିତ୍ ନୁହେଁ-(ଶୋକଗଦ୍ଗଦ୍) ଧୈର୍ଯ୍ୟ ଧର ।

ପ - ମହାରାଜ କି ସର୍ବନାଶ କଥା ଶୁଣାଇଲେ ? ଆଉ ସେ କଥା ମୁଖରେ ଧରନ୍ତୁ ନାହିଁ - ହା ବୃଷକେତୁ ! (କ୍ରନ୍ଦନ)

କ - ପ୍ରିୟେ ମୁଁ କ'ଣ କରିବି ? ବ୍ରାହ୍ମଣ ନରମାଂସ ମାଗିବେ ବୋଲି ଜାଣି ନ ଥିଲି । ସତ୍ୟ କରି ଦେଇ ଏବେ ପରାଧୀନ ହୋଇପଡ଼ିଅଛି । ଯାହାହେଉ ପ୍ରତିଜ୍ଞା ପାଳନ ରାଜାର ପ୍ରଧାନ ଧର୍ମ୍ମ ବୋଲି ତୁମ୍ଭେ ମତେ କହୁଥିଲ ଏବେ ତୁମ୍ଭେ ଏଡ଼େ କାତର ହେବା ଉଚିତ୍ କି ?

ପ - ପ୍ରାଣନାଥ ! ଯାହାକୁ ଦଶମାସ କାଳ ଗର୍ଭରେ ଧରିଥିଲି, ଯାହାକୁ ପ୍ରାଣପଣରେ ଲାଳନ ପାଳନ କରି ବଢ଼ାଇଅଛି, ତାହାର ପ୍ରାଣନାଶ ମୁଁ

କିପରି କରି ପାରିବି ? ଏକଥା ସ୍ମରଣ କଲା ମାତ୍ରେ ହୃଦୟ ଫାଟିଯାଏ । ନାଥ ଏକଥା ଆଉ କହନ୍ତୁନା, ମୁ ମାଗିଘେନୁଛି ।

ରାଗ ତୋଡ଼ି । ରୂପକ ତାଳ ।

(ହାୟ ହାୟ ନଶିବ ମେରା ପାଲଟହୋଗାୟା ପ୍ରତି)

ପ୍ରାଣନାଥ ମାଗି ଘେନଇ ଚରଣମୁ ଧରି ।

ମର୍ମ୍ମ ଭେଦିଯାଏ ଆଉ ନ କହ ଏପରି ।

କର୍ଣ୍ଣପାତ ହେଲେ ଛାଡ଼ିଯାଏ ନାଟିକା ।

କୁନ୍ତଘାତ ପ୍ରାୟ ମତେ ଲାଗଇ ଦକା ।

ଆରେ ବିହି ଏହା ତୁହି ।

ଭାଲେ ମୋର ଥିଲୁକି ଲିହି ।୦।

କ - ପ୍ରାଣେଶ୍ୱରି ! ଏହି ଜଗତରେ କେହି କାହାର ସ୍ୱାଧୀନ ନୁହେ । କେବେହେଲେ ଅବଶ୍ୟ ମୃତ୍ୟୁ ଘଟିବ । ସେଥିଲାଗି ସଜ୍ଜନମାନେ ସତ୍ୟରକ୍ଷା ସକାଶେ ନିଜ ନିଜ ପ୍ରାଣ ଦେବାକୁ କୁଣ୍ଠିତ ହୁଅନ୍ତି ନାହିଁ । ପ୍ରିୟେ ତୁମ୍ଭେ ବୁଦ୍ଧିମତୀ, ତୁମ୍ଭକୁ ଆଉ ଅଧିକ କ'ଣ କହିବି ? ଯେପରି ମୋର ସତ୍ୟରକ୍ଷା ହେବ ସେପରି କର ।

ପ - ନାଥ ଆପଣ ଯାହା କହନ୍ତୁ ମୋର ପ୍ରାଣ ଥିବା ଯାଏ ପୁତ୍ର ବୃଷକେତୁକୁ ନାଶ କରି ପାରିବିନାହିଁ । ମୁଁ ଯାଇ ବ୍ରାହ୍ମଣ ଶ୍ରେଷ୍ଠଙ୍କର ଚରଣ ଧରି ବୃଷକେତୁର ଜୀବନ ଭିକ୍ଷାମାଗିବି । ଯଦି ସେ ଅଙ୍ଗୀକାର କରିବେ ନାହିଁ ତେବେ ମୁ ସ୍ୱ ହସ୍ତରେ ଆପଣା ମୁଣ୍ଡକୁ କାଟି ତାଙ୍କ ଚରଣରେ ଉପହାର ଦେବି ।

କ - ପ୍ରିୟେ ! ସତ୍ୟ ରକ୍ଷା କରିବା ଲାଗି ପୃଥିବୀରେ କେତେ ଲୋକ ବିପଦଗ୍ରସ୍ତ ହୋଇଥିଲେ ତୁମ୍ଭେ ଶୁଣିଅଛ । ବଳିରାଜ ସତ୍ୟ ବନ୍ଧ ହୋଇ ରାଜ୍ୟ ଐଶ୍ୱର୍ଯ୍ୟରେ ଜଳାଞ୍ଜଳି ଦେଇ ପାତାଳବାସୀ ହୋଇ ଅଛନ୍ତି । ରାଜା ଦଶରଥ କୈକେୟୀଙ୍କଠାରେ ସତ୍ୟ କରି ପ୍ରିୟ ପୁତ୍ର ରାମଚନ୍ଦ୍ରଙ୍କୁ ବନକୁ ପଠାଇ ଦେଇଥିଲେ । ରାଜା ହରିଶ୍ଚନ୍ଦ୍ର ସତ୍ୟର ଲାଗି ରାଜ୍ୟ, ପୁତ୍ର ଏବଂ ପତ୍ନୀ ପରିତ୍ୟାଗ କରିଥିଲେ । ସେମାନେ ସତ୍ୟ ରକ୍ଷାକରି ପୃଥିବୀରେ ଯେଉଁ କୀର୍ତ୍ତି ରଖି ଦେଇ ଅଛନ୍ତି ତା ତୁମ୍ଭେ ଜାଣ । ଏ ସବୁ ଜାଣି ଶୁଣି ତୁମ୍ଭେ

ଏପରି କହିବାର ଉଚିତ୍ ହେଲାକ ? ଆଉ ବିଳମ୍ବ କରନାହିଁ । ବ୍ରାହ୍ମଣ ସ୍ନାନାର୍ଥେ ଯାଇ ଅଛନ୍ତି । ସେ ଏହି କ୍ଷଣି ଆସି ପହଞ୍ଚିବେ । ଏଣୁ ସତ୍ୟଭଙ୍ଗ-ପାପରେ ମୁଁ ଯେପରି ଲିପ୍ତ ନ ହୁଏ ସେପରି ବିଚାର କର । ମୁଁ ବୃଷକେତୁକୁ ଅନୁସନ୍ଧାନ କରି ଆସିବି । (ପ୍ରସ୍ଥାନ)

ପ - ଜଣେ ବ୍ରାହ୍ମଣର ସନ୍ତୋଷ ଲାଗି ବୃଷକେତୁର ପ୍ରାଣଦାନ, ଆଉ ବୃଷକେତୁକୁ ନିଜ ହସ୍ତରେ ମାରିବାକୁ ପ୍ରତିଜ୍ଞା-ନା ଏପରି କେବେ ହେବ ନାହିଁ । ମୋ ବୃଷକେତୁ ବିନା ମୋତେ ଜଗତ ଶୂନ୍ୟ, ମୋ ବୃଷକେତୁକୁ ଦେଇପାରିବି ନାହିଁ । କଦାପି ଦେଇ ପାରିବି ନାହିଁ । ହେ ପରମେଶ୍ୱର ମୋର ବୃଷକେତୁକୁ ରକ୍ଷାକର ରକ୍ଷାକର ! ହା ବୃଷକେତୁ !! (ଭୂପତନ)

(ଯବନିକାପତନ)

## ଚତୁର୍ଥ ଦୃଶ୍ୟ

(ଗଙ୍ଗାତୀର ଦ୍ୱାଦଶୀ ବ୍ରାହ୍ମଣ ନିକଟରେ ମନ୍ତ୍ରୀ ଓ କେତେକ ନଗର ବାସିଙ୍କ ପ୍ରବେଶ ।)

ମ - (ନମସ୍କାର କରି ) ପ୍ରଭୋ ଯଦି ଦୋଷ ଧରିବେ ନାହିଁ ତେବେ ଛାମୁରେ ଗୋଟିଏ କଥା ନିବେଦନ କରିବି ।

ବ୍ରା - ଯାହା କହିବାକୁ ଅଛି ତାହା ନିଃଶଙ୍କ ଭାବରେ କହ ।

ମ - ଭୂଦେବ ! ଏ ଦାସର ନିବେଦନ ଗ୍ରହଣ କରି ଯୁବରାଜ ବୃଷକେତୁଙ୍କ ଜୀବନ ରକ୍ଷା କରନ୍ତୁ ।

ବ୍ରା - ମନ୍ତ୍ରିନ୍ ତୁମ୍ଭ ରାଜା ଏହି କଥା କହିବାକୁ ତୁମ୍ଭମାନଙ୍କୁ ପଠାଇଅଛନ୍ତି ନା ? ତେବେଯାଇ ତୁମ୍ଭ ରାଜାଙ୍କୁ କହ ଏଠାରେ ଆମ୍ଭେ ଦ୍ୱାଦଶୀ ପାରଣା ନ କରି ଅନ୍ୟ ସ୍ଥାନକୁ ବାହାରିଯିବୁ ।

ମ - ପ୍ରଭୋ ଆମ୍ଭେମାନେ ଏ ସ୍ଥଳକୁ ଆସିବା ମହାରାଜ ଜାଣିନାହାନ୍ତି । ଆମ୍ଭେମାନେ ନିଜ ନିଜ ଇଚ୍ଛାନୁସାରେ ଯୁବରାଜ ବୃଷକେତୁଙ୍କ ପ୍ରାଣ ଭିକ୍ଷା ଶ୍ରୀଚରଣରେ ପ୍ରାର୍ଥନା କରିବାଲାଗି ଆସିଅଛୁ ।

ବ୍ରା - ତେବେ ତୁମ୍ଭେ ତୁମ୍ଭ ରାଜାଙ୍କୁ ସତ୍ୟଭଙ୍ଗ-ମହାପାପରେ ପକାଇ ଦେବାକୁ ନଗରବାସିମାନଙ୍କ ସହିତ ଆସିଅଛୁ ?

ମ - ଭୂଦେବ କ୍ରୋଧ କରନ୍ତୁ ନାହିଁ, କ୍ଷମା କରନ୍ତୁ । ଆପଣ ମନୁଷ୍ୟ ମାଂସ ଭୋଜନ କରିବାକୁ ଚାହାଁନ୍ତି ଯଦି ବୃଷକେତୁଙ୍କ ବଦଳରେ ଅନ୍ୟ କୌଣସି ଲୋକର ମାଂସ ଆଣିଦେଲେ କି ମହାରାଜାଙ୍କ ପ୍ରତିଜ୍ଞା ରକ୍ଷା ହୋଇପାରିବ ନାହିଁ ? ଓ ଆପଣଙ୍କ ଦ୍ୱାଦଶୀ ପାରଣା ହୋଇ ପାରିବ ନାହିଁ ?

ବ୍ରା - ଏକଥା କି କେବେ ହୋଇପାରେ ? ବାଞ୍ଛିତ ପଦାର୍ଥ ବିନା କି ଅନ୍ୟ ପଦାର୍ଥରେ ସନ୍ତୋଷ ଜାତ ହୁଏ ? ଯେ ବ୍ୟକ୍ତି ଅମୃତ-ପ୍ରୟାସୀ ସେ କି ତିକ୍ତ ରସରେ ପରିତୃପ୍ତ ହୁଏ ?

ମ - ପ୍ରଭୋ କ୍ଷମା କରନ୍ତୁ ।

ବ୍ରା - ମନ୍ତ୍ରିନ୍ ଆଉ କିଛି କହନାହିଁ । ତୁମ୍ଭ ରାଜା ସତ୍ୟ ରକ୍ଷା କରନ୍ତୁ । ନୋହିଲେ ସତ୍ୟଭଙ୍ଗ ମହାପାପରେ ଲିପ୍ତ ରହିବେ । ତୁମ୍ଭେମାନେ ଶୀଘ୍ର ଯାଇ ଏକଥା ରାଜାଙ୍କୁ କହ ।

ମ - ଯେ ଆଜ୍ଞା ।

(ପ୍ରସ୍ଥାନ ଓ ଯବନିକା ପତନ)

●

# ତୃତୀୟାଙ୍କ

## ପ୍ରଥମ ଦୃଶ୍ୟ

(ରାଜାଙ୍କ ଅନ୍ତଃପୁର)

(ରାଜା ଓ ରାଣୀ ଉପବେଶନ)

ପ - ମହାରାଜ ! ବୃଷକେତୁ କାହିଁ ?

କ - ବାହାରେ କୋଠାରେ ଖେଳୁଥିବ ପରା, ଯାଇ ତାହାକୁ ଏଠାକୁ ପଠାଇ ଦେବାକୁ ମନ୍ତ୍ରିଙ୍କି କହି ଆସିଅଛି ।

ପ - ଆର୍ଯ୍ୟପୁତ୍ର ! ବୃଷକେତୁର ବଦଳରେ ମୋର ପ୍ରାଣ ସମର୍ପଣ କରିବି ସିନା ବୃଷକେତୁକୁ ଛାଡ଼ିବି ନାହିଁ । ତାହାର ଚନ୍ଦ୍ରମୁଖ କ୍ଷଣେ ନ ଦେଖିଲେ ମୋତେ ଯୁଗେ ହୋଇଯାଏ, ତାହାକୁ ସବୁ କାଳକୁ କିପରି ଦୂର କରିଦେବି ! ହା ବୃଷକେତୁ ତୋତେ ନିଜ ହସ୍ତରେ ମାରିବାକୁ କି ମୁଁ ଚାଣ୍ଡାଳୀ ଜନ୍ମ କରିଥିଲି ? ମୋ କପାଳରେ ଏହା କି ଅର୍ଜି ଆଣିଥିଲି ? (କ୍ରନ୍ଦନ)

କ - ପ୍ରିୟେ ! ପତି, ପୁତ୍ର, ଧନ ଏମାନେ କିଏ କାହାର ନୁହନ୍ତି । ତୁମ୍ଭେ ଏ ସବୁ ଜାଣି ଜାଣି ମିଛେ କାହିଁକି ଦୁଃଖକର ? ପୁତ୍ର ମାୟା ପରିତ୍ୟାଗ କରି ପବିତ୍ର ପରମଧର୍ମ ଉପାର୍ଜନ କରିବା ସକାଶେ ପ୍ରସ୍ତୁତ ହୁଅ । ପରକାଳ ଅବସ୍ଥାର ପ୍ରଧାନ ଆଶ୍ରୟ କେବଳ ଧର୍ମ । ସେ ଧର୍ମ ସଙ୍ଗେ ଯିବ । ଆଉ କିଛି ସଙ୍ଗେ ଯିବ ନାହିଁ । ଏଣୁ ପତିକି ସତ୍ୟପାଶରୁ ମୁକ୍ତ କରି ପତିଭକ୍ତିର ପରିଚୟ ଦିଅ ।

ପ - ମହାରାଜ ! ଏପରି ମର୍ମଭେଦୀ କଥା ବାରମ୍ବାର ମୋତେ ଶୁଣାଅନ୍ତୁନା । ଫେରି କହିଲେ ମୁଁ ଜୀବନ ଧରି ରହି ପାରିବି ନାହିଁ ।

କ - ପ୍ରାଣେଶ୍ୱରି ଆମ୍ଭମାନଙ୍କୁ ଅବଶ୍ୟ ସତ୍ୟପାଳନା କରିବାକୁ ହେବ । ନୋହିଲେ ନରକରେ ଯାଇ ପଡ଼ିବା । ଏତିକି ଏକା ନୁହେଁ ବ୍ରାହ୍ମଣ ଯଦି ଅସନ୍ତୁଷ୍ଟ ହୋଇ ଶାପ ଦିଅନ୍ତି ତେବେ ତୁମ୍ଭେ ଆମ୍ଭେ ବୃଷକେତୁ ସମସ୍ତେ ଭସ୍ମୀଭୂତ ହୋଇ ଯିବା । ଏଥିରେ ଲେଶମାତ୍ର ସନ୍ଦେହ ନାହିଁ । ଅର୍ଥାତ୍ ସତ୍ୟ ପାଳନ ନ କଲେ ଯେପରି ପୁତ୍ର ମୁଖ ସନ୍ଦର୍ଶନ ସୁଖରୁ ବଞ୍ଚିତ

ହେବା ସତ୍ୟ ପାଳନ କଲେ ମଧ୍ୟ ସେହି କଥା ହେବ । ତୁମ୍ଭେ ଭଲରୂପେ ବିବେଚନାକର ।

(ବୃଷକେତୁର ପ୍ରବେଶ)

ବୃ - (ମାତା ପିତାଙ୍କୁ ନମସ୍କାର କରି) ପିତା ! ଆଜି ତୁମ୍ଭମାନଙ୍କର ମୁହଁ ଶୁଖି ଯାଇଅଛି କାହିଁକି ?

କ - ନା ବାବୁ କିଛି ନାହିଁ । ତୋତେ ନ ଦେଖି ଏପରି ବସି ଅଛୁଁ ।

ବୃ - ଏପରି କେବେତ ନାହିଁ । ଆଜି କାହିଁକି ?

କ - ଆହୁରି ଦ୍ୱାଦଶୀ ପାରଣା ହୋଇ ନ ଥିବାରୁ ଏପରି ଦିଶୁଥିବ ପରା ।

ବୃ - (ମା' ଆଡ଼େ ଦେଖି) ମା କାନ୍ଦୁଅଛନ୍ତି କାହିଁକି ? କିସ ହେଲା ମା ? କାହିଁକି କାନ୍ଦୁଅଛ ?

ପ - (ପୋଟାଳିପକାଇ) ବାବୁ ! ଆଉ ମା ମା ବୋଲି ଡାକନା, ମୁ ତୋର ମା ନୁହେଁ । ମୁଁ ଜଣେ ପିଶାଚୀ, ରାକ୍ଷସୀ, ଚାଣ୍ଡାଳୀ ।

**ରାଗ ହିନ୍ଦୁସ୍ଥାନି, ଭୈରବୀ । ଅଟତାଳ ।।**

(ଆହାନାଥା ମୁଢେ କୈସି ପ୍ରତି)

ଆଉ କି ମାତା ତୋହର ମୁହିଁ ।
ଆଉ କି ପୁତ୍ର ମୋହର ତୁହି ।୧।
ଆଜଦିନଠାରୁ ନନ୍ଦନ ।
ଛିଡ଼ିଲା ଋଣ ଅନୁବନ୍ଧନ ।୨।
ମୋପରି ହତଭାଗିନୀ ଜଣେ ।
ନଥିବ କେ ଏ ତିନି ଭୁବନେ ।୩।

ବୃ - କି ମା ଏପରି କାହିଁକି କହୁଅଛ ? କିସ ହେଲା ? ପିତା କିସ ବୋଇଲେ ନା ମୁ କି ଦୋଷ କଲି ?

ପ - ବାବୁ ତୋତେ ମୁଁ କିସ କହିବି ? ଏ ନିର୍ଲଜ୍ଜ ଜୀବନ କାହିଁକି ଯାଉନାହିଁ ।

ବୃ - ମା ଏଡ଼େ ଦୁଃଖ କାହିଁକି ? ତୁମ୍ଭ ଦୁଃଖ ଦେଖି ମୋତେ କାନ୍ଦଲାଗୁଛି । (ରାଣୀଙ୍କ କଣ୍ଠ ପୋଟାଳିବା)

ପ - ବାବୁ ଦାରୁଣବିଧି ମତେ ଯେ ଧନ ଦେଇଥିଲା ଆଜି ସେ ଧନ ଛଡ଼ାଇ ନେଉଅଛି । (କ୍ରନ୍ଦନ)

କ - ପ୍ରିୟେ ଧୈର୍ଯ୍ୟ ଧର । ରୋଦନ କରନାହିଁ ।

ବୃ - ପିତା, ମା କିସ କହନ୍ତି ?

କ - ଜୀବନସର୍ବସ୍ୱ କଣ କହିବି ? ମୋର ଦୁରାଦୃଷ୍ଟ ବଶରୁ ମୁଁ ଆଜି ସତ୍ୟ ପାଶରେ ବର୍ଦ୍ଧହୋଇ-

ପ - ନାଥ ଆଉ କହନ୍ତୁନା ମୋର ହୃଦୟ ବିଦୀର୍ଣ୍ଣ ହୋଇଯାଏ ।

ବୃ - ପିତା ସତ୍ୟପାଶରେ ବଦ୍ଧ ହୋଇ ଏତେ ଦୁଃଖ କାହିଁକି ? ଆପଣ ସତ୍ୟ କରି ଏପରି ଦୁଃଖ କରିବାର ମୁଁ କେବେ ଦେଖି ନାହିଁ ? ଆଜି କି ହେତୁ ଏଡ଼େ ଦୁଃଖ ?

କ - ବାବୁ ମୋ ପରି ଘୋର ପାତକୀ ଆଉ କିଏ ନାହିଁ ନୋହିଲେ କି ଏଡ଼େ ନିଷ୍ଠୁର ସତ୍ୟ କରିବାକୁ କାହାର ସାହସ ବଳିବ ?

ବୃ - ପିତା କି ସତ୍ୟ କରିଅଛନ୍ତି ?

କ - ବତ୍ସ ଆଜି ଦ୍ୱାଦଶୀ ପାରଣା ସକାଶେ ଜଣେ ବୃଦ୍ଧ ବ୍ରାହ୍ମଣ ଏଠାକୁ ଆସିଲେ । ସେ ଜଣେ ନରମାଂସ ପ୍ରିୟ । ମୋତେ ସତ୍ୟ କରାଇ-ତୋ-ର-ମାଂ-ସ ପ୍ରାର୍ଥନା କରିଅଛନ୍ତି ଓଃ କି ମର୍ମ୍ମାହତ ପ୍ରାର୍ଥନା ! ପିତା ମାତା ଆପଣା ପୁତ୍ରକୁ କିପରି ନାଶ କରି ପାରିବେ ?

ପ - ହା ! ବତ୍ସ ବୃଷକେତୁ ହା ! ପ୍ରାଣାଧିକ ପୁତ୍ର ! ତୋତେ ନାଶ କରିବାକୁ କିପରି ହାତ ଯିବ ? ହା ବିଧାତା ତୁ କାହିଁକି ଏଡ଼େ ନିଷ୍ଠୁର ହେଲୁ ? ରେ କଠିନ ହୃଦୟ ତୁ କାହିଁକି ଫାଟି ଯାଉନାହୁଁ ? ରେ ନିର୍ଲଜ୍ଜ ଜୀବନ ତୁ କାହିଁକି ଛାଡ଼ିଯାଉଁ ନାହୁଁ ? (କ୍ରନ୍ଦନ)

ବୃ - ମା ମିଛେ କ୍ରନ୍ଦନ କର କାହିଁକି ? ପିତାମାତାଙ୍କୁ ସତ୍ୟପାଶରୁ ମୁକ୍ତ କରିବା ସତ୍‌ପୁତ୍ରର କର୍ତ୍ତବ୍ୟ କର୍ମ୍ମ ତୁମ୍ଭେ କିଛି ବିଚାର କରନାହିଁ । ମୁଁ ମୋର ପ୍ରାଣ ଦେଇ ଅବଶ୍ୟ ପିତାଙ୍କର ସତ୍ୟ ରକ୍ଷା କରିବି । ଏ ବିଷୟ ଘେନି ଏତେ ଦୁଃଖ ?

**ରାଗ ଆହାରୀ । ଅଟତାଳ ।।**

(ଦୁସ୍ତର ଦୁଃଖାକି ଲିଜୋ ମାୟି ପ୍ରତି)

ସକଳ ଦୁଃଖକୁ ଦୂର କର ।
ଜନନି ଗୁହାରି ଶୁଣି ମୋହର ।୦।

ବିଧିର ଲେଖନ କିଏ କରିବ ଆନ ।
ଯାହା ଥିବ ତାହା ହେବ ଘଟନ ।
ଭାବିଲେ କିସ ହେବ ଶଏ ଥର ।୧।
ସତ୍ୟ ନ ପାଳିଲେ ନରକରେ ପତନ ।
ହେବା ଆମ୍ଭେମାନେ ଏହେତୁ ଘେନ ।
ମମତା ମୋରଠାରୁ ତ୍ୟାଗ କର ।୨।
ପିତାଙ୍କ ପ୍ରତିଜ୍ଞା କରି ମାତ ପାଳନ ।
ରନ୍ଧନ  କରି ମୋ ମାଂସ ବହନ ।
ହରଷେ ଦେଇ ତୋଷ ଦ୍ୱିଜବର ।୩।

ପ - ବାବୁ ଆଉ ସେ କଥା କହନା, ଶୁଣିଲେ ହୃଦୟ ଫାଟି ଯାଉଅଛି ।

ବୃ - ମା ଏପରି କାହିଁକି କହୁଅଛ ? ଆଜି ମୋର ବଡ଼ ସୁଦିନ । ଆଜି ମୋର ଜୀବନ ସାର୍ଥକ ହେବ । ମୁଁ କେତେ ପୁଣ୍ୟ କରି ନ ଥିଲେ ମୋର ମାଂସ ଜଣେ ବ୍ରାହ୍ମଣ ଖାଇବାକୁ ଇଚ୍ଛା କରିଅଛନ୍ତି ?

ପ - ବାବୁ ତୁ ବାଳୁତ, ତୁ ଆମ୍ଭ ମନର ବାଧା ନ ଜାଣି ଏପରି କହିଦେଉ । ତୋତେ ମାଗି ଘେନୁଅଛି । ସେ କଥା ଆଉ ତୁଣ୍ଡରେ ଧରନା । ଶୁଣିଲେ ହୃଦୟ ବିଦୀର୍ଣ୍ଣ ହୋଇଯାଏ ।

ବୃ - ମା ବୃଥା କାହିଁକି ଶୋକ କରୁଅଛ ? ତୁମ୍ଭେ କିଏ ? ମୁ କିଏ ? ମମତା ରଖିବାର କେବଳ ଭ୍ରମ । ମାଟିର ଶରୀର କେବେହେଲେ ମାଟିରେ ମିଶିଯିବ । ପିତା, ମାତା, ପୁତ୍ର, ବନ୍ଧୁ, ଏମାନେ କିଏ କାହାର ନୁହଁନ୍ତି । ପ୍ରାଣ ଯିବା ସମୟରେ କିଏ ସଙ୍ଗେ ଯିବେ ନାହିଁ । କେବଳ ଧର୍ମ୍ମ ମାତ୍ର ସଙ୍ଗେ ଯିବ । ମା ତୁମ୍ଭଠାରେ ମୁଁ ଅଧିକ କିସ କହିବି ? ମୋର ଏ ଦେହ ବ୍ରାହ୍ମଣକୁ ଦେଇ ମତେ ସ୍ୱର୍ଗ ମିଳିଲା ପରି କର ଓ ପିତାଙ୍କ ସତ୍ୟ ରକ୍ଷା କର ।

କ - ଧନ୍ୟ ବତ୍ସ ବୃଷକେତୁ । ତୋର କଥାଶୁଣି ମୋର ପରମଜ୍ଞାନ ଜାତ ହୋଇଅଛି । (ରାଣି ପ୍ରତି) ପ୍ରିୟେ ଅଜ୍ଞଲୋକପରି ବୃଥା ଦୁଃଖ କର ନାହିଁ । ଯଥାର୍ଥ ଏହି ସଂସାରରେ କେହି କାହାର ନୁହନ୍ତି, କିଛି ସ୍ଥିର ନୁହେ କେବଳ ଧର୍ମ୍ମ ମାତ୍ର ଚିରସ୍ଥାୟୀ । ଏଣୁ ଏସବୁ ବୁଝି ବୁଝି ଆଉ ବିଳମ୍ବ କରିବା ଉଚିତ୍ ନୁହେ । ବେଳ ଉଚ୍ଛୁର ହେଉଅଛି, ବ୍ରାହ୍ମଣ କ୍ଷୁଧାରେ ଆର୍ତ୍ତ ହେଉଥିବେ । ଚାଲ ବୃଷକେତୁକୁ ଧରି ତାଙ୍କଠାକୁ ଯିବା ।

ପ - ଆର୍ଯ୍ୟ ! ମୋର ପାଦ ଚଳୁନାହିଁ । ମୋତେ ସବୁ ଅନ୍ଧକାର ଦିଶୁଅଛି । ମୁଁ କିପରି ଯିବି ?

କ - ମୋର ହସ୍ତଧରି ଆସ । ଆଉ ବିଳମ୍ବ କର ନାହିଁ ।

ପ - ହା ପରମେଶ୍ୱର, ହା ବୃଷକେତୁ !

(ପ୍ରସ୍ଥାନ ଓ ଯବନିକାପତନ)

## ଦ୍ୱିତୀୟ ଦୃଶ୍ୟ

(ସିଂହଦ୍ୱାର)

(ବ୍ରାହ୍ମଣ ଏକାକୀ ଆସୀନ)

ବ୍ରା - (ସକ୍ରୋଧେ) କାଲିଠାରୁ ଉପବାସରେ ଅଛୁଁ । ଆଜି ଆହୁରି ଦ୍ୱାଦଶୀ ପାରଣା ହୋଇନାହିଁ । ସ୍ନାନାଦି ସମସ୍ତ ନିତ୍ୟକୃତ୍ୟ ସମାପନ କରି ଏହିଠାରେ ବସିଅଛୁଁ । କ୍ଷୁଧାରେ ଗର୍ଭ ଜଳି ଯାଉଅଛି । ବେଳ ଦୁଇପ୍ରହର ହେଲାଣି । ଆଉ କେତେ ଅପେକ୍ଷା କରିବୁଁ ? କାହାକୁ ଦେଖିଲେ ହେଲେ ଆମ୍ଭେ ଅନ୍ୟ ସ୍ଥାନକୁ ବାହାରି ଯିବୁଁ ବୋଲି କହିଦିଅନ୍ତୁ ।

(କର୍ଣ୍ଣ, ପଦ୍ମାବତୀ ଓ ବୃଷକେତୁଙ୍କ ପ୍ରବେଶ)

କ - ଭଗବନ୍ ନମସ୍କାର ! (ସମସ୍ତଙ୍କ ପ୍ରଣାମ)

ବ୍ରା - ମହାରାଜ ବେଳ ଗଡ଼ିଗଲାନି । କାଲିଠାରୁ ଉପବାସ । ଜଠରାଗ୍ନି ଜଳିଯାଉଅଛି । ଏତେ ବିଳମ୍ବ କରିବା ଆପଣଙ୍କ ପକ୍ଷେ ଉଚିତ୍ ହେଲା ? ଯଦି ସତ୍ୟ ପାଳନ କରିବାକୁ ଇଚ୍ଛା ନ ଥିଲା ତେତେବେଳେ କହିଥିଲେ ଆମ୍ଭେ ଅନ୍ୟ ସ୍ଥାନକୁ ଯାଇ ନଥାନ୍ତୁ ? ଆପଣ ଯାଇ ଅନ୍ତଃପୁର ଭିତରେ ରହିଲେ ଆମ୍ଭେ ସିଂହଦ୍ୱାରଠାରେ ରହିଲୁଁ । ଏହା କି ଆପଣଙ୍କର ଦାତାପଣ ? ଏହି ହେତୁରୁ କି ଲୋକେ ଆପଣଙ୍କୁ ମହାଦାନୀ କହନ୍ତି ?

କ - ପ୍ରଭୋ କ୍ଷମା କରନ୍ତୁ । ପୁତ୍ରକୁ ଖୋଜି ଆଣିବାରେ ବିଳମ୍ବ ହେଲା ।

ବୃ - ପିତା ଅତିଥି ସତ୍କାର କରିବାରେ ଏତେ ବିଳମ୍ବ କାହିଁକି ? ମା ଏପରି ଆନନ୍ଦ ସମୟରେ ଦୁଃଖ କାହିଁକି ? ଶୀଘ୍ର ମୋର ଭୂଷଣ ସବୁ ଫେଇ ଦେଇ କଣ୍ଠରେ ତୁଳସୀମାଳ ପକାଇ ଦିଅ । ଆଉ ବିଳମ୍ବ କର ନାହିଁ । ବ୍ରାହ୍ମଣ କ୍ଷୁଧାରେ ବାଧା ପାଉଅଛନ୍ତି ?

ପ - ବସ୍ସ ମୁ କିପରି ତୋର ଭୂଷଣ ସବୁ କାଢ଼ି ନେବି ? କିପରି ତୋ ଗଳାରେ ତୁଳସୀମାଳା ପିନ୍ଧାଇବି ? ମୋ ହାତ କିପରି ଯିବ ? ହା ବିଧାତା ଏହା କରିବାକୁ କି ଏ ପୋଡ଼ା ହାତ ମତେ ଦେଇଥିଲୁ ? ହେ ପରମେଶ୍ୱର ଏ ଅସହ୍ୟ ଯନ୍ତ୍ରଣାରୁ ରକ୍ଷାକର । (କ୍ରନ୍ଦନ)

ବୃ - ମା ଶୁଭ କାର୍ଯ୍ୟରେ ଦୁଃଖ କାହିଁକି ? ମା ମୁ ଶୁଣିଅଛି ବ୍ରାହ୍ମଣ ସନ୍ତୁଷ୍ଟ ହେଲେ ହରି ସନ୍ତୁଷ୍ଟ ହୁଅନ୍ତି । ବ୍ରାହ୍ମଣ ଯେଉଁ ପଦାର୍ଥ ପାଏ ହରି ମଧ୍ୟ ସେହି ପଦାର୍ଥ ପାଆନ୍ତି । ବ୍ରାହ୍ମଣ ମୁଖରେ ହରିଙ୍କ ଆହାର । ମା ଦେଖ ବ୍ରାହ୍ମଣ କିପରି ମାନ୍ୟ ଅଟନ୍ତି । ତାଙ୍କୁ ମୋର ଛାର ମାଂସ ଦେବାକୁ ଏତେ ଦୁଃଖ କାହିଁକି ? ବ୍ରାହ୍ମଣ ତୃପ୍ତ ହେଲେ ହରି ତୃପ୍ତ ହେବେ ଏହାକି ଆମ୍ଭମାନଙ୍କ ପକ୍ଷରେ ଭାଗ୍ୟର ବିଷୟ ନୁହେଁ ?

ପ - ପ୍ରଭୋ-

**ରାଗ ଖରହରପ୍ରିୟା । ଆଦିତାଳ ।**

(ତାରାଦିର ମେରି ପ୍ରତି)

ତୁମ୍ଭ ପାଦେ ମୋର ଲକ୍ଷେ ନମସ୍କାର ।
ମାଗି ମୁ ଘେନଇ ପାଦେ ତୁମ୍ଭର ।୦।
ଆହେ ମହୀସୁର । ଏ ଅଭାଗିନୀର ।
ଏକଇ ମାତର ଅଟଇ କୁମର ।୧।
ସେହି ଏକା ଗତି । ସକଳ ସମ୍ପତ୍ତି ।
ତାର ବିନା ମତେ ଶୂନ୍ୟ ଏ ସଂସାର ।୨।
ତା ତୁଳରେ ସ୍ୱର୍ଣ୍ଣ । ନୋହିଲେ ରତନ ।
ଦେବି ପଛେ ପ୍ରଭୋ ତାକୁ ରକ୍ଷା କର ।୩।
ଯଦି ନର ମାଂସ । ତୁମ୍ଭ ଅଭିଳାଷ ।
ଅର୍ପିବି ମୁଁ ନିଜ- ମାଂସ ଶ୍ରୀପୟର ।୪।

ବ୍ରା - ମହିଷି ! ଆମ୍ଭେ ଯେଉଁ ମାଂସ ଇଚ୍ଛା କରୁଅଛୁଁ ତାହା ବିନା ଅନ୍ୟ ମାଂସ ସ୍ପର୍ଶ କରିବୁଁ ନାହିଁ । ଯଦି ତାହା ଦେବାକୁ ତୁମ୍ଭେମାନେ ଅନିଚ୍ଛୁକ ତେବେ କହ ବାହାରି ଯିବୁଁ ।

ପ - ପ୍ରଭୋ ! ଶ୍ରୀଚରଣରେ ମୁ ମାଗି ଘେନୁଅଛି କୃପା କରି ପୁତ୍ରଦାନ କରନ୍ତୁ ।

ବ୍ରା - ରାଜ୍ଞି ! କ୍ଷୁଧାରେ ଆମ୍ଭର ଜଠରାଗ୍ନି ଅସହ୍ୟ ହୋଇ ଜଳି ଉଠୁଅଛି । କୋମଳ ନରମାଂସରେ ଆମ୍ଭର ଇଚ୍ଛା ବଳିଅଛି । ଅନ୍ୟ କାହାକୁ ମାଗିଲେ ଦେବେ ନାହିଁ ବୋଲି ଏଠାରେ ଭିକ୍ଷା କରିଅଛୁଁ । ତୁମ୍ଭଙ୍କୁ ଆମ୍ଭେ କିପରି ଦାନ କରିବୁଁ ? ବିଶେଷତଃ ବ୍ରାହ୍ମଣ ଯେ ସେ ଭୋଜନପ୍ରିୟ । ଆପଣା ଗର୍ଭକୁ ପ୍ରଥମେ ସନ୍ତୁଷ୍ଟ କରାଇ ତା ବାଦ ସବୁ କଥା ଦେଖୁଥାଏ ।

ବୃ - ମା ଶୁଭକାର୍ଯ୍ୟରେ ଏତେ ବିଳମ୍ବ କାହିଁକି ? ବ୍ରାହ୍ମଣ କ୍ଷୁଧାରେ ପୀଡ଼ିତ ଥିବେ ଆଉ ବିଳମ୍ବ କରିବା ଉଚିତ୍ ନୁହେଁ ।

କ - ପ୍ରିୟେ ଆଉ ବିଳମ୍ବ କଲେ ଲାଭ କ'ଣ ?

ପ - (ବୃଷକେତୁର ଅଳଙ୍କାର କାଢ଼ିବା ଓ ବେକରେ ତୁଳସୀମାଳା ଦେବା) ରେ ଦାରୁଣବିଧି ! ମୋ ଜୀବନ ସର୍ବସ୍ୱର ଏହି ବେଶ ଦେଖିବାକୁ କି ମୋ କପାଳରେ ଲେଖିଥିଲୁ ?

ବ୍ରା - ମହାରାଜ ! ସନ୍ଧ୍ୟା ସମୟରେ ଅତିଥିକି ଭୋଜନ କରାଇବେ ? ଆପଣ ଦ୍ୱାଦଶୀ ପାରଣା ଏହିପରି ଏକା କରନ୍ତି ?

କ - (କର୍ତ୍ତଧରି) ପ୍ରିୟେ ଆସ ସାବଧାନ ହୋଇ ଅନ୍ୟ ପାଖ ଧର ।

ବୃ - (ମାତା ପିତା ଓ ବ୍ରାହ୍ମଣଙ୍କୁ ନମସ୍କାର କରି ହରି ସ୍ମରଣ କରିବା)

**ରାଗ ଶାହାନା । ଆଦିତାଳ ।**

(ଶ୍ରୀଧରା ରମାବରା ପ୍ରତି)

ଶ୍ରୀଧର ପରାତ୍ପର ହରି । କରୁଣା ବରୁଣା-
ଳୟ ଲୋକତାରଣ । କମଳଚରଣ
ସର୍ବକାରଣ । ତାର ଭୟହାରି ।୦।
ଏକମାତ୍ର ପ୍ରାଣସଖା କୃପାସିନ୍ଧୁ ହେ । ଚିଦାନନ୍ଦ
ବିଶ୍ୱବନ୍ଧ୍ୟ ଦୀନବନ୍ଧୁ ହେ । ଦୁର୍ବଳର ବଳ ।
ପୁଣ୍ୟମୁରତି ଅଗତିରଗତି ସତ୍ୟ ଜ୍ୟୋତି ସର୍ବ ପାପ ହରି ।୧।
ସୃଷ୍ଟି ସ୍ଥିତି ଲୟକାରି ଆଦିଭୂତ ହେ । ନିର୍ବିକଳ୍ପ ନିର୍ବିକାର । ବ୍ରହ୍ମରୂପି ହେ ।
ସଦୟ ହୃଦୟ ମୁଁ ମନ୍ଦମତି । ବାଳକପ୍ରତି । ସୃଷ୍ଟିପତି ବାରେ ଦୟା କରି ।୨।

କ - ପ୍ରିୟେ ଆସ ଶୀଘ୍ର କର୍ତ୍ତଧର ।

ପ - (କର୍ତ୍ତଧରି) ରେ କର୍ତ୍ତ ! ବିଧାତା ମୋ ପ୍ରତି ବକ୍ର ହୋଇଅଛି ବୋଲି କି ତୁ ମଧ୍ୟ ବକ୍ର ହୋଇଅଛୁ ? ରେ କର୍ତ୍ତ କଠିନ ବୃକ୍ଷ କାଟିବାକୁ ତୁ ହୋଇଅଛୁ

ଦୁଗ୍ଧ ପୋଷ୍ୟ ବାଳକକୁ କାଟିବାକୁ ନୁହେ । ରେ ଦାରୁଣବିଧି ନିଜ ହସ୍ତରେ ପ୍ରାଣ ନାଶ କରାଇବାକୁ କି ଦଶମାସ କାଳ ମୋ ଗର୍ଭରେ ଧରାଇଥିଲୁଁ ? ହା ବୃଷକେତୁ ହା ମୋ ଜୀବନ ସର୍ବସ୍ୱ ! (କ୍ରନ୍ଦନ)

ବ୍ରା - ମହାରାଜ ଏପରି ଆଉ କେତେ ବିଳମ୍ବ କରିବ ? ଆମ୍ଭେ କ୍ଷୁଧାରେ କେତେ କାଳ ଅପେକ୍ଷା କରି ବସିଥିବୁଁ ?

କ - ପ୍ରିୟେ କ୍ରନ୍ଦନ କର ନାହିଁ ସାବଧାନ ହୁଅ ।

ବୃ - ମା ଶାନ୍ତ ହୁଅ, ମନକୁ ଆଣ୍ଟକର ।

କ - ବାବୁ ଇଷ୍ଟଦେବତାଙ୍କୁ ସ୍ମରଣକର ।

ବୃ - ପିତା ଏହି ବ୍ରାହ୍ମଣଙ୍କ ବିନା ମୋର ଇଷ୍ଟଦେବତା ଆଉ କିଏ ନାହିଁ । ମୁଁ ତାଙ୍କ ଚରଣାରବିନ୍ଦ ସ୍ମରଣ କରୁଅଛି ତୁମ୍ଭେ ତୁମ୍ଭ କାର୍ଯ୍ୟ କର ।

ପ - ହା ବିଧାତା ଏହା କି ମୋ ଭାଲପଟରେ ଲେଖିଥିଲୁଁ । ହା ବୃଷକେତୁ ! ହା ମହାରାଜ ।

କ - ପ୍ରିୟେ ସାବଧାନ କର୍ତ୍ତ ଲାଗୁ । (ବୃଷକେତୁର ମସ୍ତକ ଭୂପତନ) ।

ବ୍ରା - ଧନ୍ୟ କର୍ଣ୍ଣ ମହାବୀର ଧନ୍ୟ ହେ ରାଜନ ।
ସହଜେ କରିଲ ତୁମ୍ଭେ ପ୍ରତିଜ୍ଞା ପାଳନ ।
ଧନ୍ୟ ବୃଷକେତୁ ଧନ୍ୟ ପଦ୍ମାବତୀ ସତୀ ।
ସନ୍ତୋଷ କରାଇଲ କ୍ଷୁଧାର୍ତ୍ତ ଅତିଥି ।

କ - ଧନ୍ୟ ପୁତ୍ର ବୃଷକେତୁ ସ୍ୱକୁଳ ନନ୍ଦନ ।
ତୋର ହେତୁ ହେଲା ଆଜି ପ୍ରତିଜ୍ଞା ପାଳନ ।

ବ୍ରା - ମହାରାଜ ଏଥର ବୃଷକେତୁର ମାଂସ ରାଣୀଙ୍କ ସ୍ୱହସ୍ତରେ ରନ୍ଧନ କରାଇ ଆମ୍ଭକୁ ଉତ୍ତମରୂପେ ଭୋଜନ ଦିଅନ୍ତୁ ।

କ - ଯେ ଆଜ୍ଞା । (ରାଜା ରାଣୀ ବୃଷକେତୁର ଶବ ଧରି ପ୍ରସ୍ଥାନ)

ବ୍ରା - (ସ୍ୱଗତ) ସଂପ୍ରତି ରାଣୀ ପଦ୍ମାବତୀ ବୃଷକେତୁର ଛିନ୍ନ ମସ୍ତକ ଧରି ପାକଶାଳାରେ ରୋଦନ କରିବେ । ଏବେ ରାଜାଙ୍କଠାକୁ ବାର୍ତ୍ତା ପଠାଇବା କି ''ଆପଣ ନିଜେ ରାଣୀଙ୍କ ନିକଟରେ ଥାଇ ବୃଷକେତୁର ମସ୍ତକ ମାଂସରେ ଉତ୍ତମ ବ୍ୟଞ୍ଜନ ପ୍ରସ୍ତୁତ କରାଇବେ'' । ନୋହିଲେ ଦାନ ପରୀକ୍ଷା ଶେଷ ହେବ ନାହିଁ । (ପ୍ରସ୍ଥାନ ଓ ଯବନିକାପତନ) ।

## ତୃତୀୟ ଦୃଶ୍ୟ
### (ରନ୍ଧନଶାଳା)

(ପଦ୍ମାବତୀ ବୃଷକେତୁର ମସ୍ତକ ଧରି ବିଳାପ କରିବା)

ପ - ବତ୍ସ ବୃଷକେତୁ ଆଉ କି ଏ ହତଭାଗିନୀକି ମା ବୋଲି ଡାକିବୁ ନାହିଁ ? କି ବାବୁ ତୁନି ହୋଇ ରହିଅଛୁ ? ବାବୁ କଥା କାହିଁକି କହୁନାହୁଁ ? ଜୀବନସର୍ବସ୍ୱ ମୁ କାନ୍ଦିଲେ ତୁ ଧାଇଁ ଆସି କେତେ କଥା କହି ମତେ ବୋଧ କରୁଥାଉ ଆଜି ମୁ ଏତେ କାନ୍ଦୁଅଛି ପଦେ ହେଲେ କଥା କାହିଁକି କହୁନାହୁଁ ? ରେ ଜୀବନନିଧି ମୋତେ ଏକାକିନୀ କରି ତୁ କୋଆଡ଼େ ଛାଡ଼ିଗଲୁ ?

**(ରାଗ ହିନ୍ଦୁସ୍ଥାନିଭୈରବୀ । ରୂପକତାଳ ।। )**

କାହିଁ ଗଲୁ ଆହା ମୋ ସକଳ ସାହା ।
ମୋ ଗଣ୍ଠିସୁନା ମୋ ପରାଣ ରୁହା ।୧।
ମୋ ନୟନକାରା ଆନନ୍ଦ ପସରା ।
କରି ଦେଲୁ ନିଶି ଦିବସ ଅସରା । ୨।
କେ ମୋତେ ଡାକିବ ମା ବୋଲି ଭାଷିବ ।
ଖେଳି ବୁଲି ଆସି କେ କୋଳେ ବସିବ ।୩।

ରେ ନିର୍ଲଜ୍ଜ ପ୍ରାଣ ବୃଷକେତୁକୁ ହରାଇ ତୁ କିପରି ରହିଅଛୁ ? ରେ ପାଷାଣ ହୃଦୟ (ହୃଦୟରେ କରାଘାତ କରି) ତୁ କାହିଁକି ଫାଟି ଯାଉ ନାହୁଁ ? ହା ବିଧାତା ମୋ ଲଲାଟରେ ଏ ଦୁଃଖ କି ଲେଖିଥିଲୁ ? କନ୍ଦନ

(କର୍ଣ୍ଣଙ୍କ ପ୍ରବେଶ)

କ - (ସ୍ୱଗତ) ବ୍ରାହ୍ମଣ କିପରି ଜାଣିଲେ ? ସେ କଞ୍ଚୁକୀଦ୍ୱାରା ଯେଉଁ ବାର୍ତ୍ତା ପଠାଇଲେ ତାହା ସତ ହେଲା । ହେଟିତ ରାଣୀ ବୃଷକେତୁର ମସ୍ତକ ଧରି ରୋଦନ କରୁଅଛନ୍ତି । (ନିକଟକୁ ଯାଇ ପ୍ରକାଶ୍ୟେ) ପ୍ରିୟେ ଏକି ? ତୁମ୍ଭେ କି ଆତ୍ମବିସ୍ମୃତ ହୋଇଅଛ ? ବ୍ରାହ୍ମଣକୁ ପୁତ୍ରରତ୍ନ ଦାନ କରି ଛିନ୍ନ ମସ୍ତକ ଲୁଚାଇ ରଖି ଦତ୍ତାପହରଣ-ପାପରେ ଲିପ୍ତ ହୁଅ କାହିଁକି ? ଏପରି କରି ଚିରକାଳ ନରକ ଯନ୍ତ୍ରଣା ସହିବା କି ଭଲ ? ଶାନ୍ତ ହୁଅ । ସେ ମସ୍ତକ ମଧ୍ୟ ନେଇ ଉତ୍ତମ ବ୍ୟଞ୍ଜନ ରନ୍ଧନ କର ।

ପ - ମହାରାଜ ! ଧନ୍ୟ ଆପଣଙ୍କ କଠିନ ହୃଦୟ ! ଯାହାକୁ ଦଣ୍ଡେ ନ ଦେଖିଲେ ଜଗତଯାକ, ଅନ୍ଧାର ଦିଶେ ତାହାର ଅଭାବରେ କିପରି ପ୍ରାଣ ସ୍ଥିରହୋଇ ରହିପାରିବ ? କହନ୍ତୁଟି ମୁଁ ହତଭାଗିନୀକି ଛାଡ଼ି ମା ହୋଇ କିଏ କେବେ ନିଜପୁତ୍ରର ପ୍ରାଣ ନାଶ କରିଅଛି ? ଆପଣ ଟିକିଏ ହେଲେ ବିଚାର କରନ୍ତି ନାହିଁ ! ମୁଁ ଏତେ ପାପିନୀ ହେଲି ? ହା ବିଧାତା ! (କ୍ରନ୍ଦନ)

କ - ଅଜ୍ଞାନ ଲୋକ ପରି ବୃଥାରେ ରୋଦନ କର କାହିଁକି ? ମୃତ୍ୟୁ ସକଳ ଲୋକଙ୍କୁ ଗ୍ରାସ କରେ । ଏହା ଜାଣିଶୁଣି ତୁମ୍ଭେ କ୍ରନ୍ଦନ କରିବା ଉଚିତ୍ ନୁହେ । କ୍ରନ୍ଦନ କଲେ ଆଉ ବୃଷକେତୁ ଆସିବ ? ସଂସାରର ମାୟା ଛାଡ଼ି ପରମ ପଦ ପାଇବା ଲାଗି ଯତ୍ନ କର । ପ୍ରାଣେଶ୍ୱର ଶୋକକର ନାହିଁ । "କାଳସ୍ୟ କୁଟିଳାଗତି" କେଉଁ ଘଡ଼ି କଣ ଆସି ଘଟେ ତାହା କିଏ ଜାଣିପାରେ ନାହିଁ । ସକଳ ବିଷୟ ବିଶ୍ୱକର୍ତ୍ତାଙ୍କ ହସ୍ତରେ ନ୍ୟସ୍ତ । କାହାର ସାଧ ଯେ ଯାହା ଘଟିବାକୁ ଅଛି ତାହା ଅନ୍ୟଥା କରିପାରିବ । ପ୍ରିୟେ ଯେ ବ୍ୟକ୍ତି ଦତ୍ତ ଦ୍ରବ୍ୟର ଲାଗି ଅନୁତାପ କରେ ତାହାର ଦାନ କେବେ ସିଦ୍ଧ ହୁଏ ନାହିଁ । ବିଶେଷତଃ ବ୍ରାହ୍ମଣ ଯଦି ଦାନ ଗ୍ରହଣ ନ କରି ଫେରିଯିବେ ତେବେ ଆମ୍ଭମାନଙ୍କୁ କେବଳ ପୁତ୍ର ନାଶ ଦୋଷ ଲାଗିବ । ସତ୍ୟ ପରିପାଳନ କରିବା ଲାଭ କିଛି ହେବ ନାହିଁ । କାଳ କାଳକୁ କଳଙ୍କ ରହିଯିବ । ମନେକର ବିଶ୍ୱକର୍ତ୍ତା କଦାପି ବିନା କାରଣରେ କୌଣସି କାର୍ଯ୍ୟ ଘଟାନ୍ତି ନାହିଁ । ପ୍ରିୟେ ମନୁଷ୍ୟ ମନୁଷ୍ୟ ମାଂସ ଆହାର କରିବାର କହ କେବେ ଶୁଣିଅଛ ? ଉତ୍ତମରୂପେ ଆଲୋଚନାକରି ଦେଖିଲେ ଅନୁମାନ ହୁଏ ଏଥିରେ କୌଣସି ଗୂଢ଼ ରହସ୍ୟ ଅଛି । ନୋହିଲେ କି ତୁମ୍ଭେ ପୁତ୍ରର ଛିନ୍ନ ମସ୍ତକ ଧରି କ୍ରନ୍ଦନ କରିବାର ସେ ବ୍ରାହ୍ମଣ ଜାଣି ପାରିଥାନ୍ତେ ? ପ୍ରାଣେଶ୍ୱର ଦୁଃଖ କର ନାହିଁ ଏହି ମସ୍ତକ ମାଂସରେ ଉତ୍ତମ ବ୍ୟଞ୍ଜନ ପ୍ରସ୍ତୁତ କରିବାକୁ ସେ ଇଚ୍ଛା କରନ୍ତି- ଆସି ଶୀଘ୍ର ପ୍ରସ୍ତୁତ କର ।

ପ - ଯେ ଆଜ୍ଞା ।

(ଯବନିକା ପତନ)

ବ୍ରା - ରାଜାର କିଛି ହେଲେ ବିବେକତା ଥିଲା ପରି ବୋଧ ହୁଏ ନାହିଁ । ସତ୍ୟ କରିବାକୁ ଘଡ଼ିଏ, ବୃଷକେତୁକୁ ଖୋଜ ଆଣିବାକୁ ଘଡ଼ିଏ, ତାହାକୁ ଧରି

କାନ୍ଦୁ କାନ୍ଦୁ ଘଡ଼ିଏ; ମାଂସ ରନ୍ଧନ କରୁ କରୁ ଘଡ଼ିଏ ଏପରି କରି ତ ତିନିପହର ହେଲାଣି; ଆଉ କେବେ ଅତିଥିକି ଭୋଜନ କରାଇବେ ? ବେଳ ଗଡ଼ିଗଲାଣି ଅନ୍ୟ କୌଣସିଠାକୁ ଗଲେ ତ କିଛି କାର୍ଯ୍ୟ ହେବ ନାହିଁ । ଆମ୍ଭେ ଆଜି ନିସ୍ତାରଣରେ ଭୋକରେ ରହିଲାପରି ଦିଶୁଅଛି ।

(କର୍ଣ୍ଣଙ୍କ ପ୍ରବେଶ)

କ - ଭୂଦେବ ନମସ୍କାର ।

ବ୍ରା - (କ୍ରୋଧରେ) ଆପଣଙ୍କ ନମସ୍କାର ସବୁ ରଖ । ଏହାକି ଆପଣଙ୍କର ସତ୍ୟ ପାଳନ ? ଏହା କି ଆପଣଙ୍କର ଅତିଥି ସତ୍କାର ? ବେଳ ହେଲାଣି ଆସି ତିନି ପହର- କ୍ଷୁଧାର ବାଧା ବେଳକୁ ବେଳ ଅସହ୍ୟ ହୋଇ ଉଠୁଅଛି । ଆହୁରି ଭୋଜନ ପ୍ରସ୍ତୁତ ହୋଇନାହିଁ । ଭୂଦେବ ନମସ୍କାର, ଭୂଦେବ ନମସ୍କାର, ଏପରି କହିଲେ କି ପେଟ ଶୀତଳ ହୋଇଯିବ ?

କ - (କରଯୋଡ଼ି) ଭୂଦେବ ଦାସର ଦୋଷ ହୋଇ ଅଛି କ୍ଷମା କରନ୍ତୁ । ଅନ୍ନବ୍ୟଞ୍ଜନାଦି ସବୁ ପ୍ରସ୍ତୁତ ଅଛି । ଆଜ୍ଞା ହେଲେ ପତ୍ର ପକାଇବାକୁ କହିବି ।

ବ୍ରା - ବୃଷକେତୁର ମସ୍ତକ-ମାଂସରେ ଉତ୍ତମ ବ୍ୟଞ୍ଜନ ହୋଇଅଛି ତ ?

କ - ଆଜ୍ଞା ହୋଇଅଛି ।

ବ୍ରା - ତେବେ ଆପଣ ଯାଇ ରାଣୀଙ୍କ ସହିତ ଅନ୍ନ ବ୍ୟଞ୍ଜନ ସବୁ ଏଠାକୁ ଶୀଘ୍ର ଆଣନ୍ତୁ ।

କ - ଯେ ଆଜ୍ଞା ।

ବ୍ରା - (ସ୍ୱଗତ) ନାରଦ ଯାହା କହିଥିଲେ ତାହା ଯଥାର୍ଥ ଅଟେ । କର୍ଣ୍ଣ ଯେ ଜଣେ ଅସାଧାରଣ ଦାନୀ ଏବଂ ସତ୍ୟ ପରାୟଣବ୍ୟକ୍ତି ଏଥିରେ କିଛି ସନ୍ଦେହ ନାହିଁ ।

(ଅନ୍ନ ବ୍ୟଞ୍ଜନ ଧରି ରାଜା ଓ ରାଣୀ ପ୍ରବେଶ)

ବ୍ରା - ମହାରାଜ ଆପଣଙ୍କ ସତ୍ୟ ପରାୟଣତା ଧନ୍ୟ ! ଆମ୍ଭେ ଆପଣଙ୍କ ପ୍ରତି ବଡ଼ ସନ୍ତୁଷ୍ଟ ହୋଇଅଛୁଁ । ଆମ୍ଭର ପ୍ରାର୍ଥନା ଏତିକି ଆପଣ ଓ ଆପଣଙ୍କ ମହିଷୀ ଆମ୍ଭ ସଙ୍ଗେ ବସି ଭୋଜନ କରିବେ ।

ପ - କ୍ଷମା କରନ୍ତୁ ମୁଁ ଜନନୀ ହୋଇ କିପରି ପୁତ୍ରର ମାଂସ ଖାଇବି ? ରାକ୍ଷସୀ ହେଲେ ମଧ୍ୟ ନିଜ ପୁତ୍ରର ମାଂସ ଖାଇପାରିବ କି ?

ବ୍ରା - ଯଦି ତୁମ୍ଭେମାନେ ଖାଇବ ନାହିଁ ଆମ୍ଭେ ମଧ୍ୟ ଖାଇବୁ ନାହିଁ । କେଜାଣି ଅନ୍ନବ୍ୟଞ୍ଜନରେ ଆପଣମାନେ କଣ ମିଶାଇଥିବେ ।

କ - କର୍ଣ୍ଣଠାରେ ଏପରି ଆଶଙ୍କା କେବେ କରନ୍ତୁନା ।

ବ୍ରା - ମହାରାଜ ଯାହାହେଉ ଆପଣ ଓ ଆପଣଙ୍କ ରାଣୀ ନ ଖାଇଲେ ଆମ୍ଭେ କେତେ ମାତ୍ର ଖାଇବୁ ନାହିଁ । ଏଠାରୁ ଚାଲିଯିବୁଁ ।

ପ - ହା ବିଧାତା ତୁ କେଡ଼େ ନିଷ୍ଠୁର ଅଟୁ । ମାତା ହାତରେ ପୁତ୍ରକୁ ମରାଇ ଫେରି ତାହାଂର ମାଂସ ଖୁଆଉଅଛୁଁ ।

କ - ପ୍ରିୟେ ଏପରି କିଛି କହନ୍ତୁନା, ଅବଶ୍ୟ ଅତିଥିଙ୍କ ମନକୁ ସନ୍ତୁଷ୍ଟ କରିବାକୁ ହେବ ।

ବ୍ରା - ମହାରାଜ ତେବେ ଅନ୍ନ ବ୍ୟଞ୍ଜନ ସବୁ ଚାରି ପତ୍ର କର ।

କ - ଭୂଦେବ ଆମ୍ଭେମାନେ ତ ତିନିଜଣ ଚାରିପତ୍ର କାହିଁକି ?

ବ୍ରା - ଆମ୍ଭମାନଙ୍କ ପାଇଁ ତିନି ପତ୍ର, ବୃଷକେତୁ ପାଇଁ ପତ୍ରେ ।

କ - ଭୂଦେବ ବୃଷକେତୁ ଆଉ କାହୁଁ ଆସିବ ?

ପ - ଭୂଦେବ ବୃଥା ବୃଷକେତୁର ନାମ ଥରକୁଥର ଧରି ଆମ୍ଭମାନଙ୍କ ମନରେ ଅଧିକ ଦୁଃଖ ଜନ୍ମାଉ ଅଛନ୍ତି କାହିଁକି ? ଆପଣଙ୍କ ଚରଣ ଧରି ମାଗି ଘେନୁଛି ଆଉ ବୃଷକେତୁର ନାମ ଧରନ୍ତୁ ନାହିଁ ?

ବ୍ରା - ମହାରାଜ ଆମ୍ଭେ ଯାହା କହୁଁ ତାହା କରନ୍ତୁ । ଆପଣ ଓ ଆପଣଙ୍କ ମହିଷୀ ଦୁହେଁ ସିଂହଦ୍ୱାରଠାକୁ ଯାଇ ବୃଷକେତୁକୁ ଡାକି ଆସ ।

କ - ଯେ ଆଜ୍ଞା - (ରାଣୀ ସହ ପ୍ରସ୍ଥାନ)

ପ - (ଯାଉଁ) ଏ କି ସତ୍ୟ ପରୀକ୍ଷା ! ପିତା ମାତାଙ୍କ ଦ୍ୱାରା ପୁତ୍ରର ଶିରଚ୍ଛେଦନ ! ଫେରି ସେମାନଙ୍କ ହସ୍ତରେ ପୁତ୍ରର ମାଂସ ରନ୍ଧାଇ ତାହା ଖାଇବାକୁ ଆଦେଶ ! ଏବେ ଦ୍ୱାରଦେଶକୁ ଯାଇ ମୃତପୁତ୍ରକୁ ଡାକି ଆଣ ବୋଲି ପ୍ରେରଣ ! କି ଅସହ୍ୟ ଦଣ୍ଡ ! ହା ପରମେଶ୍ୱର ଏହା କି ଆମ୍ଭମାନଙ୍କ କପାଳରେ ଲେଖାଥିଲା !!

କ - ପ୍ରିୟେ ପୁତ୍ର ନାଶ ହେବାରୁ ଆମ୍ଭମାନଙ୍କର ସକଳ ବିଷୟ ସରିଗଲାଣି । ଅତିଥି ଯେଉଁ ଆଦେଶ ଦେବେ ତାହା କରିବାକୁ ପଶ୍ଚାତ୍‌ପଦ ଆଉ କାହିଁକି ? ଆସ ଯାଇ ବୃଷକେତୁକୁ ଥରେ ଡାକିଦେବା ।

ପ - ଆପଣଙ୍କର ଯେ ଆଜ୍ଞା ।

କ - (ଦ୍ୱାରଦେଶରେ ଦଣ୍ଡାୟମାନ ହୋଇ) ବତ୍ସ ବୃଷକେତୁ ! ବତ୍ସ ବୃଷକେତୁ !

ପ - ହା ବିଧାତା ଆଉ କି ସେ ଚନ୍ଦ୍ରମୁଖ ମୁ ହତଭାଗିନୀ ଦେଖି ପାରିବି ?

କ - (ସଚକିତେ) ପ୍ରିୟେ କିଏ ସେ ? ବୃଷକେତୁ ପରି ଜଣେ ବାଳକ ଏଆଡ଼େ ଆସୁଅଛି । ଆମ୍ଭମାନଙ୍କର ସନ୍ତାନ ମାୟା ଏଡ଼େ ପ୍ରବଳ ଯେ ଆମ୍ଭେ ଜାଗ୍ରତାବସ୍ଥାରେ ଥାଇ ସୁଦ୍ଧା ସ୍ୱପ୍ନାନୁଭବ କରୁଅଛୁଁ ।

ପ - ମହାରାଜ ଆପଣ କି ବାୟା ହେଲେ- ବୃଷକେତୁକୁ ଆଉ କାହିଁ ଦେଖିବେ ?

କ - ପ୍ରିୟେ ହେଟି ଭଲରୂପେ ଦେଖ- ବୃଷକେତୁପରା ଆସୁଅଛି-ହଁ ସେତ- ହେଟି । (ବୃଷକେତୁର ପ୍ରବେଶ)

ବୃ - ପିତା ! ମତେ କାହିଁକି ଡାକିଲ ?

ପ - (ସାତୁରେ କୋଳକରି) ବାବୁ ବୃଷକେତୁ କୋଠାରେ ଥିଲୁଁ ?

ବୃ - ମା ବାଳକମାନଙ୍କ ସଙ୍ଗେ ଖେଳୁଥିଲି ।

କ - ଏ କି ଆଶ୍ଚର୍ଯ୍ୟ ! (କିଛିକାଳ ବିଚାରି) ହଁ ସେ ଲୀଳାମୟଙ୍କ ଲୀଳା ଏ । ପ୍ରିୟେ ଶୀଘ୍ର ବୃଷକେତୁକୁ ଧରି ଚାଲ ସେ ବ୍ରାହ୍ମଣରୂପୀ ଜଗତ୍‌ପିତାଙ୍କ ଚରଣାରବିନ୍ଦରେ ଯାଇ ଲୋଟିବା ।

ପ - ବିଜେ କରନ୍ତୁ । (ସମସ୍ତେ ଭୋଜନାଗାରରେ ପ୍ରବେଶ)

କ - ପ୍ରିୟେ ! ଦେଖ ସେ ବ୍ରାହ୍ମଣରୂପି ଭଗବାନ ଅନ୍ତର୍ହିତ ହୋଇ ଅଛନ୍ତି । ପ୍ରିୟେ ! ଆମ୍ଭେମାନେ ପୁତ୍ରଠାରେ ମମତା ରଖି ସେ ଲୀଳାମୟଙ୍କୁ ଚିହ୍ନି ପାରିଲୁଁ ନାହିଁ ।

ପ - ମହାରାଜ ! ଯଥାର୍ଥ । ପୁତ୍ର ଲୋଭରୁ ତାହାଙ୍କୁ ଚିହ୍ନି ନ ପାରି ତାହାଙ୍କ ଚରଣାରବିନ୍ଦରେ କେତେ ଅପରାଧ କରିଅଛୁଁ ।

କ - ହେ ଦେବଦୟାମୟ ! ହେ କରୁଣାନିଧାନ ! ମୁ ନିତାନ୍ତ ନରାଧମ, ଭଜନହୀନ, ଏବଂ ସାଧନହୀନ, ଅଜ୍ଞାନ ମୋହପାଶରେ ପଡ଼ି ଭବଦୀୟ ଚରଣାରବିନ୍ଦରେ ଯେ ଅପରାଧ କରିଅଛି ତାହା ମାର୍ଜନ କରିବେ । ପ୍ରଭୋ ! ଏ ଦାସ ପ୍ରତି କରୁଣା କରି ନିଜ ସ୍ୱରୂପ ବାରେ ଦେଖାଇବେ । ବିଭୋ ! ଶୀଘ୍ର ଦର୍ଶନ ଦିଅନ୍ତୁ । ଆଉ ବିଳମ୍ବ କରନ୍ତୁ ନାହିଁ । ଦୀନବନ୍ଧୋ ! ଯଦି ଦର୍ଶନ ଦେବେ ନାହିଁ ତେବେ ଏ ଦାସ ନିଜ ଜୀବନ ଆପଣଙ୍କ ଚରଣରେ ଉତ୍ସର୍ଗ କରିବ । ହେ ଜଗଦୀଶ୍ୱର ! ଦାସାନୁଦାସର ଗୁହାରି ଶୁଣି ଥରେ ଦର୍ଶନ ଦିଅନ୍ତୁ ।

(ବିଷ୍ଣୁଙ୍କର ଆବିର୍ଭାବ ଓ ସମସ୍ତଙ୍କ ପ୍ରଣାମ)

ବି - ରାଜନ୍ ! ଆମ୍ଭେ ତୁମ୍ଭ ପ୍ରତି ଅତି ସନ୍ତୁଷ୍ଟ ହୋଇଅଛୁଁ । ଧନ୍ୟ ତୁମ୍ଭର ସତ୍ୟପାଳନ । ଧନ୍ୟ ତୁମ୍ଭର ଦାତୃତ୍ୱ । ଧନ୍ୟ ବୃଷକେତୁ ! ଧନ୍ୟା ପଦ୍ମାବତୀ ସତୀ । କର୍ଣ୍ଣ ! ଆଜି ତୁମ୍ଭେ ମର୍ମଭେଦୀ ଦାନ ପରୀକ୍ଷାରୁ ଉତ୍ତୀର୍ଣ୍ଣ ହେବାଯୋଗୁଁ ତୁମ୍ଭର ନାମ ଜଗତର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲେଖା ହୋଇ ରହିଥିବ । ଅଦ୍ୟାବଧି ତୁମ୍ଭର ନାମ ଦାତାକର୍ଣ୍ଣ ବୋଲି ଲୋକରେ ପ୍ରଚାରିତ ହେବ । ତୁମ୍ଭେ ତୁମ୍ଭର ପତ୍ନୀ ଓ ପୁତ୍ର ମରଣାନନ୍ତର ସ୍ୱର୍ଗରେ ବାସ କରିବ ।

କ - ପ୍ରଭୋ ! ଦାସବତ୍ସଳ ! ଆମ୍ଭମାନଙ୍କର ପ୍ରାର୍ଥନା ଏହି ଯେ-ଆମ୍ଭେମାନେ ଜୀବିତାବସ୍ଥାରେ ଥିବା ପର୍ଯ୍ୟନ୍ତ ବଜ୍ରାଙ୍କୁଶ ଶୋଭିତ ଆପଣଙ୍କ ଶ୍ରୀଚରଣ ଯୁଗଳ ସର୍ବଦା ଆମ୍ଭମାନଙ୍କର ଚର୍ମଚକ୍ଷୁରେ ଦେଖି ପରମାନନ୍ଦ ଲଭୁଥିବୁଁ ।

ବି - ତଥାସ୍ତୁ !!! (ଅନ୍ତର୍ଦ୍ଧାନ)

(ଯବନିକା ପତନ)

ସମ୍ପୂର୍ଣ୍ଣ

●

# ଅନ୍ତିମ ଗୀତି

ଏହି ପର୍ଯ୍ୟାୟର ସାତୋଟି ଗୀତି ଜଣେ ମରଣାସନ୍ନ ଭକ୍ତର କରୁଣ ଅଭିବ୍ୟକ୍ତି । ବାରମ୍ବାର ଗର୍ଭପାତ ପରେ ପଞ୍ଚମ ଗର୍ଭରୁ ଗୋଟିଏ ପୁତ୍ର ସନ୍ତାନକୁ ଜନ୍ମ ଦେଇ ତା ସହିତ ପ୍ରଥମା ପତ୍ନୀ ମୃତ୍ୟୁବରଣ କରିବା ପରେ ଯୌବନର ଶୀର୍ଷରେ ରହି ସୁଦ୍ଧା ପଦ୍ମନାଭ ନାରାୟଣ ଆଉ ବିବାହ କରିବେ ନାହିଁ ବୋଲି ସ୍ଥିର କରିଥିଲେ । କିନ୍ତୁ ଜ୍ୟେଷ୍ଠଭ୍ରାତାଙ୍କ ସାଗ୍ରହ ଅନୁରୋଧ ଏବଂ ପରିଶେଷରେ ଏକାନ୍ତ ଯିଦ୍ ଫଳରେ ତାଙ୍କୁ ଦ୍ୱିତୀୟବାର ବିବାହ କରିବାକୁ ପଡ଼ିଥିଲା । ଫଳରେ ସେ ପୁଣି ରୋଗାକ୍ରାନ୍ତ ହୋଇପଡ଼ିଥିଲେ । ୧୯୦୨ ମସିହା ମେ ମାସରେ ତାଙ୍କର ବିବାହ ସମ୍ପନ୍ନ ହୋଇଥିଲା । ସେହିବର୍ଷ ଡିସେମ୍ବର ମାସରେ ଜ୍ୟେଷ୍ଠଭ୍ରାତା ଏବଂ ବନ୍ଧୁ ଅପର୍ଣ୍ଣା ପଣ୍ଡାଙ୍କ ସହିତ ଦିଲ୍ଲୀ ଦରବାରରେ ଯୋଗଦେବା ପାଇଁ ଯାତ୍ରା କଲାବେଳେ କଲିକତାଠାରେ ସେ ଅସୁସ୍ଥ ହୋଇପଡ଼ିଥିଲେ । ଏହି ଅସୁସ୍ଥତା ଦୀର୍ଘ ଗୋଟିଏ ବର୍ଷ ତାଙ୍କୁ ଅସହ୍ୟ ଯନ୍ତ୍ରଣାରେ ଜର୍ଜରିତ କରି ଶେଷରେ ଜୀବନ ସହିତ ନିର୍ବାପିତ ହୋଇଥିଲା । ତେଣୁ ୧୯୦୩ ମସିହାର ଆରମ୍ଭରୁ ସମସ୍ତ ସାହିତ୍ୟିକ ଓ ସାଙ୍ଗଠନିକ କାର୍ଯ୍ୟକ୍ରମରୁ ଦୂରେଇ ରହିବା ପାଇଁ ସେ ବାଧ୍ୟ ହୋଇ ଥିଲେ । ଏ ସମୟରେ ଡାକ୍ତରମାନେ ଚିକିତ୍ସା ଏବଂ ପରିଚାରକମାନେ ଶୁଶ୍ରୂଷା କରୁଥିଲାବେଳେ ଅନ୍ତରଙ୍ଗ ଶ୍ୟାମସୁନ୍ଦର ରାଜଗୁରୁ ଏବଂ ଅପର୍ଣ୍ଣା ପଣ୍ଡା ସାନ୍ତ୍ୱନା ଦେବା ପାଇଁ ସର୍ବଦା ତାଙ୍କ ସହିତ ରହୁଥାଆନ୍ତି । ଏହି ଗୋଟିଏ ବର୍ଷ ମୃତ୍ୟୁ ସହିତ ସଂଗ୍ରାମ କରୁଥିବା ଜଣେ ଅସାଧ ରୋଗୀର କରୁଣ କାହାଣୀ ଅପର୍ଣ୍ଣା ପଣ୍ଡା ଆମକୁ ଏହିପରି ଦେଇଛନ୍ତି-

> *ସେ ୧୯୦୩ ସାଲରେ ରୋଗର ଅଧୀନ ହୋଇ ଶାରୀରିକ ପରିଶ୍ରମ କରିବାରେ ଅକ୍ଷମ ହେବାରୁ ଇହଲୋକର ସକଳ ପ୍ରକାର ଭୋଗ ପରିତ୍ୟାଗ କରି ସର୍ବଦା ଈଶ୍ୱର ଚିନ୍ତାରେ କାଳ କଟାଉଥିଲେ , ସେ ବନ୍ଧୁବାନ୍ଧବ ଏବଂ ମିତ୍ରବର୍ଗଙ୍କ ଅନୁରୋଧରେ, ପୀଡ଼ାରୁ ଶାନ୍ତି ଲଭିବା ସକାଶେ ୧୯୦୩ ସାଲ ଅଗଷ୍ଟ ମାସରେ ପ୍ରଥମେ ବାଲଟେର୍ ଯାତ୍ରା କରିଥିଲେ । ସେଠାରେ ପ୍ରାୟ ଏକମାସ ଅବସ୍ଥାନ କରି ବିଶାଖାପାଟଣା ଜିଲ୍ଲାର ଆସିଷ୍ଟାଣ୍ଟ ସର୍ଜନଙ୍କଠାରୁ ଔଷଧ ସେବନ କଲେ ।*

ତଦ୍ଦ୍ୱାରା ତାହାଙ୍କର ରୋଗୋପଶମନ ହୋଇ ନ ପାରିବା ଯୋଗୁଁ ସେ ସ୍ୱସ୍ଥାନକୁ ପ୍ରତ୍ୟାଗମନ କଲେ । ତଦ୍‌ବାଦ୍ ତାହାଙ୍କ ରୋଗ ସ୍ଥିର କରିବା ନିମନ୍ତେ ଗଞ୍ଜାମ ଜିଲ୍ଲାର ସରଜନଙ୍କୁ ଡକାଇ ଆପଣା ଶରୀର ପରୀକ୍ଷା କରାଇଥିଲେ । ସର୍ଜନ ତାହାଙ୍କୁ ପରୀକ୍ଷା କରି ରୋଗ ଠିକ୍ କରିପାରିଲେ ନାହିଁ । ସେହି ସମୟରେ ତାହାଙ୍କ ପରିଚିତ ବ୍ୟକ୍ତି କୁପାଡା ଜଗନ୍ନାଥ ରାଓ ନାଇଡୁ ଆସିଷ୍ଟାଣ୍ଟ ସର୍ଜ୍ଜନ ପାରଳା ଆସିଥିଲେ । ସେ ରାଜକୁମାରଙ୍କୁ କହିଲେ-''ଆପଣ ମାନ୍ଦ୍ରାଜ କିମ୍ବା କଲିକତାରେ ଅନୁଭବଶାଳୀ ଡାକ୍ତରମାନଙ୍କଦ୍ୱାରା ପରୀକ୍ଷା କରାଇଲେ ଆପଣ ବର୍ତ୍ତମାନ ଯେଉଁ ରୋଗରେ ପୀଡ଼ିତ ତାହାର ଯଥାର୍ଥ୍ୟ ଜ୍ଞାତ ହେବେ''। ସେ ତାହାଙ୍କ ବଚନରେ ଦୃଢ଼ ବିଶ୍ୱାସ କରି ଅକ୍ଟୋବର ମାସ ପ୍ରଥମ ସପ୍ତାହରେ କଲିକତା ଯାତ୍ରା କରିଥିଲେ ଏବଂ ତାହାଙ୍କ ସଙ୍ଗେ ମିଷ୍ଟର ଡାବ୍ଲ୍ୟୁ.ବାସ ଓ ଦ୍ୱୈପାୟନ ରାଓ ଥିଲେ । କଲିକତାରେ ଡାକ୍ତର ପିଲିଗ୍ରିମ ଆଉ ଦୁଇଜଣ ଡାକ୍ତର ସହିତ ତାହାଙ୍କ ରୋଗ ପରୀକ୍ଷା କରିଥିଲେ । ପରୀକ୍ଷା କଲାବାଦ୍ ତିନିଜଣ ଡାକ୍ତର ଏକା ପ୍ରକାର ମତ ପ୍ରଦାନ କଲେ । ତାହାର ମର୍ମ ଏହି-''ରୋଗୀ ଉନ୍ନତତମ ସିଫିଲିଟିକ୍ ରୋଗରେ ପୀଡ଼ିତ ଏବଂ ଲିବର ଦୋଷ ମଧ୍ୟ ଅଛି । ତିନି ବା ଚାରିମାସରୁ ବଳିବ ନାହିଁ । ଯେ କୌଣସି ଜ୍ଞାତସାର ଡାକ୍ତର ରୋଗୀକୁ ଯତ୍ନପୂର୍ବକ ଚିକିତ୍ସା କଲେ, ସେ ବିଶେଷରେ କଷ୍ଟାନୁଭବ ନ କରି ପ୍ରାଣ ଥିବା ଯାଏ ସୁଖରେ କାଳ ଯାପନ କରିବେ ।' କଲିକତାର ଡାକ୍ତରମାନେ ତାହାଙ୍କୁ ପରୀକ୍ଷା କଲା ବାଦ୍ ତାହାଙ୍କ ଶରୀରରୁ ବହୁତ ରକ୍ତ ସ୍ରବିଥିଲା । ଅତଏବ ତାହାଙ୍କ ଶରୀର କ୍ରମଶଃ କ୍ଷୀଣ ହେଲା । ଡାକ୍ତର ପିଲିଗ୍ରିମ୍ ରୋଗ ନିବାରଣ ନିମନ୍ତେ ରୋଗୀଙ୍କୁ ରସ ପ୍ରୟୋଗ କରିଥିଲେ । ସେହି ସମୟରେ ରୋଗୀଙ୍କ ପଥ୍ୟ କେବଳ ଦୁଗ୍ଧ । ଶରୀର ଅତୀବ ଶୀର୍ଣ୍ଣହେବାରୁ ମରଣାଶଙ୍କାରେ ଆଉ ଅଧିକ ଦିନ କଲିକତାରେ ରହିବାକୁ ତାହାଙ୍କ ମନ ବଳିଲା ନାହିଁ ।

କଲିକତାରେ ଛଅ ମାସ ରହି କ୍ରମରେ ଔଷଧ ସେବାକଲେ ରୋଗୋପଶମନ ହୋଇପାରେ ବୋଲି ସେଠାର ଜ୍ଞାତସାର ଡାକ୍ତରମାନେ ତାହାଙ୍କୁ ଉପଦେଶ ଦେଲେ ମଧ୍ୟ ସେମାନଙ୍କ କଥାରେ କର୍ଣ୍ଣପାତ ନ କରି ଦିନେ ହଠାତ୍ ସ୍ୱସ୍ଥାନକୁ ପ୍ରତ୍ୟାବର୍ତ୍ତନ କଲେ । ମାର୍ଗରେ ଚିକିତ୍ସା କରିବା ନିମନ୍ତେ ଡାକ୍ତର ଘୈଟୋଲା ତାହାଙ୍କ ସଙ୍ଗେ ଆସିଥିଲେ । ୧୯୦୩ ସାଲ୍ ଅକ୍ଟୋବର ମାସ ଶେଷ ସପ୍ତାହରେ କଲିକତା ଛାଡ଼ି ପାରଳାରେ ଉପସ୍ଥିତ ହେଲା ସମୟରେ ପାରଳାର ପ୍ରଜାପୁଞ୍ଜ

*ତାହାଙ୍କ ଶରୀର-ଶୀର୍ଣ୍ଣତା ଅବଲୋକନ କରି ବହୁଦୁଃଖ ପ୍ରକାଶ କରିଥିଲେ । ସେ କଲିକତାରୁ ଆସିଲାପରେ ଜ୍ୟେଷ୍ଠାଭ୍ରାତା ଶ୍ରୀ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ ଭାଇଙ୍କ ଚିକିତ୍ସା ନିମନ୍ତେ ମାନ୍ଦ୍ରାଜର ସୁବିଖ୍ୟାତ ଡାକ୍ତର ବରଦାପ୍ପା ନାଇଡୁଙ୍କୁ ଦୈନିକ ୮୩୦ଟଙ୍କା ଦେଇ ନିଯୁକ୍ତ କରିଥିଲେ । ଡାକ୍ତର ମହାଶୟ ତାହାଙ୍କୁ ପ୍ରାୟ ଏକମାସ ଚିକିତ୍ସା କଲାପରେ ରୋଗ ଊଣା ପଡ଼ିଲା ପରି ଦିଶିଲାରୁ ରୋଗୀଙ୍କ ହୃଦୟରେ ଏକପ୍ରକାର ଜୀବନର ଆଶା ସଞ୍ଚରିତ ହୋଇଥିଲା । ପାରଳାରେ ଶୀତ ପ୍ରବଳ ହେବାରୁ ସ୍ୱାସ୍ଥ୍ୟରକ୍ଷା ନିମନ୍ତେ ୧୯୦୩ ସାଲ୍ ଡିସେମ୍ବର ଦି ୧୪ନରେ ରାଜକୁମାର ଡାକ୍ତର ସହିତ ମାନ୍ଦ୍ରାଜ ଯାତ୍ରା କରିଥିଲେ । ମାନ୍ଦ୍ରାଜରେ ଉପସ୍ଥିତ ହେଲା ଆଠଦିନ ପରେ ବର୍ଷା ବିଶେଷ ହେବାରୁ ତହିଁ ସଙ୍ଗେ ସଙ୍ଗେ ତାହାଙ୍କ ରୋଗ ପ୍ରବଳ ହୋଇ ଉଠିଲା । ରୋଗର ପୁନର୍ଦ୍ଦୀପନ ଦେଖି ଡାକ୍ତର ମଧ ହତାଶ ହେଲେ । ମାନ୍ଦ୍ରାଜରେ ରାଜକୁମାର ଫେରି ତାହାଙ୍କ ରୋଗ ଡାକ୍ତର ବ୍ରାଉନିଙ୍ଗ ଓ କ୍ଲେରନ୍‌ସ୍ମିତ ଏ ଦୁହିଁଙ୍କ ଦ୍ୱାରା ପରୀକ୍ଷା କରାଇଥିଲେ । ସେ ଦୁଇ ଡାକ୍ତର ଏବଂ ବରଦପ୍ପା ନାଇଡୁଙ୍କ ମତ ଏକପ୍ରକାର ଥିଲା । ତାହା ଏହି-"ଡାକ୍ତର ପିଲିଗ୍ରିମ୍‌ଙ୍କ ମତାନୁସାରେ ରୋଗୀ ଉନ୍ନତତମ ପିଫିଲ୍‌ଟିକ୍ ରୋଗରେ କେତେ ମାତ୍ର ପୀଡ଼ିତ ନୁହନ୍ତି, ମାତ୍ର ରୋଗୀଙ୍କ ଗର୍ଭରେ ଏକ ପ୍ରକାର ଅଲସର ହୋଇଅଛି ତଦ୍ୱାରା ସେ ପୀଡିତ ଏବଂ ଯକୃତ ଓ ପ୍ଲୀହା ଦ୍ୱାରା ମଧ ପୀଡ଼ିତ ।" କିଛିଦିନ ପୂର୍ବେ ଜୀବନର ଆଶା ତାହାଙ୍କ ହୃଦୟରେ ଯାହା ସଞ୍ଚାରିତ ହୋଇଥିଲା, ତାହାର ମୂଳୋତ୍ପାଟନ ହେଲା । ସେ ୧୯୦୪ ସାଲ୍ ଜାନୁୟାରୀ ମାସ ୧୬ ଦିନରେ ମାନ୍ଦ୍ରାଜ ପରିତ୍ୟାଗ କରି ୧୯ ଦିନ ସାୟଂକାଳରେ ପାରଳାରେ ପ୍ରବେଶ ହେଲେ । ତାହାଙ୍କ ଜୀବନର ଶେଷ ପର୍ଯ୍ୟନ୍ତ ବରଦପ୍ପା ନାଇଡୁ ତାହାଙ୍କୁ ଚିକିତ୍ସା କରୁଥିଲେ । ସେ ପାରଳାରେ ପ୍ରବେଶ ହେଲାଠାରୁ ନିରବଧି ଈଶ୍ୱର ଚିନ୍ତାରେ ବୁଡ଼ି ରହିଥିଲେ । ସେ ୧୯୦୩ ସାଲ୍ ମଇମାସଠାରୁ ସୁଖଭୋଗରେ ଜଳାଞ୍ଜଳି ଦେଇ ଈଶ୍ୱରଙ୍କ ନାମରେ ଅନେକ କୃତି ଲେଖିଅଛନ୍ତି ।" (ପୃ ୨୫ ରୁ ୨୭)*

ଏ ସମସ୍ତ ରଚନା ଆଜି ଦୁଷ୍ପ୍ରାପ୍ୟ । ସେଥିରୁ ଯେଉଁ କେତୋଟି ଅପର୍ଣ୍ଣା ପଣ୍ଡା ଲିପିବଦ୍ଧ କରି ରଖିଥିଲେ, ସେଥିରୁ ମାତ୍ର ସାତୋଟି ତାଙ୍କଦ୍ୱାରା ପ୍ରକାଶିତ ହୋଇ ଆମ ନିକଟକୁ ଆସିପାରିଛି ।

●

# ଅନ୍ତିମ ଗୀତି

୧। **ପ୍ରଭୋ, ସନାତନ ନିଖିଳ କାରଣ ।୦।**

ଧ୍ରୁବ, ସତ୍ୟ, ସର୍ବାଶ୍ରୟ, ହରି ବିଶ୍ୱନିକେତନ

ଅନନ୍ତ ଅବ୍ୟୟ ଅଶୋକ, ଅଭୟ, ଏକମାତ୍ର ନିରାଶୟ, ନିର୍ବିଶେଷ, ନିରଞ୍ଜନ ।୧।

ଅନାଦି ଅକ୍ଷର, ପୂର୍ଣ୍ଣ ପରାପର, ଅନ୍ତରାତ୍ମା ଅଗୋଚର, ସକଳ ଲୋକପାଳନ ।୨।

ଉପମାରହିତ, ସର୍ବଜନହିତ, ପରଂବ୍ରହ୍ମ ସ୍ୱପ୍ରକାଶ, ଦେବ ସର୍ବଶକ୍ତିମାନ ।୩

ଅପାର ମହିମ, ଅଚିନ୍ତ୍ୟ ଅସୀମ, ସର୍ବସାକ୍ଷୀ ଅବିନାଶ, କୃପାସାଗର ଭୂମାନ ।୪।

୨। **ହୃଦେ କ୍ଷେତ୍ରେ ଏବେ ଜନ, ଆତ୍ମଉପାସନାବୀଜ କର, ବପନ ।**

ପ୍ରଯତ୍ନ ସେଚନୀ ପରି, ବିବେକ ବୈରାଗ୍ୟ ବାରି

ପ୍ରାଣପଣେ, ପ୍ରତିକ୍ଷଣେ, କର ସେଚନ ।୧।

ହେବ ବୃକ୍ଷ ମୋକ୍ଷମୟ, ନିତ୍ୟଜ୍ଞାନ ଫଳୋଦୟ

କରିବୁ ସତତ ସୁଧା ତୁ ଆସ୍ୱାଦନ ।୨।

ବଳିଲେ ତହିଁରେ ମତି, ଯିବ ତୋ ଦୁଃଖ ଦୁର୍ଗତି,

ପାଇବୁ ପରମ ଗତି, ଲଭି ପ୍ରଭୁ ଚରଣ ।୩।

୩। **ନିରନ୍ତର ନିରଞ୍ଜନ କର ତୁ ସ୍ମରଣ ।**

କେଜାଣି ପ୍ରାଣ ବିହଙ୍ଗ,ଉଡ଼ିଯିବ କେଉଁ କ୍ଷଣ ।୦।

ମଣୁ ତୁ ଯାହାକୁ ସୁଖ, ଜାଣ ତୁ କେବଳ ଦୁଃଖ,

ଦେବ ସେ ନିଶ୍ଚେ ଯନ୍ତ୍ରଣା ଯେବେ ଡାକିବ ଶମନ ।୧।

ସୁଧା ଭ୍ରମେ ବିଷ ପାନ, କରନା ରେ ମୂଢ଼ମନ,

ମତ୍ତ ମାନସ ବାରଣ, ଦୃଢ଼ରେ କର ବନ୍ଧନ ।୨।

କୌମାର ଖେଳାରେ ମନ, କାମ ରସେ ଯୌବନ,

ଜରାରେ କୁଟୁମ୍ବ ଦୁଃଖ କରନା ଦିନ ଯାପନ ।୩।

ନିର୍ବିକାର ନିରାମୟ, ନିର୍ବିଶେଷ ନିରାଶ୍ରୟ
ଅଭୟ ମଙ୍ଗଳଦାତା ପତିତ ପାବନ ।୪।

୪। **ଥରେ କର ବିଚାର, ଜୀବ ଅଟଇ ନଶ୍ୱର ।୦।**
ଯେବେ କାଳ ଆସି, ପ୍ରାଣ ଦେବ ଗ୍ରାସି, ଦୁଃଖରେ ହେବୁ କାତର ।୧।
ଧନ ଜାୟା ସୁତ, ବନ୍ଧୁ ସ୍ନେହୀ ଭ୍ରାତ, କେ ନ ଯିବେ ସଙ୍ଗେ ତୋର ।୨।
ତେଜି ଅଭିମାନ, ହୋଇ ସାବଧାନ, ବୈରାଗ୍ୟ ଅଭ୍ୟାସ କର ।୩।

୫। **ଦେଖି ମୁଖ ଦରପଣେ ଗର୍ବିତ ନୁହ ତୁ, ନିଜ ସୁନ୍ଦର ପଣେ ।୦।**
କୃଷ୍ଣ କେଶ ଶ୍ୱେତ ହେବ, କ୍ରମେ ଦନ୍ତ ପଡ଼ିଯିବ,
କପୋଳ କଣ୍ଠ ଗଳିତ ହେବ କିଛି ଦିନେ ।୧।
ଲୋଳ ଚର୍ମ କଦାକାର, କଫ କାଶ ଦୁର୍ନିବାର,
ହେବ ହସ୍ତ ଶିରଃ କମ୍ପ, ଭ୍ରାନ୍ତି ଅନୁକ୍ଷଣେ ।୨।
ଅତଏବ ତେଜ ଗର୍ବ, ଅନିତ୍ୟ ମଣିଣ ସର୍ବ,
ଭକ୍ତିଭରେ ନମ୍ର ଭାବେ ଭଜ ନିରଞ୍ଜନ ।୩।

୬। **ରେ ଅବୁଝା ମନ**
ଅପାର ବିଶ୍ୱ ସଂସାର, କର ସତ୍ୟର ସାଧନ ।
ଚଞ୍ଚଳ ତଡ଼ିତ ସମ ଧନ ଜୀବ ଯଉବନ ।୦।
ବିଷୟ ଭାବିବ ଯେତେ, ବାସନା ବଢ଼ିବ ତେତେ,
ନିଶ୍ଚୟ ଭୋଗ କରିବ, ତୁଷ୍ଟି ରୁଷ୍ଟି ଅନୁକ୍ଷଣ ।୧।
ତେଜିଣ ସଂସାର ପାଶ, କର ମୋକ୍ଷ ଅଭିଳାଷ,
ଧର୍ମବଳେ କର ଜୟ କରାଳରୂପୀ ଶମନ ।୨।
ଲୋଭ ମୋହ ମାୟା ତେଜି ବିଶ୍ୱନିୟନ୍ତାଙ୍କୁ ଭଜି,
ପାପ ରଜନୀ ବାସର, ରେ ଅବୁଝା ମନ ।୩।

୭। **ତ୍ରିତାପ ନାଶନ ଜଗତ ପାଳନ, କୃପାକରି ରଖ ଏ ଦୀନ ଅକିଞ୍ଚନ ।**
ହୃଦ୍‌ରଙ୍ଗ ସ୍ଥଳେ, ଅତୀବ ପ୍ରବଳେ, ନାନା ବେଶ ଧରି, ଦୁଃଖ କରେ ନର୍ତ୍ତନ ।୧।
କରିବାରୁ ମମ, ବୁଦ୍ଧିକି ବିଭ୍ରମ, ଭବଦୀୟ ନାମ ନ ଧରେ (ରୋ) ଅନୁପମ ।୨।
କୃପା କର ଦାସେ, ତୋ ପାଦ ସାରସେ, ଆଡ଼ିରଖ ପ୍ରଭୁ, ଏ ପୀଡ଼ିତ ଜୀବନ ।୩।
ଏକମାତ୍ର ଆଶା, କେବଳ ଭରସା, ତୋ ପଦ୍ମଚରଣ, ହେ ଶରଣ ରକ୍ଷଣ ।୪।

●



ଶ୍ରୀ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ

## ପ୍ରାକ୍‌ସୂଚନା

ସଂସାର ବିରାଗୀ ତଥା ଧର୍ମପ୍ରାଣ ପ୍ରତାପରୁଦ୍ର ଗଜପତି ନାରାୟଣ ଦେବଙ୍କ ଜ୍ୟେଷ୍ଠ ପୁତ୍ର ଏବଂ ପଦ୍ମନାଭ ନାରାୟଣ ଦେବଙ୍କ ଜ୍ୟେଷ୍ଠଭ୍ରାତା ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ ଥିଲେ ପାରଳାଖେମୁଣ୍ଡିର ଅନ୍ୟତମ ସୁଶାସକ, ରାଜା । ତାଙ୍କ ପୂର୍ବରୁ ଦୀର୍ଘ ୬୦ ବର୍ଷ ଧରି ରାଜ୍ୟ କୋର୍ଟ ଅଫ୍ ୱାଡସ୍‌ର ଅଧୀନରେ ରହିଥିଲା । ସେ ୧୮୯୦ ମସିହାରେ କୋର୍ଟ ଅଫ୍ ୱାର୍ଡସରୁ ମୁକ୍ତ କରି ପାରଳାଖେମୁଣ୍ଡି ରାଜ ସିଂହାସନ ଆରୋହଣ କରିଥିଲେ । ଜୟପୁରର ସ୍ୱନାମଧନ୍ୟ ମହାରାଜା ବିକ୍ରମଦେବ ବର୍ମାଙ୍କ ଭଗିନୀ ବିଷ୍ଣୁପ୍ରିୟା ଥିଲେ ତାଙ୍କର ପ୍ରଥମା ପତ୍ନୀ । ସେ ଅକାଳରେ ନିଃସନ୍ତାନ ଭାବେ ମୃତ୍ୟୁବରଣ କରିବା ଯୋଗୁଁ ପୁରୁଣା ପାଟଣାର ସାମନ୍ତଙ୍କ କନ୍ୟା ରାଧାରାଣୀଙ୍କ ସହ ତାଙ୍କର ଦ୍ୱିତୀୟ ବିବାହ ସଂପନ୍ନ ହୋଇଥିଲା । ଏହି ଦମ୍ପତ୍ତିଙ୍କ ସୁଯୋଗ୍ୟ ପୁତ୍ର ନବ ଉତ୍କଳର ନିର୍ମାତା ସ୍ୱନାମଧନ୍ୟ ମହାରାଜା ସ୍ୱର୍ଗତ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ । ମାତ୍ର ୧୫ ବର୍ଷ ରାଜତ୍ୱ କଲାପରେ ୧୯୦୫ ମସିହା ଏପ୍ରିଲ ମାସରେ ପକ୍ଷାଘାତ ରୋଗରେ ବିଶାଖପାଟଣାଠାରେ ତାଙ୍କର ଦେହାନ୍ତ ହୋଇଥିଲା ।

ତାଙ୍କ ରାଜତ୍ୱ କାଳରେ ପାରଳାଖେମୁଣ୍ଡିର ପ୍ରଭୂତ ଉନ୍ନତି ସାଧିତ ହୋଇଥିଲା । ତାଙ୍କରି ଉଦ୍ୟମ ଫଳରେ ୧୮୯୬ ମସିହାରେ ପାରଳାଖେମୁଣ୍ଡିସ୍ଥିତ ବିଦ୍ୟାଳୟ ଦ୍ୱିତୀୟ ଶ୍ରେଣୀ କଲେଜରେ ପରିଣତ ହୋଇଥିଲା । ପୂର୍ବରୁ ପାରଳାଖେମୁଣ୍ଡିର ଶିକ୍ଷା ବ୍ୟବସ୍ଥା କିପରି ରୁଗ୍ଣ ଥିଲା ତାହା ଅପର୍ଣ୍ଣା ପଣ୍ଡାଙ୍କ **ନବ ଗଞ୍ଜାମ** ପୁସ୍ତକରୁ ଅନୁମିତ ହୁଏ । ସେ ଜଣାଇଛନ୍ତି-

> *ବର୍ତ୍ତମାନ ଯେଉଁ ପାରଳା କଲେଜ ଅଛି, ୧୮୭୬ ସାଲରେ ତାହାର ଅବସ୍ଥା ଅତୀବ ଶୋଚନୀୟ ହୋଇଥିଲା । ତହିଁରେ କେବଳ I form ପର୍ଯ୍ୟନ୍ତ ଶ୍ରେଣୀମାନ ଥିଲା, ଛାତ୍ରମାନଙ୍କ ସଂଖ୍ୟା ପ୍ରାୟ ୫୮ ମାତ୍ର, କ୍ରମରେ ସେଠାରେ III form ପର୍ଯ୍ୟନ୍ତ ରହିଲା ।*

୧୮୮୧ ସାଲ୍‌ରେ ସ୍କୁଲରେ ପ୍ରାୟ ୯୦ ଛାତ୍ର ଥିଲେ । ତନ୍ମଧ୍ୟରେ ଓଡ଼ିଆ ଛାତ୍ର ଅତ୍ୟନ୍ତ ବିଦ୍ୟାଭ୍ୟାସ କରୁଥିଲେ । ୧୮୮୨ ସାଲରେ ସେହି ସ୍କୁଲରୁ ୧୦ ଜଣ ଛାତ୍ର middle-school ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ଏହି ଦଶଜଣ ମଧ୍ୟରୁ ତିନିଜଣ ଓଡ଼ିଆ ବାଳକ ।

୧୮୮୪ ସାଲରେ ତହିଁରେ Matriculation class ରହିଲା, ତଦ୍‌ବଧି ସେହି ସ୍କୁଲରେ ଓଡ଼ିଆ ବାଳକମାନଙ୍କ ସଂଖ୍ୟା କ୍ରମରେ ବୃଦ୍ଧି ହେଲା । ଓଡ଼ିଆ ଛାତ୍ରମାନଙ୍କରୁ ଅନେକେ Matriculation ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ, ତନ୍ମଧ୍ୟରୁ ଗୌରଚନ୍ଦ୍ର ପାତ୍ର F.A ପଢ଼ିବାକୁ ବ୍ରହ୍ମପୁର ଯାଇ, କେତେଦିନ ସେଠାରେ ପଢ଼ି କଲେଜ ତ୍ୟାଗ କଲେ ।

୧୮୮୬ ସାଲରେ ଶ୍ୟାମ ସୁନ୍ଦର ରାଜଗୁରୁ ପାରଳାରେ Matriculation ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ F.A. ବ୍ରହ୍ମପୁରରେ ଏବଂ B.A. ରାଜମହେନ୍ଦ୍ରିରେ ପଢ଼ି ୧୮୯୧ ସାଲ୍‌ରେ B.A. ଉପାଧି ପାଇଲେ । ଏହି ବ୍ୟକ୍ତି ଗଞ୍ଜାମର ପ୍ରଥମ ଓଡ଼ିୟା B.A. ଥିଲେ । ତଦନନ୍ତର ଗଞ୍ଜାମର ଓଡ଼ିୟା ଛାତ୍ରମାନଙ୍କ ମଧ୍ୟରୁ ଅନେକେ Matriculation, F.A. ଓ B.A. ପରୀକ୍ଷାମାନଙ୍କରେ ଉତ୍ତୀର୍ଣ୍ଣ ହେଲେ ।

୧୮୯୧ ସାଲ୍‌ରେ ପାରଳାର ରାଜା ଶ୍ରୀ ଗୌରଚନ୍ଦ୍ର ଗଜପତି Court of wards ଠାରୁ ରାଜ୍ୟ ପ୍ରାପ୍ତି ହେଲେ । ତାହାଙ୍କ ପରିପାଳନ ସମୟରେ ପାରଳା ସ୍କୁଲ କ୍ରମରେ ଉନ୍ନତି ଲଭିଲା । ପାରଳା ରାଜାଙ୍କ ଏଜେଣ୍ଟ Mt. W. Taylor ଏ ବ୍ୟକ୍ତି ଅନେକ କାଳ ବିଦ୍ୟା ବିଭାଗରେ କାମ କରିଥିବାରୁ ତାହାଙ୍କ ଯତ୍ନରେ ଏବଂ ରାଜାଙ୍କ ଶ୍ରଦ୍ଧା ହେତୁ ଏହି ସ୍କୁଲ ୧୮୯୬ ସାଲରେ କଲେଜରେ ପରିଣତ ହେଲା । ମାନ୍ଦ୍ରାଜ ଗଭର୍ଣ୍ଣର Lord Wealock ସାହେବଙ୍କ ଦ୍ୱାରା ଶୁଭଦିନରେ ଏହି କଲେଜ ପ୍ରଥମେ ଖୋଲାଗଲା ।

୧୮୯୪ ସାଲ ପର୍ଯ୍ୟନ୍ତ ଏହି କଲେଜରେ ଜଣେ ମାତ୍ର ଓଡ଼ିୟା ପଣ୍ଡିତ ଥିଲେ । ଆଉ ଅନ୍ୟ ଶକ୍ଷିକମାନେ କେବଳ ତେଲୁଗୁ ।

୧୮୯୪ ଠାରୁ କ୍ରମରେ ଓଡ଼ିୟା ଶିକ୍ଷକମାନେ ପ୍ରବେଶ ହେଲେ । କଲେଜରେ ବର୍ତ୍ତମାନ ଯେତେ ଶିକ୍ଷକ ଅଛନ୍ତି ତନ୍ମଧ୍ୟରୁ ୧/୬ ଅଂଶ ଓଡ଼ିୟା ଶିକ୍ଷକ,

*କଲେଜରେ ଛାତ୍ର ସଂଖ୍ୟା ପ୍ରାୟ ଏକ ହଜାର, ତନ୍ମଧ୍ୟରୁ ଓଡ଼ିଆମାନଙ୍କ ସଂଖ୍ୟା ପ୍ରାୟ ୪୦୦ ଜଣ ।'' (1917, ପୃ. 19-20)*

କେବଳ ଶିକ୍ଷା ନୁହେଁ ନୌପଡ଼ାଠାରୁ ପାରଳାଖେମୁଣ୍ଡି ପର୍ଯ୍ୟନ୍ତ ରେଳପଥ, କୃଷ୍ଣ ଓ ରାଧା ସାଗର ପରି ବୃହତ୍ ଜଳାଶୟ, ପୁସ୍ତକାଗାର ଓ ମଠ ମନ୍ଦିରମାନ ସ୍ଥାପନ କରି ପାରଳାବାସୀଙ୍କ ସର୍ବାଙ୍ଗୀନ ଉନ୍ନତିପାଇଁ ଗୌରଚନ୍ଦ୍ର ଗଜପତି ସ୍ମରଣୀୟ । ତାଙ୍କ ସମୟରେ ଓଡ଼ିଆମାନଙ୍କୁ ରାଜକର୍ମଚାରୀ ରୂପେ ନିଯୁକ୍ତି ଦିଆଯାଇଥିଲା । ଏସବୁପାଇଁ ସେ ବ୍ରିଟିଶ ସରକାରଙ୍କ ଦ୍ୱାରା ସି.ଆଇ.ଇ. ଉପାଧିରେ ଭୂଷିତ ହୋଇଥିଲେ । 'ପଦ୍ମନାଭ ରଙ୍ଗାଳୟ' ଏବଂ 'ଉତ୍କଳ ହିତୈଷିଣୀ' ସଭାର ପୃଷ୍ଠପୋଷକତା କରିବାରେ ତାଙ୍କର କାର୍ପଣ୍ୟ ନଥିଲା । ରାଜସଭାର ବିଦ୍‌ବତ୍ ମଣ୍ଡଳୀ ଏବଂ ଭ୍ରାତା ପଦ୍ମନାଭଙ୍କ ପ୍ରଭାବରୁ ଓଡ଼ିଆ ସାହିତ୍ୟର ଉନ୍ନତିପାଇଁ ରାଜଦ୍ୱାର ସଦା ଉନ୍ମୁକ୍ତ ଥିଲା ।

ଗୌରଚନ୍ଦ୍ର ଗଜପତିଙ୍କ ରଚନାରୂପେ ବର୍ତ୍ତମାନ ଗୋଟିଏ ନାଟକ ଏବଂ ଗୋଟିଏ ଗୀତି ସଙ୍କଳନ ଗଜପତି ପ୍ରେସ୍‌ରୁ ପ୍ରକାଶିତ ହୋଇ ଲୋକଲୋଚନକୁ ଆସିପାରିଛି । କିନ୍ତୁ **ଧ୍ରୁବ ନାଟକର** ପ୍ରଚ୍ଛଦରେ 'ଶ୍ରୀ ଶ୍ରୀ ଶ୍ରୀ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ ମହାରାଜ କର୍ତ୍ତୃକ ପ୍ରଣୀତ' ବୋଲି ଉଲ୍ଲେଖ ଥିଲେ ସୁଦ୍ଧା ପାରଳାଖେମୁଣ୍ଡିର ବୟୋବୃଦ୍ଧ ନାଟ୍ୟକାର ଓ ସାହିତ୍ୟିକ ଏହାକୁ ସ୍ୱୀକାର କରିବାପାଇଁ ପ୍ରସ୍ତୁତ ନୁହଁନ୍ତି । ସେମାନଙ୍କ କହିବା କଥା ହେଲା, ଗୌରଚନ୍ଦ୍ର ନାଟ୍ୟପ୍ରେମୀ କିନ୍ତୁ ନାଟକ ରଚନା କରିବାର ଦକ୍ଷତା ତାଙ୍କ ପାଖରେ ନଥିଲା । ପଦ୍ମନାଭ ନାରାୟଣଙ୍କ ପ୍ରତି ତାଙ୍କର ଥିଲା ଅଗାଧ ମମତା, ଭ୍ରାତାଙ୍କ ଶିକ୍ଷା ଓ ସ୍ୱାସ୍ଥ୍ୟ ସମ୍ପର୍କରେ ସେ ସତତ ସଚେତନ ଥିଲେ । ଶେଷ ଜୀବନରେ ଭାଇଙ୍କୁ ରୋଗମୁକ୍ତ କରିବା ପାଇଁ ସେ ଯେଉଁ ଆନ୍ତରିକ ଉଦ୍ୟମ କରିଛନ୍ତି, ତା'ର ପଟାନ୍ତର ନାହିଁ । ଭାରତବର୍ଷର ବହୁ ଚିକିତ୍ସକଙ୍କୁ ଏଥିପାଇଁ ନିଯୁକ୍ତ କରାଯାଇଛି । ଏପରିକି ଜଣେ ଚିକିତ୍ସକଙ୍କୁ ସେତେବେଳେ ଦୈନିକ ତିନିଶହ ଟଙ୍କା ପାରିଶ୍ରମିକ ଦେଇ ପରିଚର୍ଯ୍ୟାପାଇଁ ପାରଳାଖେମୁଣ୍ଡିଠାରେ ରଖାଯାଇଥିଲା ।

ଅନୁରୂପଭାବେ ପଦ୍ମନାଭ ମଧ୍ୟ ଥିଲେ ଭରତଙ୍କ ପରି ଭ୍ରାତୃଭକ୍ତ । କେବଳ ଜ୍ୟେଷ୍ଠଭ୍ରାତା ନୁହଁନ୍ତି ରାଜାଭାବେ ମଧ୍ୟ ସେ ତାଙ୍କୁ ସମ୍ମାନ ପ୍ରଦର୍ଶନ କରୁଥିଲେ । ରାଜକାର୍ଯ୍ୟରେ ଭ୍ରାତାଙ୍କୁ ସମସ୍ତ ପ୍ରକାର ସାହାଯ୍ୟ କରିବାରେ ତାଙ୍କର କୁଣ୍ଠା ନଥିଲା । ପୈତୃକ ସମ୍ପତ୍ତି ରୂପେ ପ୍ରାପ୍ତ ଯେଉଁ ଦଶଲକ୍ଷ ଟଙ୍କା ସରକାରଙ୍କଠାରେ ଗଚ୍ଛିତ ଥିଲା,

ତାହା ସରକାରଙ୍କ ଜିଜ୍ଞାସା କ୍ରମେ ଜ୍ୟେଷ୍ଠଭ୍ରାତାଙ୍କ ନିକଟରେ ପେଠ କରିବାପାଇଁ ସେ ଅନୁରୋଧ ଜଣାଇଥିବା ଜୀବନୀକାର ଅପର୍ଣ୍ଣା ପଣ୍ଡା ଉଲ୍ଲେଖ କରିଛନ୍ତି ।

ଏ ଦୃଷ୍ଟିରୁ ପଦ୍ମନାଭ ନାରାୟଣ ଦେବ **ଧ୍ରୁବ ନାଟକ**ଟି ରଚନା କରି ତା'ର ପିତୃତ୍ୱ ଗୌରଚନ୍ଦ୍ରଙ୍କୁ ଅର୍ପଣ କରିଥିବା ଅବିଶ୍ୱାସ୍ୟ ମନେ ହୁଏ ନାହିଁ । ନାଟକଟିର ରଚନାଶୈଳୀ ଏବଂ ସଂଳାପଗୁଡ଼ିକୁ ଅନୁଶୀଳନ କଲେ ଏହା ଅଧିକ ସତ୍ୟ ବୋଲି ପ୍ରତିପାଦିତ ହୁଏ । ଏହି ଅନୁମାନର ସତ୍ୟତା ଅଧିକ ଦୃଢ଼ୀଭୂତ ହୁଏ ଅପର୍ଣ୍ଣା ପଣ୍ଡାଙ୍କ 'ନବ ଗଞ୍ଜାମ' ପୁସ୍ତକରେ ଥିବା ସ୍ୱୀକାରୋକ୍ତିରୁ । ସେ ପୁସ୍ତକଟିର ପୃ ୨୨ରେ **ଧ୍ରୁବ ନାଟକ** ଏବଂ **ଗୀତ ରତ୍ନାବଳୀ**କୁ ନିର୍ଦ୍ଧାରିତ ଭାବେ ଗୌରଚନ୍ଦ୍ର ଗଜପତିଙ୍କ ରଚନା ନ କହି ତାଙ୍କ **ନାମାଙ୍କିତ** ବୋଲି ସୂଚାଇଛନ୍ତି । ଡକ୍ଟର ସତ୍ୟ ନାରାୟଣ ରାଜଗୁରୁ ମଧ୍ୟ ଏହି ଅଭିମତର ସମର୍ଥକ । ଅନୁରୂପ ଭାବେ **ଗୀତ ରତ୍ନାବଳୀ**ର ପ୍ରଚ୍ଛଦ୍‌ରେ **ଶ୍ରୀ ଶ୍ରୀ ଶ୍ରୀ ଗୌରଚନ୍ଦ୍ର ଗଜପତି ମହାରାଜାଙ୍କ ନାମରେ ଅଙ୍କିତ** ବୋଲି ସୂଚିତ ଅଛି । ଏଥିରୁ 'ଧ୍ରୁବ ନାଟକ'ର ପିତୃତ୍ୱ ନିର୍ଦ୍ଧାରଣ କରିବା କଷ୍ଟକର ନୁହେଁ ।

ନାଟକଟି ପାଞ୍ଚୋଟି ଅଙ୍କ ବିଶିଷ୍ଟ । ପ୍ରଥମ ଅଙ୍କ ଦୁଇଟି, ଦ୍ୱିତୀୟ ଦୁଇଟି, ତୃତୀୟ ତିନୋଟି, ଚତୁର୍ଥ ତିନୋଟି ଏବଂ ପଞ୍ଚମ ଗୋଟିଏ ମାତ୍ର ଦୃଶ୍ୟରେ ବିଭକ୍ତ । ଅଙ୍କ ଓ ଦୃଶ୍ୟଗୁଡ଼ିକ ନାତିଦୀର୍ଘ ଏବଂ ସୁବିଭକ୍ତ । ସେହିପରି ପ୍ରସ୍ତାବନାରେ ତିନୋଟି, ପ୍ରଥମ ଅଙ୍କ ପ୍ରଥମ ଦୃଶ୍ୟରେ ଗୋଟିଏ, ଦ୍ୱିତୀୟ ଦୃଶ୍ୟରେ ଗୋଟିଏ, ଦ୍ୱିତୀୟ ଅଙ୍କ ପ୍ରଥମ ଦୃଶ୍ୟରେ ଦୁଇଟି ଏବଂ ଦ୍ୱିତୀୟ ଦୃଶ୍ୟରେ ଦୁଇଟି, ତୃତୀୟ ଅଙ୍କ ପ୍ରଥମ ଦୃଶ୍ୟରେ ଦୁଇଟି, ଦ୍ୱିତୀୟ ଦୃଶ୍ୟରେ ଗୋଟିଏ, ତୃତୀୟ ଦୃଶ୍ୟରେ ପାଞ୍ଚୋଟି, ଚତୁର୍ଥ ଅଙ୍କ ଦ୍ୱିତୀୟ ଦୃଶ୍ୟରେ ଦୁଇଟି, ତୃତୀୟ ଦୃଶ୍ୟରେ ଗୋଟିଏ ଏବଂ ପଞ୍ଚମ ଅଙ୍କରେ ତିନୋଟି ଗୀତ ସଂଯୋଜିତ । ଗୀତଗୁଡ଼ିକ ଅସ୍ଥାନ ପ୍ରଯୁକ୍ତ ବୋଲି ବିବେଚିତ ହୋଇପାରିବ ନାହିଁ । ମାତ୍ର ପାଞ୍ଚ ଛ'ଟି ନାରୀ ଚରିତ୍ର ଏବଂ ସାତ ଆଠୋଟି ପୁରୁଷ ଚରିତ୍ରଙ୍କ ଦ୍ୱାରା ଏହା ଅଭିନୀତ ହୋଇପାରେ । ପ୍ରଯୋଜନାପାଇଁ ବିଶେଷ ମଞ୍ଚସଜ୍ଜା ଓ ଉପକରଣର ଆବଶ୍ୟକତା ନାହିଁ । ଦୁଇରୁ ଅଢ଼େଇ ଘଣ୍ଟା ମଧ୍ୟରେ ଏହା ପ୍ରଦର୍ଶିତ ହୋଇପାରେ । ମଞ୍ଚାୟନର ଏ ପ୍ରକାର ସୁବିଧା ଦୃଷ୍ଟିରୁ ନାଟକଟି ପାରଳା ବାହାରେ ବିଭିନ୍ନ ସ୍ଥାନରେ ଅଭିନୀତ ହୋଇଥିବା ଶୁଣିବାକୁ ମିଳେ । ତୃତୀୟ ସଂସ୍କରଣର ମୁଖବନ୍ଧରେ ପ୍ରକାଶକ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ମହାରାଜା ମଧ୍ୟ ଲେଖିଛନ୍ତି-''ଧ୍ରୁବ ନାଟକର

ଦ୍ୱିତୀୟ ସଂସ୍କରଣ ଅପେକ୍ଷାକୃତ ଅଳ୍ପ ସମୟ ମଧ୍ୟରେ ଶେଷ ହେବା ଯୋଗୁଁ ଏବଂ ପ୍ରାକୃତିକ ଉତ୍କଳର ନାନା ସ୍ଥାନର ଗ୍ରାହକଗଣ କଥିତ ବହି ସକାଶେ ପତ୍ର ପ୍ରେରଣ କରୁଥିବା ଅବଗତ ହୋଇ ଏହି ତୃତୀୟ ସଂସ୍କରଣ ମୁଦ୍ରଣ ଓ ପ୍ରକାଶ କରିଅଛୁଁ ।'' 'ଉତ୍କଳ ସମ୍ମିଳନୀ'ର ବିଭିନ୍ନ ଅଧିବେଶନରେ ମଧ୍ୟ ଏହା ପ୍ରଦର୍ଶିତ ହୋଇ ଓଡ଼ିଶାର ସୁଧୀବୃନ୍ଦଙ୍କଦ୍ୱାରା ପ୍ରଶଂସିତ ହୋଇଥିଲା ।

ଧ୍ରୁବ ନାଟକଟି ଅନ୍ୟ ଏକ ଦୃଷ୍ଟିରୁ ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ନାଟକର ପ୍ରସ୍ତାବନାରେ ସୂତ୍ରଧାର ଏହାର ଗ୍ରହଣୀୟତା ସମ୍ପର୍କରେ ସନ୍ଦେହ ପ୍ରକାଶ କରି କହିଛି-

*ଅଦ୍ୟ ଗୋଟିଏ ନୂତନ ନାଟକ ଅଭିନୟ କରାଇବା ସକାଶେ ମୁଁ ଉଦ୍ଦେଶ୍ୟ କରିଅଛି । ମାତ୍ର ଏତକି ସନ୍ଦେହ ହୁଏ । ଏତଦ୍ ଦେଶରେ ଉତ୍କଳ ଭାଷାରେ ନାଟକାଭିନୟ ଆଜି ପର୍ଯ୍ୟନ୍ତ ହୋଇନାହିଁ । କେବେ ହୋଇ ନଥିବା କଥାଟା ମୁଁ ଯଦି କରିବି, ଲୋକେ ଅବଶ୍ୟ ମୋତେ ହାସ୍ୟରେ ଉଡ଼ାଇ ଦେବେ । ନ କଲେ ମନ ରହିବ ନାହିଁ । ଏଥିକି ଉପାୟ କଣ x x x ସଭ୍ୟବର୍ଗ ଯେପରି ହଂସମାନେ ଜଳମିଶ୍ରିତ ଦୁଗ୍ଧରୁ ଜଳଭାଗ ତ୍ୟାଗ କରି କ୍ଷୀରଭାଗ ମାତ୍ର ଗ୍ରହଣ କରନ୍ତି ସେପରି ଆପଣମାନେ ସକଳ ବିଷୟର ଦୋଷ ପରିତ୍ୟାଗ କରି କେବଳ ଗୁଣଗ୍ରହଣ କରିବେ ବୋଲି ମୁଁ ବିଶ୍ୱାସ କରେ ।*

ସୂତ୍ରଧାରଙ୍କ ସନ୍ଦେହ ଅଳୀକ ନଥିଲା । ନାଟକଟି ପ୍ରକାଶ ପାଇବା ପରେ ଏହାର ପ୍ରାପ୍ତି ସ୍ୱୀକାର କରି ବିଭିନ୍ନ ପତ୍ରିକାର ସମ୍ପାଦକ ମନ୍ତବ୍ୟ ପ୍ରଦାନ କରିଛନ୍ତି । ସେ ସବୁ ମଧ୍ୟରୁ 'ଉତ୍କଳ ସାହିତ୍ୟ'ର ପଞ୍ଚମ ଭାଗ, ଏକାଦଶ ଓ ଦ୍ୱାଦଶ ସଂଖ୍ୟାରେ ସମ୍ପାଦକ ବିଶ୍ୱନାଥ କର ସଂକ୍ଷିପ୍ତ ସମାଲୋଚନା ସ୍ତମ୍ଭରେ ଯେଉଁ ମନ୍ତବ୍ୟ ଦେଇ କିଛି ଦୋଷତ୍ରୁଟି ଦର୍ଶାଇଥିଲେ ତାହା ''ଶ୍ରୀ ସଙ୍ଗୀତ ପ୍ରହ୍ଲାଦ ନାଟକ'' ଉପରେ 'ଉତ୍କଳ ଦୀପିକା' ମନ୍ତବ୍ୟର ଅନୁରୂପ ଥିଲା ଏବଂ ଭାଷା ଆଲୋଚନା ପାଇଁ ପଥ ଉନ୍ମୁକ୍ତ କରିଥିଲା । ମନ୍ତବ୍ୟକୁ ଘେନି ଯେଉଁ ବାଦ ପ୍ରତିବାଦର ସ୍ୱର ଉଠିଥିଲା ତାହା ଶ୍ୟାମ ସୁନ୍ଦର ରାଜଗୁରୁଙ୍କ ପ୍ରବନ୍ଧାବଳୀରେ ସନ୍ନିବେଶିତ ହୋଇଥିଲେ ସୁଦ୍ଧା ପାଠକମାନଙ୍କ ସହଜ ଅବଗତି ନିମିତ୍ତ ଏଠାରେ ସେ ସବୁର ପୁନର୍ମୁଦ୍ରଣ କରାଯାଉଛି । ପ୍ରକାଶ ଥାଉକି ଧ୍ରୁବ ନାଟକର ସମାଲୋଚନା **ଉତ୍କଳ ସାହିତ୍ୟର ନବମ ଭାଗ ନୁହେଁ ପଞ୍ଚମ ଭାଗରେ ପ୍ରକାଶ ପାଇଥିଲା ।**

*ଶ୍ରୀ ଶ୍ରୀ ଶ୍ରୀ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ କର୍ତ୍ତୃକ ପ୍ରଣୀତ । ପାରଳାର ରାଜଭ୍ରାତା ଶ୍ରୀଯୁକ୍ତ ପଦ୍ମନାଭ ନାରାୟଣ ଦେବ ମହୋଦୟ ନାନା ଭାବରେ ସାହିତ୍ୟ କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଅଛନ୍ତି । ତାଙ୍କର ଅଗ୍ରଜ ପାରଳାର ବର୍ତ୍ତମାନ ରାଜା ମହୋଦୟ ସେ କ୍ଷେତ୍ରରେ ପ୍ରବେଶ କରିଥିବାର ଦେଖି ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦ ଲାଭ କରିଅଛୁ । ଅନୁଜଙ୍କର ସାଦର ଓ ସାନୁନୟ ଆହ୍ବାନ ବିଫଳ ହୋଇ ନାହିଁ । ରାଜା ମହୋଦୟ ପ୍ରସିଦ୍ଧ ଭକ୍ତଶିଶୁ ଧ୍ରୁବଙ୍କ ଉପାଖ୍ୟାନ ଅବଲମ୍ବନ କରି ଏ ନାଟକ ଖଣ୍ଡି ପ୍ରଣୟନ କରିଅଛନ୍ତି । ପୌରାଣିକ ଉପାଖ୍ୟାନ ଘେନି କାବ୍ୟ ବା ନାଟକ ପ୍ରଣୟନ କରିବାକୁ ହେଲେ ଯେ ଠିକ୍ ପୁରାଣ ଅନୁସରଣ କରିବାକୁ ହେବ, ଏପରି କିଛି କଥା ନାହିଁ । ଚରିତ୍ରର ଉତ୍କର୍ଷ ସାଧନ ନିମନ୍ତେ ଲେଖକ ନିଜ ଅଭିପ୍ରାୟାନୁଯାୟୀ ଯୋଗ ବିୟୋଗ କରି ପାରନ୍ତି । ସକଳ ଦେଶର ଓ ସକଳ ଯୁଗର କବି ଓ ନାଟକକାରମାନେ ଏହା କରିଅଛନ୍ତି । ସମାଲୋଚ୍ୟ ନାଟକରେ ଚରିତ୍ରଗୁଡ଼ିକର ବିଶେଷତ୍ୱ ଅଧିକ ନ ଥିଲେ ହେଁ ସବୁଗୁଡ଼ିକ ସଙ୍ଗତ ଭାବରେ ଚିତ୍ରିତ ହୋଇଅଛି । ଭାଷାରେ ପ୍ରାଦେଶିକତା ଅତ୍ୟନ୍ତ ଅଧିକ । 'କୋଆଡ଼େ', 'କୋଦିନ', 'ଜାଣି ଦେଇଅଛନ୍ତି', 'ତୁ ଚାଲେ', 'ବାବୁ ମୋ କଥା ଶୁଣେ', 'ନ ଜାଣି ଯାହା ପାରୁ ତାହା ବୋଲି ଦେନ୍ତି', 'ବିଜେ ହେନ୍ତୁ', 'ତୋ ଆଡ଼େ ଦେଖିବେ ନାହିଁ', 'ତୁ ଦେଖିଲେ, ବାଳୁତ', 'କେ ନ ଦେଖୁଣୁ', 'କେ ଦେଖିବେ ନାହିଁଟି, 'କାନ୍ଦୁଛି ପରା ତ', 'ସୁରୁଚି କହିଲା ପରି ତୁ ବା ମୁ ପୂର୍ବ ଜନ୍ମରେ ତପସ୍ୟା କରି ନାହିଁ', 'ଧାଈମାତ୍ର ଘୁମୁଡ଼ି ମାରି ଶୋଇଛି', 'ଆଉ ନିଷ୍ଠୁର କର ନା' ଏହିପରି ପ୍ରୟୋଗ ବହୁଳ ଦୃଷ୍ଟ ହେଲା । ଆଶା କରୁଁ, ଗ୍ରନ୍ଥକାର ମହୋଦୟ ଭବିଷ୍ୟତରେ ଏ ସବୁ ତ୍ରୁଟି ପରିହାର କରିବାକୁ ଯତ୍ନ କରିବେ ।*

ଏଥିରେ ନାଟକୀୟ ସଂଳାପର ଭାଷାରେ ଥିବା ପ୍ରାଦେଶିକତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ଆଲୋଚକ ପରବର୍ତ୍ତୀ ନାଟକରେ ଏ ସବୁ ତ୍ରୁଟି ପରିହାର ପାଇଁ ସୂଚନା ଦେଇଥିଲେ । ଏ ସମ୍ପର୍କରେ **ବାଣ ଦର୍ପଦଳନ** ନାଟକର ପ୍ରାକ୍ ସୂଚନାରେ ଉଦ୍ଧୃତ **ଉତ୍କଳ ଦୀପିକା**ର ମନ୍ତବ୍ୟରୁ ଗୋଟିଏ ବାକ୍ୟ ପ୍ରଣିଧାନଯୋଗ୍ୟ । ସେଥିରେ ଅଛି-

> *'ଉତ୍କଳ ସାହିତ୍ୟ'ର ପୁଷ୍ଟି ବିଷୟରେ ଏମାନଙ୍କର ଯତ୍ନ ଓ ଅଧ୍ୟବସାୟ ଦେଖି ଆମ୍ଭେମାନେ ଏକାନ୍ତ ପ୍ରୀତ ହୋଇଅଛୁ ଏବଂ ଯଦ୍ୟପି କି ତାହା ଆଶାନୁରୂପ ସଫଳ ହେବାର କହିପାରୁ ନାହୁଁ ତହିଁର କାରଣ ବୋଧକରୁଁ ଏ ଅଞ୍ଚଳର (କଟକ) କୃତବିଦ୍ୟ ମଣ୍ଡଳୀ ସହିତ ସଦାଳାପର ଅଭାବ ବିନା ଆଉ କିଛି ନୁହେଁ ।*

ଭାଷା ଓ ଶୈଳୀ ସମ୍ପର୍କରେ ଊନବିଂଶ ଶତାବ୍ଦୀର ଶେଷ ପାଦରେ ପ୍ରକାଶିତ ରାମଶଙ୍କର ରାୟ, ହରିହର ରଥ ପ୍ରମୁଖଙ୍କ ପ୍ରକାଶିତ ନାଟକର ଅନୁସରଣପାଇଁ ଏଥିରେ ପରୋକ୍ଷ ନିର୍ଦ୍ଦେଶ ଦିଆଯାଇଛି । ଏହାର ପ୍ରତିବାଦ କରିଛନ୍ତି ପାରଳାର ରଙ୍ଗମଞ୍ଚ, ନାଟକ ଓ ଦର୍ଶକଙ୍କ ସହିତ ଅଙ୍ଗାଙ୍ଗୀଭାବେ ସଂପୃକ୍ତ ସ୍ନାତକ ଉପାଧିଧାରୀ ଶ୍ୟାମସୁନ୍ଦର ରାଜଗୁରୁ । ଦକ୍ଷିଣ ଓଡ଼ିଶାର କଥିତ ଓଡ଼ିଆ ଭାଷାକୁ ତାଚ୍ଛଲ୍ୟ କରିବାର ପ୍ରବୃତ୍ତି ସେ ସମୟରେ ଥିଲା, ଆଜି ବି ଅଛି । ଏହା ମାଧ୍ୟମରେ ତ ନାଟକ, ଚଳଚ୍ଚିତ୍ର, ଧାରାବାହିକ ଏପରି କି ବିଶ୍ରାମାଳାପରେ ମଧ୍ୟ ହାସ୍ୟରସ ସୃଷ୍ଟି କରାଯାଉଛି । ଏଣୁ ଭାଷାରେ ପ୍ରାଦେଶିକତାର ସ୍ୱରୂପ ଓ ତା'ର ଆବଶ୍ୟକତା ପ୍ରତିପାଦନ କରିବା ଶ୍ୟାମସୁନ୍ଦରଙ୍କ ପ୍ରତିବାଦର ଥିଲା ଆଭିମୁଖ୍ୟ । ଏହି ପ୍ରତିବାଦ ପତ୍ରଟି **ଉତ୍କଳ ସାହିତ୍ୟର** ଷଷ୍ଠ ଭାଗ ପଞ୍ଚମ ସଂଖ୍ୟାରେ ଅର୍ଥାତ୍ ୧୯୦୨ ମସିହା ଅଗଷ୍ଟ ସଂଖ୍ୟାରେ ପ୍ରକାଶିତ ।

*ପ୍ରତିବାଦ ପତ୍ର*

*ଉତ୍କଳସାହିତ୍ୟ-ସମ୍ପାଦକ ମହୋଦୟ ସମୀପେଷୁ ।*

*ମହାଶୟ,*

*ଶ୍ରୀ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ କର୍ତ୍ତୃକ ପ୍ରଣୀତ ଧ୍ରୁବ ନାଟକ ସମାଲୋଚନା କରି ୧୧, ୧୨ଶ ସଂଖ୍ୟା ସାହିତ୍ୟରେ ଆପଣ ଲେଖିଅଛନ୍ତି- ''ଭାଷାରେ ପ୍ରାଦେଶିକତା ଅତ୍ୟନ୍ତ ଅଧିକ । ... ଆଶା କରୁଁ, ଗ୍ରନ୍ଥକାର ମହୋଦୟ ଭବିଷ୍ୟତରେ ଏ ସବୁ ତ୍ରୁଟି ପରିହାର କରିବାକୁ ଯତ୍ନ କରିବେ ।'' ପୁସ୍ତକରେ ପ୍ରାଦେଶିକତା ବ୍ୟବହାର କରିବା ଦୋଷ, ଏହା ଆପଣ କେଉଁ ନିୟମାନୁସାରେ ସ୍ଥିର କରିଅଛନ୍ତି, ଆମ୍ଭେ ଜାଣି ପାରୁ ନାହୁଁ । ମାକ୍ସମୁଲର କହିଅଛନ୍ତି- "and unless the literary and courtly languages invigorate themselves by a constantly renewed intercourse with their former companions, the popular dialects will sooner or later asset their ascendency". (Vide Max Muller's Science of Language, Vol. I, page 61) ଏଥିର ଅଭିପ୍ରାୟ ଏହି ଯେ, ପ୍ରାଦେଶିକ ଭାଷା ସହିତ ପୁସ୍ତକଗତ ଭାଷାର ସମ୍ପର୍କ ନ ରହିଲେ, କାଳକେ ପ୍ରାଦେଶିକ ଭାଷା ନିଜ ଆଧିପତ୍ୟ ସ୍ଥାପନ କରିଯିବ । ସେ ଅନ୍ୟତ୍ର କହିଅଛନ୍ତି-*

*"What we are accusomed to call languages, the literary idioms of Greece and Rome and India, of Italy, France and Spain, must be considered as artificial rather than as natural forms of speech. The real and natural life of language is in its dialects, a name which in its widest sense comprises provincialism, brogue, patois, jargon or any other variety that affects the general progress of language down to the idiom of families and individuals." (Vide Max Muller's Science of Language, Vol I. page 55)*
ଏଥିର ସାରାଂଶ ଏହି ଯେ, ଗ୍ରୀସ୍, ରୋମ୍, ଭାରତବର୍ଷ, ଇଟାଲୀ, ଫ୍ରାନ୍ସ, ସ୍ପେନ୍ ଇତ୍ୟାଦି ଦେଶମାନଙ୍କରେ ଆମ୍ଭେମାନେ ଯାହାକୁ ଭାଷା କହୁଁ, ତାହା କୃତ୍ରିମ ଭାଷା, ଭାଷାର ପ୍ରକୃତ ପ୍ରାଣ କେବଳ ପ୍ରାଦେଶିକତା । ଏହା ପ୍ରମାଣ ସିଦ୍ଧ ନ ହେଲେ କି କାନ୍ଥି ଅଞ୍ଚଳର ନବ୍ୟଶିକ୍ଷିତ ଉତ୍କଳ ସନ୍ତାନମାନେ ମାତୃଭାଷା ପ୍ରାୟ ଭୁଲି ଯାଇଥାନ୍ତେ ? ପୁଣି ନୀଚ ଶ୍ରେଣୀ ଲୋକେ ଜଗନ୍ନାଥ ଦାସକୃତ ଭାଗବତ ବଙ୍ଗଳା ଅକ୍ଷରରେ ଲେଖି ଆହୁରି ପଢୁଥାନ୍ତେ ? ଦେବ ଭାଷା ସଂସ୍କୃତ ମୃତ ହୋଇ ପଡ଼ି ରହିଥାନ୍ତା ? ଲୋକେ ଆଜିକାଲି ବଙ୍ଗଳା, ଓଡ଼ିଆ, ଗୁଜରାଟୀ ଇତ୍ୟାଦି ପ୍ରାଚୀନ ପ୍ରାଦେଶିକ ଭାଷାମାନଙ୍କରେ କଥାବାର୍ତ୍ତା କରୁଥାନ୍ତେ ? ଭିଟ୍ନୀ ସାହେବ କହିଅଛନ୍ତି-*"They (language and dialect) are only two names for the same thing, as looked at from different points of view. ** On the other hand, there is no tongue in the world to which we should not with perfect freedom and perfect propriety apply the name of dialect, when considering it as one of a body of related forms of speech**; It (the science of language) has taught us that one man's speech is just as much a language as another man's; that even the most cultivated tongue that exists in only the dialect of a certain class in a certain locality-*

*both class and locality-limited, though the limits may be wide ones." (Vide Whitney's Life and Growth of Language, page 177 to 178) ଅର୍ଥାତ୍ ଭାଷା ଓ ପ୍ରାଦେଶିକତା ମଧ୍ୟରେ କୌଣସି ପ୍ରଭେଦ ନାହିଁ । ପୃଥିବୀରେ ଏପରି କୌଣସି ଭାଷା ନାହିଁ, ଯାହାକୁ ଆମ୍ଭେମାନେ ପ୍ରାଦେଶିକତା କହି ନପାରିବା । ଆମ୍ଭମାନଙ୍କ କଥାବାର୍ତ୍ତା ଯେପରି ଭାଷା, ଅନ୍ୟ ଲୋକମାନଙ୍କ କଥାବାର୍ତ୍ତା ସେପରି ଭାଷା ଅଟେ । ଯେତେ ଉତ୍କୃଷ୍ଟ ଭାଷା ହେଉ, ତାହା କୌଣସି ପ୍ରଦେଶର କୌଣସି ଶ୍ରେଣୀ ଲୋକମାନଙ୍କର ପ୍ରାଦେଶିକତା ମାତ୍ର । ଏଥିରୁ ଆପଣ ସ୍ପଷ୍ଟ ବୁଝିବେ, ପ୍ରାଦେଶିକତା ଦୋଷରେ ଗଣ୍ୟ ନୁହେ, ବରଂ ପୁସ୍ତକରେ ଯେତେ ଅଧିକ ପରିମାଣରେ ବ୍ୟବହୃତ ହେବ, ତେତେ ବାଞ୍ଛନୀୟ ।*

ସେହି ସଂଖ୍ୟାରେ ହିଁ ସମ୍ପାଦକ ମହୋଦୟ ଆତ୍ମପକ୍ଷ ସମର୍ଥନ ଏବଂ ଓଡ଼ିଆ ଭାଷା ବ୍ୟବହାରରେ ଲେଖକମାନଙ୍କୁ ସଚେତନ କରାଇବାପାଇଁ ଏକ ଦୀର୍ଘ ଉତ୍ତର ପ୍ରକାଶ କରିଥିଲେ; ତାହା ହେଉଛି-

*ଶ୍ରୀ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ପ୍ରଣୀତ ଧ୍ରୁବ ନାଟକର ସମାଲୋଚନା ପ୍ରସଙ୍ଗରେ ଆମ୍ଭେମାନେ ଲେଖିଥିଲୁ, ''ଭାଷାରେ ପ୍ରାଦେଶିକତା ଅତ୍ୟନ୍ତ ଅଧିକ ।'' ସଙ୍ଗେ ସଙ୍ଗେ ପୁସ୍ତକରୁ କେତେଗୁଡ଼ିଏ ଦୃଷ୍ଟାନ୍ତ ମଧ୍ୟ ଉଦ୍ଧାର କରି ଦେଇଥିଲୁଁ । ଏଥକୁ ପାରଳାନିବାସୀ ଆମ୍ଭମାନଙ୍କର ଶ୍ରଦ୍ଧେୟ ବନ୍ଧୁ ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ରାଜଗୁରୁ ବି.ଏ. ମହାଶୟ ଉକ୍ତ କଥାର ପ୍ରତିବାଦ କରି ଖଣ୍ଡିଏ ପତ୍ର ଲେଖିଅଛନ୍ତି । ପତ୍ର ଖଣ୍ଡିକ ପାଠକମାନଙ୍କ ଗୋଚରାର୍ଥ ପ୍ରକାଶ କଲୁଁ । ତାଙ୍କ ପ୍ରତିବାଦର ଅର୍ଥ ଏହି ଯେ, ପୁସ୍ତକରେ ପ୍ରାଦେଶିକତା (Provincial-ism) ଦୋଷ ନୁହେ, ବରଂ ଗୁଣ । ଏହି ଉକ୍ତିର ସପକ୍ଷରେ ସେ ପଣ୍ଡିତବର Max Muller ଏବଂ Whitney ସାହେବଦ୍ୱୟଙ୍କୁ ସାକ୍ଷିସ୍ୱରୂପ ଉପସ୍ଥିତ କରିଅଛନ୍ତି । ସେ ସମ୍ବନ୍ଧରେ ଆମ୍ଭମାନଙ୍କର ବକ୍ତବ୍ୟ ସଂକ୍ଷେପରେ ନିମ୍ନରେ ବ୍ୟକ୍ତ କରୁଅଛୁଁ ।*

*ପ୍ରଥମତଃ ପ୍ରାଦେଶିକତା କଣ ଏବଂ ଆମ୍ଭେମାନେ ତାହା କି ଭାବରେ ବ୍ୟବହାର କରିଅଛୁଁ, ଏହା ସୁସ୍ପଷ୍ଟ ହେବା ଉଚିତ୍ । ଏକ ଭାଷା ବିଭିନ୍ନ ପ୍ରଦେଶରେ*

ଅବସ୍ଥାଭେଦରେ ଲୋକମୁଖରେ ଏବଂ ବହିଃପ୍ରଭାବର ସଂସ୍ପର୍ଶରେ ପରିବର୍ତ୍ତିତ ହୋଇ ଯେଉଁ ଆକାର ଧାରଣ କରିଥାଏ, ତାହା ଆମ୍ଭମାନଙ୍କ ମତରେ ଭାଷାର ପ୍ରାଦେଶିକତା । ପ୍ରତ୍ୟେକ ଭାଷାରେ ଏପରି ପରିବର୍ତ୍ତନର ଦୃଷ୍ଟାନ୍ତ ମିଳିବ । ମାତ୍ର ଲିଖିତ ଭାଷା ବା ସାହିତ୍ୟରେ ବିଶେଷ ପ୍ରୟୋଜନ ସ୍ଥଳ ଭିନ୍ନ ଏଗୁଡ଼ିକ ବ୍ୟବହୃତ ହୁଏ ନାହିଁ ଏବଂ ହେବା ଦୂଷଣୀୟ ବୋଲି ବିବେଚିତ ହୋଇଥାଏ । ଗୋଟିଏ ମାତ୍ର ବାହାରର ଦୃଷ୍ଟାନ୍ତ ଦିଆଯାଉ । ପୂର୍ବବଙ୍ଗର କଥିତ ଭାଷା ବଙ୍ଗଳା ହେଲେ ମଧ୍ୟ ତାହା ଏପରି ବିକୃତ ହୋଇ ଯାଇଅଛି ଯେ, ଅପରାଞ୍ଚଳବାସୀ ବଙ୍ଗସନ୍ତାନମାନଙ୍କର ଗୋଟିଏ ଆମୋଦର ବିଷୟ ହୋଇଅଛି । ମାତ୍ର ପୂର୍ବବଙ୍ଗର ଗ୍ରନ୍ଥକାରମାନେ ନିଜ ପ୍ରଦେଶର ବିଶେଷତ୍ୱ ରକ୍ଷା କରିବାପାଇଁ ସାହିତ୍ୟରେ ତାହା ପ୍ରବର୍ତ୍ତିତ କରନ୍ତି କି ? କଲେ ଉପହାସାସ୍ପଦ ହେବେ ନାହିଁ କି ? ସେ କଥା ଦୂରେ ଥାଉ, ଶିକ୍ଷିତ ପୂର୍ବାଞ୍ଚଳବାସୀମାନଙ୍କ କଥାରେ ସୁଦ୍ଧା ପ୍ରାଦେଶିକ ଭାବ ଅତ୍ୟଳ୍ପ ଲକ୍ଷିତ ହୋଇଥାଏ । ଅନ୍ତତଃ ତାହା ପରିହାର କରିବାର ଚେଷ୍ଟା ପ୍ରାୟ ସର୍ବତ୍ର ଲକ୍ଷିତ ହେବ । ବିସ୍ତୃତ ଉତ୍କଳଭାଷୀ ପ୍ରଦେଶ ଘଟନାଚକ୍ରରେ ଖଣ୍ଡ ବିଖଣ୍ଡ ହୋଇ ବିଭିନ୍ନ ପ୍ରଦେଶର ଅନ୍ତର୍ଭୁକ୍ତ ହୋଇ ପଡ଼ିଅଛି ଏବଂ ବିଭିନ୍ନ ଭାଷାମାନଙ୍କର ପ୍ରଭାବରେ ନାନା ଭାବରେ ପରିବର୍ତ୍ତିତ ହୋଇ ନାନା ଆକାର ଧାରଣ କରିଅଛି । ସମ୍ବଲପୁର ପ୍ରଭୃତି ସ୍ଥାନରେ ହିନ୍ଦିର ପ୍ରଭାବ, ଗଞ୍ଜାମ ଅଞ୍ଚଳରେ ତେଲିଙ୍ଗର ପ୍ରଭାବ ଏବଂ କାନ୍ଥି ବିଭାଗରେ ଏବଂ ବାଲେଶ୍ୱର ଅଞ୍ଚଳରେ ବଙ୍ଗଳାର ପ୍ରଭାବ ଉକ୍ତ ଅଞ୍ଚଳମାନଙ୍କର ଭାଷାକୁ ଭିନ୍ନ ଭିନ୍ନ ଛାଞ୍ଚରେ ଢାଳି କିମ୍ଭୂତକିମାକାର କରି ପକାଇଅଛି । ପ୍ରତ୍ୟେକ ଅଂଶର କଥିତ ଭାଷା ସ୍ୱତନ୍ତ୍ର । ଆଉ କଥା ଦୂରେ ଥାଉ, ଏହି କଟକ ଜିଲ୍ଲାରେ ମଧ୍ୟ ସହର ଏବଂ ମଫସଲର ଭାଷାରେ କେତେ ପାର୍ଥକ୍ୟ ରହିଅଛି । ଏଥି ମଧ୍ୟରୁ କେଉଁଟିକି ଆଦର୍ଶ ବୋଲି ଧରିବାକୁ ହେବ ? ପ୍ରତ୍ୟେକ ସ୍ଥାନର ଅଧିବାସୀମାନେ ଯଦି ଆତ୍ମଗୌରବ ରକ୍ଷାପାଇଁ ସ୍ୱସ୍ଥାନପ୍ରଚଳିତ ଭାଷାକୁ ସାହିତ୍ୟରେ ପ୍ରବର୍ତ୍ତିତ କରିବାକୁ ଚେଷ୍ଟା କରନ୍ତି, ତେବେ ଓଡ଼ିଆ ଭାଷା ଗୋଟିଏ ଅଦ୍ଭୁତ ଖେଚୁଡ଼ି ହେବ ନାହିଁ କି ? ବାଲେଶ୍ୱରର ଓଡ଼ିଆ କହିବେ- ଯାଇଥିନି, ଖାଇଥିନି, ଯିମି, ଖାଇମି, ତୋ ଘର କେଇଟି, ସେ ଘରକତିର ଅଛି, ଗୁଡ଼ (ଗୋଡ଼), କୁଠା ଇତ୍ୟାଦି । କଟକର ସାଧାରଣ ଲୋକେ କହନ୍ତି-

ହାମେ, ହାମ ଘର, ଲଇ (ନଈ), ଲଡ଼ିଆ ଇତ୍ୟାଦି । ସମ୍ବଲପୁର ଅଞ୍ଚଳରେ ସେହିପରି ନାହିଁ ଯାଏଁ, ନାହିଁ ଖାଏଁ, ମୁଁ କେନ୍ତା କର୍‌ବି, ମୋର୍ ନେ ନାଇଁନ ଇତ୍ୟାଦି କେତେ ପ୍ରକାର ବିଶେଷତ୍ୱ ଦୃଷ୍ଟ ହେବ । କାନ୍ଥି ଅଞ୍ଚଳରେ ମଧ ଏକପ୍ରକାର ଓଡ଼ିଆ ଏପର୍ଯ୍ୟନ୍ତ ଅଛି । ତାହାର ଦିଓଟି ଗୋଟିଏ ଦୃଷ୍ଟାନ୍ତ ଦେଖନ୍ତୁ- ଆମ୍ଭେମାନେ ଜଣେ ନିମ୍ନଶ୍ରେଣୀର ଲୋକକୁ ପଚାରିଲୁ, 'ତୋ ଘର କେତେ ବାଟ ?'' ଉତ୍ତର-'ବାଟ ନଇ ତ କି ?' ଓଡ଼ିଆ ପାଠକ ! କିଛି ବୁଝିପାରିଲେ କି ? ଆହୁରି ଦେଖନ୍ତି-ବେଚିଦିବ, ବଗାନ ଛାଡ଼ି ଦିଇଛି, ଜତକ ଆଲାପ ଥାଇଲ, ମାୟାମାନଙ୍କର, ଅନ୍ୟ ରକମ କୟ, ତୁମି ଦେଖି ଆଣିବ, ସେ ବିଚା ହେଇଛେ, ବଡ଼ଗୁଲା ଫୁଟି ଯାଇଛେ. ଘୁମେଇ ଗଲା ନା କି ହେ ? ଇତ୍ୟାଦି । କାନ୍ଥି ଅଞ୍ଚଳର କୌଣସି ବ୍ୟକ୍ତି ପୁସ୍ତକ ଲେଖିବାକୁ ବସି ଏପରି କଥା ବ୍ୟବହାର କଲେ ପାଠକମାନେ ଅନୁମୋଦନ କରିବେ ତ ? ଏହିପରି ଭାଷାର ପ୍ରାଦେଶିକ ବିକୃତ ଆକାରକୁ ଆମ୍ଭେମାନେ ସର୍ବତ୍ର ଦୂଷଣୀୟ ବୋଲି ମନେ କରୁଁ ଏବଂ ସମାଲୋଚିତ ପୁସ୍ତକରେ ଏହିପରି ଅଂଶଗୁଡ଼ିକୁ ଦୋଷ ଦେଇଥିଲୁଁ । ପାଠକମାନଙ୍କର ବିଚାରର ସୁବିଧା ନିମିତ୍ତ ପୁଣି ଉକ୍ତ ପୁସ୍ତକରୁ କେତେଗୋଟି ଦୃଷ୍ଟାନ୍ତ ଦେଉଅଛୁଁ ।-'ନ ଜାଣି ଯାହା ପାରୁ ତାହା ବୋଲି ଦେନ୍ତି ।' 'ଆସେ (ଆସ ବା ଆ) ଉଚ୍ଛୁର ହେଲାନି ଭୋଜନ କରିବୁ ।' କୋଠାରେ ଥିଲୁ, 'କୋଠାରେ ଅଛନ୍ତି', 'କୋଆଡ଼େ', 'ହେଟି', 'ତୁ ଦେଖିଲେ ବାଳୁତ', ତୁ ଗଲେ ସେମାନେ ପଚାରିବେ ନାହିଁ ଯେ ତୋ ଆଡ଼େ ଦେଖିବେ ନାହିଁ ।' 'ବିଜେ ହେନ୍ତୁ', କେ ଜାଣି ପାରିବ', 'କେ କହିଲା', 'ଜାଣି ଦେଇଅଛନ୍ତି', 'କେ ନ ଦେଖୁଣୁ', 'କଣ ହେଲା ! ଆହୁରି ଆସିଲେ ନାହିଁ ।' (ଏଠାରେ ଆହୁରି କଥାର ଅର୍ଥ କଣ ?) 'କି ଗୋଳମାଳ ଚଳିଲା ନା ?' 'ସୁରୁଚି କହିଲା ପରି ତୁ ବା ମୁଁ ପୂର୍ବଜନ୍ମରେ ତପସ୍ୟା କରି ନାହିଁ ।' 'ଧ୍ରୁବର ମନ ଭୁଲାଇ ଫେରି ମୋ ଠାକୁ ଆସିଲା ପରି କର ।' 'ବର୍ତ୍ତମାନ ଆମ୍ଭେମାନେ କରିବା ଉପାୟ କ'ଣ ?' ଅଧିକ ଦୃଷ୍ଟାନ୍ତ ଦେବାର ପ୍ରୟୋଜନ ନାହିଁ । ଆମ୍ଭେମାନେ ଜାଣୁ ଗଞ୍ଜାମ ଜିଲ୍ଲାର ଅଧିକାଂଶ ସ୍ଥଳର ଭାଷା ଏହାଠାରୁ ବହୁଗୁଣରେ ବିକୃତ । ଗ୍ରନ୍ଥକାର ବିଶେଷ ସତର୍କତା ଅବଲମ୍ବନ କରି ଅନେକ ପରିମାଣରେ ଭାଷାର ବିଶୁଦ୍ଧତା ରକ୍ଷା କରିଅଛନ୍ତି ।

ତଥାପି ସେ ସମ୍ପୂର୍ଣ୍ଣ ରୂପେ ପ୍ରାଦେଶିକତାର ହସ୍ତରୁ ରକ୍ଷାପାଇ ପାରି ନାହାନ୍ତି । ଏହାହିଁ ଆମ୍ଭେମାନେ କହିଥିଲୁଁ ଏବଂ କହୁଅଛୁ । 'ଗଞ୍ଜାମ ଓଡ଼ିଆ ହିତବାଦିନୀ' ଥରେ ଯାହାଙ୍କ ଦୃଷ୍ଟି ପଥରେ ପଡ଼ିଥିବ, ସେ ଗଞ୍ଜାମୀ ଓଡ଼ିଆର ଉଜ୍ଜ୍ୱଳ ଦୃଷ୍ଟାନ୍ତ ପାଇଥିବେ । ଖଣ୍ଡିଏ ସାମାନ୍ୟ ପତ୍ରରୁ କିଞ୍ଚିତ୍ ନମୁନା ଦେଉଅଛୁଁ-ଗତ ପତ୍ରିକାମାନଙ୍କ ତାହାଙ୍କଦ୍ୱାରା ଏହି ସ୍କୁଲକୁ ସପ୍ଲାଇ ହେଉଥିଲା । ତେଣୁକରି ମହାଶୟ ତାହାଙ୍କଠାକୁ ଲେଖିବାକୁ ଲୋଡ଼ା କରୁଅଛି ।' ଏହିପରି ଭାଷାର ବ୍ୟବହାରକୁ ଗୁଣ ବୋଲା ଯିବ କି ?

ଆମ୍ଭେମାନେ ଘରୁଆ ଭାଷା ବ୍ୟବହାରର ବିରୋଧୀ ନୋହୁଁ । ବରଂ ନାଟକ ଉପନ୍ୟାସାଦିରେ ବ୍ୟକ୍ତିବିଶେଷଙ୍କ ମୁଖରେ ସେପରି ଭାଷାର ବ୍ୟବହାର ଏକାନ୍ତ ବାଞ୍ଛନୀୟ ବୋଲି ମନେ କରୁଁ । ତଦଭାବରେ ଲିଖିତ ଭାଷା ଅପୂର୍ଣ୍ଣ ରହିବ ଏବଂ ଅନେକ ସ୍ଥଳରେ ବିଷୟ ସହିତ ଭାଷାର ସଙ୍ଗତି ରକ୍ଷା ହେବ ନାହିଁ । ପୁଣି ଭାଷାର-Idiom ରକ୍ଷା ନ କଲେ ବିଶେଷତ୍ୱ ରହିଲା ନାହିଁ-Idiom ଭାଷାର ବଳ ବୃଦ୍ଧି କରେ । ମାତ୍ର ପ୍ରାଦେଶିକତା ସର୍ବଥା ପରିହାର୍ଯ୍ୟ । ଭିନ୍ନ ଭିନ୍ନ ପ୍ରଦେଶର ଓଡ଼ିଆ କାଳକ୍ରମେ ଏପରି ଭିନ୍ନଭାବାପନ୍ନ ହୋଇ ପଡ଼ିଅଛି ଯେ, ଅନେକ ସମୟରେ ଗୋଟିଏ ପ୍ରଦେଶର ଭାଷା ଅନ୍ୟ ପ୍ରଦେଶବାସୀଙ୍କ ପକ୍ଷରେ ବୁଝିବା ସୁକଠିନ ହୋଇପଡ଼େ । ଏପରିସ୍ଥଳରେ କର୍ତ୍ତବ୍ୟ କ'ଣ ? ଲିଖିତ ଭାଷାର ଗୋଟିଏ ଆଦର୍ଶ (standard) ହେବା ଉଚିତ୍ ନୁହେଁ କି ? ତେବେ କାହାକୁ ଆଦର୍ଶ କରିବା ? ଆମ୍ଭମାନଙ୍କ ମତରେ ସର୍ବାଞ୍ଚଳପ୍ରଚଳିତ ଓ ସର୍ବଜନବୋଧ ବିଶୁଦ୍ଧ ଓଡ଼ିଆ ଗ୍ରାମ୍ୟ କଥା ଓ idiom ରକ୍ଷା କରି ଅଧିକ ପରିମାଣରେ ସଂସ୍କୃତ ମୂଳକ ସହଜ ଶବ୍ଦମାନ ବ୍ୟବହାର କଲେ କାହାରି କୌଣସି ଆପତ୍ତି ରହିବ ନାହିଁ । କେବଳ ଗ୍ରାମ୍ୟ ଭାଷାଦ୍ୱାରା ଯେ ବର୍ତ୍ତମାନ ସମୟୋପଯୋଗୀ ସକଳ ପ୍ରକାର ଲେଖା ଚଳି ପାରିବ, ଏପରି ଆଶା କରାଯାଇ ନ ପାରେ । ବିଷୟ ଭେଦରେ ଭାଷାର ମଧ୍ୟ ପ୍ରଭେଦ ଘଟିବା ଅନିବାର୍ଯ୍ୟ । କେବଳ ଘରୁଆ ବା ଗ୍ରାମ୍ୟ ଭାଷା ବ୍ୟବହାର କଲା ବେଳେ କଥା ଗୁଡ଼ିକର ବଳାବଳ ଓ ପ୍ରସାର ପ୍ରତି ଦୃଷ୍ଟି ରଖିବାକୁ ହେବ । ଯାହା ସମ୍ପୂର୍ଣ୍ଣରୂପେ ସ୍ଥାନୀୟ ଏବଂ ବିକାରପ୍ରାପ୍ତ, ତାହା ସର୍ବଥା ବର୍ଜନୀୟ । ସୁଖର ବିଷୟ, ପ୍ରାୟ ସର୍ବାଞ୍ଚଳର ଶିକ୍ଷିତ ଓଡ଼ିଆପୁଏ

*ଅତ୍ୟାଧିକପରିମାଣରେ ଏହି ପନ୍ଥା ଅନୁସରଣ କରୁଅଛନ୍ତି । ଶ୍ୟାମସୁନ୍ଦର ବାବୁ ମୁହଁରେ ଯାହା କୁହନ୍ତୁ, କାର୍ଯ୍ୟରେ ଏହି ପନ୍ଥାବଲମ୍ବୀ । ତାହାର ପ୍ରମାଣ, ତାଙ୍କର ଭାଷା ପ୍ରାୟ ପ୍ରାଦେଶିକତାବର୍ଜିତ । ଏହି ସମ୍ମିଳନ ଓ ସମ୍ପ୍ରସାରଣର ଯୁଗରେ କି ଭାଷା, କି ଭାବ, କି ଆଚାର ବ୍ୟବହାର, ଯେ କୌଣସି ବିଷୟରେ କ୍ଷୁଦ୍ର ପ୍ରାଦେଶିକତାକୁ ସର୍ବସ୍ୱ ମନେ କରି ତାହାରି ସୀମା ମଧ୍ୟରେ ଆବଦ୍ଧ ରହିବାକୁ ଚେଷ୍ଟା କରିବା ନିତାନ୍ତ ବିଡ଼ମ୍ବନା ।*

*ପ୍ରସଙ୍ଗକ୍ରମେ ଅନେକ କଥା କହି ପକାଇଲୁଁ । ଆଉ ଅଧିକ କିଛି କହିବାର ନାହିଁ । ରାଜଗୁରୁ ମହାଶୟ ଜଣେ ସୁଶିକ୍ଷିତ, ବୁଦ୍ଧିମାନ୍ ଓ ବିଚକ୍ଷଣ ବ୍ୟକ୍ତି । ପୁସ୍ତକରୁ ଦୃଷ୍ଟାନ୍ତ ଦେଖାଇ ଆମ୍ଭମାନଙ୍କ ଉକ୍ତି ସମର୍ଥନ କରିଥିବା ସତ୍ତ୍ୱେ ସେ ଯେ ଭ୍ରମରେ ପତିତ ହେଲେ ଏବଂ ପ୍ରମାଣ ପ୍ରୟୋଗ କରିବାକୁ ବୃଥା ଲଣ୍ଡଭଣ୍ଡ ହେଲେ, ଏହାହିଁ ବିଚିତ୍ର । ଗଞ୍ଜାମ ଅଞ୍ଚଳର ଓଡ଼ିଆ ଭାଷା ବିକୃତ ଅବସ୍ଥା ପ୍ରାପ୍ତ ହୋଇଅଛି, ଏ କଥା କିଏ ସେ ଅସ୍ୱୀକାର କରନ୍ତି ? ଭାଷା କାହିଁକି, ଓଡ଼ିଆ ଅକ୍ଷରର ମଧ୍ୟ କିଞ୍ଚିତ୍ ଅପବ୍ୟବହାର ଘଟିଅଛି । ସେ ଯାହାହେଉ, ଗଞ୍ଜାମ ଅଞ୍ଚଳର ଓଡ଼ିଆରେ ଯେ ଅନେକ ବିଶୁଦ୍ଧ ଓଡ଼ିଆ ଶବ୍ଦ ଓ idiom ଅବିକୃତଭାବରେ ରକ୍ଷିତ ହୋଇ ଚଳି ଆସୁଅଛି, ଏ କଥା ଆମ୍ଭେମାନେ ମୁକ୍ତ କଣ୍ଠରେ ସ୍ୱୀକାର କରୁଅଛୁଁ । ସେଗୁଡ଼ିକର ସର୍ବତ୍ର ପ୍ରଚଳନ ଏକାନ୍ତ ବାଞ୍ଛନୀୟ । ଅନ୍ତତଃ ଭାଷା ସୂତ୍ରରେ ଯେପରି ବିଚ୍ଛିନ୍ନ ଉତ୍କଳଭାଷୀ ପ୍ରଦେଶମାନଙ୍କର ସମ୍ମିଳନର ସୂତ୍ରପାତ ହୋଇଅଛି ଏବଂ ପରସ୍ପରଙ୍କ ମଧ୍ୟରେ ଯେପରି ଆକର୍ଷଣର ଲକ୍ଷଣ ପ୍ରକାଶ ପାଉଅଛି, ସମସ୍ତ ଅଞ୍ଚଳର ଭାଷା ପରିଶୁଦ୍ଧ ହୋଇ ଏ ଭାବାପନ୍ନ ହେବାର ସମୟ ଅଧିକ ଦୂରବର୍ତ୍ତୀ ନୁହେ । ସେହି ସୁଦିନ ପ୍ରତି ଲକ୍ଷ୍ୟ ରଖି କାର୍ଯ୍ୟ କରିବା ପ୍ରତ୍ୟେକ ସ୍ୱଦେଶବତ୍ସଳ ଉତ୍କଳ ସନ୍ତାନଙ୍କର ପବିତ୍ର କର୍ତ୍ତବ୍ୟ ।*

ଶ୍ୟାମସୁନ୍ଦର ଏହି ଉତ୍ତରରେ ସନ୍ତୁଷ୍ଟ ହୋଇପାରି ନଥିଲେ । ଗଞ୍ଜାମ ଅଞ୍ଚଳରେ ବ୍ୟବହୃତ ଏବଂ ଉତ୍ତର ଓଡ଼ିଶାରେ ବ୍ୟବହୃତ ଭାଷାର ସାମ୍ୟ ପ୍ରଦର୍ଶନ ପୂର୍ବକ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭାଷାତତ୍ତ୍ୱବିତ୍‌ମାନଙ୍କ ମନ୍ତବ୍ୟ ସାହାଯ୍ୟରେ ସେ ନିଜର ମତ ପ୍ରତିଷ୍ଠା କରିଥିଲେ । ଏହି ପ୍ରତିବାଦ ପତ୍ରଟି **ଉତ୍କଳ ସାହିତ୍ୟ**ର ଷଷ୍ଠ ଭାଗ ସପ୍ତମ ଓ ଅଷ୍ଟମ ସଂଖ୍ୟାରେ (ଅକ୍ଟୋବର ନଭେମ୍ବର ୧୯୦୨) ପ୍ରକାଶିତ । ଏହା ସହିତ ସେ ଓଡ଼ିଆ ଭାଷାର ଆଦର୍ଶ ସମ୍ପର୍କରେ ଅନ୍ୟ ଏକ ସ୍ୱତନ୍ତ୍ର ପ୍ରବନ୍ଧ ମଧ୍ୟ ଲେଖିଛନ୍ତି । ପ୍ରତିବାଦ ପତ୍ରଟି ଥିଲା-

## ପ୍ରତିବାଦପତ୍ର

ଶ୍ରୀଯୁକ୍ତ ଉତ୍କଳ-ସାହିତ୍ୟ ସମ୍ପାଦକ ମହୋଦୟ ସମୀପେଷୁ ।

ମହାଶୟ,

ଆପଣ ଜଣେ ସମ୍ପାଦକ । ସମ୍ପାଦକଙ୍କ ସହିତ ପ୍ରତିବାଦ କରିବା ବାଞ୍ଛନୀୟ ନୁହେ । ନ ହେଲେ ମଧ ଆପଣଙ୍କର ବିଚିତ୍ର ଯୁକ୍ତି ଓ ଏକପକ୍ଷୀୟ ଭାଷା ବିଚାରଟା ସାହିତ୍ୟ ପାଠକମାନଙ୍କୁ ଜଣାଇ ଦେବା ଆବଶ୍ୟକ ବୋଧ କରି ଏହି ପ୍ରତ୍ୟୁତ୍ତର ଖଣ୍ଡିକ ଆପଣଙ୍କଠାକୁ ପଠାଉଅଛୁଁ । ପ୍ରାର୍ଥନା ଏହି ଯେ, ଆପଣ ବିରକ୍ତ ନ ହୋଇ ଦୟାପୂର୍ବକ ଏହା ଆପଣଙ୍କ ପତ୍ରିକାରେ ପ୍ରକାଶ କରି ଚିରବାଧିତ କରିବେ ।

ଆପଣ କହିଅଛନ୍ତି-"ଏକ ଭାଷା ବିଭିନ୍ନ ପ୍ରଦେଶରେ ଅବସ୍ଥା ଭେଦରେ ଲୋକ ମୁଖରେ ଏବଂ ବହିଃପ୍ରଭାବର ସଂସ୍ପର୍ଶରେ ପରିବର୍ତ୍ତିତ ହୋଇ ଯେଉଁ ଆକାର ଧାରଣ କରିଥାଏ, ତାହା ଆମ୍ଭମାନଙ୍କ ମତରେ ଭାଷାର ପ୍ରାଦେଶିକତା ।" ଏଥିର ମର୍ମ ଆମ୍ଭେ କିଛି ବୁଝିପାରିଲୁଁ ନାହିଁ । ମନେ କରନ୍ତୁ, (କ) ବୋଲିବା ଭାଷା ଅବସ୍ଥାଭେଦରେ ପରିବର୍ତ୍ତିତ ହୋଇ (ଖ)ର ଆକାର ଧାରଣ କରିଅଛି । ତେବେ (ଖ) କେଉଁ ଭାଷାର ପ୍ରାଦେଶିକତା ବୋଲାଯିବ ? ଧ୍ରୁବ ନାଟକରୁ ଯେଉଁ ପ୍ରାଦେଶିକତାଗୁଡ଼ିକ ଆପଣ ବାଛି ଅଛନ୍ତି, ତାହା ଆପଣଙ୍କ ଏହି ସିଦ୍ଧାନ୍ତ ସହିତ ମିଳାଇ ପାରିବେ ? ଆପଣ ମନେ ରଖିବା ଉଚିତ୍ ଯେ, ଅବସ୍ଥାଭେଦରେ ବା ଲୋକମୁଖରେ ପରିବର୍ତ୍ତିତ ହୋଇ ଯେ କୌଣସି ଆକାର ଧାରଣ କରୁ, ସମୁଦାୟ ଭାଷାଟାକୁ କିଏ ପ୍ରାଦେଶିକତା କହନ୍ତି ନାହିଁ । "Provincialism is a peculiar word in a province." ଯେଉଁ କଥା (a word, not a language) କୌଣସି ଏକ ପ୍ରଦେଶରେ ମାତ୍ର ପ୍ରାୟ ସକଳ ଶ୍ରେଣୀ ଲୋକମାନଙ୍କଦ୍ୱାରା ବ୍ୟବହୃତ ହୋଇଥାଏ ଏବଂ ଅନ୍ୟାନ୍ୟ ପ୍ରଦେଶରେ ବ୍ୟବହୃତ ହେଲେ ସହଜେ ବୁଝା ଯାଏ ନାହିଁ, ତାହା ପ୍ରାଦେଶିକତା । ଉଦାହରଣ-ଆପଣଙ୍କ ପ୍ରଦେଶର 'ଗହଣା', 'ଭାଉ', 'ଭଣ୍ଡୁର', 'ଖଞ୍ଜ', 'କାଇ', ଏ ଅଞ୍ଚଳର 'ଅଡଙ୍ଗା', 'ଲହି', 'ଭଣ୍ଡ', 'ଯୋଡ଼ା (ଯୋତା) 'ସାରିବା' (ଖାଇବା), 'ତଲାରି'

(ଛତ୍ରବିଶେଷ) ଇତ୍ୟାଦି । ଏ ସବୁ ପୁସ୍ତକରେ ବ୍ୟବହୃତ ହେଲେ କି ଦୋଷ ? ବାଲେଶ୍ୱରର 'ଯାଇଥିନି', 'ଯିମି' 'ଗୁଡ଼' (ଗୋଡ଼) କଟକର 'ଲଇ', 'ଲଡ଼ିଆ', 'ମି', ସମ୍ବଲପୁରର 'ମୁଁ କେନ୍‌ତା କରିବି, 'ମୋର କେ ନାହିଁ ନ', କାଛି ଅଞ୍ଚଳର 'ବାଟ ନଇତ କି', 'ବଗାନ ଛାଡ଼ିଦିଇଛି' ଏସବୁ କେବଳ ନିମ୍ନଶ୍ରେଣୀ ଲୋକମାନଙ୍କ କଥା (Vulgarism) (୧) ବା ଅପଭ୍ରଂସ (corruptions), ପ୍ରାଦେଶିକତା (provincialism) ନୁହେଁ । ଏପରି କଥା ପୁସ୍ତକରେ ବ୍ୟବହାର କରିବା ଅବଶ୍ୟ ଦୂଷଣୀୟ । ଏହା ଆମ୍ଭେ ସ୍ୱୀକାର କରୁଁ । ମାତ୍ର ଧ୍ରୁବ ନାଟକରୁ ଆପଣ ଯେଉଁ ଅଂଶଗୁଡ଼ିକ ଉଦ୍ଧାର କରିଅଛନ୍ତି, ସେ ସବୁକୁ vulgarisms ବା provincialisms ବୋଲାଯାଇ ନ ପାରେ । ଥରେ ପରୀକ୍ଷା କରି ଦେଖନ୍ତୁ । 'କେ ଜାଣି ପାରିବ', 'କେ କହିଲା', 'କେ ନ ଦେଖୁଣୁ'- ଆପଣଙ୍କ ଅଞ୍ଚଳରେ ମଧ୍ୟ ଏପରି କହନ୍ତି । ବନବାଳା ୨୦ ଓ ୩୦ ପୃଷ୍ଠାରେ ଲେଖାଅଛି - 'କେ ଜାଣେ କାହୁଁ ଏ ଆବିର୍ଭୂତ ହେଲା', 'କେ ଜାଣି କିଏ ମୁଁ କେମତେ କହିବି । ସର୍ବସାର ବ୍ୟାକରଣରେ 'କେ' ଶବ୍ଦ ସର୍ବନାମ ତଳେ ଦିଆହୋଇଅଛି । ଉତ୍କଳ ଅଭିଧାନ ମଧ୍ୟ ଦେଖନ୍ତୁ । 'ଯେ ଆଜ୍ଞା' ବନବାଳା ୨୩ ଓ ୨୮ ପୃଷ୍ଠାରେ ଦେଖିଲେ, 'ଯେ ଆଜ୍ଞା' ଆପଣଙ୍କ ଅଞ୍ଚଳରେ ମଧ୍ୟ ବ୍ୟବହୃତ ହେବାର ଜଣାଯିବ । ତେବେ ଆପଣଙ୍କ ସିଦ୍ଧାନ୍ତାନୁସାରେ ଏ ସବୁ କିପରି ପ୍ରାଦେଶିକ ? 'ଆହୁରି' କଥାର ଅର୍ଥ 'ଏତେବେଳଯାଏଁ' । କବି ଗୋପାଳକୃଷ୍ଣ କହିଅଛନ୍ତି-''ତେତିକିବେଳୁ ମୋ ତନୁ ଥରିଲାଣି ଦେଖି ନାହିଁ ମୁଖ ଆହୁରି ଆଖିରେ ।'' ଯେ କୌଣସି ଅର୍ଥରେ ବ୍ୟବହୃତ ହେଉ, କଥାଟା ଅନ୍ୟ ଆକାର ଧାରଣ କରି ନାହିଁ ତ ? ତେବେ କିପରି ପ୍ରାଦେଶିକତା ହେଲା ? 'କୋଆଡ଼େ'-ବାଲେଶ୍ୱରରେ 'ଗୋଡ଼'କୁ 'ଗୁଡ଼' ଯେପରି କହନ୍ତି, ଆପଣଙ୍କ ଅଞ୍ଚଳର 'କୁଆଡ଼େ' ବଦଳରେ ଏ ପ୍ରଦେଶ ଲୋକେ 'କୋଆଡ଼େ' କହନ୍ତି । ବନବାଳା ୨୧ ଓ ୨୨ ପୃଷ୍ଠା ଦେଖନ୍ତୁ । ''ଏଇଠି କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲା'', ''କୁଆଡ଼େ ଖୋଜିବାକୁ ଯିବି'' । ଗଞ୍ଜାମର 'କୋ', ବଙ୍ଗାଳି 'କୋନ୍', ହିନ୍ଦୀ 'କୋ', ସଂସ୍କୃତ 'କଃ' (କୋ) ଏସବୁ ସମାନ । ଏପରି ସ୍ଥଳେ 'କୋଆଡ଼େ' କାହିଁକି ପ୍ରାଦେଶିକତା ବୋଲାଯିବ ? ଅଗ୍ରଗ୍ରସିତ

ଲୋକ ବା ପଦାର୍ଥକୁ ଦେଖାଇ କହିବାକୁ ହେଲେ ଆପଣମାନେ 'ହେଇଟି' କହନ୍ତି, ଆମ୍ଭେମାନେ 'ହେଟି' କହୁଁ । ଉଚ୍ଚାରଣରେ ମଧ୍ୟବର୍ତ୍ତୀ ସ୍ୱରର ମାତ୍ର ଲୋପ ହୋଇଅଛି । ଏପରି ଅନେକଠାରେ ହେବାର ଦେଖାଯାଏ । ଉଦାହରଣ- 'କଅଣ-କଣ', 'ପାଆନ୍ତା-ପାନ୍ତା', 'ହେଉନ୍ତୁ (ରାମବିଳାସ ୨୫ ପୃଷ୍ଠା ଦେଖନ୍ତୁ)-ହେନ୍ତୁ' । ସ୍ୱରବର୍ଣ୍ଣମାନେ ଲୁପ୍ତ ହେବା କିମ୍ବା ଅନ୍ୟ ଆକାର ଧାରଣ କରିବା କଥିତ ଭାଷାର ଗୋଟିଏ ସ୍ୱାଭାବିକ ଲକ୍ଷଣ । ଏଥିରେ ପ୍ରାଦେଶିକ ବିଭିନ୍ନତା କଣ ? 'କୋଠାରେ'-ଆପଣମାନେ 'କଉଁଠି', 'କଉଁଠୁ', କୌଠୁଁ ବ୍ୟବହାର କରନ୍ତି, ଆମ୍ଭେମାନେ 'କୋଠି', 'କୋଠାରେ', 'କୋଠୁ', କହୁଁ, ବଙ୍ଗାଳିମାନେ 'କୋଥା' 'କୋଥାୟ', ମରହଟ୍ଟାମାନେ 'କୋଠେ' କହନ୍ତି । ଓଡ଼ିଶାରେ ମଧ୍ୟ 'କୋଠା' 'କୋଠାକୁ' ଏପରି ବ୍ୟବହାର ହୁଏ । (Vide Beams' Comparative Grammar Vol II page 338.) । ତେବେ 'କୋଠାରେ' କିପରି ପ୍ରାଦେଶିକତା ହେଲା ? 'ଆସେ'- ଦ୍ୱିତୀୟ ପୁରୁଷ ଏକବଚନରେ ଆଦେଶାର୍ଥରେ କେତେକ କ୍ରିୟା ଏକାରାନ୍ତ ହେବାର ଦେଖାଯାଏ । ଯଥା- 'ତୁ ଦେ', 'ତୁ ନେ', 'ତୁ କରେ' । ଆପଣଙ୍କ ଅଞ୍ଚଳରେ ମଧ୍ୟ ଏପରି କହନ୍ତି । ଯୁଗଧର୍ମ ନାଟକ ୪ ଓ ୧୧ ପୃଷ୍ଠାରେ ଲେଖାଅଛି-''ଏଇଥିରେ ଦେ'', ''ନେ କିଛି ଅଣ୍ଡାଖୋସା ନେ'', ସତୀ ନାଟକ ୧୮ ପୃଷ୍ଠାରେ ଲେଖାଅଛି- ''ଉଠାଇ ଆଣେ'', ଜଗନ୍ନାଥର ବ୍ରାହ୍ମଣମାନେ ମଧ୍ୟ ଏପରି ପ୍ରୟୋଗ କରିବାର ଆମ୍ଭେ ଶୁଣିଅଛୁଁ । ତେବେ 'ଆସେ' କାହିଁକି ପ୍ରାଦେଶିକ ହେବ ? 'ଯାହା ପାରୁ ତା'- ଏହା ଏ ପ୍ରଦେଶର ଘରୋଇ ଭାଷା । ଆପଣଙ୍କ ପ୍ରଦେଶରେ ମଧ୍ୟ ସ୍ତ୍ରୀମାନେ ଏପରି କହନ୍ତି । ସତୀ ନାଟକ ୭୫ ପୃଷ୍ଠା ଦେଖନ୍ତୁ, ଲାବଣ୍ୟ କହୁଅଛି-''ମୋର ଯାପାରି ତା ହେଲା, ତାଙ୍କୁ ଏ ଦଶା ଘଟି ନଥାନ୍ତା ।'' ଆପଣ ଘରୁଆ ଭାଷାର ବିରୋଧୀ ନୁହନ୍ତି ପରା ? 'ଦେନ୍ତି', 'ହେନ୍ତୁ'-'ସେ ବଡ଼ ଚିନ୍ତାରେ ଥିଲେ ଏବେ ନିଶ୍ଚିନ୍ତ ହେନ୍ତୁ', 'ହୋନ୍ତି କେଡ଼େ ଭୋଳ' (ସତୀ ନାଟକ ୧୫ ଓ ୧୬ ପୃଷ୍ଠା ଦେଖନ୍ତୁ) । ''ଯେପରି କି ସେ ଆଉ ଆମର ଅନ୍ୟ ଆଦେଶ ନ ହେବା ପର୍ଯ୍ୟନ୍ତ ବନବାଳାକୁ ନ ଯାନ୍ତି'', ''ସେ କେତେବେଳେ ଥାନ୍ତି'' (ବନବାଳା ୧୯ ଓ

୨୬ ପୃଷ୍ଠା ଦେଖନ୍ତୁ) । 'ହେନ୍ତୁ' 'ହୋନ୍ତି', 'ପାନ୍ତି', 'ଥାନ୍ତି' ଏ ସବୁ କ'ଣ ? ବୋଧ କରୁଁ, ଆପଣଙ୍କ ପ୍ରଦେଶର କଥା ସବୁ ଆପଣ ଜାଣି ନାହାନ୍ତି । ଆପଣ ଯାହା ଜାଣି ନାହାନ୍ତି, ସେ ସବୁ ପ୍ରାଦେଶିକ ପରା ? 'ହେଲାନି'-ଏ ମୁଦ୍ରାଙ୍କନ ଦୋଷ, 'ହେଲାଣି' ବଦଳରେ ପଡ଼ି ଯାଇଅଛି । ଯାହାହେଉ କଥାଟା ଆପଣଙ୍କ ମତାନୁସାରେ ବିକାରପ୍ରାପ୍ତ ହୋଇ ନାହିଁ ତ ? 'ଣି' ସ୍ଥାନେ 'ନି' ପ୍ରୟୋଗ ହେବାର ଆପଣଙ୍କ ଅଞ୍ଚଳରେ ମଧ୍ୟ ଦେଖାଯାଏ । ସତୀ ନାଟକ ୧୩ ପୃଷ୍ଠା ଦେଖନ୍ତୁ । ପଦୀ କହୁଅଛି-'ସେ ଗୁଡ଼ିଆଣୀ ପରି ପଳାନ୍ତାନି' 'ତୁ ଦେଖିଲେ ବାଳୁତ' ଅର୍ଥାତ୍ ଦେଖିଲେ ତୁ ବାଳୁତ ଅଟୁ, 'କି (କୌଣସି) ଗୋଳମାଳ ଚଳିଲା ନା ?' 'ବର୍ତ୍ତମାନ ଆମ୍ଭେମାନେ କରିବା ଉପାୟ କ'ଣ ?' 'ତୁ ଗଲେ ସେମାନେ ପଚାରିବେ ନାହିଁ ଯେ ତୋଆଡ଼େ ଦେଖିବେ ନାହିଁ', - ଏ ବାକ୍ୟଗୁଡ଼ାକରେ ପ୍ରାଦେଶିକତା କ'ଣ ? କେଉଁ କଥାଟା ପରିବର୍ତ୍ତିତ ହୋଇ ଅନ୍ୟ ଆକାର ଧାରଣ କରିଅଛି ? ଆପଣ କହିଅଛନ୍ତି-''ଆମ୍ଭେମାନେ ଘରୁଆ ଭାଷା ବ୍ୟବହାରର ବିରୋଧୀ ନୋହୁଁ ।'' ଘରୁଆ ଭାଷା ସମସ୍ତ ପ୍ରଦେଶରେ ସମାନ ନୁହେ । ଅତଏବ ଘରୁଆ ଭାଷା ବ୍ୟବହାର କରିବାକୁ ଗଲେ, ଅବଶ୍ୟ ପ୍ରାଦେଶିକତା ବ୍ୟବହାର କରିବାକୁ ହେବ । ତେବେ ଆପଣଙ୍କ ମତରେ ପ୍ରାଦେଶିକତା କିପରି ବର୍ଜନୀୟ ? ଆମ୍ଭେ ଆଉ କଣ କହିଥିଲୁ ? ''ଆମ୍ଭେମାନେ ଘରୁଆ ଭାଷା ବ୍ୟବହାରର ବିରୋଧୀ ନୋହୁଁ'' ବୋଲି କହି, କିଛିଦୂର ଯାଇ ଆପଣ ଲେଖିଅଛନ୍ତି -''ସର୍ବାଞ୍ଚଳ ପ୍ରଚଳିତ ଓ ସର୍ବଜନବୋଧ ବିଶୁଦ୍ଧ ଓଡ଼ିଆ ଗ୍ରାମ୍ୟ କଥା ଓ idiom ରକ୍ଷା କରି ଅଧିକ ପରିମାଣରେ ସଂସ୍କୃତମୂଳକ ସହଜ (କାହା ପକ୍ଷରେ ?) ଶବ୍ଦମାନ ବ୍ୟବହାର କଲେ କାହାରି କୌଣସି ଆପତ୍ତି ରହିବ ନାହିଁ ।'' ଆପଣଙ୍କ ଏ ଦୁଇ କଥାରୁ କେଉଁ କଥାଟା ଠିକ୍ ? ଯେଉଁ ଭାଷାର ଅଭିଧାନ ଆଜି ପର୍ଯ୍ୟନ୍ତ ସଂକଳିତ ହୋଇ ନାହିଁ, ଯେଉଁ ଭାଷାର ଆଦର୍ଶ ଗଠିତ ହୋଇ ନାହିଁ, ସେହି ଭାଷାରେ ସର୍ବାଞ୍ଚଳପ୍ରଚଳିତ ଓ ସର୍ବଜନବୋଧ ବିଶୁଦ୍ଧ କଥା ବା idiom କିପରି ଜଣାଯିବ ସଂସ୍କୃତମୂଳକ ସହଜ ଶବ୍ଦମାନ ବ୍ୟବହାର କଲେ ସାଧାରଣ ଲୋକେ ବୁଝି ପାରିବେ କି ?

*ଆପଣ ଟାହୁଲି କରି ଲେଖିଅଛନ୍ତି-''ଗଞ୍ଜାମ ଓଡ଼ିଆ ହିତବାଦିନୀ ଥରେ ଯାହାଙ୍କ ଦୃଷ୍ଟି ପଥରେ ପଡ଼ିଥିବ, ସେ ଗଞ୍ଜାମୀ ଓଡ଼ିଆର ଉଜ୍ଜ୍ୱଳ ଦୃଷ୍ଟାନ୍ତ ପାଇଥିବେ ।'' ଆପଣ ଜାଣନ୍ତି, 'ହିତବାଦିନୀ' ଜଣେ ତେଲଙ୍ଗା ବ୍ୟକ୍ତିଙ୍କଦ୍ୱାରା ସମ୍ପାଦିତ । ତେଲଙ୍ଗା ଲୋକେ ବିଶୁଦ୍ଧ ଓଡ଼ିଆ ଲେଖିବେ, ଏପରି ଆଶା କରାଯାଇ ନ ପାରେ । ଯାହାହେଉ ସଟନ ସାହେବଙ୍କ ଓଡ଼ିଶା ଇତିହାସର ଓଡ଼ିଆଠାରୁ 'ହିତବାଦିନୀ'ର ଓଡ଼ିଆ ତ କିଛି ଊଣା ନୁହେ । ସଟନ ସାହେବ କାହିଁକି ? ଆପଣଙ୍କ ଦେଶର ଜଣେ ଓଡ଼ିଆ ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ 'ରାମବିଳାସ'ରେ କିପରି ଓଡ଼ିଆ ଲେଖିଅଛନ୍ତି, ଥରେ ଦେଖନ୍ତୁ-''ତିନି ଜଣେ ସେହି ଚରୁଅନ୍ନ ଗ୍ରାସ କଲେ'', ''ଏହି ବର୍ତ୍ତମାନରେ ତୋହ ବାକ୍ୟର ପ୍ରତିଫଳ ପାନ୍ତୁ'', ''ତୁହେଁ ମୃଗୟାକୁ ଯାଇ ବନ ମଧରେ ପଥଭ୍ରମ ହୁଅନ୍ତେ ଗୁହଶବରର ସାକ୍ଷାତ୍ ହେଉଁ ରାମଚନ୍ଦ୍ର, ତାହା ସଙ୍ଗରେ ମିତ୍ରତା ସମ୍ପାଦନ କଲେ'', ''ମନୋମଧରୁ ଦୁଃଖମାନଙ୍କୁ ବିସ୍ମରଣ କରି ସ୍ୱପ୍ନରେ ହେଲେ ଦର୍ଶନ ନକଲେ'', ''ମୋତେ ଶୁଣାଯିବାରୁ'', ''ଆମ୍ଭଙ୍କୁ ସେଠାକୁ ଘେନ'', ଏସବୁ କ'ଣ ? କଟକର ଆଦର୍ଶ ଓଡ଼ିଆ ?*

*ପରିଶେଷରେ ବକ୍ତବ୍ୟ ଏହି ଯେ ଆପଣ ଗୋଟିଏ ସାହିତ୍ୟ ପତ୍ରିକାର ପରିଚାଳକ, ଭାଷାବିଷୟରେ ଆପଣ ଯାହା ଲେଖନ୍ତି, ତାହା ଯୁକ୍ତିସଙ୍ଗତ, ପ୍ରାସଙ୍ଗିକ ଓ ଉପାଦେୟ ହେବା ନିତାନ୍ତ ଆବଶ୍ୟକ । ସମ୍ମତ ବ୍ୟବସ୍ଥାପନ କରିବା ଲାଗି ମନରେ ଦୁରଭିମାନ ରଖି ଲେଖିଲେ ଆପଣଙ୍କ କଥାରେ କେହି ଗୁରୁତ୍ୱ ରଖିବେ ନାହିଁ ।*

ଆଲୋଚନାକୁ ଆଉ ଆଗକୁ ନ ବଢ଼ାଇ ବିଶ୍ୱନାଥ କର ନିମ୍ନଲିଖିତ ସୂଚନା ସହିତ ଏହି ବାଦ ପ୍ରତିବାଦରେ ପୂର୍ଣ୍ଣଚ୍ଛେଦ ଟାଣିଛନ୍ତି-

*ଆମ୍ଭମାନଙ୍କ 'ଉତ୍ତର' ପାଠ କରି ରାଜଗୁରୁ ମହାଶୟ ଉପର୍ଯ୍ୟୁପରି ଦୁଇ ଖଣ୍ଡି ପତ୍ର ପ୍ରେରଣ କରିଅଛନ୍ତି । ପତ୍ର ଦୁଇ ଖଣ୍ଡି ପ୍ରକାଶିତ ହେଲା । ଆମ୍ଭମାନଙ୍କ ବକ୍ତବ୍ୟ ମୂଳରେ 'ଉତ୍ତର' ମଧରେ ବ୍ୟକ୍ତ କରିଅଛୁଁ । ଏଠାରେ ତାହାର ପୁନରୁକ୍ତି ନିଷ୍ପ୍ରୟୋଜନ । ବର୍ତ୍ତମାନ ଓଡ଼ିଆ ଭାଷାର ପରିବର୍ତ୍ତନ ଓ ଗଠନର ଦିନ । ସୁତରାଂ ଏ ଅବସ୍ଥାରେ ତାହାର ଆଦର୍ଶ ସମ୍ବନ୍ଧରେ କୌଣସି କୌଣସି କଥାରେ*

*ଅଭ୍ରାନ୍ତରୂପେ କୌଣସି କଥା ବୋଲାଯାଇ ନ ପାରେ, ଏ କଥା ସତ୍ୟ । ମାତ୍ର ତାହା ବୋଲି ସେ ଭାଷାଟା ଏକାବେଳକେ ଆଦର୍ଶହୀନ, ଏହା ଆମ୍ଭେମାନେ ସ୍ୱୀକାର କରି ନ ପାରୁଁ । ଆମ୍ଭେମାନେ କେବଳ ବ୍ୟକ୍ତିଗତ ମତ ବ୍ୟକ୍ତ କରିଅଛୁଁ- ସମ୍ପାଦକୀୟ ସର୍ବଜ୍ଞତା ଦାବୀ କରି ନାହୁଁ କିମ୍ବା କୌଣସି 'ଦୁରଭିମାନ' ପୋଷଣ କରି ନାହୁଁ । ଏ ଅଞ୍ଚଳର ଲେଖକମାନଙ୍କ ଲେଖା ଭ୍ରମପ୍ରମାଦଶୂନ୍ୟ ବା ତହିଁରେ ଅନ୍ୟ କୌଣସି ପ୍ରଭାବ ନାହିଁ, ଏ କଥା ଆମ୍ଭେମାନେ କହି ନାହୁଁ । ଏତିକି କହି ପାରୁଁ ଯେ, ଏହା କ୍ରମଶଃ ବିଶୁଦ୍ଧତର ଉନ୍ନତତର ଆଦର୍ଶ ଅଭିମୁଖରେ ଗତି କରୁଅଛି । ପୁଣି ଆମ୍ଭମାନଙ୍କ ଲେଖାରୁ 'ସଂସ୍କୃତ ମୂଳକ ଶବ୍ଦ' କଥାଟିକୁ 'ସଂସ୍କୃତ ଶବ୍ଦ' ବୋଲି ଗ୍ରହଣ କରି ଶ୍ୟାମସୁନ୍ଦର ବାବୁ ବିଷମ ଭ୍ରାନ୍ତିରେ ପଡ଼ି ଅଛନ୍ତି ଏବଂ ତାହାରି ବଶବର୍ତ୍ତୀ ହୋଇ ଅନେକ ଅବାନ୍ତର କଥା କହିଅଛନ୍ତି । ସେ ସବୁ କଥାର ଉତ୍ତର ଦେବା ନିଷ୍ପ୍ରୟୋଜନ । ଆଉ ଗୋଟିଏ କଥା-Anglo-Saxon ସହିତ Latin, Greek ର ଯେଉଁ ସମ୍ବନ୍ଧ, ଓଡ଼ିଆ ସହିତ ସଂସ୍କୃତର କି ସେହି ସମ୍ବନ୍ଧ ? ସାଦୃଶ୍ୟଟା କିପରି ଠିକ୍ ହେଲା ବୁଝି ପାରିଲୁଁ ନାହିଁ । ଯାହା ହେଉ, ଅଧିକ କିଛି କହିବୁଁ ନାହିଁ । ବିଚାର ଭାର ନିରପେକ୍ଷ ପାଠକମାନଙ୍କ ଉପରେ । ଉ.ସା.ସଂ.-*

'ଶ୍ରୀ ସଂଗୀତ ପ୍ରହ୍ଲାଦ୍ ନାଟକ' ଏବଂ 'ଧ୍ରୁବ ନାଟକ' ଦୁଇଟିର ଭାଷା ସମ୍ପର୍କରେ ଏ ଯେଉଁ ଆଲୋଚନା-ପ୍ରତିଆଲୋଚନା, ତାହା ଓଡ଼ିଆ ଭାଷାର ତାତ୍ତ୍ୱିକ ଆଲୋଚନାପାଇଁ ଶ୍ୟାମସୁନ୍ଦର ରାଜଗୁରୁଙ୍କ ମନରେ ଆଗ୍ରହ ଓ କୌତୂହଳ ସୃଷ୍ଟି କରିଥିଲା । ସେ ଆରମ୍ଭ କରିଥିଲେ ସଂସ୍କୃତ ଓ ପ୍ରାକୃତ ବ୍ୟାକରଣ ଓ କାବ୍ୟ ନାଟକ ସହିତ ଓଡ଼ିଆ ଲୋକ ଓ ବିଦଗ୍ଧ ସାହିତ୍ୟ, ବିଭିନ୍ନ ଅଞ୍ଚଳର କଥିତ ଓ ଲିଖିତ ଭାଷା ଅନୁଶୀଳନ । ପ୍ରଥମ ଫଳଶ୍ରୁତି ସ୍ୱରୂପ ଦୁଇବର୍ଷ ପରେ **ଉତ୍କଳ ସାହିତ୍ୟ** ପତ୍ରିକାର ଅଷ୍ଟମ ଭାଗ ଚତୁର୍ଥ ସଂଖ୍ୟାରେ ପ୍ରକାଶ ପାଇଛି ଓଡ଼ିଆ ଭାଷା ସମ୍ପର୍କୀୟ ତାଙ୍କର ପ୍ରଥମ ପ୍ରବନ୍ଧ **ଓଡ଼ିଆ ବିଭକ୍ତି** ଏବଂ ପରେ ପରେ **ଓଡ଼ିଆ ସର୍ବନାମ** ଇତ୍ୟାଦି । ଉତ୍କଳ ହିତୈଷିଣୀ, ଗଞ୍ଜାମ ଜାତୀୟ ସମ୍ମିଳନୀ, ଉତ୍କଳ ସମ୍ମିଳନୀ, ଭାରତୀୟ ଜାତୀୟ କଂଗ୍ରେସ, ପାରଳାଖେମୁଣ୍ଡି ମୁନିସିପାଲଟିର ବିଭିନ୍ନ କାର୍ଯ୍ୟକ୍ରମ ମଧ୍ୟରେ ବ୍ୟସ୍ତ ରହିବା ଫଳରେ ସେ ଏ ଦିଗରେ ବିଶେଷ ଧ୍ୟାନ

ଦେଇପାରୁନଥିବା ଅନୁଭବ କରି ବନ୍ଧୁ ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମାଙ୍କୁ ଏ ଦିଗରେ ପ୍ରୋତ୍ସାହିତ କରିଛନ୍ତି, ତାଲିମ୍ ଦେଇଛନ୍ତି । ଶବ୍ଦତତ୍ତ୍ୱବୋଧ ଅଭିଧାନର କାର୍ଯ୍ୟ ଶେଷ କରି ବସିଥିବା ପଣ୍ଡିତ ମହାଶୟ ଓଡ଼ିଆ ଭାଷାତତ୍ତ୍ୱ ଆଲୋଚନାରେ ହାତ ଦେଇଛନ୍ତି । **ଉତ୍କଳ ସାହିତ୍ୟର ନବମ ଭାଗ ଏକାଦଶ/ଦ୍ୱାଦଶ ସଂଖ୍ୟା**ରେ ପ୍ରକାଶିତ ହୋଇଛି ଦେହାନ୍ତ ପରେ ମୁକ୍ତିଲାଭ କରିଥିବା ବିଶାଳ **ଓଡ଼ିଆ ଭଷାତତ୍ତ୍ୱର ପ୍ରଥମ ପ୍ରବନ୍ଧ ଓଡ଼ିଆ ତଦ୍ଧିତ** ।

ପଦ୍ମନାଭ ନାରାୟଣ ଦେବଙ୍କ ନାଟକଗୁଡ଼ିକ କେବଳ ଓଡ଼ିଶାର ଦକ୍ଷିଣାଞ୍ଚଳରେ ଅଭିନବ ନାଟ୍ୟଚେତନା ଯେ ଜାଗ୍ରତ କରିଥିଲା, ତା' ନୁହେ, ଓଡ଼ିଆ ଭାଷାର ତାତ୍ତ୍ୱିକ ଆଲୋଚନା ପାଇଁ ମଧ୍ୟ ପୃଷ୍ଠଭୂମି ପ୍ରସ୍ତୁତ କରିଥିଲା । ଏ ଦୃଷ୍ଟିରୁ ପ୍ରସ୍ତୁତ ସଂକଳନଟିରେ ସ୍ଥାନିତ **ଧ୍ରୁବ** ନାଟକଟିର ଗୁରୁତ୍ୱ ବିଚାରଣୀୟ ।

●



# ଧ୍ରୁବନାଟକ ।

ଶ୍ରୀଶ୍ରୀ ଗୌରଚନ୍ଦ୍ର ଗଜପତି ନାରାୟଣଦେବ
ମହାରାଜ ବର୍ତ୍ତିକ ବିରଚିତ ॥

ଓ

ଶ୍ରୀଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ
ମହାରାଜାଙ୍କ ଦ୍ୱାରା ପ୍ରକାଶିତ ॥

ତୃତୀୟ ସଂସ୍କରଣ ॥
ପାରଳାଖେମୁଣ୍ଡି ଗଜପତି ଯନ୍ତ୍ରାଳୟ ॥
୧୯୨୨

# ମୁଖବନ୍ଧ

ଧ୍ରୁବ ନାଟକର ଦ୍ୱିତୀୟ ସଂସ୍କରଣ ଅପେକ୍ଷାକୃତ ଅଳ୍ପ ସମୟ ମଧ୍ୟରେ, ଶେଷ ହେବା ଯୋଗୁଁ ଏବଂ ପ୍ରାକୃତିକ ଉତ୍କଳର ନାନା ସ୍ଥାନର ଗ୍ରାହକଗଣ କଥିତ ବହି ସକାଶେ ପତ୍ର ପ୍ରେରଣ କରୁଥିବା ଅବଗତ ହୋଇ ଏହି ତୃତୀୟ ସଂସ୍କରଣ ମୁଦ୍ରଣ ଓ ପ୍ରକାଶ କରିଅଛୁଁ ।

ଆମ୍ଭର ଭକ୍ତିଭାଜନ ସ୍ୱର୍ଗୀୟ ପ୍ରଣେତାଙ୍କ ନାଟକାନ୍ତର୍ଗତ ଭାଷା, ଭାବ, ଚରିତ୍ର-ଚିତ୍ରଣାଦିରେ ପରିବର୍ତ୍ତନ କରିବା ଅସଙ୍ଗତ ବିବେଚନା କରି ପୂର୍ବ ସଂସ୍କରଣାବସରରେ ତୃତୀୟ ସଂସ୍କରଣ ମୁଦ୍ରିତ କରାଯାଇଅଛି । କିନ୍ତୁ କଥିତ ନାଟକ ବିଶେଷତଃ ଅଭିନୟୋପଯୋଗୀ ଥିବା ଜାଣି ଅଭିନେତାଙ୍କ ସୁବିଧା ସକାଶେ ଏହି ସଂସ୍କରଣରେ ନାଟକାନ୍ତର୍ଗତ ସଂକ୍ଷିପ୍ତ ଚରିତ୍ର ବ୍ୟକ୍ତ କରିବା ସଙ୍ଗେ ସଙ୍ଗେ ନାଟକୋଲ୍ଲିଖିତ ବ୍ୟକ୍ତିଙ୍କ ପରିଚୟ ମୁଖ ପତ୍ରରେ ସୂଚନା କରାଯାଇଅଛି ଏବଂ ନାଟକର ପ୍ରତି ପୃଷ୍ଠାର ଶୀର୍ଷ ସ୍ଥାନରେ ''ଅଙ୍କ'' ଓ ''ଦୃଶ୍ୟ'' ମୁଦ୍ରିତ ହୋଇଅଛି ।

ରାଜଭବନ
ପାରଳାଖିମୁଣ୍ଡି

ପ୍ରକାଶକ

---

## ନାଟ୍ୟୋଲ୍ଲିଖିତ ବ୍ୟକ୍ତିଗଣ ।

ପୁରୁଷଗଣ- ଉତ୍ତାନପାଦ, ଧ୍ରୁବ, ବ୍ରହ୍ମା, ଇନ୍ଦ୍ର, ସୂର୍ଯ୍ୟ, ଚନ୍ଦ୍ର, ବିଷ୍ଣୁ, ମନ୍ତ୍ରୀ, ଦ୍ୱାରୀ

ସ୍ତ୍ରୀଗଣ- ସୁନୀତି, ସୁରୁଚି, ରମ୍ଭା, ମେନକା, ଧାତ୍ରୀ

# ଧ୍ରୁବ ନାଟକ

## ନାନ୍ଦୀ

**ରାଗ ସୌରାଷ୍ଟ୍ର । ଆଦି ତାଳ ।**

(ହିମାଚଳତନୟେ ପ୍ରତି)

କୃପାମୟ ଜଳଧେ । ଶ୍ରୀହରି ।
ତ୍ରାହି ତବ ପାଦେ । ଶ୍ରୀହରି ।
ଆଦିକାରଣ । ଦୀନରକ୍ଷଣ ।
ନିଖିଳବିଶ୍ୱବିଧେ । ଶ୍ରୀହରି ।୧।
ପ୍ରଭୋ ଜଗତପତେ । ଶ୍ରୀହରି ।
ଶାନ୍ତିମୟମୂର୍ତ୍ତି । ଶ୍ରୀହରି ।
ପାପହାରକ । ମୁକ୍ତି ଦାୟକ ।
ହେଦେବ ନମସ୍ତୁତେ । ଶ୍ରୀହରି ।୨।

(ନାନ୍ଦ୍ୟନ୍ତେ ସୂତ୍ରଧାର)

ସୂତ୍ରଧାର - (ପୁଷ୍ପାଞ୍ଜଳି ନିକ୍ଷେପ କରି) ଅଦ୍ୟ ଗୋଟିଏ ନୂତନ ନାଟକ ଅଭିନୟ କରାଇବା ସକାଶେ ମୁ ଉଦ୍ଦେଶ୍ୟ କରିଅଛି ମାତ୍ର ଏତିକି ସନ୍ଦେହ ହୁଏ । ଏତଦ୍‌ଦେଶରେ ଉତ୍କଳ ଭାଷାରେ ନାଟକାଭିନୟ ଆଜିପର୍ଯ୍ୟନ୍ତ ହୋଇ ନାହିଁ । କେବେ ହୋଇ ନଥିବା କଥାଟା ମୁଁ ଯଦି କରିବି, ଲୋକେ ଅବଶ୍ୟ ମୋତେ ହାସ୍ୟରେ ଉଡ଼ାଇ ଦେବେ । ନକଲେ ମନ ରହିବ ନାହିଁ । ଏଥିକି ଉପାୟ କଣ ? (ଆଲୋଚନ କରି) ଆଜିକାଲି ପ୍ରାୟ ସମସ୍ତଙ୍କ ମନ ଭକ୍ତି ପଥରେ ପ୍ରଧାବିତ । ଏଣୁ ଭକ୍ତିରସପୂର୍ଣ୍ଣ କୌଣସି ନାଟକ ଯଦି ଅଭିନୟ କରାଇବି, ନୂତନ କଥା ହେଲେ ମଧ ତାହା ଆଦୃତ ହୋଇପାରେ । ମାତ୍ର ଏପରି ନାଟକ କଣ ଅଛି ? (ଆଲୋଚନା କରି) ହଁ- ମନେ ପଡ଼ିଲା । ଗଙ୍ଗବଂଶାବତଂସ ଶ୍ରୀ ଶ୍ରୀ ଶ୍ରୀ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ

ମହାରାଜା କର୍ତ୍ତୃକ ବିରଚିତ ଧ୍ରୁବ ନାଟକଟି ଅଛି । ତାହା ଅଭିନୟ କରାଇଲେ ସମସ୍ତେ ଭକ୍ତି ଭାବରେ ମଜ୍ଜିଯାଇ, ଭଲ ବା ମନ୍ଦ ହେଉ, କେ କିଛି କହିପାରିବେ ନାହିଁ । ଯାହା ହେଉ ପ୍ରିୟାକୁ ଡାକି ଥରେ ପଚାରିବି । ସେ କଣ କହିବେ ଦେଖେ । (ନେପଥ୍ୟକୁ ଦେଖି) ପ୍ରିୟେ ! ଥରେ ଏଣେ ଆସ ।

(ନଟୀର ପ୍ରବେଶ) ।

ନଟୀ - (ପ୍ରଣାମକରି)

**ରାଗ ମାଳବ । ରୂପକ ତାଳ ।।**

(ଧନ୍ୟ ଧନ୍ୟ ଧନ୍ୟ ଆଜ ସୁଦିନ ହୋଗାୟା ପ୍ରତି)

ଆଜି ଏକି ପ୍ରାଣନାଥ ବୁଝି ନ ପାରଇ ।
ସରଳ ଅନ୍ତଃକରଣେ ମୋତେ କହ ସମଝାଇ ।।୦।।
କାହିଁ ପାଇଁ ସତେ ଏହି ନାଟକ ଆଳୟ
ଚିତ୍ର ବିଚିତ୍ର କରି ମଣ୍ଡିଛ ହେ ପ୍ରାଣପ୍ରିୟ ? ।।୧।।
ମାନ୍ୟ ଗଣ୍ୟ ଭଦ୍ର ଲୋକେ ହରଷ ଚିତ୍ତରେ ।
ବସି ଅଛନ୍ତି ପ୍ରାଣଈଶ୍ୱର ଆସି ଏହିଠାରେ ।।୨।।
ତାନପୂର୍ଣ୍ଣ ଗାନ ବାଦ୍ୟ କି ରଙ୍ଗେ ଶୁଭଇ
ଅତି ସୁନ୍ଦର ଆଲୋକମୟ ସବୁତ ଦିଶଇ ।। ୩ ।।

ସୂତ୍ରଧାର - ପ୍ରିୟେ ! ଆଉ କିଛି ନୁହେ । ପାରଳାଖିମୁଣ୍ଡୀଶ୍ୱର ଗଙ୍ଗାବଂଶାବତଂସ ସ୍ୱର୍ଗୀୟ ଶ୍ରୀ ଶ୍ରୀ ଶ୍ରୀ ଗୌରଚନ୍ଦ୍ର ଗଜପତି ନାରାୟଣଦେବ ମହାରାଜେ ସଙ୍ଗୀତ ଧ୍ରୁବ ନାଟକ ରଚନା କରିଅଛନ୍ତି । ତାହା ଆଜି ଏହି ରଙ୍ଗସ୍ଥଳରେ ଅଭିନୟ କରାଇବା ଲାଗି ମନ କରିଅଛି । ତୁମ୍ଭର ସହାୟ ବିନା କୌଣସି କଥା କି ହୋଇପାରେ ? ଏଣୁ ତୁମ୍ଭଙ୍କୁ ଡାକିଲି ।

ନଟୀ - ତେବେ ଅଧୀନା କି ସହାୟ କରିବ ?

ସୂତ୍ରଧାର - ତୁମ୍ଭେ ଯାହା କରିବାକୁ ହେବ ତାହା ପଛେ କହିବି, ବର୍ତ୍ତମାନ ବସନ୍ତ କାଳକୁ ଲକ୍ଷ୍ୟକରି ଗୋଟିଏ ଗୀତ ଗାଅ । ଦେଖିବା ଆରମ୍ଭଟା କିଁପରି ଥିବ ।

ନଟୀ - ଯେ ଆଜ୍ଞା ।

**(ରାଗ ମାଳବ । ଆଦି ତାଳ ।)**

(ମତେ କାହିଁକି ଥରେ ଆସ ପ୍ରତି)

ଦେଖ କିପରି ଋତୁରାଜ ।

ହୋଇଛି ରଙ୍ଗେ ସଜବାଜ ।
କରିବ କି ବିଚାରଇ ଦିଗ୍‌ବିଜୟ ସେ ଆଜ ॥୦॥
ଶଙ୍ଖ ବଜାଏ ମଧୁବ୍ରତ ।
ସ୍ତୁତି ପଢ଼ଇ ପରଭୃତ ।
ବଜାନ୍ତି ନାଗରା ଖଗ କୁମ୍ଭାଟୁଆ ସମାଜ ॥୧॥
ନାଗକେଶର-ଛତ୍ର-ଚୂତ-
ପୁଷ୍ପ ଚାମର ପ୍ରତିଭାତ ।
ଚଢ଼ି ମଳୟ-ମରୁତ-ମଦ-ଦ୍ୱିରଦରାଜ ॥୨॥
କିଂଶୁକାଙ୍କୁଶ ବିକରାଳ ।
ଘଜ କେତକୀ ତୀକ୍ଷ୍ଣଛେଲ ।
ଧରି ଅଛି ସଙ୍ଗେ ରଣରଙ୍ଗ କୁସୁମରାଜ ॥୩॥

ସୂତ୍ରଧାର - ବାଃ ବାଃ କି ମନୋହର ଗାନ ! ଶୁଣି ମନ୍ତ୍ରବଦ୍ଧ ଫଣିବତ୍ ହୋଇଗଲି ।

ନଟୀ - (ଲଜ୍ଜିତ ହୋଇ) ଆର୍ଯ୍ୟପୁତ୍ର ! ଅଧୀନା ଆଉ କିସ କରିବ ?

ସୂତ୍ରଧାର - ପ୍ରିୟେ ! ଆଉ କିଛି ନୁହେ । ଶୀଘ୍ର ଯାଇ ନାଟକ ଅଭିନୟର ଆବଶ୍ୟକୀୟ ସମସ୍ତ ବିଷୟ ଆୟୋଜନ କରାଇଦିଅ । ଯେତେବେଳେ ଯାହା ଲୋଡ଼ା ପଡୁଥିବ, ତେତେବେଳେ ତାହା ପଠାଇ ଦେଉଥିବ । ଏତିକି ମାତ୍ର ସାହାଯ୍ୟ ଥିଲେ ମୁ କୃତକାର୍ଯ୍ୟ ହେଲି ।

ନଟୀ - ଆର୍ଯ୍ୟପୁତ୍ରଙ୍କ ଆଦେଶ ଶିରୋଧାର୍ଯ୍ୟ କଲି ।

(ପ୍ରଣାମ କରି ପ୍ରସ୍ଥାନ)

ସୂତ୍ରଧାର - (ସଭ୍ୟମାନଙ୍କୁ ଲକ୍ଷ୍ୟ କରି) ସଭ୍ୟବର୍ଗ । ଯେପରି ହଂସମାନେ ଜଳମିଶ୍ରିତ ଦୁଗ୍ଧରୁ ଜଳଭାଗ ତ୍ୟାଗ କରି କ୍ଷୀରଭାଗ ମାତ୍ର ଗ୍ରହଣ କରନ୍ତି ସେପରି ଆପଣମାନେ ସକଳ ବିଷୟର ଦୋଷ ପରିତ୍ୟାଗ କରି କେବଳ ଗୁଣ ଗ୍ରହଣ କରିବେ ବୋଲି ମୁ ବିଶ୍ୱାସ କରେ । ଅତଏବ ଆପଣମାନଙ୍କଠାରେ ମୋର ବିନୀତ ପ୍ରାର୍ଥନା ଏହି ଯେ ମୁ ଉଦ୍ଦେଶ୍ୟ କରିଥିବା ନାଟକାଭିନୟରେ କୌଣସି ଦୋଷ ଆପଣମାନେ ଯଦି ଦେଖନ୍ତି ତାହା ମନେ ନ ଧରି କେବଳ ସାର ଗ୍ରହଣ କରି ନେବେ ।

(ପ୍ରସ୍ଥାନ)

●

# ପ୍ରଥମାଙ୍କ

## ପ୍ରଥମ ଦୃଶ୍ୟ

(ପର୍ଣ୍ଣ କୁଟୀର, ସୁନୀତିଙ୍କ ଚିନ୍ତା)

ସୁନୀତି - ରାଗ ଝଞ୍ଜୋଟୀ । ଆଦି ତାଳ ।

(ଚାହୁଁତ ନାହୁଁ କାହିଁକି ଚନ୍ଦ୍ରବଦନା ପ୍ରତି)

ଆରେ ବିଧାତା କେଡ଼େ ନିର୍ଦ୍ଦୟ ହୋଇଲୁ ।୦।
ପତି ପତ୍ନୀ ହୋଇ । ସୁଖେ ଥିଲୁ ରହି ।
ଏବେ ଭିନ୍ନ କରାଇଲୁ ।।୧।।
କେବେ ଦେଖିଦେବି । ବୋଲି ପରା ଭାବି ।
ଆଣି ବନେ ବସାଇଲୁ ।।୨।।
କାହିଁ ରାଜବାଟୀ । କାହିଁ ବନ କୁଟୀ ।
ପୁତ୍ର ସହ ରଖାଇଲୁ ।। ୩ ।।
ଝୁରି ଝୁରି ଅନୁ- । ବରତେ ନୟନୁ
ଅଶ୍ରୁ ଧାର ବୁହାଇଲୁ ।।୪।।

ରେ ବିଧାତା ! ତୁ କେଡ଼େ ନିର୍ଦ୍ଦୟ ଅଟୁ । ଯେ କି ଚକ୍ରବର୍ତ୍ତିନୀ ହୋଇ ରାଜ ଗୃହରେ ଥାଇ ଆଜି ସକଳ ସୁଖ ଅନୁଭବ କରୁଥାନ୍ତା, ଯାହାର ପାଦ ତଳରେ ଶତ ଶତ ଦାସ ଦାସୀ ନିରନ୍ତର ସେବା କରୁଥାନ୍ତେ, ଯାହାର ଆଜ୍ଞା ପରିପାଳନ କରିବା ଲାଗି ଲୋକଙ୍କର ତର ସହୁନଥାନ୍ତା, ତାହାକୁ ହତଭାଗିନୀ କରାଇ ବନରେ ପର୍ଣ୍ଣଶାଳାରେ ରଖାଇ ନିରନ୍ତର ଅଶ୍ରୁମୋଚନ କରାଇଲୁ । ହଁ-କାହାକୁ ବୋଇଲେ କିସ ହେବ ? ଏ ସବୁ ମୁ ପୂର୍ବ ଜନ୍ମରେ କରିଥିବା ପାପର ଫଳ । ନୋହିଲେ କି ଯେଉଁ ସୁରୁଚିଙ୍କି ବାଲ୍ୟ କାଳରୁ ପ୍ରାଣାଧିକ ପ୍ରତିପାଳନ କରିଥିଲି, ସେ ଆସି ମୋର ଶତ୍ରୁ ହୁଅନ୍ତେ ? ପରମ ଧାର୍ମ୍ମିକ ଆଉ ନ୍ୟାୟ ପରାୟଣ ଯେ ମହାରାଜ ସେ ସୁରୁଚିର ରୂପ ଯୌବନରେ ଏକାବେଳକେ ଭୁଲିଯାଇ ମୋତେ ବନବାସ ଦେଇଥାନ୍ତେ ? ନ ଜାଣି ନ ବୁଝି ସମସ୍ତଙ୍କୁ ନିନ୍ଦା କରୁଅଛି । (ନିରୀକ୍ଷଣ କରି) ଧ୍ରୁବ ଆସିଲା ପରି ବୋଧହୁଏ । ହଁ ସେତ ।

(ଧ୍ରୁବର ପ୍ରବେଶ)

ସୁନୀତି - ବାବୁ ଏତେବେଳ ପର୍ଯ୍ୟନ୍ତ କୋଠାରେ ଥିଲୁଁ ?

ଧ୍ରୁବ - ମା ଋଷିପିଲାମାନଙ୍କ ସଙ୍ଗେ ଖେଳୁଥିଲି ।

ସୁନୀତି - ବାବୁ ! ତୋହର ମୁହଁ କାହିଁକି ଶୁଖି ଯାଇଅଛି ? କେ କିସ ବୋଇଲା ?

ଧ୍ରୁବ - ମା ! ମୁ ଆଜି ଋଷିପିଲାମାନଙ୍କ ସଙ୍ଗେ ଖେଳୁଥିଲା ବେଳେ "ଅଣବାବୁଆ", "ବାପା ନ ଥିବା ପିଲା" ବୋଲି ମୋତେ ଚଳାଇଲେ । ମୋ ମନକୁ ବଡ଼ ବାଧିଲା ।

ସୁନୀତି - ହଁ ଚଳାଇଲେ କିସ ହେଲା ? ଏପରି ପିଲାକୁ ପିଲା ହାସ୍ୟ କରନ୍ତି ନାହିଁ କି ?

ଧ୍ରୁବ - ହଁ-ଥରେ ବୋଇଲେ ସିନା ହାସ୍ୟ, ଥରକୁଥର, ଯେତେବେଳେ ପଡ଼ିଲେ, ତେତେବେଳେ ବୋଇଲେ କି ହାସ୍ୟ ମା ?

ସୁନୀତି - ପିଲାମାନେତ, ନ ଜାଣି ଯାହାପାରୁ ତାହା ବୋଲି ଦେନ୍ତି ଏଥିକି ଏଡ଼େ ଅଭିମାନ କାହିଁକି ବାବୁ ? ଆସେ ଉଛୁର ହେଲାନି ଭୋଜନ କରିବୁ ।

ଧ୍ରୁବ - ଯଦି ହାସ୍ୟରେ ବୋଇଲେ, ତେବେ ମୋ ପିତା କେ ମା ? ସେ କୋଠାରେ ଅଛନ୍ତି ?

ସୁନୀତି - ବାବୁ ! ଉତ୍ତାନପାଦ ମହାରାଜ ତୋର ପିତା ।

ଧ୍ରୁବ - ସେ କୋଠାରେ ଅଛନ୍ତି ମା ?

ସୁନୀତି - ସେ ତାଙ୍କ ନଅରରେ ଅଛନ୍ତି ।

ଧ୍ରୁବ - ମା ! ମୁଁ ସେଠାକୁ ଯାଇ ପିତାଙ୍କୁ ଥରେ ଦେଖିଆସିବି ।

ସୁନୀତି - ବାବୁ ! ଏବେ ଉଛୁର ହେଲାନି ଚାଲେ ଭୋଜନ କରିବୁ । ଭୋଜନ କଲାବାଦ ଧାଇ ସଙ୍ଗେ ଯିବୁ ସିନା ।

ଧ୍ରୁବ - ସତେ ଯିବିଟି ? କହିଥ ନୋଇଲେ ଖାଇବି ନାହିଁ ।

ସୁନୀତି - ହଁ-ବାବୁ - ଅବଶ୍ୟ ଯିବୁ ।

(ପ୍ରସ୍ଥାନ ଓ ଯବନିକାପତନ)

## ଦ୍ୱିତୀୟ ଦୃଶ୍ୟ

(ପର୍ଣ୍ଣ କୁଟୀର ; ସୁନୀତି ଆସୀନ)

ସୁନୀତି - (ସ୍ୱଗତ) ହାୟ ! ହାୟ ! କି ଦଣ୍ଡ ଆସି ପଡ଼ିଲା ! ମୁ ମୋର ଦୁଃଖ ଧରି ରହିବି ନା ପୁତ୍ରର ଜଞ୍ଜାଳ ସହିବି ? କେତେ କହିଲେ ମଧ୍ୟ ସେ ଶୁଣିବାକୁ

ନାହିଁ । ପିତାଙ୍କଠାକୁ ତାକୁ ଯଦି ପଠାଇବି ସେ କି ତୁନି ରହିବା ପିଲା ! ଯାଇ ସହଜରେ ଫେରି ଆସିବ ? ଯାହା ଦେଖିବ ତାହା ଲୋଡ଼ିବ- ଲୋଡ଼ିଲେ ସୁରୁଚି କେତେମାତ୍ର ସହିବେ ନାହିଁ । ମୋର, ପିଲାର ଓ ମହାରାଜାଦି ସମସ୍ତଙ୍କର ମହତ ସାରିବ- କି ବୁଦ୍ଧି କରିବି ? କି ବିପତ୍ତି ଆସି ପଡ଼ିଲା ? (ନିରୀକ୍ଷଣ କରି) ହେଟି ହଟା ବସାଇବାକୁ ଆସିଲାନି ।

(ଧାତ୍ରୀ ସହିତ ଧ୍ରୁବର ପ୍ରବେଶ)

ଧ୍ରୁବ - ମା - ଦେଖ ଧାଇ ମତେ ନେଉନାହିଁ ।

ସୁନୀତି - କୋଆଡ଼େ ବାବୁ ?

ଧ୍ରୁବ - ପିତାଙ୍କଠାକୁ -ପାସୋରିଦେଲ ନା ?

ସୁନୀତି - ବାବୁ ! ତୋ ବିମାତା ସୁରୁଚିର ମାୟାରେ ପଡ଼ି ତୋ ପିତା ମୋତେ ଦୂର କରି ଦେଇ ଅଛନ୍ତି । ତୁ ମୋର ପୁତ୍ର । ତୁ ଗଲେ ସେମାନେ ପଚାରିବେ ନାହିଁ ଯେ ତୋ ଆଡ଼େ ଦେଖିବେ ନାହିଁ । ମୋ କଥା ଶୁଣେ, ସେଠାକୁ ଯାନା । ତୁ ଯାହା ମାଗିବୁ ମୁଁ ତାହା ଆଣି ଦେବି । ନା ବାବୁ ମୋ କଥା ରଖେ ।

ଧ୍ରୁବ - ମୋତେ କିଛି ଲୋଡ଼ା ନାହିଁ ମା । ମୁଁ ପିତାଙ୍କୁ ଥରେ ଦେଖି ଆସିବି ।

ସୁନୀତି - ନା ବାବୁ ମୋ କଥା ଶୁଣେ ।

ଧ୍ରୁବ - ନା ମୁ ଅବଶ୍ୟ ଯିବି । ଧାଇ ନେବତ ନେବ । ନୋହିଲେ ମୁ ଏକୁଟିଆ ଯିବି ।

ସୁନୀତି - ବାବୁ- ତୁ ଦେଖିଲେ ବାଳୁତ, କିପରି ବାଟ ଚିହ୍ନି ଯିବୁ ?

ଧ୍ରୁବ - ପଚାରି ପଚାରି (ଧାଇ ପ୍ରତି) ଧାଇ ! ଆସିବୁନା ନାହିଁ ? ଶୀଘ୍ର କହ ।

ସୁନୀତି - (ହସ୍ତଧରି)

**ରାଗ ହିନ୍ଦୁସ୍ଥାନିଭୈରବୀ । ଆଦିତାଳ ।**

(ଦେବରା ବ୍ରୋବାରା ପ୍ରତି)

ନା ଧନ । ତୁ ଘେନ । ମୋର ବିନୟ ବଚନ ।୦।

ଧ୍ରୁବ - ଯିବିତ । ମୁ ମାତ । ଯହିଁ ଅଛନ୍ତି ମୋ ତାତ ।୦।

ସୁନୀତି - ରାଗିବେ । ମାରିବେ । ଯଦି ବିମାତା ଦେଖିବେ ।୦।

ଧ୍ରୁବ - ଯିବିତ । ମୁ ମାତ । ଯହିଁ ଅଛନ୍ତି ମୋ ତାତ ।୦।

ସୁନୀତି - ନା ବାବୁ । ତୁ ଯବୁ । ନିଶ୍ଚେ ହଟା ବସାଇବୁ ।୦।

ଧ୍ରୁବ - ଯିବିତ । ମୁ ମାତ । ଯହିଁ ଅଛନ୍ତି ମୋ ତାତ ।୦।

ସୁନୀତି - ତୋ ମନ । ନନ୍ଦନ । ଗଲେ ହେବ ଅପମାନ ।୦।

ଧ୍ରୁବ - ଯିବିତ । ମୁ ମାତ । ଯହିଁ ଅଛନ୍ତି ମୋ ତାତ ।୦।

ସୁନୀତି - ଧାଈ ! ଏ କି ଶୁଣିବା ପିଲା-ନୋହିଲେ କି ଏ ହତଭାଗିନୀର ଗର୍ଭରେ ଜନ୍ମ ହୋଇଛି । ନେ ନେଇଁ ନଅର ଦେଖାଇ ଆଣେ ।

ଧାତ୍ରୀ - (ଧ୍ରୁବପ୍ରତି) ଆଜ୍ଞା ବିଜେହେନ୍ତୁ ।

ଧ୍ରୁବ - (ଆନନ୍ଦରେ) ଚାଲେ । ମା ନମସ୍କାର ।

(ପ୍ରଣାମ କରି ପ୍ରସ୍ଥାନ ଓ ଯବନିକାପତନ)

## ଦ୍ୱିତୀୟାଙ୍କ

### ପ୍ରଥମ ଦୃଶ୍ୟ

(ରାଜଭବନ)

(ଉତ୍ତାନପାଦରାଜା ସିଂହାସନୋପରେ ଉପବିଷ୍ଟ ଓ ମନ୍ତ୍ରୀ ପାର୍ଶ୍ୱେ ଦଣ୍ଡାୟମାନ)

ରାଜା - ମନ୍ତ୍ରିନ୍ ! ତୁମ୍ଭର ମନେ ଥିବ କେତେକ ବର୍ଷ ତଳେ ଦିନେ ଆମ୍ଭେମାନେ ମୃଗୟାର୍ଥେ ବନକୁ ଯାଇଥିଲୁଁ ?

ମନ୍ତ୍ରୀ - ହଁ ଆଜ୍ଞା ମନେ ଅଛି ।

ରାଜା - ବନରେ ଭ୍ରମଣ କରୁ କରୁ ଦିନାବସାନ ହେଲା । ଗୃହକୁ ପ୍ରତ୍ୟାଗମନ କରିବା ଲାଗି ଉଦ୍‌ଯୋଗ କରୁ କରୁ ଚତୁର୍ଦ୍ଦିଗ ମେଘାଚ୍ଛନ୍ନ ହୋଇ ଭୟାନକ ବୃଷ୍ଟି ଆରମ୍ଭ ହେଲା । ଅନ୍ଧକାର ହେତୁ କେହି କାହାକୁ ଚିହ୍ନି ପାରିଲୁ ନାହିଁ । ତୁମ୍ଭେ ସମସ୍ତେ ଆତ୍ମରକ୍ଷା କରିବା ଲାଗି ଇତସ୍ତତଃ ପଳାୟନ କଲ ।

ମନ୍ତ୍ରୀ - ଆଜ୍ଞା, ଏହି ମର୍ତ୍ତ୍ୟଲୋକରେ ଆତ୍ମରକ୍ଷା କରିବା ଲାଗି କିଏ ଚେଷ୍ଟା କରେ ନାହିଁ ?

ରାଜା - ଯଥାର୍ଥ, ସେଥିଲାଗି ଆମ୍ଭେ କାହାକୁ କିଛି ଦୋଷ ଦେଉନାହୁଁ । ମାତ୍ର ସେଦିନ ଚଳିଥିବା ପ୍ରସଙ୍ଗ କହୁଅଛୁଁ ।

ମନ୍ତ୍ରୀ - ତେବେ ଆଜ୍ଞା ହେଉ ।

ରାଜା - ଆମ୍ଭେ ମଧ୍ୟ ଭୟଯୁକ୍ତ ହୋଇ ଅଶ୍ୱାରୋହଣ କରି ପ୍ରାଣ ରକ୍ଷାର୍ଥେ ସେଠାରୁ ବାହାରିଲୁ । ମେଘର ଗର୍ଜ୍ଜନରେ ହୃତକମ୍ପ ଜାତ ହେଉଥାଏ । ମସ୍ତକୋପରି ପୁନଃପୁନ କରକାପାତ । ମୁଷଳଧାରପରି ବାରି ବର୍ଷଣ । ଅନ୍ଧକାର ହେତୁ ମାର୍ଗ ଦିଶୁ ନ ଥାଏ । ପବନ ପ୍ରବଳରେ ଅଶ୍ୱର ଗତିରେ ସ୍ତିମିତ ରହୁ ନଥାଏ । ଏପରି ଅବସ୍ଥାରେ କିଛି ଦୂର ଗଲାବାଦ ବିଦ୍ୟୁତ୍ ପ୍ରଭାବରୁ କେତେ ଗୁଡ଼ିଏ ପର୍ଣ୍ଣ କୁଟୀର ଦିଶିଲା । କାତର ହୋଇ କାହାକୁ ନ ପଚାରୁଣୁ ପ୍ରଥମେ ଦିଶିବା କୁଟୀର ଭିତରେ ପ୍ରବେଶ ହେଲୁ । ଦୈବାତ୍ ସେଠାରେ ସୁନୀତିଙ୍କ ଭେଟ ହେଲା । ସେ ଆମ୍ଭକୁ ଚିହ୍ନିପାରି ଅନେକ ଶୁଶ୍ରୂଷା କଲେ । ଦୈବର ବିଚିତ୍ର ଘଟଣା ଯେ ସେହିଦିନ ସୁନୀତି ଋତୁସ୍ନାନ କରିଥିଲେ । ସେଠାରେ ରାତ୍ରିକ ରହି ପ୍ରାତଃକାଳରେ ସେଠାରୁ ଫେର ଆସିଲୁଁ ।

ମନ୍ତ୍ରୀ - ଛାମୁ ଶେଷୋକ୍ତ ବିଷୟ କାହାକୁ ଆଜ୍ଞା କରିନାହାନ୍ତି ।

ରାଜା - ନା ଏ ବିଷୟ ଆମ୍ଭେ କାହାକୁ କହିନାହୁଁ । ମାତ୍ର ଏସବୁ ସୁରୁଚି କୌଣସି ପ୍ରକାର ଜାଣିପାରି କେତେ ଦିନ ପର୍ଯ୍ୟନ୍ତ ଆମ୍ଭଠାରେ ଭାରୀ ଦୁଃଖ କରିଥିଲେ ।

ମନ୍ତ୍ରୀ - ଏସବୁ ରାଣୀଙ୍କି କେ କହିଲା ?

ରାଜା - ଏତିକି ମାତ୍ର ନୁହେଁ । ମୃଗୟାରୁ ଫେରି ଆସିବାର ପ୍ରାୟ ବର୍ଷକ ଉତ୍ତାରୁ ଆମ୍ଭେ ଶୁଣିପାରି ଥିଲୁଁ ସୁନୀତି କନ୍ଦର୍ପ ତୁଲ୍ୟ ଗୋଟିଏ ପୁତ୍ର ପ୍ରସବ କରିଅଛନ୍ତି । ଏହା ମଧ୍ୟ ସୁରୁଚି ଜାଣି ଦେଇ ଅଛନ୍ତି । ଯାହାହେଉ ଏହି କଥା ଶୁଣିବା ଦିନାବଧି ପୁତ୍ର ମୁଖ ସନ୍ଦର୍ଶନ କରିବା ଲାଗି ମନଟା ଅତ୍ୟନ୍ତ ଉଦ୍‌ବେଗ ହୋଇ ଯାଉଅଛି । ମାତ୍ର ସେଠାକୁ ଗଲେ ସୁରୁଚିଙ୍କ ମନରେ ଦୁଃଖହେବ ବୋଲି ମନମାରି ରହିଅଛୁଁ ।

ମନ୍ତ୍ରୀ - ଆଜ୍ଞା ରାଣୀଙ୍କ ମନରେ ଦୁଃଖ ଜାତ କରାଇବା ଉଚିତ ନୁହେ ।

ରାଜା - ହଁ ଆମ୍ଭେ ମଧ୍ୟ ଉଚିତ ବୋଧ କରୁନାହୁଁ । ମାତ୍ର-

(ଦ୍ୱାରୀର ପ୍ରବେଶ)

ଦ୍ୱାରୀ - ମହାରାଜ ! ସୁନୀତିଙ୍କ ପୁତ୍ର ବୋଲି କହି କେହି ଜଣେ ବାଳକ ଓ ଜଣେ ବୃଦ୍ଧା ସ୍ତ୍ରୀ ଛାମୁଙ୍କ ଦର୍ଶନ ଲାଗି ଆସି ସିଂହଦ୍ୱାରଠାରେ ଅଛନ୍ତି । କି ଆଜ୍ଞା ହେଉଚି ?

ରାଜା - (ସଚକିତେ) କଣ କହିଲୁ ?

ଦ୍ୱାରୀ - ମହାରାଜ ! ସୁନୀତିଙ୍କ ପୁତ୍ର ବୋଲି କହି ଜଣେ ବାଳକ ଆଉ ଜଣେ ବୃଦ୍ଧା ସ୍ତ୍ରୀ ଶ୍ରୀଛାମୁଙ୍କ ଦର୍ଶନ ଲାଗି ଆସି ସିଂହଦ୍ୱାରଠାରେ ଅଛନ୍ତି ।

ରାଜା - କେ ନ ଦେଖୁଣୁ ସେମାନଙ୍କୁ ଏଠାକୁ ଘେନିଆ ।

ମନ୍ତ୍ରୀ - କେ ଦେଖିବେ ନାହିଁଟି ସାବଧାନ ।

ଦ୍ୱାରୀ - ଯେ ଆଜ୍ଞା । (ପ୍ରସ୍ଥାନ)

ରାଜା - ମନ୍ତ୍ରିନ୍ ! ଏ ପରମେଶ୍ୱରଙ୍କ ବିଧାନ ପରା ଯହିଁରେ ମନୁଷ୍ୟର ଇଚ୍ଛା ବଳବତୀ ହୋଇ ଉଠେ, ସାଧାରଣତଃ ତାହାହିଁ ଘଟିଯାଏ ।

ମନ୍ତ୍ରୀ - ଆଜ୍ଞା, ପରମେଶ୍ୱରଙ୍କ ଲୀଳା କେ ଜାଣି ପାରିବ ?

ରାଜା - ନୋହିଲେ କି ଆମ୍ଭେ ଯାହାକୁ ଦେଖିବା ଲାଗି ସନ୍ତତ ଇଚ୍ଛା କରିଥିଲୁ ସେ ନିଜେ ଆସି ଦ୍ୱାରେ ଦଣ୍ଡାୟମାନ ।

ମନ୍ତ୍ରୀ - ଛାମୁ ଯାହା ଆଜ୍ଞା କରନ୍ତି ତାହା ଯଥାର୍ଥ ଅଟେ ।

(ଧ୍ରୁବ ଓ ଧାତ୍ରୀକି ସଙ୍ଗେ ଘେନି ଦ୍ୱାରୀର ପୁନଃପ୍ରବେଶ)

ଦ୍ୱାରୀ - ମହାରାଜାଧିରାଜ ହେଟି । (ପ୍ରସ୍ଥାନ)

ଧାତ୍ରୀ - (ପ୍ରଣାମକରି ସିଂହାସନ ଆଡ଼େ ଦେଖାଇ) ବାବୁ ।
ହେଟି ସେ ତୁମ୍ଭର ପିତା । ଯାଇ ତାଙ୍କ ପାଦତଳେ ପଡ଼ ।

(ଧ୍ରୁବ ପ୍ରଣାମ କରିବା)

ରାଜା - ବାବୁ ! ତୋର କଲ୍ୟାଣ ହେଉ । କୋଳକୁ ଆ । (ଧ୍ରୁବ ଯାଇ କୋଳରେ ବସିବା) ବାବୁ ! ମାତା ଭଲ ଅଛନ୍ତି ?

ଧ୍ରୁବ - ହଁ ଭଲ ଅଛନ୍ତି ।

ରାଜା - (ସ୍ୱଗତ) ଆମ୍ଭେ କେଡ଼େ ମନ୍ଦବୁଦ୍ଧି ଲୋକ । ଯାହାଙ୍କୁ ବିନା ଦୋଷରେ ଦୂର କରି ଦେଇଅଛୁ ତାଙ୍କର ମଙ୍ଗଳ ସମାଚାର ପଚାରୁଛୁଁ ।

(ସୁରୁଚିଙ୍କ ପୁତ୍ର ଉତ୍ତମର ପ୍ରବେଶ)

ଧ୍ରୁବ - (ଉତ୍ତମକୁ ଦେଖାଇ) ଏ କିଏ ପିତା ?

ରାଜା - (ଉତ୍ତମକୁ କୋଳକୁ ଆଣି) ବାବୁ, ତୋର ବିମାତା ସୁରୁଚି ରାଣୀଙ୍କ ପୁତ୍ର ଉତ୍ତମ ।

ଧ୍ରୁବ - ତାତ-ସୁରୁଚିମାତା କୋଠାରେ ଅଛନ୍ତି ?

ରାଜା - ବାବୁ ! ଅନ୍ତଃପୁରରେ ଅଛନ୍ତି ।

(ହଠାତ୍ ସୁରୁଚିଙ୍କ ପ୍ରବେଶ ଓ ଧ୍ରୁବକୁ ଦେଖି କ୍ରୋଧରେ କମ୍ପମାନ)

ସୁରୁଚି - ମହାରାଜ- ଏ କିଏ ?

ରାଜା - (ସଭୟେ) ପ୍ରିୟେ-

ସୁରୁଚି - (କ୍ରୋଧରେ) ଏ କେ ?

ରାଜା - ସୁନୀତିଙ୍କ ପୁତ୍ର ଧ୍ରୁବ ।

ସୁରୁଚି - ସୁନୀତିଙ୍କ ପୁତ୍ର ? କୋଆଡ଼େ ଆସିଛି ?

ରାଜା - ନଅର ଦେଖିବାକୁ ।

ସୁରୁଚି - ନଅର ଦେଖିବା ଲୋକ କୋଳକୁ କାହିଁକି ଗଲା ?
ସିଂହାସନ କିପରି ଛୁଇଁଲା ? ହୁଁ-ହୁଁ

ରାଜା - ପିଲାତ ଶ୍ରଦ୍ଧାରେ ଆସି ବସିଲା । ବସିଲେ କିସ ହେଲା ।

ସୁରୁ - ଶ୍ରଦ୍ଧାରେ ଆସି ବସିଲା ? ବସଲେ କିସ ହେଲା ? ଆ ତଳକୁ ଆ ଶୀଘ୍ର ଆ- (ଧ୍ରୁବର କର ଧରି ତଳକୁ ଝିଙ୍କିଦେବା)

ଧ୍ରୁବ - ମା ! ଏଡ଼େ କୋପ କାହିଁକି ?

ସୁରୁ - ଚୁପ୍-ସଳଖେ ଯା । ଯା ଏଠାରୁ ।

ଧ୍ରୁବ - ମା ! ଉତ୍ତମ ବସିଛି ମୁ ବସିଲେ କିସ ହେଲା ?

ସୁରୁ - ରେ ! ପାପିଷ୍ଠ ! ଉତ୍ତମ ତୁଲେ ତୁ ସମାନ ?

**ରାଗ ନାଟକୁରଞ୍ଜୀ । ରୂପକ ତାଳ ।**

(କହୋ ଆଜ ଏ ତୁମାର ଆଞ୍ଚା ପ୍ରତି)

ଯାରେ ଯା ତୁ ବାଟେ ବାଟେ ସୁନୀତି ନନ୍ଦନ ।
ମାନହାନି ହେବ ନିଶ୍ଚେ ନୋହିଲେ ତୁ ଘେନ ।୦।
ପାପିନୀର ଗର୍ଭରେତ ହୋଇଛୁ ଜନମ ।
ରାଜଗାଦି ଛୁଇଁବାକୁ ନୋହୁ ତୁ ଭାଜନ ।୧।
ପୂର୍ବପୁଣ୍ୟ ନାହିଁ ତୋର ଶୁଣରେ ପାମର
ଥିଲେ ନିଶ୍ଚେ ହୋଇଥାନ୍ତୁ ମୋହର କୁମର।୨।
ବସିବାକୁ ରାଜନଙ୍କ କୋଳରେ ସତ୍ୱର
ପଠିଆଇ ଦେଇଛି କି ଜନନୀ ତୋହର ।୩।
ପଟ୍ଟରାଣୀ ପୁତ୍ର ସଙ୍ଗେ ହେବୁ କି ତୁ ସରି ?
ଧାଇଁ ଆସିଅଛୁ କେଡ଼େ ସାହସ ତୋହରି ।।୪।।

ଯା-ଯା-ଦୂରଯା- (ହସ୍ତଧରି ପେଲିଦେବା)

ଧ୍ରୁବ - ମାଁ-ଆଁ-ଆଁ (କ୍ରନ୍ଦନ)

ଉତ୍ତମ - (ମାତାଙ୍କ ପ୍ରତି)

**ରାଗ ତୋଡ଼ି । ଏକତାଳ ।**

(ମାଇଁ ଚଲୋ ଜଙ୍ଗଲମେ ପ୍ରତି)

କାହିଁକି ସତେ ନାହିଁ କରୁଛ ଜନନୀ ତାହାକୁ ?
ତୁମ୍ଭର ଅଧିକାର କି ଅଛି ଜନକ କୋଳକୁ ? ।।୦।।
ତୁମ୍ଭ କୋଳେ କି ସେ ବସିଲା ତୁମ୍ଭେ ବୋଲିବାକୁ ?
ତୁଚ୍ଛାଟାରେ ଲାଗିଲା କି ଗଡରୁ ତୁମ୍ଭଙ୍କୁ ? ।୧।

ଡାକିଥିବେ ତାତ ପରା ସେ ଆସି ବସିଲା
ତୁମ୍ଭର କି ଗଣ୍ଡିଧନ ସରିଯାଉଥିଲା ? ।।୨।।
କେହି ମୋତେ ଏହିପରି ଝିଙ୍କି ଦେଇଥିଲେ ।
ତୁନି ହୋଇ କି ଥାନ୍ତ ରହି ମୋତେ କହ ଭଲେ ? ।୩।
ଦେଖ ମାତ କାନ୍ଦଇ ସେ କିପରି ବିକଳେ ।
କେତେ କଠିନ ତୁମ୍ଭର ମନ ଟିକିଏ ନ ଟଳେ ।।୪।।

ସୁରୁ - ତୁ ଚୁପ୍‌ରହ । (ଧ୍ରୁବ ପ୍ରତି) ଆହୁରି ଅଛୁ ? ଯା- ଏଠାରୁ ଯା- ଶୀଘ୍ର ଯା- (ହସ୍ତଧରି ପେଲି ଦେଇ ପ୍ରସ୍ଥାନ)

ଧାତ୍ରୀ - ଆସ- ଏଥର ସରି ? ମା ମନା କରୁ କରୁ ଆସିଲ ଆସିବା ଫଳ ମିଳିଲା ? ତୁନିହ-ଚାଲ ମା'ଙ୍କ ପାଖକୁ ଯିବା ।

(ଧାତ୍ରୀ ଧ୍ରୁବକୁ ଧରି ପ୍ରସ୍ଥାନ ଓ ଯବନିକା ପତନ)

### ଦ୍ୱିତୀୟ ଦୃଶ୍ୟ

(ପର୍ଣ୍ଣକୁଟୀର, ସୁନୀତି)

ସୁ - କ'ଣ ହେଲା ? ଆହୁରି ଆସିଲେ ନାହିଁ ? ଏତେବେଳ ପର୍ଯ୍ୟନ୍ତେ କିସ କରୁଛନ୍ତି ? ମୁତ ରାଜବାଟୀ ଦେଖାଇ ଘେନି ଆସିବୁ ବୋଲି ଧାଈକି କହିଥିଲି ଏତେବେଳ ପର୍ଯ୍ୟନ୍ତେ କଣ କରୁଛି ? କେଜାଣି ସେତ ଦେଖି ତୁନି ରହିବା ପିଲା ନୁହେଁ । କୋଠାରେ କି ଗୋଳମାଳ ଲଗାଇଛିଟି ? ଆସୁଥିବେ ପରା ? ଦାଣ୍ଡଦ୍ୱାର ପାଖକୁ ଯାଇ ଦେଖେ । (ଏଣେ ତେଣେ ନିରୀକ୍ଷଣ କରି) ହେଟି ଆସୁଛନ୍ତି (ଧ୍ରୁବ ଅଶ୍ରୁପୂର୍ଣ୍ଣ ନୟନରେ ଧାତ୍ରୀ ସଙ୍ଗେ ପ୍ରବେଶ) ଧାଈ ! ଏତେବେଳ ପର୍ଯ୍ୟନ୍ତ କିସ କରୁଥିଲ ? (ଧ୍ରୁବକୁ ଦେଖି) କି ? ଧ୍ରୁବର ମୁହଁ ଶୁଖିଯାଇଛି କାହିଁକି ? କାନ୍ଦୁଛି ପରାତ ? (ନିକଟକୁ ଯାଇ) ହଁ ସତେ କାନ୍ଦୁଛିତ । କି ଗୋଳମାଳ ଚଳାଇଲାନା ?

ଧା - ମଣିମା ! କିସ ଜଣାଇବି ?

ସୁ - କି ? ତୁ ପାଖରେ ଥିଲୁ ପରା ? ବାବୁ କାହିଁକି କାନ୍ଦୁଛୁ ?

ଧ୍ରୁ - ମାଁ- ଆଁ -ଆଁ-(କ୍ରନ୍ଦନ)

ସୁ - କି କି ? ବାବୁ ! ଏଡ଼େ ବିକଳରେ କାହିଁକି କାନ୍ଦୁଛୁ ?

ଧ୍ରୁ - ମାଁ-ଆଁ-ଆଁ (କ୍ରନ୍ଦନ)

ସୁ    ରାଗ ବିହାଗ । ଆଦିତାଳ ।

(ଆଜି ହେଲି ମେଲାଣି ପ୍ରତି)

କହ ମୋ ଗଳାହାର । କାହିଁକି ଅଶ୍ରୁଧାର ।

ବାହିନୀ ପରି ହୋଇ । ବହେ ନୟନୁ ତୋର ।୦।

କିଏ କି ବୋଇଲା କି ? ଅପମାନ ହେଲା କି ?

ନ ରଖି ମନେ କିଛି । ଫିଟାଇ ତୁ ସତ୍ୱର ।୧।

ଦେଖି ତୋ ମ୍ଳାନ ମୁଖ । ଛାଡ଼ିଯାଏ ବିବେକ

କାନ୍ଦନା ଆଉ ଧନ । କରିବି ପ୍ରତିକାର ।।୨।।

କିସ ହେଲା କହ ବାବୁ ?

ଧ୍ରୁ - ମା ! ମୁ ପିତାଙ୍କ ପାଖକୁ ଗଲି । ସେ ଶ୍ରଦ୍ଧାରେ ଡାକି ମୋତେ କୋଳକୁ ନେଲେ । ମୁ ତାଙ୍କ କୋଳରେ ବସିଥିଲି । ସେ ମୋତେ ଗେଲ କରୁଥିବା ସମୟରେ ସୁରୁଚି ମାତା ଆସି ''ଅଭାଗିନୀର ପୁତ୍ର, ତୁ ପୂର୍ବଜନ୍ମରେ ପୁଣ୍ୟ କରି ନାହୁଁ । ଏଣୁ ରାଜାଙ୍କ କୋଳରେ ବସିବାକୁ, ସିଂହାସନ ଛୁଇଁବାକୁ ଯୋଗ୍ୟ ନୋହୁଁ'' ଏପରି ଅନେକ ଗାଳି ଦେଇ ମୋତେ ହାତଧରି କୋଳରୁ ଝିଙ୍କିନେଲେ । ପିତା ଏସବୁ ଦେଖି ଶୁଣି ସୁଦ୍ଧା କିଛି କହିଲେ ନାହିଁ । ମୋ ମନକୁ ବଡ଼ ବାଧିଲା ।

ସୁ - ଦେଖିଲୁ ନା ମୁଁ ଯାହା କହୁଥିଲି ତାହାହିଁ ହେଲା । ମୁଁ କେତେ ମନା କଲେ ମଧ୍ୟ ଶୁଣିଲୁ ନାହିଁ । ଏବେ ତାର ଫଳ ପାଇଲୁ । ଆ ବାବୁ ଦୁଃଖ କରନା । ଦୁଃଖ କଲେ କିସ ହେବ ? ସୁରୁଚି କହିଲା ପରି ତୁ ବା ମୁଁ ପୂର୍ବଜନ୍ମରେ ତପସ୍ୟା କରିନାହୁଁ । ଏଣୁ କିପରି ସିଂହାସନ ଯୋଗ୍ୟ ହେବୁ ? ତୁନିହ ବାବୁ ତୁନିହ । (ଅଞ୍ଚଳରେ ଅଶ୍ରୁ ପୋଛି କୋଳକୁ ନେବା ।)

ଧ୍ରୁ - (କିଛିକାଳ ତୁନି ହୋଇ) ମା । କାହାକୁ ତପସ୍ୟା କଲେ ସିଂହାସନ ମିଳିବ ?

ସୁ - ହରିଙ୍କି ତପସ୍ୟା କଲେ ସିଂହାସନ କ'ଣ ତାଠାରୁ ବଳି ଉଚ୍ଚ ସ୍ଥାନ ମିଳିପାରିବ ।

ଧ୍ରୁ - ସେ ହରି କିଏ ମା ?

ସୁ - ସେ ତ୍ରିଲୋକନାଥ, ସମସ୍ତଙ୍କର କର୍ତ୍ତା ।

ଧ୍ରୁ - ମା ! ସେ କେଉଁଠାରେ ଥାନ୍ତି ?

ସୁ - ସେ ବନରେ, ପର୍ବତରେ ସବୁଠାରେ ଥାନ୍ତି ।

ଧ୍ରୁ - ତାହାଙ୍କୁ ତପସ୍ୟା କରିବାକୁ ହେଲେ କେଉଁଠାରେ କରିବାକୁ ହେବ ?

ସୁ - ନିର୍ଜନ ଅରଣ୍ୟରେ ।

ଧ୍ରୁ - ତେବେ ମୁଁ ଯାଇ ତାଙ୍କୁ ତପସ୍ୟା କରିବି ।

ସୁ - ଭଲ ହେଇଚି ! ତୁ ନିର୍ଜନ ବନକୁ ଯିବୁ ? ତୁନିହ କେ ଶୁଣିଲେ ହସିବେ ।

ଧ୍ରୁ - ନା ମା ମୋ ମନକୁ ବଡ଼ ବାଧୁଛି । ମୁଁ ଯାଇ ହରିଙ୍କି ତପସ୍ୟା କରିବି ।

ସୁ - ସରି ଏଥର ହେଲା ।

ଧ୍ରୁ - ଗଲେ କିସ ହେଲା ମା ?

ସୁ - **ରାଗ ଖମାଚ । ଆଦିତାଳ ।**

(ଯମୁନା ପୁଳିନେ ବସି ପ୍ରତି)

ଦୁଃଖିଧନ ଚନ୍ଦ୍ରାନନ । ଶୁଣ ମୋର ବାଣୀକି<br>
ଗୃହ ଛାଡ଼ିଯିବୁ ସତେ । ଏବେ ତୁହି କେଣିକି ।୦।<br>
ତୁ କି ଜାଣୁ ତପ ବିଧି । ଆରେ ମୋ ରଙ୍କର ନିଧି ।<br>
ବରଜ ତୁ ଏ ଦୁର୍ବୁଦ୍ଧି । ଥରୁଚି ତୋ ପାଣିକି ।୧।<br>
କ୍ଷଣେ ନ ଦେଖିଲେ ତୋତେ । ବାଇ ହୋଇଯାଏ ସତେ ।<br>
ବୁହାଇବୁ ଅବିରତେ । ମୋର ନେତ୍ରୁ ପାଣିକି ।।୨।।<br>
ସୁକୁମାର ତନୁ ତୋର । ପୁଣିତ ରାଜ କୁମାର ।<br>
ଅରଣ୍ୟ କଷ୍ଟ ନିକର । ସହିପାରିବୁ ତୁ କି ? ।। ୩ ।।

ତୁ ଦେଖିଲେ ବାଳୁତ । ତୋତେ ତପସ୍ୟା କଥା କାହିଁକି ? ଆ ବାବୁ ଉଛୁର ହେଲାଣି ଭୋଜନ କରିବୁ ।

(ପ୍ରସ୍ଥାନ ଓ ଯବନିକା ପତନ)

●

## ତୃତୀୟାଙ୍କ

### ପ୍ରଥମ ଦୃଶ୍ୟ

(ପର୍ଣ୍ଣ କୁଟୀର)

(ଧ୍ରୁବ ଓ ସୁନୀତି ଶଯ୍ୟାରେ ଶୟନ)

ଧ୍ରୁବ - (ଶଯ୍ୟାରୁ ଉଠି ମନେ ମନେ) କି ଅପମାନ ହେଲା ! ଉତ୍ତମ ବସିଥିଲା- ମୁ ବସିଥିଲି, ତାହାକୁ କିଛି କହିଲେ ନାହିଁ । ମୋତେ ହାତ ଧରି ତଳକୁ ଝିଙ୍କିଦେଲେ । ମୁ ବସିଥିଲେ ତାଙ୍କର କ'ଣ ସରିଯାଉଥିଲା ? ବସିଥିଲି ଟିକିଏ ଗଲେ ବାହାରି ଆସିଥାନ୍ତି । ଏହା କିଛି ବିଚାର କଲେ ନାହିଁ । ଯଦି ତାଙ୍କୁ ବିସୁଖ ବୋଧହେଲା, ମୋତେ କହିଲା ପରି କହି ଯା ବୋଲିଥିଲେ ମୁଁ ବାହାରି ଆସି ନଥାନ୍ତି ? ତା ନ କରି ନାନାଦି ଭର୍ତ୍ସନା କରି ହାତ ଧରି ବଳେ ବଳେ ତଳକୁ ଝିଙ୍କିଦେଲେ । ପିତା ଦେଖି କିଛି କହିଲେ ନାହିଁ । ମାତାଙ୍କଠାରେ କହିଲି ଯେ ସେ 'ତୁନିହ' ବୋଲି କହିଦେଲେ । କେହିତ କିଛି ମୋ ମନର ବାଧା ଜାଣିଲେ ନାହିଁ । ମୁ ଏଠାରେ ରହି କଣ କରିବି ? ଅବଶ୍ୟ ତ୍ରିଲୋକନାଥ ହରିଙ୍କି ଯାଇ ଖୋଜିବି । ତାଙ୍କ ଆଗରେ ମୋ କଥା କହିଲେ ସେ ଏକା ମୋତେ ଏ ଅପମାନରୁ ଉଦ୍ଧାର କରିବେ । ସେ ଯଦି ସମସ୍ତଙ୍କୁ ସର୍ଜ୍ଜନା କରି ଅଛନ୍ତି ତେବେ ଅବଶ୍ୟ ମୋ ଗୁହାରି ଶୁଣିବେ, ଆଉ ସବୁଠାରୁ ଉଚ୍ଚସ୍ଥାନ ଦେବେ । ଦେଖେତ ମା ନିଦ୍ରାରେ ଶୋଇଛନ୍ତି ନା ଚେତି ଅଛନ୍ତି- ସେ ଯଦି ଜାଣି ଦେବେ ଆଉ ଛାଡ଼ିବେ ନାହିଁ । (ମାତା ମୁଖରେ କର ଦେଇ) ନା ଏ ଅଚେତାରେ ଶୋଇଛନ୍ତି । ଏହି ଏକା ସମୟ । ଆଉ ବିଳମ୍ବ କଲେ ଭଲ ନାହିଁ । କେ ଜାଣି ପଦାରେ କେ ଥାଇପାରେ । (ଚତୁର୍ଦ୍ଦିଗ ନିରୀକ୍ଷଣ କରିବା) ନା କେହି ନାହାନ୍ତି-ଧାଇ ମାତ୍ର ଘୁମୁଡ଼ି ମାରି ଶୋଇଛି । ଆଚ୍ଛା ମାଙ୍କୁ ପ୍ରଦକ୍ଷିଣ ଆଉ ନମସ୍କାର କରି ଯିବି । (ପ୍ରଦକ୍ଷିଣ ଓ ନମସ୍କାର କରି ପ୍ରସ୍ଥାନ)

ସୁ - (କେତେକକାଳ ଉତ୍ତାରୁ ନିଦ୍ରାରୁ ଉଠି) କାହିଁ ? କୋ ଆଡ଼େ ଗଲା ? ଏବେ ପାଖରେ ଶୋଇଥିଲା କେଚେ ଶୀଘ୍ର ଉଠି କୋଆଡ଼େ ଗଲା ? ଧାଇ ! ଧାଇ ! ଉଠି ଆସିଲୁ, ଉଠିଲୁନା ?

ଧାତ୍ରୀ - ଆଜ୍ଞା ହେଟ ଆସୁଛି ।

ସୁ - ଶୀଘ୍ର ଆସିଲୁ ।

(ଧାଈର ପ୍ରବେଶ)

ଧାଈ ! ଦେଖିଲୁନା ? ଧ୍ରୁବ ମୋ ପାଖରେ ଶୋଇଥିଲା । ସେ ଦିଶୁ ନାହିଁ ।

ଧାତ୍ରୀ - କ'ଣ ଦିଶୁନାହାଁନ୍ତି ? କୋଆଡ଼େ ଗଲେ ? ମୁ ତ ଦେଖିନାହିଁ ।

ସୁ - ଶୀଘ୍ର ଯାଟି । ଯାଇ ଦାଣ୍ଡ ବାଡ଼ ସାଇ ପଡ଼ିସା ଦେଖିଆ ।

ଧା - ହେଟି ଯାଉଛି । (ପ୍ରସ୍ଥାନ)

ସୁ - ସୁରୁଚି ପିତାଙ୍କ କୋଳରୁ ଝିଙ୍କି ଦେଲେ ବୋଲି ସେ ମନରେ ବଡ଼ ସନ୍ତାପିତ ହେଉଥିଲା । ମୋତେ ପଚାରିବାରୁ ପରମେଶ୍ୱରଙ୍କୁ ନିର୍ଜ୍ଜନ ବନରେ ତପସ୍ୟା କଲେ ଉଚ୍ଚସ୍ଥାନ ପାଇପାରିବୁ ବୋଲି ମୁ ହତଭାଗିନୀ କହିଥିଲି । ସେ କଥା ମନେ ରଖିଥିଲା । ତପସ୍ୟା କରିବାକୁ ବନକୁ ଯିବି ବୋଲି ମୋତେ ପଚାରୁଥିଲା, ମୁ ମନା କଲି, ଏବେ ମୁ ଶୋଇପଡ଼ିବାର ଦେଖି କେତେବେଳେ ଉଠି ଅବଶ୍ୟ ବନକୁ ବାହାରିଗଲା । ଏଥିରେ ଆଉ ସନ୍ଦେହ ନାହିଁ । ହା ଦୈବ ! କେଡ଼େ ବିପତ୍ତି ଆଣି ପକାଇଲୁ ? ମୁ ଯାହାକୁ ଚିନ୍ତାମଣି ପରି ଦେଖି ସମସ୍ତ ଦୁଃଖ ପାଶୋରି ଦେଇଥିଲି ସେ ମଧ୍ୟ ମୋତେ ଦୂରକଲା । ମୁ ପୂର୍ବ ଜନ୍ମରେ କେତେ ପାପ କରିଥିଲି ପ୍ରଥମେ ପତିଠାରୁ ଭିନ୍ନ ଏବେ ପୁତ୍ରଠାରୁ ଭିନ୍ନ । ହା ବିଧାତା ! ହା ପରମେଶ୍ୱର ! (କ୍ରନ୍ଦନ) ।

**ରାଗ ନାଦନାମ କ୍ରିୟା । ଅଟତାଳ ।**

(ଆଙ୍କଟାରମଣୀ ପ୍ରତି)

ମୋ ଦୁଃଖି ସଙ୍ଗାଳି । କାହିଁ ଗଲୁ ଏବେ ତୁହି ?
ସନ୍ତାପ-ସରିତ ସ୍ରୋତରେ ଭସାଇ ।।୦।।
ପାଶୋରି ସକଳ ଦୁଃଖ । ଦେଖି ତୋର ପଦ୍ମ ମୁଖ ।
ଥିଲି ତ ଆନନ୍ଦେ ମୁ କାଳ କଟାଇ ।।୧।।
କେଡ଼େ ପୋଡ଼ାକର୍ମ୍ମ ମୋର ! ତୁହି ମଧ୍ୟ କଲୁ ଦୂର ।
ଆଉ କି ଦେଖିବି ନୟନ ପୁରାଇ ।।୨।।
ଆରେ ମୋ ସୁଖ ସଦନ । ଆରେ ମୋର ଗଣ୍ଠିଧନ ।
ଅନ୍ଧର ଲଗୁଡ଼ ହୋଇଥିଲୁ ତୁହି ।। ୩ ।।

ରେ ଧ୍ରୁବ ! ରେ ଜୀବନ ସର୍ବସ୍ୱ ! ମୋତେ ଏଡ଼େ ଅନାଥା କରି କୋ ବନ ପର୍ବତକୁ ବାହାରିଗଲୁ ? ମୁଁ ଏବେ କାହାକୁ ଦେଖି ଏ ପ୍ରାଣ ଧାରଣ କରିବି ? ହା ଦୈବ । ହା ବିଧାତା !

**ରାଗ ଯମୁନାକଲ୍ୟାଣୀ । ଅଟତାଳ ।**

(ମୋ ନେତ୍ରାନନ୍ଦପସରା ପ୍ରତି)

ଆରେ ମୋର ଗଳା ମାଳା ।

କରିଦେଇ ଗଲୁ ନିଶି ଦିନ ଅସରା ।।୦।।

ଯଷ୍ଟି ନେତ୍ରହୀନାର । ସକଳ ଆଶା ମୋର ।

ଭସାଇ ଦେଇ ଗଲୁ ମୋ ଦୁଃଖ ପାସୋରା ।୧।

ଦିଶୁଥିବ ମଳିନ । ଲୋଳି ମୁଖ ନଳିନ ।

ବନେ କେତେ ବାଧା ପାଉଥିବୁ ତୁ ପରା ।।୨।।

ତୋ କୋମଳ ପଦରେ । କୁଶାଙ୍କୁର ବାଜିଲେ ।

ବହି ଯାଉଥିବ କେତେ ଲୋତକ ଧାରା ।୩।

ଗୃହ ଡେଇଁ ନଥିଲୁ । କୋଳ ଛାଡ଼ି ନଥିଲୁ ।

ଏବେ ବାସ କରିଥିବୁ ଗିରି କନ୍ଦରା ।୪।

ହେ ପରମେଶ୍ୱର ! ହେ ଦୀନରକ୍ଷକ ! ମୋ ଧ୍ରୁବର ମନ ଭୁଲାଇ ଫେରି ମୋ ଠାକୁ ଆସିଲା ପରି କର ତୁମ୍ଭ ବିନା ମୋର ସାହା ଭରସା ଆଉ କେ ନାହିଁ । ହେ ଅରକ୍ଷ ରକ୍ଷକ ! ମୋତେ ପୁତ୍ର ଦାନ କରି ଏ ହତଭାଗିନୀକୁ ରକ୍ଷା କର ।

(ଧାତ୍ରୀର ପ୍ରବେଶ)

ଧା - ମଣିମା ! ଚାରିଆଡ଼େ ଖୋଜି ଖୋଜି ଆସିଲି । କୋଠାରେ ହେଲେ ତାଙ୍କୁ ଦେଖିପାରିଲି ନାହିଁ ।

ସୁ - (ଦୀର୍ଘ ନିଶ୍ୱାସ ଛାଡ଼ି) ଆଉ କୋଆଡ଼େ ଦେଖିବୁ ଧାଇ ? କୋଆଡ଼େ ଦେଖିବୁ ? ସେ ତ ମୋତେ ଭସାଇ ଦେଇ କୋ ବନ ପର୍ବତକୁ ପଳାଇଗଲା । ଆଉ କୋଆଡ଼େ ଦେଖିବୁ ?

ଧା - ମଣିମା ! ଏପରି ଅଧୈର୍ଯ୍ୟ ହେବା ଉଚିତ ନୁହେଁ । ବିଜେ କରନ୍ତୁ, କାହାକୁ ଡାକି ଖୋଜି ଆଣିବାକୁ ପଠାଇବା ।

ସୁ - ମୋର ହୋଇ ଆଉ କେ ଅଛି ? କାହାକୁ ପଠାଇବି ? ଆଉ କେ ମୋତେ ଆଣିଦେବ ?

ଧା - ଏପରି ଅଧୈର୍ଯ୍ୟ ହେବା ଭଲ ନୁହେଁ । ସବୁ ବିଷୟକୁ ପରମେଶ୍ୱର ଅଛନ୍ତି । ବିଜେ ହେନ୍ତୁ ।

(ପ୍ରସ୍ଥାନ ଓ ଯବନିକା ପତନ)

ଦ୍ୱିତୀୟ ଦୃଶ୍ୟ

ନାରଦ - (ନାରଦଙ୍କ ପ୍ରବେଶ)

ରାଗ ସ୍ରୋଟ । ଆଦିତାଳ ।

(ଭଜ ମନ ନାରାୟଣକା ନାମ ପ୍ରତି)

ସ୍ମର ମନ ସେ ସୁନ୍ଦର ମୂର୍ତ୍ତି । ନିଶ୍ଚେ ଲଭିବୁ ଅନୁକ୍ଷଣେ ଶାନ୍ତି ।
ମୋହ ତିମିର ଛାଡ଼ିଯିବ ହୃଦୁ । ଧ୍ୟାଇବୁ ଯଦି ବିଶ୍ୱପତି ।୦।
ଦୁଃଖି ଅଧମ ତାରଣ ସେହି । ତାଙ୍କୁ ଭଜ ନିରତେ ତୁହି ।
ମୋହ-ତିମିର ଛାଡ଼ିଯିବ ହୃଦୁ । ଧ୍ୟାଇବୁ ଯଦି ବିଶ୍ୱପତି ।୧।
ଭକ୍ତ-ହୃଦୟ-ଚନ୍ଦନ ଈଶ । ଶ୍ରୀପଦ ପଦ୍ମେ ରଖିଣ ଆଶ ।
ମୋହ- ତିମିର ଛାଡ଼ିଯିବ ହୃଦୁ । ଧ୍ୟାଇବୁ ଯଦି ବିଶ୍ୱପତି ।୨।
ପ୍ରେମଭରେ ଶ୍ରୀହରି ନାମ । ଘୋଷି ଲଭ ତୁ ପରମଧାମ ।
ମୋହ-ତିମିର ଛାଡ଼ିଯିବ ହୃଦୁ । ଧ୍ୟାଇବୁ ଯଦି ବିଶ୍ୱପତି ।୩।

ପରମେଶ୍ୱରଙ୍କର କି ଉଦ୍ଦେଶ୍ୟଟି ବା ଆମ୍ଭେ ଦେଖି ଆସୁଅଛୁଁ ଏହି ମାନବ ଜଗତରେ ସ୍ତ୍ରୀ ଯେତେ ଦୂର ଆଧିପତ୍ୟ ସ୍ଥାପନ କରିଅଛି ଅନ୍ୟ କୌଣସି ପଦାର୍ଥ ତେତେ ଦୂର କରିନାହିଁ । ମନୁଷ୍ୟ ଯେତେ ଧାର୍ମିକ, ସତ୍ୟବନ୍ତ ଓ ନ୍ୟାୟପରାୟଣ ହେଉ, ସ୍ତ୍ରୀର ଲାଳସାରେ ପଡ଼ି ସମୟେ ସମୟେ ନିତାନ୍ତ ଜଘନ୍ୟ କାର୍ଯ୍ୟ କରିବାରେ ପଶ୍ଚାତ୍‌ପଦ ହୁଏନାହିଁ । ଉତ୍ତାନପାଦ ରାଜା ଏଥିର ପ୍ରତ୍ୟକ୍ଷ ପ୍ରମାଣ । ସେ ପ୍ରଥମେ ସୁନୀତିଙ୍କ ପାଣି ଗ୍ରହଣ କରିଥିଲେ । ସୁନୀତିଙ୍କ ଗର୍ଭରୁ ସନ୍ତାନ ନ ହେବାରୁ ତାଙ୍କ ଅନୁମତି ନେଇ ତାଙ୍କ ଦ୍ୱାରା ପ୍ରତିପାଳିତ ସୁରୁଚିଙ୍କି ଦ୍ୱିତୀୟରେ ବିବାହ ହେଲେ । କେତେ କାଳ ଗଲା ବାଦ ପ୍ରଥମ ରାଣୀଙ୍କ ଗର୍ଭରୁ ପୁତ୍ର ଜନ୍ମ ହେଲେ ସେ ରାଜ୍ୟର ଉତ୍ତରାଧିକାରୀ ହୋଇଯିବ ବୋଲି ବିଚାରି ସୁରୁଚି ରାଜାଙ୍କୁ ସତ୍ୟ କରାଇ ସୁନୀତିଙ୍କୁ ବନବାସ ଦିଆଇଲେ । ରାଜା ଉତ୍ତାନପାଦ ସୁରୁଚିଙ୍କ ରୂପ

ଯୌବନରେ ନିମଗ୍ନ ହୋଇ ସୁନୀତିଙ୍କୁ ରାଜ ଭବନରୁ ଦୂର କରିଦେବାର ଅନ୍ୟାୟ ବୋଲି ଜାଣି ସୁଦ୍ଧା କିଛି କହିପାରିଲେ ନାହିଁ । ଦିନେ ସୁନୀତିଙ୍କ ପୁତ୍ର ଧ୍ରୁବ ପିତାଙ୍କୁ ଦେଖିବା ସକାଶେ ରାଜ ଭବନକୁ ଯାଇ ତାଙ୍କ କୋଳରେ ବସିଥିଲା । ସୁରୁଚି କୌଣସି ପ୍ରକାରେ ତାହା ଜାଣିପାରି ଅନ୍ତଃପୁରରୁ ଆସି ନାନାଦି ଭର୍ତ୍ସନା କରି ଧ୍ରୁବକୁ ରାଜାଙ୍କ କୋଳରୁ ତଳକୁ ଝିଙ୍କି ଦେଲେ । ଏସବୁ ଦେଖି ଶୁଣି ମଧ୍ୟ ସେ କିଛି କହିଲେ ନାହିଁ । ଏଡ଼େ ଧାର୍ମିକ ବ୍ୟକ୍ତି ଏପରି ସ୍ତ୍ରୀ ଲୋଲୁପ ହେବେ ବୋଲି ଆମ୍ଭେ କେତେ ମାତ୍ର ମନେ କରିନଥିଲୁ । ବର୍ତ୍ତମାନ ଧ୍ରୁବ ସୁରୁଚିଙ୍କ କଟୁ ବଚନରେ ମର୍ମାହତ ହୋଇ ନିଜ ମାତାଙ୍କୁ ନ କହି ନପୁଛି ନିଶୀଥ ସମୟରେ ବନକୁ ବାହାରି ଯାଇ ଉଚ୍ଚପଦ ସକାଶେ ରାତ୍ରିଂଦିବା ଶ୍ରୀହରିଙ୍କି ଏକାକୀ ଖୋଜୁଅଛି । ସେ ଦେଖିଲେ ନିତାନ୍ତ ବାଳକ । କେଜାଣି ହିଂସ୍ର ଜନ୍ତୁମାନେ ବ୍ୟାଘାତ ଜନ୍ମାଇ ପାରନ୍ତି । ଏଣୁ ଆମ୍ଭେ ଯାଇ ତାହାକୁ ସଦୁପଦେଶ କହି ଶୋକାକୁଳିତା ସୁନୀତିଙ୍କଠାକୁ ପଠାଇଦେବୁଁ ।

(ପ୍ରସ୍ଥାନ ଓ ଯବନିକାପତନ)

**ତୃତୀୟ ଦୃଶ୍ୟ**

(ବନରେ ଧ୍ରୁବ ହରିଙ୍କି ଅନ୍ୱେଷଣ କରିବା)

ଧ୍ରୁବ - **(ରାଗ ଶଙ୍କରାଭରଣ । ରୂପକ ତାଳ ।)**

(ବେନ୍ ସ୍ୱର)

ଭକ୍ତ ଜୀବନ । ଅରକ୍ଷ ରକ୍ଷଣ । ମୁକ୍ତି ଦାୟକ । ଭୁବନ ନାୟକ ।
ଅଧମ ତାରଣ । ପତିତପାବନ । ପତିତ ଜୀବ ମୁ । ରଖ ଜନାର୍ଦ୍ଦନ ।୧।
ଆର୍ତ୍ତେ ଡାକଇ । ହେ ଭାବଗ୍ରାହି । କୃପା ବିତରି । ଦିଅ ଦେଖା ହରି ।
ବାଳକ ବୋଲିଣ । ନ କର ବର୍ଜନ । ହେ କୃପାମୟ । ନିଖିଳ ଆଶ୍ରୟ ।।୨।।

ହେ ହରି ! ହେ ପରମେଶ୍ୱର ! ଆପଣ କୋଠାରେ ଅଛ ?
ଥରେ ଦେଖାଦେଇ ମୋର ଅପମାନ ଦୂରକର ।

**ରାଗ ଖମାଚ । ଆଦି ତାଳ ।**

(ଶାମ୍ଭ ଶିବନୟନବେ ପ୍ରତି)

କାହିଁ ଅଛ ଶ୍ରୀହରି ? ନରକେଶରି ?
ହେ ପ୍ରଭୋ ଦେଖାଦିଅ ଦୟାମୟ କରୁଣା କରି ।୦।

ଗିରିମାଳରେ । ନଦୀ କୂଳରେ । ବୃକ୍ଷ ଡାଳରେ । କିବା ମୂଳରେ ।
କିବା ପତ୍ର ଗହଳରେ । କଣ୍ଟକଢ଼ାଳରେ ।
ଲତା ଅନ୍ତରାଳରେ । କି ସକଳଠାରେ ପୁରି ।୧।
କହିଛନ୍ତି ଜନନୀ ମୋତେ । ଥାଅ ବୋଲି ବନ ପର୍ବତେ ।
ଆସିଅଛି ଆଶା କରି ।୨।
ଜଣାଇବି ଶ୍ରୀଛାମୁରେ । ମନେ ଥିବା କଥା ଥରେ ।
ଆଉ ନକର ଡେରି ।୩।
ପାଇଅଛି ବଡ଼ ଅପମାନ ।
ତୁମ୍ଭବିନା ଗତି ନାହିଁ ଆନ ।
ନିରାଶ-ସରିତ-ସ୍ରୋତରେ ପଡ଼ିଣ ।
ଭାସି ଯାଉଅଛି ପ୍ରଭୁ କର ପାରି ।୪।

ହେ ହରି ! ହରି ହେ ! ହେ ତ୍ରିଲୋକନାଥ ! ଦେଖାଦେଇ ଥରେ ମୋ ଗୁହାରି ଶୁଣ ହେ ହରି !

**ରାଗ ମାଳବଗୌଡ଼ା ! ମିଶ୍ରଚାପ ତାଳ ।**

(ଚାଲ ଚାଲ ନବୀନ ପ୍ରତି)

ଥିବେ ପରା ଏଠାରେ । ଆଭାସେ ଥିଲା ପରିରେ ।୦।
ବୋଲି 'ହରିହେ' । ଡାକିଲେ 'କିହେ'
ଶୁଭେତ ଏହି ଦିଗରେ ।୧।
ଆସଇ ସନ- ସନ ନିସ୍ୱନ ।
ତରୁ ପଲ୍ଲବତ ଥରେ ।୨।
ପକ୍ଷୀ ଉଡ଼ଇ । କିସ ଡାକଇ
ଲତିକା ଅନ୍ତରାଳରେ ।୩।

(ନାରଦଙ୍କ ପ୍ରବେଶ, ତାଙ୍କୁ ଦୂରେ ଦେଖି ମନେ ମନେ) ହେଟି ହରି ଆସୁଅଛନ୍ତି । ପାଖକୁ ଯାଇ ମୋ ମନ କଥା କହିବି । ସେ ଅବଶ୍ୟ ମୋତେ ଉଚ୍ଚସ୍ଥାନ ଦେବେ । (ନିକଟକୁ ଯାଇ) ହେ ହରି ! କେତେଦିନକୁ ଦର୍ଶନ ଦେଲେ ? ମୋଠାରେ କୃପାକରି ମୋର ମନୋବାଞ୍ଛା ସିଦ୍ଧକର ।

(ଚରଣତଳେ ପଡ଼ିବା)

ନାରଦ - ଆରେ ଏ କ'ଣ ? ଛାଡ଼େ ଛାଡ଼େ ଆମ୍ଭେ ହରି ନୋହୁଁ । ହରି ନୋହୁଁ ଉଠେ । (ହସ୍ତଧରି ଉଠାଇବା)

ଧ୍ରୁବ - (ଉଠି)

**ରାଗ ଝଞ୍ଜୋଟୀ । ଆଦିତାଳ ।**

(ଆଇହୁଁ ସଭାମେ ପ୍ରତି)

କାହିଁକି ପ୍ରଭୁ ମୋତେ କରୁଛ ମାୟା ? ବସି ନାହିଁକି ଆହୁରି ଦୟା ? ।୦।

ବିମାତାଙ୍କର । ଭର୍ତ୍ସନା ଗୀର । ଦହି ଦେଉଛି ମୋହର ହିୟା ।୧।

ଆଉବା କେତେ । ସହିବି ସତେ ? ରଖ ବିସ୍ତାରି ଶ୍ରୀବାହୁ ଛାୟା ।୨।

ବୁଲି ବୁଲିତ । ବନ ପର୍ବତ । ଶୀର୍ଣ୍ଣ ହେଲାନି ମୋହର କାୟା ।୩।

କେଣେ କପଟ । ତୁମ୍ଭେକା ଅଟ । ସକଳ-ସୁଖ-ଆନନ୍ଦ-ଦିଆ ।୪।

(ଫେରି ଚରଣ ଧରିବା)

ନା - (ଉଠାଇ) ରେ ବାଳକ ! ଆମ୍ଭ କଥା ଶୁଣେ । ଆମ୍ଭେ ହରି ନୋହୁଁ ।

ଧ୍ରୁ - ନା ଆପଣ ଏକା ହରି, ମୋତେ କପଟ କରୁଅଛ । ମୁ ମାଗି ଘେନୁଛି ମୋ ଇଚ୍ଛା ପୂର୍ଣ୍ଣକର ନ କଲେ ଛାଡ଼ିବି ନାହିଁ । (ପାଦ ଧରିବା)

ନା - ରେ ବାଳକ ! ଆମ୍ଭ କଥା ଶୁଣେ ଆମ୍ଭେ ହରି ନୋହୁଁ ।

ଧ୍ରୁ - ତେବେ ଆପଣ କେ ?

ନା - ଆମ୍ଭେ ଜଣେ ଋଷି ।

ଧ୍ରୁ - ଜଣ ଆପଣ ସତ କହନ୍ତି ?

ନା - ହଁ ଆମ୍ଭେ ସତ କହୁଛୁଁ ଆମ୍ଭେ ହରି ନୋହୁଁ ।

ଧ୍ରୁବ - ତେବେ ହରି କୋଠାରେ ଅଛନ୍ତି ?

ନାରଦ - ତୁ ହରିଙ୍କି କାହିଁକି ଲୋଡୁ ?

ଧ୍ରୁବ - ସେ ଆସିଲେ ତାଙ୍କୁ ଉଚ୍ଚ ସ୍ଥାନ ମାଗିବି ।

ନାରଦ - ତୁ କୋଠାରେ ହରି କୋଠାରେ ? ଏହା ତୋତେ କେ ଶିଖାଇଲା ?

ଧ୍ରୁବ - ମୋ ମାଁ କହିଥିଲେ ହରି ବନରେ ପର୍ବତରେ ଥାନ୍ତି ।

ନା - (ହସି) ସେ ନ ଜାଣି ସେପରି କହିଦେଲେ । ତୁ ତାଙ୍କୁ ଏଠାରେ ଖୋଜିଲେ କି ପାଇପାରିବୁ ? ଋଷିମାନେ ଅନେକ ବର୍ଷ ପର୍ଯ୍ୟନ୍ତ ବାତାମ୍ବୁ ପର୍ଣ୍ଣାଶନ କରି ଯାହାଙ୍କୁ ଦେଖି ପାରୁନାହାଁନ୍ତି, ତୁ ତାହାଙ୍କୁ ଦେଖିପାରିବୁ ? ଆମ୍ଭ କଥା ଶୁଣି ବାଟେବାଟେ ଘରକୁ ଫେରି ଯା । ଏ ବନରେ ବ୍ୟାଘ୍ର ଭାଲୁ

ଇତ୍ୟାଦି ହିଂସ୍ର ଜନ୍ତୁମାନେ ଅଛନ୍ତି । ତୋତେ ଦେଖିଲେ ଅବଶ୍ୟ ଖାଇଦେବେ । ଆମ୍ଭ କଥା ଶୁଣି ଆପଣା ଘରକୁ ବାହାରି ଯା ।

ଧ୍ରୁବ - ରାଗ କାଫି । ମିଶ୍ରଚାପ ତାଳ ।

(ଏଲାରା ନାପୈ ପ୍ରତି)

ହରି ନ ପାଇଲେ । ଶୁଣ ମୁନି ଭଲେ ।
ଯିବି ନାହିଁ ଫେରି । ଏହି ମୋର ନିର୍ଦ୍ଧାରଣ ।୦।
ହରି ମୋର ମାତା । ହରି ମୋର ପିତା ।
ହରି ସ୍ୱବୁ କଥା । ହରି ଏକା ମୋ ସଦନ ।୧।
ହରି ମୋର ଜ୍ଞାନ । ହରି ମୋର ଧ୍ୟାନ ।
ହରି ମୋ ଜୀବନ । ହରି ମୋର ବନ୍ଧୁଜନ ।୨।
ହରି ଏକା ଗତି । ହରି ମୋ ସମ୍ପତ୍ତି ।
ହରି ବିନା ମୋର । ଆଉ କେହି ନାହିଁ ଜାଣ ।୩।
ତେଜିଛି ଜନକ । ଜନନୀର ସୁଖ ।
ହରି ଲାଗି ମୁହିଁ । ଛାଡ଼ିବି ପଛେ ପରାଣ ।୪।

ହେ ଋଷି ! ବାଘ ଖାଉ ଭାଲୁ ଖାଉ ହରି ନ ମିଳିଲେ ମୁଁ ଏଠାରୁ କେବେ ଘରକୁ ଯିବି ନାହିଁ ।

ନା - ତେବେ ତୋ ମନ, ବୁଲୁଥା । ଆମ୍ଭର କି ଗଲା, ଆମ୍ଭେ ଯାଉଁ ।

ଧ୍ରୁ - ମହାଶୟ ! ଆପଣ ଗଲେ କିପରି ହେବ ? ହରିଙ୍କି କିପରି ଦେଖିବି ତାହାର ଉପାୟ କହିଯାନ୍ତୁ ।
( କହି ଚରଣ ଧରିବା)

ନା - (ସ୍ୱଗତୋକ୍ତି ) ଆମ୍ଭେ ଏହାକୁ ଭୟ ଦେଖାଇ ଗୃହକୁ ପଠାଇ ଦେବାକୁ ଆସିଥିଲୁଁ । ଦେଖିଲେତ ଏ ଏକ ଲୟ କରି ଅଛି । ଆମ୍ଭେ ଯେତିକି ଡରାଇ କହୁଁ ସେ ତେତିକି ମନକୁ ଦୃଢ଼ କରେ । ବାଲ୍ୟାବସ୍ଥାରେ ଏଡ଼େ ଦୃଢ଼ତା ଆମ୍ଭେ କେବେ ଓ କୌଣସିଠାରେ ଦେଖିନାହୁଁ କି ଶୁଣିନାହୁଁ । ବିମାତା କରିବା ଅପମାନରେ ଏ ଭାରୀ ମର୍ମ୍ମାହତ ହୋଇ ଅଛି । ଅବଶ୍ୟ ଏହାକୁ ଉପଯୁକ୍ତ ଉପଦେଶ ଦେଇ ହରିପ୍ରାପ୍ତ ହେବା ମାର୍ଗ ଦେଖାଇବା । (ପ୍ରକାଶ୍ୟେ) ରେ ବତ୍ସ ! ତୋର ଦୃଢ଼ତା ଦେଖି ଆମ୍ଭେ ଅତିଶୟ ସନ୍ତୁଷ୍ଟ

ହୋଇ ଅଛୁଁ । ଆମ୍ଭେ ତୋତେ ଗୋଟିଏ ମନ୍ତ୍ର କହିବୁ ତାହା ଯମୁନା ନଦୀ ତୀରବର୍ତ୍ତି କଦମ୍ବ ବୃକ୍ଷ ମୂଳରେ ବସି କୌଣସି ଆଡ଼େ ନ ଦେଖି ତୁ ଯଦି ଜପ କରିବୁ, ତେବେ ହରି ଅବଶ୍ୟ ତୋତେ ପ୍ରସନ୍ନ ହେବେ ।

ଧ୍ରୁ - ଯମୁନା ନଦୀ ଏଠାକୁ କେତେ ଦୂର ?

ନା - ଏଠାରୁ କିଛି ଦୂରରେ ଅଛି ।

ଧ୍ରୁ - ହେ ଋଷି ! ହରି ପ୍ରସନ୍ନ ହେଲେ ମୁ ତାଙ୍କୁ କିପରି ଚିହ୍ନିବି ?

ନା - ତାଙ୍କର ମେଘ ଶ୍ୟାମବର୍ଣ୍ଣ, ପୀତ କୌଷେୟବାସ, ଶ୍ରୀବତ୍ସାଙ୍କିତ କୌସ୍ତୁଭ ଧାରଣ ଦେଖି ହରି ବୋଲି ଜାଣିବୁ ।

ଧ୍ରୁ - ତେବେ କି ମନ୍ତ୍ର କହିବେ ଶୀଘ୍ର କହନ୍ତୁ ।

ନା - ଆଚ୍ଛା ଆମ୍ଭ ସଙ୍ଗେ ଆସେ । ଆମ୍ଭେ ତୋତେ ମନ୍ତ୍ର କହି ଯମୁନା ନଦୀକୁ ଯିବା ମାର୍ଗ ଦେଖାଇଦେବୁଁ ।

(ପ୍ରସ୍ଥାନ ଓ ଯବନିକା ପତନ)

●

# ଚତୁର୍ଥାଙ୍କ
## (ପ୍ରଥମ ଦୃଶ୍ୟ)

(ଦେବରାଜ ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ ଇତ୍ୟାଦି ଦେବଗଣ)

ଇ - ହେ ସୁରଗଣ ! ଏବେ ଆମ୍ଭର ଉପାୟ କି ?

ଦେବ - କାହିଁକି ଏଡ଼େ ଅଧୈର୍ଯ୍ୟ ମହାରାଜ ?

ଇ - ଆହୁରି ଜାଣି ନାହିଁ ।

ଦେବ - କିସ ଆଜ୍ଞା ?

ଇ - ସୁନୀତିଙ୍କ ଗର୍ଭଜାତ ଉତ୍ତାନପାଦ ମହାରାଜାଙ୍କ ପୁତ୍ର ଧ୍ରୁବ ଦିନେ ଯାଇ ନିଜ ପିତାଙ୍କ କୋଳରେ ବସିଥିଲା । ଧ୍ରୁବକୁ ଏମନ୍ତ ସମୟରେ ତାର ବିମାତା ସୁରୁଚି ଆସି କ୍ରୋଧରେ କୋଳରୁ ହସ୍ତଧରି ଝିଙ୍କିଦେଇ ଘଉଡ଼ିଦେଲେ । ଧ୍ରୁବ ଏହି ଅପମାନରେ ମର୍ମାହତ ହୋଇ ନିଜ ମାତାଙ୍କୁ ନ କହି ବନକୁ ବାହାରିଯାଇ ଉଚ୍ଚପଦ ପାଇବା ଲାଗି ଏବେ କଠୋର ତପସ୍ୟା କରୁଛି । ବୋଧହୁଏ ସେ ଆମ୍ଭର ପଦକୁ ଲକ୍ଷ୍ୟ କରିଅଛି ।

ଚ - ସମସ୍ତଙ୍କଠାରୁ ଆମ୍ଭର ଉଚ୍ଚତମ ସ୍ଥାନ । କେଜାଣି ଆମ୍ଭର ସ୍ଥାନ ନେବାଲାଗି ସେ ତପସ୍ୟା କରୁଥିବପରା ?

ସୂ - ଆପଣଙ୍କର ଯେପରି ଉଚ୍ଚତମ ସ୍ଥାନ ଆମ୍ଭର ମଧ୍ୟ ସେପରି ଅଟେ । କେଜାଣି ସେ ଆମ୍ଭର ସ୍ଥାନ ଚ୍ୟୁତ କରିବା ପାଇ ଦେଖୁଥିବ ।

ଇ - ଯାହାକୁ ହେଉ ବର୍ତ୍ତମାନ ଆମ୍ଭେମାନେ କରିବା ଉପାୟ କ'ଣ ?

ଚ - ଆଜ୍ଞା କେବଳ ତପସ୍ୟା ଭଙ୍ଗ ବିନା ଅନ୍ୟ ଉପାୟ କିଛି ଦିଶୁନାହିଁ ।

ସମସ୍ତେ - ଆମ୍ଭେମାନେ ସେପରି ଆଲୋଚନା କରୁଅଛୁଁ ।

ଇ - ତେବେ କି ଉପାୟ କଲେ ତାହାର ତପସ୍ୟା ଭଙ୍ଗ ହେବ ?

ସମସ୍ତେ - ଅପ୍‌ସରାମାନଙ୍କୁ ପ୍ରେରଣ କରନ୍ତୁ ।

ଇ - ଭଲ କହିଲୁ । ରେ ଦ୍ୱାରି !

ଦ୍ୱା - ଆଜ୍ଞା ହାଜର ।

ଇ - ତୁ ଯାଇ ରମ୍ଭା ମେନକାଙ୍କୁ ଡାକି ଆଣ ।

ଦ୍ୱା - ଯେ ଆଜ୍ଞା ।

(ପ୍ରସ୍ଥାନ ଓ ଅପ୍‌ସରାମାନଙ୍କୁ ସଙ୍ଗେ ଧରି ପୁନଃ ପ୍ରବେଶ)

ଇ - ରମ୍ଭେ ! ମେନକେ । ତୁମ୍ଭେ ଦୁହେଁ ମର୍ତ୍ତ୍ୟ ଲୋକକୁ ଶୀଘ୍ର ଯାଇ ଯମୁନା କୂଳରେ ମଧୁବନ ନିକଟରେ ସୁନୀତି ଗର୍ଭ ସମ୍ଭୂତ ଉତ୍ତାନପାଦ ରାଜାଙ୍କ ପୁତ୍ର ଧ୍ରୁବ ତପସ୍ୟା କରୁଅଛି ତାହାର ତପସ୍ୟା ଭଗ୍ନ କରି ଆସ ।

ର - ଯେ ଆଜ୍ଞା ।

ଇ - ଯେ କୌଣସି ରୂପେ ହେଉ ଅବଶ୍ୟ ତାର ତପ ଭଗ୍ନ କରି ଆସିବ ।

ର - ଆଚ୍ଛା-ଯଥାସାଧ୍ୟ ଉପାୟ କରି ଦେବରାଜଙ୍କ ଇଚ୍ଛା ପୂର୍ଣ୍ଣ କରିବୁଁ ।

ଇ - ଆଚ୍ଛା ଶୀଘ୍ର ଯାଅ ।

ର - ଯେ ଆଜ୍ଞା ।

(ପ୍ରଣାମ କରି ପ୍ରସ୍ଥାନ ଓ ଯବନିକା ପତନ)

## ଦ୍ୱିତୀୟ ଦୃଶ୍ୟ

(ଯମୁନାତୀରେ ରମ୍ଭା ଓ ମେନକା ପ୍ରବେଶ)

ର - ସଖି ! ହେଟି ଦେଖିଲ କେଡ଼େ ସୁନ୍ଦର ବାଳକଟିଏ ! ଏତେ ଅଳ୍ପ ବୟସରେ ଏହାକୁ ଏଡ଼େ କଠୋର ତପସ୍ୟା କର ବୋଲି କେ ଶିଖାଇଲା ?

ମେନ - ସଖି ! ତୁମ୍ଭଙ୍କୁ ଏ ଚିନ୍ତା ସବୁ କାହିଁକି ? ଆମ୍ଭେମାନେ ଯେଉଁ କାର୍ଯ୍ୟରେ ଆସିଅଛେ ତାହା ପ୍ରଥମେ ଦେଖ ।

ର - ନା ସଖି, ସତେ ଏହାକୁ ଦେଖି ଏକ ପ୍ରକାର ଭାବ ମୋ ମନରେ ଉଦୟ ହୋଇଯାଏ ।

ମେନ - ଭଲ ହୋଇଛି ।

ର - ତେବେ କହ କି ଉପାୟ କରିବା ?

ମେନ - ଏତ ନିତାନ୍ତ ବାଳକ । ନିଜ ମାତାଠାରେ ଥିବା ସ୍ନେହ ଇହାର ଛାଡ଼ି ନ ଥିବ । ଏଣୁ ମୁ ସୁନୀତିଙ୍କ ବେଶ ଧରି ଆସି ଏହାର ମନ ଭୁଲାଇବି । ତୁମ୍ଭେ କିଛି କାଳ ବୃକ୍ଷ ଓହାଡ଼ରେ ଛିଡ଼ା ହୋଇଥାଅ । (ଉଭୟେ ପ୍ରସ୍ଥାନ- ମେନକା ସୁନୀତିଙ୍କ ବେଶ ଧରି ପୁନଃ ପ୍ରବେଶ) ।

ମେନ

ରାଗ କାଫି । ମିଶ୍ର ଚାପ ତାଳ ।

(ଏଲାରା ନାପେି ପ୍ରତି)

ଦୁଃଖିର ସଙ୍ଗାଳି । ଆସ ମୋ ପାଶକୁ ।
ନ ଦେଖି ମୋ ଧନ । ହୋଇଯାଉଥିଲି ବାଇ ।୦।

ଲୋଡ଼ି ମୁ ତୋତେ । ଦେଖିଲିତ ଏଥେ ।
ଦେବି ଥରେ ଚୁମ୍ବ । ବିଳମ୍ବ ନ କର ତୁହି ।୧।

ନ ମାନି ମୋର । ଉପଦେଶ ଗିର ।
ହେଲୁ ଏଡ଼େ ଦୁଃଖୀ । କାନନେ ଆସି ତୁହି ।୨।

ଶରୀର ତୋହର । କଙ୍କାଳ ମାତର ।
ଦେଖି ଏ ପାପିନୀର । ଜୀବ ଯାହା ଯାଉ ନାହିଁ ।୩।

ରଙ୍କର ଧନ । ପଙ୍କଜ ନୟନ
ଫେଡ଼ି ଦେଖ ବାରେ । ଅଛି ତୋ ପାଖରେ ମୁହିଁ ।୪।

ଧ୍ରୁ - ଓଁ ନମୋ ଭଗବତେ ବାସୁଦେବାୟ ।

ମେନ - ବାବୁ ! ଏତିକି ହେଉ । ମୋତେ ଆଉ ଦୁଃଖ ଦିଅନା, ଚକ୍ଷୁ ଫିଟାଇ ଥରେ ଦେଖେ । ଏ ସନ୍ତାପିତ ପ୍ରାଣ ଶୀତଳ ହେଉ ।

ଧ୍ରୁବ - ଓ ନମୋ ଭଗବତେ ବାସୁଦେବାୟ ।

ମେନ - ବାବୁ ! ଖୋଜି ଖୋଜି ଅନେକ ଦିନ ବନରେ ବୁଲି ବୁଲି ଏବେ ତୋତେ ଏଠାରେ ପାଇଲି । ଆଉ ନିଷ୍ଠୁର କରନା । ତୁ ଥରେ ଚକ୍ଷୁ ଫିଟାଇ ଚାହିଁ ପଦେ କଥା କହିଲେ ମୋର ସକଳ ଦୁଃଖ ଘୁଞ୍ଚିଯିବ ।

ଧ୍ରୁ - ଓଁ ନମୋ ଭଗବତେ ବାସୁଦେବାୟ !

ମେନ - ବାବୁ ! ତେବେ ମୁ ବାହାରିଯିବି ?

ଧ୍ରୁବ - ଓଁ ନମୋ ଭଗବତେ ବାସୁଦେବାୟ ।

ମେନ - (ହତାଶ ହୋଇ) ସଖି ରମ୍ଭେ ! ସବୁ କଷ୍ଟଯାକ ନିଷ୍ଫଳ ହେଲାପରି ଦିଶୁଛି । ମୁ କେତେ କହିଲେ ମଧ ମୋ କଥା ତା କର୍ଣ୍ଣରେ ପଶୁ ନାହିଁ । ଆଉ କି ଉପାୟ କରିବା ?

ର - ସଖି ! ଏ ସାମାନ୍ୟ ବାଳକ ପରି ବୋଧ ହେଉ ନାହିଁ । ଏହାର ମନର ଦୃଢ଼ତା ଦେଖିଲେ ଆଶ୍ଚର୍ଯ୍ୟ ବୋଧହୁଏ । କେଜାଣି ଉତ୍ତମ ସ୍ତ୍ରୀ ବେଶ ଧରି ପାଖରେ ନାଚ ଗାନ କଲେ ତାହାର ମନ ଭୁଲାଇ ପାରିବା ପରା ?

ମେନ - ତୁମ୍ଭେ କି ବାଇ ହେଲ ? ସେତ ଚକ୍ଷୁ ଫେଡ଼ି ଚାହୁଁ ନାହିଁ କା ଆଗରେ ନାଚିବା ? ଅଥବା ଚାହିଁବ ସେତ ଦେଖିଲେ ବାଳକ ତାଠାରେ କାମଗନ୍ଧ ଲେଶମାତ୍ର ନାହିଁ । ଏଣୁ ଉତ୍ତମ ସ୍ତ୍ରୀ ବେଶ ଧରି କ'ଣ କରିପାରିବା ?

ର - ତେବେ କିସ କରିବା ?

ମେନ - (ଆଲୋଚନା କରି) କେଜାଣି ଭୟଙ୍କର ବେଶ ଧରି ଡରାଇଲେ ତା'ର ମନ ଚଞ୍ଚଳ ହୋଇପାରେ । ତେବେ ହେଉ ।

(ପ୍ରସ୍ଥାନ : ରାକ୍ଷସୀ ବେଶରେ ପୁନଃ ପ୍ରବେଶ)

**ରାଗ ଶଙ୍କରାଭରଣ । ରୂପକ ତାଳ ।**

(ଆଜଶ୍ୟାମ ମୋହାଇ ପ୍ରତି)

ମେନକା - ଦେଖ ତୁ ଏବେ ବାଳକ ମୁଣ୍ଡ ଦଣ୍ଡକେ ମୁ ରଗଡ଼ିବି ।
ହାଡ଼ ନିକର ତୁଣ୍ଡରେ ଖଣ୍ଡ ଖଣ୍ଡ କରିଣ ଖାଇବି ।୦।

ର - ପାଦ ଦୁଇକି ହସ୍ତେ ବୁଲାଇ ଶୈଳ ଉପରେ ଛେଚିବି ।
ବେଗେ ଯାଇଣ ପିଣ୍ଡ ତୋହର ଅଗ୍ନି କୁଣ୍ଡରେ ପୋଡ଼ିବି ।୦।

ମେନ - ପାଟିକି ସତେ ଚିରି ଦେଇଣ ରକତ ଯାକ ଶୋଷିବି !
କୋମଳ ମାଂସ ଖାଇଣ ମୁହିଁ ଆଜ ଦିନକ ଯାପିବି ।୦।

(ବିକଟ ଭାବରେ ଡରାଇବା)

ଧ୍ରୁ - ଓଁ ନମୋ ଭଗବତେ ବାସୁଦେବାୟ ।

ର - (ଦେଖାଦେଖି ହୋଇ) ମେନକେ ଆଉ କି ଉପାୟ କରିବା ? ଆମ୍ଭେମାନେ ତାହାର ମନ ଟଳାଇବାକୁ ଯେତିକି ଚେଷ୍ଟା କରୁ ସେ ତେତିକି ଆଣ୍ଟ କରେ । ଚାଲ ଦେବରାଜଙ୍କ ଛାମୁରେ ସବୁ ଜଣାଇବା ।

ମେନ - ତେବେ ଚାଲ ।

(ପ୍ରସ୍ଥାନ ଓ ଯବନିକା ପତନ)

(ତୃତୀୟ ଦୃଶ୍ୟ)

(ଇନ୍ଦ୍ରସଭା, ରମ୍ଭା ଓ ମେନକା ପ୍ରବେଶ)

ଇ - ରମ୍ଭେ, ମେନକେ ! ତୁମ୍ଭେମାନେ ଯାଇ କ'ଣ କଲ ?

ର - ପ୍ରଭୋ ! ଆମ୍ଭେମାନେ ଅନେକ ଉପାୟ କଲୁଁ । କାହିଁରେ ସୁଦ୍ଧା ତାର ମନ ଟଳାଇ ପାରିଲୁ ନାହିଁ । ମହାରାଜ ଆମ୍ଭେମାନେ କଠୋର ତପସ୍ୟା କରୁଥିବା ଅନେକ ଋଷିମାନଙ୍କୁ ଦେଖିଅଛୁଁ । ମାତ୍ର ସେହି ବାଳକର ମନର ଦୃଢ଼ତା କାହାଠାରେ ଦେଖିନାହୁଁ । ଆମ୍ଭେମାନେ ଯେତେ ଚେଷ୍ଟା କଲେ ମଧ୍ୟ ସେ ଆଉ ଚକ୍ଷୁ ଫିଟାଇ ଚାହିଁଲା ନାହିଁ ।

ଇ - କି କି ଉପାୟ କଲ ?

ର - ମହାରାଜ ପ୍ରଥମେ ମେନକା ସୁନୀତିଙ୍କ ବେଶ ଧରି ତାହା ପାଖକୁ ଯାଇ ଅନେକ ବିଳାପ କଲେ । ସେଥିରେ ତାର ମନ ନ ଟଳିବାର ଦେଖି ଆମ୍ଭେ ଦୁହେଁ ରାକ୍ଷସୀ ରୂପ ଧରି ତାହାକୁ ନାନାଦି ଭୟ ଦେଖାଇଲୁଁ । ସେଥିରେ ମଧ୍ୟ ତାର ତପସ୍ୟା ଭଙ୍ଗ କରି ନ ପାରି ହତାଶ ହୋଇ ଫେରି ଆସିଲୁଁ ।

ଇ - ଆଚ୍ଛା ତୁମ୍ଭେମାନେ ଯାଅ ।

(ରମ୍ଭା ଓ ମେନକାଙ୍କ ପ୍ରସ୍ଥାନ)

(ସ୍ୱଗତ) ହାୟ ହାୟ କି ବିପତ୍ତି ଆସି ପଡ଼ିଲା । ଯେଉଁମାନଙ୍କ ଉପରେ ନିର୍ଭର କରିଥିଲୁଁ ସେମାନେ ହତାଶ ହୋଇ ଫେରି ଆସିଲେ । ଏ ବିପତ୍ତିରୁ କିଏ ଆମ୍ଭକୁ ଉଦ୍ଧାର କରିବ ? (କିଛି କାଳ ବିଚାରି) ହଁ- ପିତାମହଙ୍କୁ ସ୍ମରଣା କରିବି । ସେ କି ହେଲେ ଉପାୟ କହିପାରନ୍ତି ।

**ରାଗ ବିଲାହାରି । ଆଦିତାଳ ।**

(ପଞ୍ଚବଦନ ପ୍ରିୟ ତନୟ ଗଜାନନ ପ୍ରତି)

ଅଷ୍ଟନୟନ ପ୍ରଭୁ କମଳ ଆସନ ।<br>
ଦୁଷ୍ଟ ନିବାରଣ ଲୋକ ପାଳନ ହେ ।୦।

ବାରେ କୃପା କର । ଆହେ ବେଦବର ।<br>
ଅରକ୍ଷରକ୍ଷକ ମଙ୍ଗଳକର ହେ ।୧।

ଚତୁର ଆନନ । ତୁମ୍ଭ ବିନା ଆନ ।
ନାହିଁ ଆମ୍ଭଗତି ହଂସବାହନ ହେ ।୨।

ତପ କରେ ଘୋର । ସୁନୀତି କୁମର ।
ଛଡ଼ାଇ ନେବାକୁ ପଦ ଆମ୍ଭର ହେ ।୩।

କର ପରିତ୍ରାଣ । ଆରତ ଭଞ୍ଜନ ।
ସକଳ ଭରସା ଅଟ ଆପଣ ହେ ।୪।

(ବ୍ରହ୍ମାଙ୍କ ଆବିର୍ଭାବ)

ଇ - (ବ୍ରହ୍ମାଙ୍କୁ ଦେଖି ଆସନରୁ ଉଠି) ନମସ୍କାର ପ୍ରଭୋ ।

ବ୍ର - କଲ୍ୟାଣ ଦେବରାଜ, କଲ୍ୟାଣ । ଆପଣ କି ହେତୁ ଆମକୁ ସ୍ମରଣା କଲେ ।

ଇ - ପିତାମହ ଆଉ କିଛି ନୁହେଁ । ଉତ୍ତାନପାଦରାଜାଙ୍କ ପୁତ୍ର ଧ୍ରୁବ ଉଚ୍ଚ ପଦ ପ୍ରାପ୍ତ ହେବା ଲାଗି ଯମୁନା ତଟରେ କଠୋର ତପସ୍ୟା କରୁଅଛି । ଆମ୍ଭର ପଦକୁ ଉଦ୍ଦେଶ୍ୟ କରିଅଛି ବୋଲି ଭୀତ ହୋଇ ଆପଣଙ୍କୁ ସ୍ମରଣା କଲୁଁ ।

ବ୍ର - ନା ତାହାର ଉଦ୍ଦେଶ୍ୟ ଆପଣଙ୍କ ପଦ ନେବା ଲାଗି ନୁହେ ।

ଇ - ଆମ୍ଭର ଯଦି ନାହିଁ ତେବେ ଆଉ କାହାର ?

ବ୍ର - ସେ ଦେଖିଲେ ନିତାନ୍ତ ବାଳକ । ଆମ୍ଭର ବା ଆପଣଙ୍କର ପଦ ଔନ୍ନତ୍ୟ ସେ କିପରି ଜାଣିପାରିବ ? ସେ କେବଳ ଉଚ୍ଚତମ ସ୍ଥାନ ପ୍ରାପ୍ତ ହେବା ଲାଗି ତପସ୍ୟା କରୁଅଛି । ଭଗବାନ୍ ନାରାୟଣ ତାହା ସକାଶେ ଗୋଟିଏ ଉଚ୍ଚତମ ସ୍ଥାନ ପ୍ରସ୍ତୁତ କରାଉ ଅଛନ୍ତି ।

ଇ - ଆପଣ କିପରି ଜାଣିଲେ ?

ବ୍ର - କିଛି ଦିନ ତଳେ ନାରାୟଣଙ୍କୁ ଦର୍ଶନ କରିବା ଲାଗି ଆମ୍ଭେ ବୈକୁଣ୍ଠ ଭୁବନକୁ ଯାଇଥିଲୁଁ । ନାରାୟଣଙ୍କ ଦର୍ଶନ ନ ପାଇ ଲକ୍ଷ୍ମୀଙ୍କ ଛାମୁକୁ ଗଲୁଁ । ସେ କହିଲେ, କେତେ ଦିନ ହେଲା ନାରାୟଣ ବିଶ୍ୱକର୍ମାଙ୍କୁ ଘେନି ଗୋଟିଏ ମନୋହର ପୁର ନିର୍ମାଣ କରିବାରେ ପ୍ରବୃତ୍ତ ହୋଇ ନିରନ୍ତର ସେହି ସ୍ଥାନରେ ଥାନ୍ତି । କାହା ସକାଶେ ସେ ପୁର ନିର୍ମାଣ ହେଉଅଛି ବୋଲି ଆମ୍ଭେ ପଚାରିବାରୁ ଉତ୍ତାନପାଦ ରାଜାଙ୍କ ପୁତ୍ର ଧ୍ରୁବର ସକାଶେ ବୋଲି କହିଲେ । ଅତଏବ ଆପଣ କୌଣସି ଆଶଙ୍କା କରନ୍ତୁ ନାହିଁ ।

ଇ - ପିତାମହ ସେ ପୁରର ନାମ କଣ ?

ବ୍ର - ଆହୁରି ଜଣା ଯାଇ ନାହିଁ ।

ଇ - କି ନାମ ହେବ ବୋଲି ଆପଣ ବିଚାର କରନ୍ତି ?

ବ୍ର - ବୋଧହୁଏ ଧ୍ରୁବ ସେ ସ୍ଥାନ ପ୍ରାପ୍ତ ହେଲେ ତାହାର ନାମରେ ଖ୍ୟାତ ହେବ ।

ଇ - ପିତାମହ ! ଆମ୍ଭର ସ୍ଥାନ ଛଡ଼ାଇ ନେବ ବୋଲି ଆମ୍ଭେ କାତର ହୋଇଯାଉଥିଲୁଁ । ମାତ୍ର ଆପଣଙ୍କ ଅନୁଗ୍ରହରୁ ଆମ୍ଭର ସମସ୍ତ ଶଙ୍କା ଦୂର ହୋଇଅଛି ।

ବ୍ର - ତେବେ ଆମ୍ଭେ ଯାଉଁ ।

ଇ - ଯେ ଆଜ୍ଞା । (ନମସ୍କାର କରିବା)

(ବ୍ରହ୍ମାଙ୍କ ଅନ୍ତର୍ଦ୍ଧାନ ଓ ଯବନିକା ପତନ)

●

## ପଞ୍ଚମାଙ୍କ

(ପ୍ରଥମ ଦୃଶ୍ୟ)

(ଯମୁନାତୀର । ଧ୍ରୁବଙ୍କ ସ୍ତୁତି)

ଧ୍ରୁ - ରାଗ ଝଞ୍ଜୋଟି । ଆଦି ତାଳ ।

(ଦୟାସାଗର ପ୍ରତି)

ପ୍ରଭୁଶ୍ରୀହରି । କୃଷ୍ଣ କେଶବ ମୁରାରି
ଆସି ନାହିଁକି କରୁଣା । ତୁମ୍ଭ ଚିତ୍ତେ ଆହୁରି ? ।୦।
ଦୁଃଖୀ ଜନର । ଦୁଃଖ ପରା ଦୂର କର ।
ମୁହିଁତ ପରମ ଦୁଃଖୀ । କାହିଁକି କର ଡେରି ? ।୧।
ଗତି କେ ମୋର । ତୁମ୍ଭ ବିନା ଜଗତର ।
ବାଳକ ବୋଲି ବରଜି । ଦେଲ ନା ହେଳା କରି ?।୨।
ଏଡ଼େ ନିଷ୍ଠୁର । ହେଲେ କରୁଣା ସାଗର ।
ଆଉ କେ ଜଗତରେ । ଶୁଣିବ ମୋ ଗୁହାରି ? ।୩।

(ଗରୁଡ଼ାରୂଢ଼ ହୋଇ ବିଷ୍ଣୁ ପ୍ରତ୍ୟକ୍ଷ ହେବା)

(ଚାହିଁ) ହଁ ସେ ଋଷି ଯେପରି କହିଥିଲେ ସେପରି ଦିଶୁଅଛନ୍ତି । ଏ ମାୟା ନୁହେଁ । ନିଶ୍ଚୟ ଏ ଶ୍ରୀହରି ଅଟନ୍ତି ।

(କରଯୋଡ଼ି)

ମେଘଶ୍ୟାମଂ ପୀତକୌଷେୟବାସଂ ।
ଶ୍ରୀବତ୍ସାଙ୍କଂ କୌସ୍ତୁଭୋଦ୍ଭାସିତାଙ୍ଗଂ ।
ପୁଣ୍ୟୋପେତଂ ପୁଣ୍ଡରୀକାୟତାକ୍ଷଂ ।
ବନ୍ଦେ ବିଷ୍ଣୁଂ ସର୍ବଲୋକୈକନାଥଂ ॥

ବିଷ୍ଣୁ - ବତ୍ସ ! ତୋର କଠୋର ତପସ୍ୟାରେ ଆମ୍ଭେ ସନ୍ତୁଷ୍ଟ ହୋଇଅଛୁ । ଶୀଘ୍ର ବର ପ୍ରାର୍ଥନା କରେ ।

ଧ୍ରୁବ ରାଗ ଖମାଚ । ଆଦି ତାଳ ।

(କି ପଚାରୁ ଆଉ । ପ୍ରତି)

ମୁଁ ଲୋଡ଼ଇ ନାହିଁ କିଛି ଆଉ ହେ ।
ବିଶ୍ୱ ପାଳକ ମହାବାହୁ ହେ ।୦।

ତୁମ୍ଭ ପଦାରବିନ୍ଦରେ । ମଜ୍ଜ ଅନୁବରତରେ ।
ମୋର ମାନସ ରହି ଥାଉ ହେ ।୧।
ତୁମ୍ଭର କରୁଣାଥିବ । ମୋହର ବିଶ୍ୱାସ ଥିବ ।
ଏପରି କାଳ ମୋର ଯାଉ ହେ ! ।୨।
ଅସାର ଏ ସଂସାର । ସବୁ ଅଟେ ବିନଶ୍ୱର ।
ସେ ଜଞ୍ଜାଳ ମୋତେ ନ ଥାଉ ହେ ।୩।
ମୁହିଁତ ଚଞ୍ଚଳ ମତି । ବାଳକ ଜଗତପତି !
ମୋ ସବୁ ଦୋଷ କ୍ଷମା ହେଉ ହେ ।୪।

ପ୍ରଭୋ ! ଆପଣଙ୍କ ଚରଣାରବିନ୍ଦ ଦର୍ଶନ ବିନା ମୁ ଆଉ କି ବର ପ୍ରାର୍ଥନା କରିବି ?

ବି - ତୁ ଯେଉଁ କାମନା ମନେ ରଖି ତପସ୍ୟା କରୁଥିଲୁ ତାହା ପ୍ରାର୍ଥନା କରେ ।

ଧ୍ରୁ - ପ୍ରଭୋ ! ଆପଣଙ୍କ ଶ୍ରୀଚରଣ ଦର୍ଶନରେ ମୁଁ ତାହା ପାସୋରି ଦେଲିଣି ।

ବି - ଉଚ୍ଚସ୍ଥାନ ପ୍ରାପ୍ତ ହେବା ଲାଗି ପରା ?

ଧ୍ରୁ - ପ୍ରଭୋ ! ଆପଣଙ୍କ ଶ୍ରୀଚରଣ ଠାରୁ ଆଉ କି ଉଚ୍ଚସ୍ଥାନ ଅଛି ?

ବି - ବତ୍ସ ! ଶୁଣେ; ଏହି ମର୍ତ୍ତ୍ୟ ଲୋକରେ ତୁ ଷଷ୍ଟିବର୍ଷ କାଳ ସୁଖ ସ୍ୱଚ୍ଛନ୍ଦରେ ରାଜତ୍ୱ କରିବୁ । ପରେ ତୋ ସକାଶେ ନିର୍ମ୍ମିତ ହୋଇଥିବା "ଧ୍ରୁବଲୋକ"ରେ ନିଜ ମାତା ସହ ଅବସ୍ଥାନ କରିବୁ । ସେଠାରେ କେତେ କାଳ ସୁଖ ଭୋଗ କରି ପରିଶେଷରେ ଆମ୍ଭଠାରେ ଲୀନ ହେବୁ । ତୁ ବର୍ତ୍ତମାନ ତୋ ମାତା ପାଖକୁ ଯାଅ । (ଅନ୍ତର୍ଦ୍ଧାନ)

ଧ୍ରୁବ - **ରାଗ ପାତୁବରାଡ଼ି । ଆଦି ତାଳ ।**

(ସାରସଦଳ ଜିତ ଲୋଚନ ପ୍ରତି)

ସକଳ ଭୂତ ଆଦିକାରଣ । ମୋ ବନ୍ଦନ ଘେନ ।୦।
ଚରାଚର ପ୍ରଭୁ କର ପାଳନ । ଭକତ ବତ୍ସଳ ହେ ଭଗବାନ ।
ନିନ୍ଦେ ନୀରଦ ଶ୍ରୀଅପଘନ । ଗରୁଡ଼ ଆସନ କଞ୍ଜନୟନ ।୧।
ଲକ୍ଷ୍ମୀରମଣ ହେ ହୃଷୀକେଶ । ତ୍ରିତାପନାଶକ ଜଗତ ଈଶ ।
ଆରତଭଞ୍ଜନ କମଳାନନ । ପତିତପାବନ ହେ ଜନାର୍ଦ୍ଦନ ।୨।
ଅଚିନ୍ତ୍ୟ ଅବ୍ୟକ୍ତ ଅନନ୍ତ ହରି । ନିର୍ବିକଳ୍ପମୂର୍ତ୍ତି ହେ ମୁରବୈରି ।
ଦୁଷ୍ଟଦଳନ ସନ୍ଥପାଳନ । ଅରକ୍ଷରକ୍ଷକ ଗୁଣ ନିଧାନ ।୩।

(ଯବନିକା ପତନ)

# ପ୍ରାକ୍‌ସୂଚନା

୧୮୯୯ ମସିହାରେ ପ୍ରିୟ ପଦ୍ମନାଭ ନାରାୟଣ ଦେବଙ୍କ ସଙ୍ଗୀତ ଏବଂ ତାଙ୍କ ନାମରେ ଭଣତି କରିଥିବା ଅନ୍ୟ ଲେଖକମାନଙ୍କ କେତେକ ଚୌପଦୀ ସଂଗ୍ରହକରି ଶ୍ୟାମସୁନ୍ଦର ରାଜଗୁରୁ, **ଗୀତ ସ୍ତବକ** ନାମରେ ସଙ୍କଳନଟିଏ ପ୍ରକାଶ କରିଥିଲେ । ସମକାଳରେ ହିଁ ତାଙ୍କଦ୍ୱାରା ରାଜା ଗୌରଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ନାମାଙ୍କିତ କେତେଗୁଡ଼ିଏ ଚୌପଦୀ ସଂଗୃହୀତ ହୋଇଥିଲା । ସେଥିରୁ ଶହେଟି ଗୀତକୁ (ଶେଷ ଗୀତଟି ପାଇବା ସମ୍ଭବ ହୋଇପାରିନାହିଁ) ନିର୍ବାଚନ କରି ରାଜଗୁରୁ ମହାଶୟ ୧୯୦୦ ମସିହାରେ ଅନ୍ୟଏକ ଅନୁରୂପ ସଙ୍କଳନ ପ୍ରକାଶ କରିଥିଲେ, ନାମ ରଖିଥିଲେ **ଗୀତ ରତ୍ନାବଳୀ** । ସବୁଗୁଡ଼ିକ ସଂଗୃହୀତ ଗୀତ ଯେ ରାଜା ମହୋଦୟଙ୍କଦ୍ୱାରା ରଚିତ ନୁହେଁ ତାହା ପ୍ରଚ୍ଛଦର **ଶ୍ରୀ ଶ୍ରୀ ଶ୍ରୀ ଗୌରଚନ୍ଦ୍ର ଗଜପତି ମହାରାଜାଙ୍କ ନାମରେ ଅଙ୍କିତ । ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ବି.ଏ.ଙ୍କ ଦ୍ୱାରା ସଂଗୃହୀତ ଓ ପ୍ରକାଶିତ**ରୁ ସ୍ପଷ୍ଟୀଭୂତ । ପ୍ରଥମ ସଙ୍କଳନଟିର ପ୍ରାପ୍ତି ସ୍ୱୀକାର କରି ସାପ୍ତାହିକ ପତ୍ରିକାଗୁଡ଼ିକର ସମ୍ପାଦକମାନେ ଏପ୍ରକାର ପ୍ରକାଶନ ଆଧୁନିକ ରୁଚି ଅନୁକୂଳ ନୁହେଁ ବୋଲି ଅଭିମତ ଦେଇଥିଲେ ହେଁ ଶ୍ୟାମସୁନ୍ଦର ଦ୍ୱିତୀୟ ସଙ୍କଳନଟିରେ ମଧ୍ୟ ଅନୁରୂପ ପଦ୍ଧତି ଅନୁସରଣ କରିଛନ୍ତି । ହୁଏତ ନିଜର ଅକ୍ଷରମାଳିନୀ କୀର୍ତ୍ତିକୁ ରାଜଭକ୍ତିର ନିଦର୍ଶନ ସ୍ୱରୂପ ରାଜାଙ୍କ ହସ୍ତରେ ସମର୍ପଣ କରିଦେଇଥିବା ସାରସ୍ୱତଦାତାମାନଙ୍କର ନାମ ପ୍ରକାଶ କରି ସେମାନଙ୍କ ଅବମାନନା କରିବାପାଇଁ ପ୍ରକାଶକ ଚାହିଁନାହାଁନ୍ତି କିମ୍ବା ରାଜକୀୟ ସଂଗ୍ରହ ମଧ୍ୟରେ ଥିବା ଗୀତିକାଗୁଡ଼ିକ ସଂଗ୍ରହ କଲାବେଳେ ସେସବୁରେ ରଚୟିତାଙ୍କ ନାମ ଲେଖାଯାଇନଥିବା ଯୋଗୁଁ ପ୍ରତିଟି ରଚନାର ଲେଖକଙ୍କୁ ଚିହ୍ନଟ କରିବାପାଇଁ ସମର୍ଥ ହୋଇନାହାନ୍ତି ।

ସ୍ୱୟଂ ସଂକଳକ ଯେତେବେଳେ ଜ୍ଞାତ ବା ଅଜ୍ଞାତସାରରେ ରଚୟିତାମାନଙ୍କ ନାମ ଗୋପନରଖିବାପାଇଁ ଚେଷ୍ଟା କରିଛନ୍ତି, ଶହେ ବର୍ଷ ପରେ ସେମାନଙ୍କୁ ଖୋଜି ବାହାର କରିବା ଏକପ୍ରକାର ଅସମ୍ଭବ । ତଥାପି ପଞ୍ଚସ୍ତରୀ ସଂଖ୍ୟକ ଗୀତ "ବିନା ଦୋଷରେ ନବୀନା" ଏବଂ ପଞ୍ଚଷଠୀ ସଂଖ୍ୟକ ଗୀତ 'ଲମ୍ପଟ ରାଜା' ହରିବନ୍ଧୁ ପଦ୍ୟାବଳୀରେ

ସ୍ଥାନ ପାଇଥିବା ଯୋଗୁଁ ଏଦୁଇଟିକୁ ହରିବନ୍ଧୁ ବେବର୍ତ୍ତା ପଟ୍ଟନାୟକଙ୍କ ରଚନା ବୋଲି ଜାଣିହୁଏ । 'ଗୀତ ସ୍ତବକ'ର ଶେଷ ଗୀତଟି ଯେପରି ଜାତୀୟ ଭାବାଶ୍ରିତ ସେହିପରି ଏହି ସଙ୍କଳନର ଅନେଶ୍ୱତ ସଂଖ୍ୟକ ଗୀତଟି ମଧ୍ୟ ଅନ୍ୟ ଗୀତଗୁଡ଼ିକଠାରୁ ସ୍ୱତନ୍ତ୍ର । ଏହାକୁ ଏକ ବ୍ରାହ୍ମ ସଙ୍ଗୀତଭାବେ ଗ୍ରହଣ କରାଯାଇପାରେ । ବ୍ରାହ୍ମ ଧର୍ମର ପ୍ରଚାରକମାନେ ଊନବିଂଶ ଶତାବ୍ଦୀର ଶେଷବେଳକୁ ପାରଳାଖେମୁଣ୍ଡିରେ ପଦାର୍ପଣ କରିପାରିଥିଲେ । ସେମାନଙ୍କ ଧର୍ମୀୟ ଭାବନାରେ ଉଦ୍‌ବୁଦ୍ଧ ହୋଇ ନିଜେ ରାଜା କିମ୍ବା ଏ ଧର୍ମର ତାତ୍ତ୍ୱିକ ଦିଗ ସମ୍ପର୍କରେ ଧାରଣା ରଖିଥିବା ରାଜଗୁରୁ ଏହାକୁ ରଚନା କରିଥାଇପାରନ୍ତି । ଏଥିରେ 'ଏକମାତ୍ର' 'ସତ୍ୟକାମ ନିତ୍ୟରୂପ ପ୍ରାଣସଖା'ଙ୍କୁ ସ୍ମରଣ କରିବାପାଇଁ ଭକ୍ତମାନଙ୍କୁ ଆମନ୍ତ୍ରଣ କରାଯାଇଛି ।

ସଙ୍କଳନଟିର ଅଧିକାଂଶ ଗୀତ ଶୃଙ୍ଗାର ଭାବାନ୍ୱିତ । ତଥାପି ମଧ୍ୟଯୁଗୀୟ ପରମ୍ପରାରୁ ବିଚ୍ୟୁତ ହୋଇ ରଚୟିତାମାନେ ଭାବ ଓ ଭାଷାକୁ ଯଥାସାଧ୍ୟ ସଂଯତ ଓ ଆଧୁନିକରୁଚି ଅନୁକୂଳ କରିବାପାଇଁ ଚେଷ୍ଟା କରିଛନ୍ତି । ଅଭିସାରିକା, ଖଣ୍ଡିତା, ବିପ୍ରଲବ୍ଧା, କଳହାନ୍ତରିତା ଇତ୍ୟାଦି ଶୃଙ୍ଗାରୀ ନାୟିକାମାନଙ୍କ ବର୍ଣ୍ଣନାରେ ହିଲ୍ଲୋଳ ପରିବର୍ତ୍ତେ କଲ୍ଲୋଳର ମଧୁରତା ଆସ୍ୱାଦନ କରିହୁଏ । ଗୀତ ସଂଖ୍ୟା ସତତିରିଶି, ଏକଚାଳଶି, ଚଉରାଳଶି, ଛୟାଳଶି, ସତଚାଳିଶି, ଅଠଚାଳଶି, ଅଣଚାଶ ପରି କେତୋଟି ଗୀତ ସମ୍ପୂର୍ଣ୍ଣ ଭିନ୍ନ ସ୍ୱାଦର । ଆଶା, କୁକ୍କୁଟ, କମଳିନୀ, ହଂସବାହନ, ପିକ, କୋକିଳକୁ ସମ୍ବୋଧନ କରି ଯେଉଁ ଗୀତଗୁଡ଼ିକ ରଚନା କରାଯାଇଛି, ସେଗୁଡ଼ିକ ଅନୁରୂପ ପୁରାତନ ଗୀତିଠାରୁ ଭାବ ସମ୍ପଦରେ ସମ୍ପୂର୍ଣ୍ଣ ଅଭିନବ । ଏସବୁରେ ଇଂରେଜୀ ସାହିତ୍ୟର ଓଡ୍ ବା ସମ୍ବୋଧ ଗୀତିକାର ପ୍ରତିଚ୍ଛବି ଦେଖିବାକୁ ମିଳେ । ମନେହୁଏ ଇଂରେଜୀ ସାହିତ୍ୟ ପ୍ରବୀଣ ଶ୍ୟାମସୁନ୍ଦର ରାଜଗୁରୁ ପୁରାତନ ଆଙ୍ଗିକରେ ଆଧୁନିକ ଚିନ୍ତା ଓ ଚେତନାକୁ ରୂପାୟନ କରି ଆଧୁନିକ କବିମାନଙ୍କୁ ଅଭିନବ ଦିଗ୍‌ଦର୍ଶନ ଦେବାପାଇଁ ପ୍ରୟାସ କରିଛନ୍ତି । ଆଜିର ପତ୍ରପତ୍ରିକାରେ ଗୀତିକବିତା ନାମରେ ଯେଉଁସବୁ କବିତାଗୁଚ୍ଛ ସ୍ୱତନ୍ତ୍ରଭାବେ ପ୍ରକାଶ ପାଉଛି ଏବଂ ପୁରସ୍କାର ବିତରଣବେଳେ ଏହାକୁ ଏକ ସ୍ୱତନ୍ତ୍ର ସାହିତ୍ୟିକ ବିଭାବରୂପେ ବିବେଚନା କରାଯାଉଛି, ସେସବୁ ଦେଖିଲା ବେଳେ ଶ୍ୟାମସୁନ୍ଦରଙ୍କ ଗୀତିକବିତାଗୁଡ଼ିକ ମନେପଡ଼େ । କହିବାକୁ ଗଲେ **ଗୀତ ରତ୍ନାବଳୀ**ର ଗୀତଗୁଡ଼ିକ ପୁରାତନର ପୃଷ୍ଠ-ପୀଠିକାରେ ଆଧୁନିକତାର ସ୍ୱାଗତ ଗୀତି ।

●

# ଗୀତ ରତ୍ନାବଳି ।

ଶ୍ରୀ:-ଶ୍ରୀ ଶ୍ରୀ ଗୌରଚନ୍ଦ୍ରଗଜପତି ମହାରାଜାଙ୍କ

ନାମରେ ଅର୍ପିତ ।

ଶ୍ରୀ ଶ୍ରୀମଧୁସୂଦନ ରାଜଗୁରୁ ବି. ଏ ମ

ଦ୍ୱାରା

ସଂଗୃହୀତ

ଓ

ପ୍ରକାଶିତ ।

# ସୂଚିପତ୍ର

# ଗୀତ ରତ୍ନାବଳି

## ରାଗ ହିନ୍ଦୁସ୍ଥାନିଖମାଚ । ଆଦିତାଳ ।

ଅନ୍ଧ ନୟନ ଅଞ୍ଜନ ପ୍ରଭୁ ବିଶ୍ୱପାଳନ ।
ଦୀନ ଦୟାମୟ ସର୍ବ ଆଶ୍ରୟ ଭୁବନ ମୋହନ ।୦।

ଶୁଭ ବରଦ ଅଭୟ ପଦ କରି ଆଛନ୍ତି । ତାପ ଶୋକ ଭୟ ପାପ କରି କ୍ଷୟ ଅଧମ ତାରଣ । ରଖନ୍ତୁ ମତେ । ହେ ଲୋକ ପତେ ଶରଣ ରକ୍ଷଣ । ଅସାର-ସଂସାର-ଦୁର୍ଗତିରେ ପଡ଼ିଛି ମୁହିଁ । କରନ୍ତୁ ତ୍ରାହି । ହେ ଭାବଗ୍ରାହି । ପତିତପାବନ ।୧।

ଭବସରିତେ ଭାସି ନିରତେ ଲଭେ କଷଣ । ଡୋବି ପାପ ନୀର । ମୋ ଜୀବ ଅସ୍ଥିର ବିପଦ ବାରଣ । ଚରଣତରୀ ଦେଇ ହେ ହରି । କଳୁଷ ଭଞ୍ଜନ । ଉଦ୍ଧର, ସତ୍ୱର, ସୁଚିତ୍ତରେ । କର ବିଧାନ । ହେ ନିରଞ୍ଜନ । ନିତ୍ୟ ନୂତନ ନିତ୍ୟ ପୁରାତନ ।୨।

ହେ ଦୟାଳୟ ସଂକଟମୟ ମର୍ତ୍ତ୍ୟେ ଜୀବନ । ପାଉଛି ବିପଦ ଅଲେଖ ସୁଖଦ ତ୍ରିତାପ ନାଶନ । କରୁଣାମୟ ଭୁବନାଶ୍ରୟ । ନିଖିଳ କାରଣ ଅରୁଣ-ଚରଣ ଅମୃତକୁ । ବଳିଛି ଆଶା । ଦେଇ ପିପାସା । ନାଶ ଦୁର୍ଦ୍ଦଶା । ଦୁଃଖ ବିନାଶନ ।୩।

ଶ୍ରୀ ଗୌରଚନ୍ଦ୍ର ନୃପକରୀନ୍ଦ୍ର କରନ୍ତି ଜଣାଣ । ସିଞ୍ଚି କୃପାଜଳ ହୃଦୟ ନିର୍ମଳ । କର ଜନାର୍ଦନ । ଅନାଥନାଥ । ହେ ଜଗନ୍ନାଥ । ପ୍ରଭୁ ଭଗବାନ । ଶରଣ୍ୟ, ବରେଣ୍ୟ । ମର ପୁରେ । ପାଇ କଦନ । ହେଲି ଅଜ୍ଞାନ । କରନ୍ତୁ ତ୍ରାଣ । ହେ କ୍ଷମା ସଦନ ।୪।

(୨)

## ରାଗ ତୋଡ଼ିପରଜ । ଆଦିତାଳ ।

ରେ ମାନସ । ହେଳୁ ତୁ ନିଶ୍ଚୟେ ବାଇ । ଗତି ମୁକ୍ତି ଦାତା । ଜଗତ କରତା । ଭଜୁ ନାହୁଁ ଯାହା ତୁହି । ପଦ ।

ପିତା ମାତା ସୁତ । ଆବର କଳତ୍ର । ସ୍ନେହ ରସେ ବୁଡ଼ିଯାଇ । ନିରନ୍ତର ଧନ । କରୁ ଉପାର୍ଜ୍ଜନ । ସେ ମାନଙ୍କ ଲାଗି ତୁହି ।୧।

ସଂସାର ଭିତରେଭାବ ସୁଚିତ୍ତରେ । ଧନହୀନ ନରଠାଇ । ଘରର ଘରଣୀ । ବିଷ ପରି ମଣି । ହତାଦର କରୁ ଥାଇ ।୨।

ଜୀବନେ ଏ ଦଶା । ମଲେ ଅପ୍ରଶଂସା । କରନ୍ତି ତନୟ ଭାଇ । ତଥାପି ସେ ପ୍ରେମ । ବୋଲୁ ଅନୁପମ । କିଛିତ ଜାଣିଲୁ ନାହିଁ ।୩।

ମାୟାମୟ ଧରା । ମେଲିଛି ପସରା । ଇନ୍ଦ୍ରିୟଙ୍କ ସୁଖ ପାଇଁ । ଭୁଞ୍ଜୁଛୁ ସେ ଫଳ । ହେବ ତୋର କାଳ । ଗୌରଚନ୍ଦ୍ର ଦେବ କହି ।୪।

(୩)

**ରାଗ ସାବେରୀ । ଆଦିତାଳ ।**

ଦୟା ସାଗରହେ । ଦେଖା ଦିଅ ମୋତେ ବାରେ । ଚିତ୍ତ ଅବିରତ । ହେଉଛି ଦୁଃଖିତ । ନ ଦେଖି ତୁମ୍ଭଙ୍କୁ ତୋଳେ । ପଦ ।

କେ ବୋଲେ ସ-ଗୁଣ । କେ ବୋଲେ ନିର୍ଗୁଣ । କେହି ତୋତେ ଜାଣି ନାହିଁ । ଆହେ ସନାତନ । ତତ୍ତ୍ୱାବଧାରଣ । କିପରି କହିବି ମୁହିଁ ।୧।

ତିନି ଦୁଇ ଏକ । ବୋଲି ଜ୍ଞାନିଲୋକ । ଭ୍ରମୁଛନ୍ତି ଆଜ ଯାଇ । କିପରି ଭାବରେ । ଅଛ କେଉଁ ଠାରେ । ଆହେ ପ୍ରଭୁ ବିଶ୍ୱସାଇଁ ।୨।

ତୁମ୍ଭରି ମହିମା । ଦେବାକୁ ଉପମା । ପ୍ରକାଣ୍ଡ ବିଶ୍ୱ ଦିଶଇ । ତଥାପି ମୋ ମନ । ସନ୍ତୋଷ ନୋହିଣ । ତୁମ୍ଭ ପଦ ଲୋଡୁ ଥାଇ ।୩।

କାହିଁକି ନିରାଶ । କର ଜଗଦୀଶ । କୃପାମୟ ତୁମ୍ଭେ ହୋଇ । ବୋଲେ ଗୌରଚନ୍ଦ୍ର ନାରାୟଣ ଦେବ । ବୁଦ୍ଧି ମୋତେ ଦିଶୁ ନାହିଁ ।୪।

(୪)

**ରାଗ ଝଞ୍ଜୋଟି । ଏକତାଳ ।**

ବ୍ରଜରାଜ ତନୟ ଗୁଣ ଗାରେ ।।ପଦ।।

କୋଟି କନ୍ଦର୍ପ ଦଳା । ସାଧ୍ୱୀ ଧୃତି କତୁରା ।
ଅଟଇ ମୁଖ କଳା । ଆଭୀର, ନାରୀଙ୍କ, ପ୍ରମୋଦ, ପସରା ।୧।
ବିଡୋଜା ବଡ଼ପଣ । କରିଣ ବିସର୍ଜନ । ସେ ସେବିଲା ସେ ଚରଣ ।
ଗୋପରେ, ଗୋବିନ୍ଦ, ନାମକୁ, ସ୍ମରିରେ ।୨।
ବତ୍ସା ବାଳକ ଗଣ । ବ୍ରହ୍ମା କଲା ହରଣ । ଅନ୍ତେ ଲଭିଣ ଜ୍ଞାନ ।
ଶ୍ରୀହରି, ପାଦରେ, ଭଜିଲା, ମୋଦରେ ।୩।
ପାପମୟ ସଂସାର । ବିଷୟ କରି ଦୂର ।
ଚିତ୍ତକୁ କର ସ୍ଥିର । ଶ୍ରୀବୃନ୍ଦା, ବନରେ, କରିଣ, ବାସରେ ।୪।

ଭବ ସାଗର ଭେଳା । ଅଟନ୍ତି ନନ୍ଦ ବଳା । ତା ନାମାବଳି ମାଳା । ସାଦରେ, ଧରିଣ, ହୃଦୟ, ଭିତରେ ।୫।

ଶ୍ରୀ ଗୌରଚନ୍ଦ୍ର ଦେବ । ବୋଲନ୍ତି ଛାଡ଼ି ଦମ୍ଭ । ଭଜି ରାଧା ବଲ୍ଲଭ । ରାଜୀବ, ପଦରେ, ଆନନ୍ଦ, ମନରେ ।୬।

(୫)

## ରାଗ ତୋଡ଼ିପରଜ । ଆଦିତାଳ ।

ରେ ସଂଘାତ, ମାଗୁନାହିଁ କିଛି ଆଉ । ତନୁ ଥିବା ଯାକ ଏପରି କରୁଣା ମୋ ଠାରେ ତୋହର ଥାଉ । ପଦ ।

ତୋ ପ୍ରେମ ବଚନ । ଶୁଣି ଅନୁକ୍ଷଣ । ମୋ ଚିତ୍ତ ହରଷ ହେଉ । ଯେତେ ବେଳେ ଯାହା ଆଜ୍ଞା ହେଉ ଥିବ । ପାଳିବାକୁ ମନ ଧାଉଁ ।୧।

ଖଣ୍ଡ ଦରପଣ । ଗଣ୍ଡସ୍ଥଳ ତୋର । ବୋଲି ଚୁମ୍ବ ଯେବେ ଦେଉ । ମଣୁଥିବି ମୁହିଁ । ମୋ ପରି ଭାଗ୍ୟରେ । ନ ଥିବଟି ଜଣେ ଆଉ ।୨।

କାମ ରଙ୍ଗ ସ୍ଥଳେ । ତୋତେ ମୋତେ ଡୋଳେ । ଚାହିଁଣ ଲଜ୍ଜିତ ହେଉ । ବାମ ନୟନାର । ପ୍ରେମ ଡୋରେ ବନ୍ଧା । ହେଲି ବୋଲି ଶୁଣା ଯାଉ ।୩।

ଗୌରଚନ୍ଦ୍ର ଗଜ- । ପତି ନାରାୟଣ । ସେବା ମୋ ସଂକଳ୍ପ ହେଉ । କ୍ଷୀର ନୀର ସମ । ସରି ଏ ମୋ ତନୁ । ସେ ତନୁରେ ଜଡ଼ି ଥାଉ ।୪।

(୬)

## ରାଗ ଝଞ୍ଜୋଟି । ଆଦିତାଳ ।

ମୁଁ କହି ନ ପାରଇ ସହି ତୋତେରେ । ନାହିଁ ବୋଲି ଆହୁରି କେତେରେ ।। ପଦ ।।
ତା ପ୍ରୀତିର ସାରାସାର । ଭଲ ବୁଝିଛି ଏ ଥର । ନ ପଚାରେ ଏଣିକି ମତେରେ ।୧।
ତାହାକୁ କରି ଭରସା । ଲଭିଛି ତ ଏହି ଦଶା । କେବେ ବଳିବ କି ମନ ସତେରେ ।୨।
ମିଛେ କି ଚଳାଇବାକୁ । କହିଲେ ଥର ଥରକୁ । ପକାଉଛୁ ତା ପ୍ରସଙ୍ଗ ଏତେରେ ।୩।
ଶ୍ରୀ ଗୌରଚନ୍ଦ୍ର ଦେବର । ପ୍ରୀତିକି କରି ଆଦର ।
ପରାଭବ ପାଇ ଅଛି ଯେତେରେ ।୪।

(୭)

## ରାଗ କାମୋଦି । ଆଦିତାଳ ।

ରେ ସଂଘାତ । ମୁଖେ ହାସ ବିଳସାଉ । ଥରକୁ ଥର ମୁ । ପଚାରୁ ଥିଲେ ହେ ଉତ୍ତର ପଦେ ନ ଦେଉ ।। ପଦ ।।

ପରାଣୁ ଅଧିକ । ଅନୁରାଗ ଯାକ । ଗଲା ତୋହର କେଣିକି । ଗୋଡ଼ାଇଲେ ପଛେ । ଭୁଲାଇ ତୁ ମିଛେ । ଯାଉ ଏଣିକି ତେଣିକି ।୧।

ନ ଥିଲା ମୋ ମନେ । କି ଅବା ଧିଆନେ । ଦୂର ତୁ କରିବୁ ବୋଲି । ଗୁପତ କଥାକୁ ଥରେ ଶୁଣିବାକୁ ମୁହିଁ ଭାଜନ ନ ହେଲି ।୨।

ଅନ୍ଧକାରମୟ । ଅରଣ୍ୟ ନିଚୟ । ମଧ୍ୟେ ଫୁଟିଥିଲେ ମଲ୍ଲୀ । ଅବଶ୍ୟ ପ୍ରକାଶ । ହେବ ତାର ବାସ । ନ ଜାଣୁ କିରେ ଛଇଲି ।୩।

ଯା ଇଚ୍ଛା ତା କର । କହେ ମୁ ନିକର । ଆଚରଣୁ ଜାଣିଗଲି । ଗୌରଚନ୍ଦ୍ର ଦେବ । ଗଜପତି ଭାବ । ସରସେ ଯାଇ ତୁ ଭୁଲି ।୪।

(୮)

### ରାଗ ପୁରବୀ । ତାଳ ଝୁଲା ।

ଦେଖିବାରୁ ଦହେ ପିଣ୍ଡରେ । ଯାଉ ଅଛି କେ ଏ ବ୍ରଜ ଦାଣ୍ଡରେ । ପଦ ।

ନୟନ ତାହାର । ସଜ ନିଳୋତ୍ପଳ । ଖରତରେ ଜିଣେ କାମ କାଣ୍ଡରେ । ବାଳ ଅହିପରି । ଭ୍ରୁବଲ୍ଲୀ ମାଧୁରୀ । ସାଧ୍ୱୀ ଧୃତି ଦଳି ଦିଏ ଚାଣ୍ଡରେ ।୧।

ଇନ୍ଦ୍ରନୀଳମଣି । ଦରପଣ ଜିଣି । ଝଳି ପୁରି ଅଛି ତାର ଗଣ୍ଡରେ । ଗୋଟିଏ କାମରେ । ଗୋଟିଏ ଘଡ଼ିରେ । ତା ସମ ନୋହିବ ବିଶ୍ୱ ଭାଣ୍ଡରେ ।୨।

ତା ବାହୁ ଯୁଗଳ । କେଡ଼େ ମନୋହର । ନିନ୍ଦା କରୁଅଛି କରୀ ଶୁଣ୍ଡରେ । ଦ୍ୟୁତି ନବାଞ୍ଜନ । ଦଳେ ଅପଘନ । ନବ ଯୁବତିଙ୍କୁ ଦିଏ ଦଣ୍ଡରେ ।୩।

ଗୋପବାଳ ମେଳେ । ନାଚି କୁତୂହଳେ । ଧରି ଅଛି ହାତେ ବଂଶି ଖଣ୍ଡରେ । ତାର ସ୍ୱନ ଶୁଣି । କମ୍ପିଲା ଧରଣୀ । ନିସ୍ତରିଲା ରସ ବୃକ୍ଷ କାଣ୍ଡରେ ।୪।

ଏଟି କୃଷ୍ଣଚନ୍ଦ୍ର । ବୋଲେ ଗୌରଚନ୍ଦ୍ର । ଗଙ୍ଗ ବଂଶ ପଦ୍ମ ମାରତଣ୍ଡରେ । ଦେଖିଦେଲେ ଡୋଳେ । ସାଧ୍ୱୀମାନେ ବଳେ । ଘାରି ନୋହିବେ କି ସ୍ମର କାଣ୍ଡରେ ।୫।

(୯)

### ରାଗ ପୁରବୀ । ଅଟତାଳ ।

ସହଚରି । ବସିଛୁ ତୁ ମିଛେ ଦୋଷ ଧରି ।୦।

ବିକଳେ ବଚନ । କହି ଜୀବଧନ । ପଠାଇଛି ମତେ ତୋର ସନ୍ନିଧାନ । ଚାହିଁ ତୋ ଅୟନ । କରି ଜାଗରଣ । ଜଗିଛି ସେ ଯୋଗୀ ସରି ।୧।

ପ୍ରୀତି ବିରୋଧିନୀ । ଗଣ ବାଣୀ ଶୁଣି । ସତ ମଣି ତୁହି ସରୋଜଲପନି । ବିନାଶୁ କି ଘେନି ତୋ କର ସାରଣୀ । ଥରେ ହେଲେ ନ ବିଚାରି ।୨।

ପ୍ରଦୀପକୁ ସାକ୍ଷୀ । କରି ଶଶିମୁଖି । କହିଛି ମୋ ଆଗେ ସତେ ପକ୍ଷ୍ମଳାକ୍ଷୀ । ତୋର ବିନା ସଖି । ଆନକୁ ନ ଦେଖି । ଲୋଡ଼ିଛି ପ୍ରୀତି ତୋହରି ।୩।

କାମର ଅଶେଷ । ବିଶିଖର ବିଷ । ଜରାଇ ନାଶୁ ତୁ ତା ମୃଦୁ ମାନସ । ହାସ ଔଷଧୀଶ । ବାରେ ତୁ ପ୍ରକାଶ । ନାଶ ତା ଦୁଃଖ କିଶୋରି ।୪।

କର ଧରି ଯେତେ । କହିଲେ ନିରତେ । ବରବରନି ନ ଶୁଣୁ ତୁ କିଂଚିତେ । ଥିଲେ ହେଲେ କେତେ । ମାନିନୀ ଜଗତେ । କେହି ନ ଥିବେ ତୋ ପରି ।୫।

ଗୌରଚନ୍ଦ୍ର କ୍ଷିତି-ପତି କି ସମ୍ପତ୍ତି । ନ କଲେ ପାରିବୁ ନାହିଁ ତୁ ବରତି । ରତି ପତି ଭୀତି । ନ ଜାଣୁ ସୁଦନ୍ତି । ଚାଲ ଶୁଣି ମୋ ଗୁହାରି ।୬।

(୧୦)

### ରାଗ ରେଗୁପ୍ତ । ଏକତାଳ ।

ନାହିଁ କର ନାହି ଯୋଷାରେ । ତୋଠାରେ ବଳିଛି ମୋର ଆଶାରେ । କରି କୁମ୍ଭ ସ୍ତନା । କୋକିଳ ବଚନା । ତ୍ରାହି କର ବାରେ । ମୃଗ ଦୃଶାରେ । ପଦ ।

କାମ ଅନୁକ୍ଷଣ ବିନ୍ଧୁଅଛି ବାଣ । ଲଭିଲିନିବଡ଼ କ୍ଳେଶ ଦଶାରେ । ଆରେ ନବ ବାଳା । ନୟନ ପିତୁଳା । ହସି ରସି ପଦେ କହ ଭାଷାରେ ।୧।

ତୁ ମୋର ସମ୍ପତ୍ତି । ତୋ ବିନା ସୁମତି । ନିଶ୍ଚେ ହେଲି ଆଜ ଲୋକହସାରେ । ରତିରସେ ମାତି । ତୋଷି ମୋର ମତି । ନାରୀ କୁଳେ ପାଅ ପରଶଂସାରେ ।୨।

ଗୌରଚନ୍ଦ୍ର ଗଜପତି ମହାରାଜ । ବୋଲେ ରାମା ହୁଅ ବେଶ ଭୂଷାରେ । ସାରଙ୍ଗ ଲପନା ହେଲି ତୋର କିଣା । ବୋଲି ସମଜନ୍ତୁ ସର୍ବେ ରସାରେ ।୩।

(୧୧)

### ରାଗ କାଫି । ମିଶ୍ରତାଳ ।

ନନ୍ଦ ସୁତ ତୋତେ । ସୁନ୍ଦର ଦିଶେନା । ବାଟ ଘାଟରେ ତୋର ଏତେ ଦୂର ପ୍ରତାରଣା ।୦।

ସଲିଳ ପାଇଁ । ବେଗେ ଯିବି ମୁହି । କର ଧରି କହୁଛି ଉଠ ତୁ ମଠ କରନା ।୧।

ବାଳକ ପରି । ହଟ ପଣ ଧରି । ଏତେ ଭଙ୍ଗି ଦେଖାଇ ସତେ ମୁଖକୁ ଚାହାଁନା ।୨।

କହିଲେ ମୁହିଁ । ନ ଶୁଣୁ କି ପାଇଁ । ଯାଅ ଦୂରେ ତୁ ରହ ଛାଡ଼ ଅଞ୍ଚଳ ଧରନା ।୩।

ଅଳପ ହସି । ଚାଟୁ କଥା ଭାଷି । ହରବର କରୁଛୁ ଭାଙ୍ଗି ଦେବି ତୋ ଗାରିମା ।୪।
ଶ୍ରୀଗୌରଚନ୍ଦ୍ର । ନୃପକୁଳ ଇନ୍ଦ୍ର । ଭାଷେ ମନେ କର କି ଚନ୍ଦ୍ରାବଳୀର ପରି ନା ।୫।

(୧୨)

**ରାଗ ବିଳାହରି । ଏକତାଳ ।**

କାହିଁକି ଚାହୁଁ ମହୀକି ଇନ୍ଦୁଲପନା ।୦।
କରିଥିଲେ ଦୋଷ । ବାନ୍ଧି ବାହୁ ପାଶ । ଦଣ୍ଡ ମୁନିମୋହନା ।୧।
ନାଶି ଅଧୀନକୁ । ପାଏ କେ ଯଶକୁ । ଥରେ କର ଭାବନା ।୨।
ତୋର ବିନା ମତେ । ନାହିଁ କେ ଜଗତେ । ସଜକଞ୍ଜ ଲୋଚନା ।୩।
ଗୌରଚନ୍ଦ୍ର ଦେବ । କହେ ଏହି ଭାବ । ଆଉ କେବେ ଦେଖାନା ।୪।

(୧୩)

**ରାଗ ଆନନ୍ଦ ଭୈରବ । ରୂପକତାଳ ।**

ଆଜ ଦ୍ୱିଜରାଜମୁଖି ଘେନି ଜଣାଣ । ତନୁ ସାଜି ଲାଜ ତେଜି ଚାଲ ବହନ ।୦।
କର ଧରି କେତେ ପ୍ରରି କହି ବଚନ । ଆନ ଦେଇ ପଠାଇଛି ତୋ ସନ୍ନିଧାନ ।୧।
ଦେଖ ବାରେ ଗଗନରେ ଶଶି ଶୋଭନ । ଶୈତ୍ୟେ ମନ୍ଦେ କି ସୁଗନ୍ଧେ ବହେ ପବନ ।୨।
ବାସେ ଗୋଳି ଅଙ୍ଗେ ବୋଳି ଚନ୍ଦ୍ର ଚନ୍ଦନ । ଶୁକ୍ଳ ବାସ ପିନ୍ଧି ବେଶ କର ଧାରଣ ।୩।
ବାଟ ଘାଟ କି ନିଛାଟ ହୋଇଛି ଧନ । ବେଗେ ଉଠ ଏଡ଼େ ମଠ ଆଉ କରନ ।୪।
ତୋ ସରଣୀ ରେ ସଜନି କରି ଧିଆନ । ବସିଛନ୍ତି ଗଜପତି ନୃପମଣ୍ଡନ ।୫।

(୧୪)

**ରାଗ କାମୋଦୀ । ଚଉତାଳ ।**

ଭଜ ମନ ଅନୁକ୍ଷଣ ବ୍ରଜେ ବାସ କରିରେ ।
ଭବାବ୍ଧିରୁ ହେବୁ ପାର ଗଡ଼ି ବ୍ରଜ ଧୂଳିରେ ।୦।
ରାଧା ରମଣ ଶଉରୀ । ଆହେ ପ୍ରଭୁ ବଂଶିଧାରୀ ।
ଗୋପାଳକୃଷ୍ଣ ମୁରାରି । ନନ୍ଦାନନ୍ଦକାରୀରେ ।୧।
ବୃନ୍ଦାରକ ବନ୍ଦ୍ୟ ହରି । ପୂତନା ପରାଣ ହାରୀ ।
ଭକ୍ତଜନ ଚିନ୍ତାମଣି । ଗୋବର୍ଦ୍ଧନ ଧାରୀରେ ।୨।

ପୂର୍ଣ୍ଣ ବ୍ରହ୍ମ ସନାତନ । ଯେଉଁ ପତିତ ପାବନ ଅଗତିର ଗତି ଶ୍ୟାମ ।
ବୃନ୍ଦାବନ ଚାରିରେ ।୩।
ଗୋପାଙ୍ଗନା ପ୍ରାଣଧନ । ହଂସଜା ତଟ ଚାରଣ ।
ଘନ ଶ୍ୟାମଳ ବରଣ । ପିତାମ୍ବର ଧାରୀରେ ।୪।
ଗୌରଚନ୍ଦ୍ର ଦେବଙ୍କର । ଗତି ମୁକ୍ତି ଭକ୍ତି ଦ୍ୱାର ।
ଶ୍ରୀଧର ସାରଙ୍ଗଧର । ରାସୋଲ୍ଲାସ କାରୀରେ ।୫।

(୧୫)

**ରାଗ ରେଗୁପ୍ତ । ଅଟତାଳ ।**

ଆଉଜାଇ ଛାତିପରେ ରାତି ପୁଆରେ ।୦।
ଘଡ଼ିଏ ଅନ୍ତର ହେଲେ । ଯିବ ପ୍ରାଣ କାମ ଶରେ ।
ବିଚାରି ରମଣି ମଣି । କୀର୍ତ୍ତି ଥୁଆରେ ।୧।
ଯେବେ କରିଅଛି ଦୋଷ । ବୁଝି ନିଜେ ନାରୀଈଶ ।
ତୋ କରଜ ମୁନେ ମୋତେ । ଦଣ୍ଡ ଦିଆରେ ।୨।
ସାରସ ଲପନା ଗୋରୀ । ଭୁଜ ପାଶେ ବାନ୍ଧି କରି ।
ତୋ ବିମ୍ବ ଅଧରୁ ମୋତେ । ସୁଧା ପିଆରେ ।୩।
ଗୌରଚନ୍ଦ୍ର ଦେବ ତୋର । କିଣା ଜନ ନାରୀବର ।
ଦୂର କର ନାହିଁ ଧୀରା । ନୋହେ ନୂଆରେ ।୪।

(୧୬)

**ରାଗ ଖମାଚ । ଆଦିତାଳ ।।**

କରୁଣା କର ଗୋରି । ଘେନି ମୋହର ଗୁହାରି । ପଦ ।
ମାନ ତେଜି ମହିଳା । ମୀନ ନୟନ ଖେଳା ।
ତୋ ବିନା ନାହିଁ ଗତି ଆନ ମୋର ସୁନ୍ଦରି ।୧।
ମଦନ ଧରି ଶର । ବିନ୍ଧୁଛି ନିରନ୍ତର ।
ସହି ନ ପାରେ ମୁହି କହୁଛି କର ଧରି ।୨।
ବିଧୁ ହାସ ପ୍ରକାଶି । ନିଧୁବନେ ବିଳସି ।
ନ କଲେ ପରିତ୍ରାଣ ଭାସିଲି ବିମ୍ବାଧରି ।୩।
ସୁରନଦୀସନ୍ତତି । ସରୋଜ ଗ୍ରହପତି ।
ଗୌରଚନ୍ଦ୍ର ଭାଷନ୍ତି ତୁ ମୋର ପ୍ରେମତରି ।୪।

(୧୭)

### ରାଗ କାଫି । ମିଶ୍ରତାଳ ।

ସଜନି କହନା । ପ୍ରସଙ୍ଗ ତାହାର ।
ସଙ୍କେତ କରି ମୋତେ ଦେଲା ଯେତେ ସେ ଯାତନା ।୦।
କେଶର କୁଞ୍ଜେ । ଜଗିଥିଲି ମୁହିଁ ।
ଆସିଲେ ନାହିଁ ଆଉ ରାତି ପାଇଗଲା ସିନା ।୧।
ଜୀବନ ଆଶା । ତେଜିଲି ଏଥର ।
ଶୁଣିବି ନାହିଁ କେବେ ଦେଲେ ତାଙ୍କ ତୁଳେ ସୁନା ।୨।
ପୁରୁଷ କଳା । ଶଠଙ୍କ ମୁକୁଟ ।
ଭ୍ରମିଲି ଜାଣି ସତେ ମାରିଛନ୍ତି ସେ ପୂତନା ।୩।
ଭାଷନ୍ତି ଧୀରେ । ଗୌରଚନ୍ଦ୍ର ଦେବ ।
ଆସିଛନ୍ତି ମୋହନ ଭେଟିବାକୁ ରାଧେ ଅନା ।୪।

(୧୮)

### ରାଗ କାମୋଦୀ । ଚଉତାଳ ।

ହରି ଗୁଣ ଗାଇ ଗାଇ । ଗୋରା କି ନାଚେରେ ।
କୋଟି କୋଟି ଭକ୍ତ ବୃନ୍ଦ ବେଢ଼ାଇ ପଛେରେ । ପଦ ।
ଦୁଇ ବାହୁ ପ୍ରଭୁ ଟେକି । ଏଣେ ତେଣେ ଢଳି ଢଳି ।
ପୂର୍ଣ୍ଣ ସୁଧାକର ଶୋଭା ପାଆନ୍ତି ମଝେରେ ।୧।
ଉଲ୍ଲସାଇ ଲୋମ ରାଜି । ପ୍ରେମ ରସେ ଯାଇ ମଜି ।
ଗୋପୀ ଭାବେ ମତ୍ତ ହୋଇ ହେରନ୍ତି ସ୍ୱଚ୍ଛେରେ ।୨।
ଲୋମ କୂପେ ସ୍ୱେଦ ବିନ୍ଦୁ । ରହି ନିନ୍ଦୁଥାଇ ଇନ୍ଦୁ ।
ଆନନ୍ଦେ ହୁଙ୍କାର କରି କାନ୍ଦନ୍ତି ଉଚ୍ଚେରେ ।୩।
ଗଜପତି ଗୌରଚନ୍ଦ୍ର । ଭଜି ନବଦ୍ୱୀପଚନ୍ଦ୍ର ।
ଭକ୍ତ ବୃନ୍ଦ ପଦ ଧୂଳି ସନ୍ତତ ବାଞ୍ଛେରେ ।୪।

(୧୯)

### ରାଗ କାମୋଦି । ଆଦିତାଳ ।

ସେ ଭାଗ୍ୟ କେବେ ମୋର ହୋଇବ ଗୋ ।
ବ୍ରହ୍ମା ଶଙ୍କରେ ଯାହା ନୋହିବ ଗୋ । ପଦ ।

ବ୍ରଜରେ ଘର କରି । ଦ୍ୱାଦଶ ବନ ହେରି ।
ବ୍ରଜ ଧୂଳିରେ ଦେହ ଗଡ଼ିବ ଗୋ ।୧।
ରାସ କ୍ରୀଡ଼ା ଭୁବନ । କରିଣ ସ ମାର୍ଜ୍ଜନ ।
ରାଧା କୁଣ୍ଡରେ ମଥା ବୁଡ଼ିବ ଗୋ ।୨।
ନିଶା କାଳରେ ହରି । ବଂଶିରେ ରାଧା ବୋଲି
ଡାକିବାର ମୋ କର୍ଣ୍ଣ ଶୁଣିବ ଗୋ ।୩।
ନାଗେଶର କୁଞ୍ଜରେ । ରାଧା କୃଷ୍ଣ ସଙ୍ଗରେ
ଖେଳିବାର ମୋ ନେତ୍ର ଦେଖିବ ଗୋ ।୪।
ପହୁଡ଼ିବା କାଳରେ । ଯୁଗଳ ପଦାବ୍ଜରେ ।
ଆନନ୍ଦେ ମନ ଭୃଙ୍ଗ ସେବିବ ଗୋ ।୫।
ଗୌରଚନ୍ଦ୍ର ଭୂପତି । ଭାଷନ୍ତି ଗୋପୀପତି ।
ପଦାବ୍ଜ ରସ ଜିହ୍ୱା ପିଇବ ଗୋ ।୬।

(୨୦)

**ରାଗ ବିଳାହରି । ଏକତାଳ ।।**

ଆହା ସେ ବନ୍ଧୁଲିଅଧରି । ଚିତ୍ତ କଲା ଚୋରି ।
ଦରହାସ ବିକାଶି । ଦାହ କନକ ଗୋରି ।ପଦ।
ବିଳାସୀ ଅଳୀ । ସରସ କେଳି ।
ଲୀଳାଜିଣା ଡୋଳାକୁ ପ୍ରେମେ ଢାଳି ସୁନ୍ଦରୀ ।୧।
ତା ନୀଳ ସରୁ । କମାଣ ଭ୍ରୁରୁ ।
ନଚାଇ କି କୌତୁକେ କାମ-ଦମ୍ଭ-କତୁରି ।୨।
ଧୀରେ ବଚନ । ଭାଷି ମୋ ଧନ ।
ଢାଳି ଦେଇତ ସତେ ଛଣା ଅମୀୟ ବାରୀ ।୩।
ତୋଳି ଲପନ । ଜୀବଜୀବନ ।
ପରବ ଶଶି ଗର୍ବ ଖରବ ହେଲେ କରି ।୪।
ଶ୍ରୀ ଗୌରଚନ୍ଦ୍ର । ଧରଣୀ ଇନ୍ଦ୍ର ।
କହେ ଭଙ୍ଗିରେ ଚାହିଁ ମାର ନୟନ ଶିରି ।୫।

(୨୧)

**ରାଗ ପରଜ । ଏକତାଳ ।।**

ଲାଜ ଲାଜ ଆଜ ହେଉ କାହିଁକିରେ ।
ସଜକଞ୍ଜ ଲପନା ଚାହିଁ ମହୀକିରେ । ପଦ ।
କିସ ବିଚାରି ଚିତ୍ତେ । ତୋ ଚିର ପରିଚିତେ ।
ନୂଆ ପରି ଦେଖିବା କେବେ ବିଧିକିରେ ।୧।
ବିଳସାଇ କିଂଚତେ । ମନ୍ଦ ମଧୁର ସ୍ମିତେ ।
ଧୀରେ ମୋ ପଛେ ଲୁଚୁଁ କିସ ପାଇଁ କିରେ ।୨।
ଚାରୁ ଉରୁ କମ୍ପାଇ । ଅଳପ ଘୁଞ୍ଚି ଯାଇ ।
ମଉନେ କେ ରହିବା ଶୁଣା ଥାଇ କିରେ ।୩।
ଗଙ୍ଗବଂଶ ସନ୍ତତି । ବୀର ଶ୍ରୀ ଗଜପତି ।
ଗୌରଚନ୍ଦ୍ର ନୃପତି ସେହି ନାହିଁ କିରେ ।୪।

(୨୨)

**ରାଗ ଘଣ୍ଟାରବ । ଆଦିତାଳ ।**

ରାଧେ ମୋହନଠାରେ କୋପ ବହିଲୁ ।
ଦୁଃଖ ସରେ ମନହଂସ ଖେଳାଇଲୁ । ପଦ ।
ଶ୍ୟାମ ତୋ ଗଳା ମାଳି । ବଂଶିରେ ହେଲି ବୋଲି ।
ଡାକୁଥିଲେ ଶ୍ରବଣରେ ନ ଶୁଣିଲୁ ।୧।
କାରଣ ବିନା ଗୋରି । ଏଡିଲୁ ସୁଖ ଶିରି ।
ପାଖେ ଉଭା ହୋଇଲେ ସେ ନ ଚାହିଁଲୁ ।୨।
ବ୍ରଜରେ ତୋର ପରି । ନାହାନ୍ତି କେତେ ନାରୀ ।
କରେ କର ଧରନ୍ତେ ତ ଛାଟିଲୁ ।୩।
କାହାର ଖଚ ଗୀର । କରିଣ ଜପାମାଳ ।
ସ୍ମର କାଣ୍ଡରେ ଏବେ ଘାରି ହୋଇଲୁ ।୪।
ଗୌରଚନ୍ଦ୍ର ଭୂପତି । ଭାଷନ୍ତି ଗୋ ଶ୍ରୀମତି ।
ବନ ମାଳତି ଗତି ତୁହି ପାଇଲୁ ।୫।

(୨୩)

**ରାଗ ଧନାଶ୍ରୀ । ଅଟତାଳ ।**

ହଟିଛି ରାଧା ଶ୍ୟାମ ପ୍ରୀତିକିରେ । ନ ନିଏ ମୋର ଗୀର ଶ୍ରୁତିକି ରେ ।

ଛାଡ଼ି ଅଶନପାନ । ହେଲାନି ଅତି କ୍ଷିନ୍ନ । କାହିଁରେ ଦେଉନାହିଁ ମତିକି ରେ ।ପଦ।

କି ମନ୍ତ୍ର କଲା ସେହି । ବାଳୀଶପରା ହୋଇ ।

ତେଜିଲା ବାଳା ନୀତି ଜାତିକି ରେ ।

ରାକେନ୍ଦୁ ସୁବଦନ । ମଳିନ କଲା ଧନ ।

ଚିନ୍ତାରେ ଜାରି ଦେଇ ଛାତିକି ରେ ।୧।

ଗୁରୁଜନ ବଚନ । ଲଂଘି ରାମା ରତନ ।

ନ ଡରେ ଆଉ ଲୋକ ଭୀତିକି ରେ ।

ଆଣ୍ଡ କରିଛି ମନ । ଜଗି ତାର ଅୟନ ।

ନିଷ୍ଠେ ଯିବାକୁ ତାର କତିକି ରେ ।୨।

ଯେବେ ଯମୁନା ତୀର । ଗଲା ସେ ନାରୀ ବର ।

ଦେଖିଲା ତା ଶ୍ୟାମଳ କାନ୍ତିକିରେ ।

କଥା ନ କହି ଧନ । ସନ୍ତତ କଲାଧ୍ୟାନ ।

ମନୁ ଛାଡ଼ିଣ ସତୀ ଧୃତିକି ରେ ।୩।

ସୁରନଦୀ ସନ୍ତତି ! ଗୌରଚନ୍ଦ୍ର ଭୂପତି ।

ବୋଲନ୍ତି କର ରାମା ଗତିକି ରେ ।

କୁଞ୍ଜ ଭୁବନେ ରଙ୍ଗେ । ମାତି ଗୋବିନ୍ଦ ସଙ୍ଗେ ।

ସୁଖରେ କାଟିବାକୁ ରାତିକି ରେ ।୪।

(୨୪)

**ରାଗ ସାବେରୀ । ଆଦିତାଳ ।**

ନାରୀମଣିରେ । ମାନେ ବସିଅଛୁ କିପାଁ ନ କହି ବାଣୀ ରେ । ପଦ ।

ସୁକୁନ୍ଦରଦନା ବିଧୁହାସି । ବନ୍ଧୁଲି ଅଧରି ଚାରୁକେଶୀ

କହୁଥିଲେ କଥା ହସି ହସି ।

ତୋଷି ଦେଉଥାଇ ଧନ ତୋ ଗଣ ଗୁଣି ରେ ।୧।

ସିନ୍ଧୁରଗମନା ହରିକଟ । ମନୋରଥ ପୂର୍ଣ୍ଣ କରୁ ହଟି ।
ଦୂରେ ଥିଲେ ଆସୁତୁ ପାଛୋଟି ।
ଏବେ କରଜରେ ଗୀରା କାଟୁ ଧରଣୀ ରେ ।୨।
ସୁଧାଂଶୁ ଲପନି ପିକ ଭାଷି । କାମ ଜଳଧିରେ ଗଲେ ଭାସି ।
ଦେଖି ତୁନି ହେଉ କାଶହାସି ।
ମୋର ବିନୟ ବଚନ କର୍ଣ୍ଣେ ନ ଶୁଣି ରେ ।୩।
କରି ନାହିଁ ଦୋଷ ଜାଣି ଜାଣି । ଥିଲେ ଦଣ୍ଡ ଦିଅ ଗୁଣମଣି ।
ବୃଥାରେ ବୁହାନା ନେତ୍ରୁ ପାଣି ବଳେ
ତୋ ଭୁଜରେ ବାନ୍ଧି ନିଅ ତୁ ଟାଣି ରେ ।୪।
ପାରଳାଖିମୁଣ୍ଡି କ୍ଷିତିପତି । ଗୌରଚନ୍ଦ୍ରଦେବ ଗଜପତି ।
ବୋଲନ୍ତି ସୁମତି କର ପ୍ରୀତି ।
ରାମା ଅଟେ ମୁଁ ତୋହର କର ସାରଣି ରେ ।୫।

(୨୫)

**ରାଗ ତୋଡ଼ି ପୁନ୍ନାଗ । ଏକତାଳ ।**

ଏବେ ଗୁମାନେ ମୁଖ ମୋଡୁ କାହିଁକି । କେ ତୋତେ ବ୍ରଜେ ଜାଣି ନାହିକି ।

ପଦ ।

ଶୁଣି ପ୍ରସଙ୍ଗ ତାର । ହୋଇ ଅତି କାତର । ଲୋଡୁ ଥାଉ ବଂଶିପାଣିକି ।୧।
ଯମୁନା ଯିବା ବେଳେ । ଦେଖି ତା ରୂପ ଡୋଳେ । ଭ୍ରମିବାର ଗଲା କେଣିକି ।୨।
କହିଲେ କେତେଥର । ନ ଘେନୁ ମୋର ଗୀର । ସତେ ଧରିବୁକି ଧୃତିକି ।୩।
ଯାହାର ବଂଶି ସ୍ୱନ । ତ୍ରିଭୁବନ ମୋହନ । ଶୁଣି ନଯିବୁ କି କତିକି ।୪।
ଗୌରଚନ୍ଦ୍ର ଭୂପତି । ବୋଲେ ଆଜ ଶ୍ରୀମତି । କୁଞ୍ଜବନେ କର ଗତିକି ।୫।

(୨୬)

**ରାଗ ଝଞ୍ଜୋଟି । ଅଟତାଳ ।**

ରାଧା କି ଶ୍ୟାମ ସଙ୍ଗକୁ ଲୋଡ଼ିଲାନି ।୦।
ଯମୁନା ଯିବା ଛଳରେ । ଲୁଚି ତମାଳ ବନରେ ।
ବଂଶି ସ୍ୱନ ଶୁଣିବାକୁ ଶ୍ରବଣ ଡେରିଲାନି ।୧।

ଏକାନ୍ତ ଭବନେ ରହି । ସଖି ପାଖକୁ ଡକାଇ ।
ରାସକ୍ରୀଡ଼ା ପରସଙ୍ଗ ସତତ ଶୁଣିଲାନି ।୨।
ମନ ନ ଦେଇ କାହିଁରେ । କୃଷ୍ଣ ଯିବାସରଣିରେ ।
ନିଶା କାଳେ ବିଶାଳାକ୍ଷି ଏକାକୀ ଜଗିଲାନି ।୩।
ସରୁ ମଧ୍ୟା ବିମ୍ବାଧରୀ । ବେଶ ଭୂଷା ହୋଇକରି ।
ବେତସ କୁଞ୍ଜ ତଟକୁ ଏବେତ ଧାଇଁଲାନି ।୪।
ଗୌରଚନ୍ଦ୍ର ଗଜପତି । ଲଳିତା ପାଶେ ଭାଷନ୍ତି ।
କେତକୀ ଦଳେ ଶ୍ରୀହରି ବୋଲିତ ଲେଖିଲାନି ।୫।

(୨୭)

### ରାଗ ଖରହରପ୍ରିୟା । ଆଦିତାଳ ।

ସହି କହନା ମୋ ପାଶୁ ଯାଯା । ଆଉ ମତେ ତାର ରସେ ନ ମଜ୍ଜା । ପଦ ।
ଜଣା ଗଲାନି । ତା ଚାଲି ଚଳନି । ସତେ ମୋ ବିବେକ ତୁହି ନ ହଜା ।୧।
ଥରକୁ ଥର । ତା ବିନୟ ଗୀର । କହୁ ତୁ ମୋ ଆଗେ ନାହିଁ କି ଲଜ୍ଜା ।୨।
ଭୁଲିବ କି କେ । ତା ପ୍ରେମମାଦକେ । ଥରେ ଯେ ଜାଣିଛି ତାହାର ମଜ୍ଜା ।୩।
ଧରୁଛି କର । ଅଣ୍ଟିଲା ଏଥର । ମାରହାତେ ମତେ ତୁ ନ ତରଜା ।୪।
ଶ୍ରୀ ଗୌରଚନ୍ଦ୍ର । ନୃପ କରୀଇନ୍ଦ୍ର । ପ୍ରୀତିକି ଜୁହାର କରେ କହଯା ।୫।

(୨୮)

### ରାଗ ଝଞ୍ଜୋଟି । ଅଟତାଳ ।

କାହିଁକି ଲପନ । ମଳିନ । ପଦ ।
ବାରିଦ ବେଷ୍ଟିତ । ନିଶାକର ବତ । ଦିଶେ ଜୀବଧନ ।୧।
ଯେ ନିଜ ଅଧୀନ । ତାରେ କରି ମାନ । କର ଅନୁକ୍ଷଣ ।୨।
ହୋଇଛି ହାଜର । ଯା ଇଚ୍ଛା ତା କର । କରେ ନିବେଦନ ।୩।
କହେ ଗଜପତି । ପାରଳା ଭୂପତି । ସତ କହ ଧନ ।।୪।

(୨୯)

### ରାଗ କାମୋଦି । ଅଟତାଳ ।

ରମଣୀଶ । ହୋଇ ବେଶ । କର ଏବେ ଅବଧାନରେ । ପଦ ।
ତୋର ନାମ ଏକା କରି ଧ୍ୟାନ । ମୋହନ କଣ୍ଠରେ ଅଛି ପ୍ରାଣ ।
କାହିଁ ପାଇଁ ପ୍ରାଣସହି । ଧରିଅଛୁ ମନେ ମାନରେ ।୧।

ତୋ ବିନା ଶ୍ରୀହରି ଅନ୍ନପାନ । ତେଜି ଜଗିଛନ୍ତି ତୋ ଅୟନ ।
ନବ ବାଳା ଅବହେଳା କର ନାହିଁ ମୋର ଧନରେ ।୨।
ଦେଇଛନ୍ତି ଲେଖା ପାଠକର । ଆଉ କି କହିବି ରାମାବର ।
ହୋଇ କ୍ଷିନ୍ନ ଶ୍ୟାମଘନ । ଗଡୁଛନ୍ତି କୁଞ୍ଜବନରେ ।୩।
ତୋ ଅଭାବ ଜାଣି ଗୁଣମଣି । କାମ ବିନ୍ଧୁ ଅଛି ଶରଶ୍ରେଣୀ ।
ନିରନ୍ତର ବଂଶିଧର । ମୁଖେ ସିଞ୍ଚନ୍ତି ଜୀବନରେ ।୪।
ବୋଲେ ଗୌରଚନ୍ଦ୍ର ଗଜପତି । ଶ୍ରୀମତି ଶୁଣଗୋ ମୋ ଭାରତୀ ।
ଜୀବନେଶଠାରେ ଆଶ । ଥିଲେ ଦେଖ ତୁ ନୟନରେ ।୫।

(୩୦)

**ରାଗ ଖମାଚ । ଝୁଲାତାଳ ।**

ଆଉ କି ଦେଖିବି ଘନଶ୍ୟାମଙ୍କୁ ମୁ ଆଖିରେ ।୦।
କର ଧରି ବଂଶିଧର କହିଲେ ମଧୁର ଗୀର ।
ନ ଶୁଣିଣ ମୂଢ଼ପଣେ । ଦୂରକଲି ସଖିରେ ।୧।
ନୀଳମଣି ଦରପଣ । ପରି ଶ୍ରୀମୁଖ ଚିକ୍‌ଣ ।
ଯୁବତିଙ୍କ ରଙ୍କଧନ ନ ପାରିଲି ରଖିରେ ।୨।
କନ୍ଦରପ ଦର୍ପଦଳା । ଷଟଦଶ ପୂର୍ଣ୍ଣକଳା ।
ହେଲା ବେଳେ କରମାଳା ଦେଲିତ ଉପେଖିରେ ।୩।
ଅଳିନ୍ଦରେ ବନମାଳି । ଗଡୁଥିଲେ ଯଷ୍ଟିପରି ।
ନ ତୋଳିଲି ମୁ ପାମରୀ । ନିଷ୍ଠେ ହେଲି ଦୁଃଖିରେ ।୪।
ପାଖ ପାଖ ହେଉଥିଲେ । ଧରା ମୁ ନଦେଇ ବଳେ
କରମଣି ବରଜିଲି ଥରେ ନ ପରଖିରେ ।୫।
ଯୋଗିଜନ ପୂଜ୍ୟାସ୍ପଦ । ଧରିବାରୁ ମୋର ପଦ
ଗୁମାନରେ ପେଲି ଦେଲି । ମୋତେ ମୁହିଁ ସାଖିରେ ।୬।
ଗୌରଚନ୍ଦ୍ର ଗଜପତି । ପାଶେ ଭାଷନ୍ତି ଶ୍ରୀମତୀ
ତେଜି ମୋ ନେତ୍ର ସମ୍ପତ୍ତି । ହେଲି ନିରିମାଖିରେ ।୭।

(୩୧)

**ରାଗ କାଫି । ଅଟତାଳ ।**

ଚାଲ ଚାଲ ନବୀନା । ଆଉ ବିଳମ୍ବ କରନା ।୦।
ମାନାଭିମାନ । ତେଜରେ ଧନ । ଏତିକି ହେଉ ଭୂଷଣା ।୧।
ଶୁଣ ମୋ ଗୀର । ରମଣୀ ବର । ବୃଥାରେ କାଳ କଟାନା ।୨।
ତୋ ଗଳା ମାଳି । ସେ ବନମାଳି । ତା ଠାରେ ନୁହ ବିମନା । ୩।
ତୁ ତାର ପ୍ରାଣ । ସେ ତୋ ଅଧୀନ । ଭଲେ କର ଆଲୋଚନା ।୪।
ଶ୍ରୀ ଗୌରଚନ୍ଦ୍ର । ନୃପତି ଇନ୍ଦ୍ର । ଭାଷନ୍ତି କର କରୁଣା ।୫।

(୩୨)

**ରାଗ ପରଜ । ଏକତାଳ ।**

ଶ୍ୟାମ ପ୍ରସଙ୍ଗକୁ । ଆଉ ତୁ କହନାରେ ।୦।
ମାରିଲା ପୂତନା । ପୟସ ପାନେ ସେହି । ଜଗତେ ଜାଣନ୍ତି ମୋହନାରେ ।୧।
ଜଗାଇ କୁଞ୍ଜରେ । ସଗାଇ ମାର ହାତେ । ଦେଇ ଅଛି ଯେତେ ଯାତନାରେ ।୨।
ହେଲେ ହେବି ଘାରି । କାମରେ ଶଠାଗ୍ରଣି । ପାଶକୁ ନ ଯିବି ନବୀନାରେ ।୩।
ଯେ କରେ ତା ପ୍ରୀତି । ତାର କି ଥାଏ ଗତି । କାହ୍ନୁଥାଇ ସଦା ସୁମନାରେ ।୪।
ଭାଷନ୍ତି ଶ୍ରୀମତୀ । ଗୌରଚନ୍ଦ୍ର ଦେବଙ୍କୁ । ତୁନି ହୁଅ ବର ବରନାରେ ।୫।

(୩୩)

**ରାଗ ଭୈରବୀ । ଅଟତାଳ ।।**

କହରେ ସଙ୍ଗିନି । ମୋର ରାଣ ସତେ ।
ଜାଣିତ ନୋହିଲା । ଏ କାର ମହିଳା ।୦।
ଝୁଣ୍ଟିଆ ଝମକ । ହରୁଛି ବିବେକ । କେଳତିପତିର ଏହି କି ଟମକ ।
ଯାଉଛି କିପରି ଭଙ୍ଗିରେ ପ୍ରାଣସଙ୍ଗିରେ ।
କେହି ନାହିଁ ତାର ସଙ୍ଗରେ । ଦେଖି ହେଲି ମୁହିଁ ଥଙ୍ଗରେ ।୧।
କାନ୍ତି ସୁବରଣ । ଯୁବତୀ ରତନ । ଗତି ନିନ୍ଦା କରୁଅଛି ତ ବାରଣ ।
ଧରିଛି ହସ୍ତରେ ପଦ୍ମରେ ଏ କି ଛଦ୍ମରେ ।
ହସୁଅଛି ଅତି ମନ୍ଦରେ । ମୁଖ ଜିଣେ ପୂର୍ଣ୍ଣ ଚାନ୍ଦରେ ।୨।

ଶୁକ୍ଳ ପକ୍ଷ ନିଶା । ଜାଣି ଜାଣି ଯୋଷା । ପନ୍ଧି ଶ୍ୱେତ ବସ୍ତ୍ର କରି ଭରସା ।
ଭାସୁଛି କୋକିଳ ବାଣୀରେ ନାରୀ ମଣିରେ ।
ମୋହିବତ ନିଷ୍ଠେ ପ୍ରୀତିରେ । ଗୌରଚନ୍ଦ୍ର ଗଜପତିରେ ।୩।

(୩୪)

ରାଗ ସୁରଟ । ଝୁଲାତାଳ ।

ଶଶିଲପନା । ଏ ଅସାର ତୋରରେ ।।୦।।
ଗଣ୍ଡେ ନିବେଶି ପାଣି । ବସିଛୁ ରାମାମଣି । ଏବେ କରି ତୁ କାର ଗୀର ସାରରେ ।୧।
ରାଜୀବ ମୁଖି ଆଜି । ତୁହି ନକରୁ ରାଜି । ଯୋଡ଼ିଲେ ହେ ତୋ ପରିକର କରରେ ।୨।
ଚାରୁ ହାସ ବିକାଶି । ନ କହୁ ମଦାଳସି । ପଚାରିଲେ ହେ ମୁ କାତରତରରେ ।୩।
କିସ ବିଚାରି ଚିତ୍ତେ । ଏଣୀନୟନୀ ମତେ । ନ କରୁ ମାର ଅକୁପାର ପାରରେ ।୪।
ନିଜେ ନ ନାଶି ଯୋଷା । କରୁ ଭଗାରିହସ । ବିନାଶି ମତେ ଫୁଲଶର ଶରରେ ।୫।
କହେ ଶ୍ରୀ ଗଜପତି । ଗୌରଚନ୍ଦ୍ର ନୃପତି । ମିଛେ କି ହେତୁ ରୁଷୁ ବାରବାରରେ ।୬।

(୩୫)

ରାଗ ସୁରଟ । ଝୁଲାତାଳ ।

ହେଳା ନ କର ନାରୀବର ବରରେ ।୦।
କର ଧରି ନବୀନା । କହୁଛି ତୋର ବିନା । କାମ କରତେ ନିଶାକର କରରେ ।୧।
ସାରସ ସୁଲପନା । ହରଷ ହୋଇ ଅନା । ଗଡୁଛି କୁଞ୍ଜେ ବଂଶିଧର ଧରରେ ।୨।
ତୋ ନାମ ସ୍ମରି ସ୍ମରି । ପରାଣ ଅଛି ଧରି । ହେଲାନି ସତେ ସେ କାତରତରରେ ।୩।
ତୁ ତାର ପ୍ରେମଶୀଳା । ସେ ତୋର ଗଳାମାଳା । ଛାଡୁଛି ସେ ନିଶ୍ୱାସ ଖରଖରରେ ।୪।
ଶୁଣିଣ ମୋର ଗୀର । ରାଧେ ଚଳ ସତ୍ୱର । କହନ୍ତି ଗୌରଚନ୍ଦ୍ର ବାରବାରରେ ।୫।

(୩୬)

ରାଗ ଖମାଚ । ଆଦିତାଳ ।

କାହାକୁ କହିଲେ ସହି । ହେବ ଆଉ କିସରେ ।
ଯାହାରେ ଥିଲା ଭରସା ସେ ତ ହେଲା ବିଷରେ ।ପଦ।
କହି ମତେ କେତେପରି । ଚିତ୍ତ କରିଥିଲେ ଚୋରି ।
ଏବେ ଏତେ ସରି କଲେ ନ ଦେଖି ମୋ ଦୋଷରେ ।୧।
କରିଥିଲି କେଡ଼େ ଆଶା । ସୁଖେ ପୁଆଇବି ନିଶା ।
ଝୁରି ଝୁରି ଦିବା ନିଶି ହେଉ ନାହିଁ ଶେଷରେ ।୨।

ପୁରୁଷ ଜାତି ନିଷ୍ଠୁର । ପ୍ରୀତି ଭ୍ରମର ପ୍ରକାର
ବୋଲି ସତେ ତେବେ ଜାଣି ନ ଥିଲି ମୁ ଲେଶରେ ।୩।
ବାଧି ଯାଉଛି ମର୍ମକୁ । ଠୁକି ବସିଛି କର୍ମକୁ ।
ଅବିରତ ଘରକଲା ଦୁଃଖ ମୋ ମାନସରେ ।୪।
ଗୌରଚନ୍ଦ୍ର ଗଜପତି । କରିବେ ବୋଲି ଏ ରୀତି ।
କାହା ମନେ ଥିଲା କେବେ କହ ମୋର ପାଶରେ ।୫।

(୩୭)

**ରାଗ ତାଳ ଝୁଲା ।**

ଧନ୍ୟ ଆଶା ଯାଅ ସତ୍ୱର । କରୁଅଛି ତୋତେ ଏବେ ଜୁହାର ।
ହରାଇ ତୋ ଲାଗି । ମହତ ଆଦର । ବୁଲନ୍ତି ସମସ୍ତେ ନାନା ଦୁଆର ।୦।
ସମ୍ପତ୍ତି ଇଚ୍ଛାରେ । ନୃପତିଙ୍କଠାରେ । ସେବା କରୁଥାନ୍ତି ନାନା ପ୍ରକାର ।
ନ ପାଇ ପଇସା ହୋଇ ଲୋକହସା । ମନରେ କରନ୍ତି ଭିନ୍ନ ବିଚାର ।୧।
ଭାଙ୍ଗନ୍ତି ପର୍ବତ । କରନ୍ତି ଧଉତ । ଉଜାଡ଼ିଣ ତହିଁ ସମୁଦ୍ରନୀର ।
ହୁଅନ୍ତି ନିରାଶ । ନ ଲଭିଣ ଲେଶ । କପାଳେ ତାଡ଼ନ୍ତି ଆପଣା କର ।୨।
ସାହସ ବାନ୍ଧନ୍ତି । ସମୁଦ୍ର ଖୋଜନ୍ତି । ନାମ ମାତ୍ର ଶୁଣି ରତ୍ନ ଆକର ।
ନ ପାଇ କିଂଚିତ । ଦୁଃଖରେ ସନ୍ତତ । କ୍ଷିନ୍ନ ହୋଇଯାଏ ନିଜ ଶରୀର ।୩।
ତରତର ହୋଇ । ବସୁଧା ଖୋଳନ୍ତି । କଷ୍ଟ ହୋଏ ଏକା ଶେଷରେ ସାର ।
ବସୁ ମେଳିବାର । ଥାଉତ ତେଣିକି । କଉଡ଼ି ଗୋଟିଏ ନୋହେ ବାହର ।୪।
ବୋଲେ ଗୌରଚନ୍ଦ୍ର । ନୃପ କୁଳଇନ୍ଦ୍ର । ତୋହରି ବନ୍ଧନ ଏହି ସଂସାର ।
ତୋତେ ଛାଡ଼ି କେହି । ନର ଲୋକେ ନାହିଁ । ତୋତେ ଜାତ କଲା କେଉଁ ଈଶ୍ୱର ।୫।

(୩୮)

**ରାଗ ଭୈରବୀ । ଏକତାଳ ।**

ସହି କଲି କେଡ଼େ କରମ ।୦।
ଆସି ସେ ମୋ ପୁରତେ । କହିଲେ ମତେ ଯେତେ ।
ନ ଶୁଣି ବୁଲାଇ ଦେଇ ଚରମ ।୧।
ଧିରେ ଧରନ୍ତି ପାଣି । ନିଷେଧି ଝିଙ୍କି ଆଣି । ଚଳି ହୋଇ ଛାଡ଼ି ଲାଜ ସରମ ।୨।
ମାଗି ଘେନନ୍ତେ ସେହି । ମଉନେ ରହି ମୁହି । ଚିତ୍ତେ ନ ଭାବି ପ୍ରେମ ଧରମ ।୩।
ଶୁଣା କଥାକୁ ଘେନି । ହୋଇ ଗୁରୁଗୁମାନି । ସତ ନ ବୁଝି ମୁ ପଡ଼ି ଭରମ ।୪।
ଶ୍ରୀ ଗୌରଚନ୍ଦ୍ର ଗୀର । ମୁ ନ କରି ଖାତର । ମାରହାତେ ଦେଇ ନିଜ ମରମ ।୫।

(୩୯)

**ରାଗ ଆନନ୍ଦ ଭୈରବୀ । ଆଦିତାଳ ।**

ହାର କରି ଅଶ୍ରୁ ଧାର କାହିଁକି ଗାର କାଟୁ ନବୀନା ।
ମାରଇ ଶର ପାମର ମଦନ ମୋରଠାର କୃପା ବହି ବାରେଅନା । ପଦ ।
ଦୋଷ ଥିଲେ ମୋର । ଭୂଷ ନଖ ମୁନେ । ରୋଷ ବହନା ସୁନ୍ଦରି ।
ହାସ ଚନ୍ଦ୍ର ପରକାଶ । ପ୍ରିୟଧନ ନାଶ । ଦୁଃଖଭାର ଭୁଜପାଶେ ଧରି ପଡ଼ି ।
ନିଶାକର ଲପନି । ବେଶ-ଭୂଷଣ ହୋଇ । ପାଶରେ ମୋର
ବସି ଭାଷ ସୁରସ ତୁହି ଯୋଷା ମଣ୍ଡଳେ ପର । ଶଂସାକୁ ଆଜ ପାଇ ।
ନିଶା ସୁଖରେ ନିଅ ତ୍ରାସତ ସହି ନୋହି ।୧।
ମୀନନୟନିରେ । ମାନ ତେଜ ଶୀଘ୍ର । ଘେନି ବିନୟ ମୋହର ।
ମୀନକେତନ ତୋବିନା ଗୁଣବତି । ଶାଣିତ କାଣ୍ଡରେ । ହାଣିବ ନିକର ପଡ଼ି ।
ବିହର ମୋର ସଙ୍ଗେ । ମହିମଣ୍ଡନାଗୋରି । ବହିଲା ଗନ୍ଧବହ । ଦହିବ ବିମ୍ବାଧରି ।
ଦେହକୁ ନିରନ୍ତର । କହୁଛି କର ଧରି । ସହି ନ କଲେ ତୁହି । ନାହିଁ ରକ୍ଷା ମୋହରି ।୨।
କାଳ ଯାକ ବନ୍ଧୁ । ବିଳାପ ତୁ କଲେ । ବାଳୀଶ ପରାଏ ବସି ।
ପାଳିବ କେ ମତେ । ଭାଳି ତୋର ଚିତ୍ତେ । ହେଳା ନ କରରେ ।
ବାଳମୃଗଦୃଶି । ପଡ଼ି ରସାରେ କାମ ଜଳେ ।
ଭାସି ଯାଉଛି ମୁହିଁ । ରସ ସାଗର ହୋଇ । ରସେ ନ ରସୁ ସହି ।
ଦାସକୁ ନ ଉଦ୍ଧରୁ । କିସ ଲଭିବୁ ତୁହି । ବାସ ପ୍ରସାରୁ ଅଛି । ଆସରେ ଗୁଣଗ୍ରାହି ।୩।
କାର ଗୀର ଶୁଣି । ହୀରକଦଶନି । ଦୂର କରୁ ପାଶୁ ମୋତେ ।
ସାର ତୁ ନ ଘେନୁ । ସାରସନୟନି । ନିରତେ କହିଲେ ତୋଠାରେ ଯେତେ । ପଡ଼ି ।
ସୁରକୁଳ ପୂଜିତ । ସୁରନଦୀ ସନ୍ତତି । ନରପତି ମଣ୍ଡନ ।
ପାରଳା କ୍ଷିତିପତି । ବୀର ଶ୍ରୀ ଗଜପତି । ଗୌରଚନ୍ଦ୍ର ନୃପତି ।
ନୀରାଶ ଭାବେ ଅତି । ବୀରରସ ଭାଷନ୍ତି ।୪।

(୪୦)

**ରାଗ ଧନାଶ୍ରୀ । ଅଟତାଳ ।**

ଲାଜ କାହିଁ କି ଆଜ ରଜନୀରେ ।୦।
ତୁ ମୋର ଗଳାହାର । ନ କର ହରବର । ଶ୍ରୀମୁଖ ଟେକ ପିକ ବଚନିରେ ।୧।
ବାସ ଚନ୍ଦନ ଫୁଲ । ଘେନି ରମଣୀ ବର । ମୋ ଅଙ୍ଗେ ବସ ମୀନ ନୟନିରେ ।୨।

ମନ୍ଦ ମନ୍ଦରେ ହସି । ରସ ପ୍ରସଙ୍ଗ ଭାଷି । ମୋ ସଙ୍ଗେ ରଙ୍ଗେ ମାତ ସଜନିରେ ।୩।
ତୋତେ ଦେଖି ସୁନ୍ଦରି । ସ୍ମର କାଣ୍ଡରେ ଘାରି ହେଲାନି ଆସ ବରବରନିରେ ।୪।
ଶ୍ରୀ ଗୌରଚନ୍ଦ୍ର ଦେବ । ବୋଲନ୍ତି ପୂର୍ବଭାବ । ଜାଣିତ ଅଛୁ ଗଜଗମନିରେ ।୫।

(୪୧)

### ରାଗ କାମୋଦି । ଆଦିତାଳ ।

ରେ କୁକ୍‌କୁଟ । ଏଣୁ ଜୁହାରୁଛି ତୋତେ ।
ଉତ୍କୁଟ କରିଣ ବନ୍ଧୁ ଆଗମନ ସଂକେତ ଯା ଦେଉ ମୋତେ । ପଦ ।
ସାରସ ନିକର । ବହି ନାମ ମୋର । ଅଛନ୍ତି ଜଗତେ ଯେତେ ।
ତୋ ବିନାରେ କେହି । ସ୍ନେହ ଧର୍ମ ଏହି । ରୂପେ ନ ପାଳନ୍ତି ସତେ ।୧।
ଦିନ ମଣି ଅସ୍ତ । ହେଲେ ଆରେ ମିତ । ଶୋକେ ରଟୁ ମୋ ସଙ୍ଗତେ ।
ଦେଖି ରଜନୀଶ କୁମୁଦ ଉଲ୍ଲାସ । ହେଲେ ନ ଚାହୁଁ କିଞ୍ଚିତେ ।୨।
ଭାତ ବରତନ । ରେ ପକ୍ଷି ରାଜନ । ଦେଉ ନାହିଁ କଦାଚିତେ ।
ଉପକାର ବିନା ମୋଠାରେ କରୁଣା । ପ୍ରକାଶୁ ତୁ ଅନୁବ୍ରତେ ।୩।
ସୂର୍ଯ୍ୟ କୁଳୋଦ୍ଭବ । ସୀତାଙ୍କ ବଲ୍ଲଭ । ତୋର ଗୁଣ ସ୍ମରି ଚିତ୍ତେ ।
ଦେଇଛନ୍ତି ବର । ବୋଲି କ୍ଷତ୍ରିବର । ଥିବାରୁ ମୋହର ହିତେ ।୪।
ବୋଲେ ଗୌରଚନ୍ଦ୍ର । ନୃପ କୁଳଇନ୍ଦ୍ର । ଆଉ ଅଛି ଗୁଣ କେତେ ।
ଚୋର ଜାରଙ୍କର । ହୃଦରେ ପଥର । ପକାଉ ଡାକି ସନ୍ତତେ ।୫।

(୪୨)

### ରାଗ ମୁଖାରୀ । ତାଳ ।

ହେଲା ନ କର ବାଳା ସରି ସରିରେ ।୦।
କହୁଛି କର ଧରି । ଗୁମାନ ପରିହରି ।
ରଖ ତୋ ପାଶେ ବିମ୍ବାଧରି ଧରିରେ ।୧।
ମାର ମାରୁଛି ବାଣ । କର ତୁ ପରିତ୍ରାଣ ।
ଅଛି ତୋ ନାମ ମାତ୍ର ସ୍ମରି ସ୍ମରିରେ ।୨।
ତୁ ଥାଉ ଥାଉ ଗୋରି । ଲଭିଲି ଏତେ ସରି ।
ହୋଇ ମୁ କାମ କାଣ୍ଡେ ଘାରି ଘାରିରେ ।୩।
ତୁ ମୋର ଗଳା ମାଳା । ତୁ ମୋର ପ୍ରେମଶୀଳା ।
ହେଲି ମୁ କ୍ଷିନ୍ନ ତୋତେ ଝୁରି ଝୁରିରେ ।୪।

ଶ୍ରୀ ଗୌରଚନ୍ଦ୍ର ଦେବ । ବୋଲନ୍ତି ଯଶଲଭ ।
ରାମା ମୋ ସଙ୍ଗେ ରଙ୍ଗେ ହେରି ହେରିରେ ।୫।

(୪୩)

ରାଗ ରେଗୁପ୍ତ । ଅଟତାଳ ।

ଲୋଡୁ ନାହିଁ କିଛି ଏବେ ମୁହିଁ ଆଉ ।୦।
ହଂସତୁଳି ପଲଙ୍କରେ । ରାଧାକୃଷ୍ଣ ପ୍ରେମଭୋଳେ ।
ଖେଳିବାର ଚାହିଁବାକୁ ନେତ୍ର ଥାଉ ।୧।
ଜିହ୍ୱା କଥା ଶୁଣି ମୋର । ଶ୍ରୀମତି ଶ୍ୟାମସୁନ୍ଦର ।
ନାମ ରଟି ସନ୍ତତରେ ଦିନ ନେଉ ।୨।
ଯୁଗଳ ସେବାରେ କର । ହୋଇଥାଉ ତତ ପର ।
ହରି କଥା ଶୁଣି କର୍ଣ୍ଣ ସୁଖ ପାଉ ।୩।
ଶ୍ରୀ ଗୌରଚନ୍ଦ୍ର ବୋଲନ୍ତି । କୃପା କର ଗୋପୀ ପତି ।
ମନଭୃଙ୍ଗ ପଦାବ୍ଜରେ ମଜିଯାଉ ।୪।

(୪୪)

ରାଗ ଖରହରପ୍ରିୟା । ଅଟତାଳ ।

ସ୍ଥାନ ଭିନ୍ନେ ମିତ୍ର ଶତ୍ରୁପରି ଆଚରଣରେ ।୦।
ଦେଖ ଦେଖ ପଦ୍ମଫୁଲ । ତେଜିବାରୁ ଏବେ ନୀର ।
ବାଜି ପ୍ରଭାକର କର ହୁଅଇ ମଳିନରେ ।୧।
ସମ୍ଭୋଗରେ ନିଶାକର । ହିତ ଚନ୍ଦନ କର୍ପୂର
ବିପ୍ରଲମ୍ଭେ ବିରହିଙ୍କୁ କରନ୍ତି କର୍ତ୍ତନରେ ।୨।
ବାୟୁ ବିନା ଏ ଜୀବନ । ହୋଇଯାଏ ଅକାରଣ ।
ବହିଲେ ଖର ନିଶ୍ୱାସ ନଷ୍ଟ କରେ ପ୍ରାଣରେ ।୩।
ଗଙ୍ଗବଂଶ ନରପତି । ଶ୍ରୀ ଗୌରଚନ୍ଦ୍ର କହନ୍ତି
ରାଜସେବା ଏହି ରୀତି ଶୁଣ ନରଗଣରେ ।୪।

(୪୫)

ରାଗ ତୋଡ଼ି । ଏକତାଳ ।

ସେ ପରି ସେ ବଂଶିପାଣି । ଶୁଣ ମୋ ବାଣୀ
ଯେ ବୁଲିବ ତାସଙ୍ଗେ । ରହିବ କି ଆଣି ପାଣି ।୦।

ମସ୍ତକରେ ଧରି ମଣି । ମନ ମହୁଅଛି ଫଣୀ ।
କ୍ରୁର ବୋଲି ତାକୁ ମଣି । ନ ବଢ଼ାନ୍ତି ଜନେ ପାଣି ।୧।
ଅନଳ ଦେଖି ପତଙ୍ଗ । ମନେ ହୋଇ ଉଦବେଗ ।
ନାଶ ହୋଏ କରି ସଙ୍ଗ । ଯେପରିରେ ସୁବରନି ।୨।
ଦେଖ ମହାକାଳ ଫଳ । ଦିଶୁ ଅଛି କି ସୁନ୍ଦର ।
ଅନୁଭବେ ନାହିଁ ସାର । ଭଲେ ବୁଝ ପିକ ବାଣି ।୩।
ଗୌରଚନ୍ଦ୍ର ଗଜପତି । ଶ୍ରୀମତୀ ପାଶେ ଭାଷନ୍ତି ।
ଭୃଙ୍ଗ ଫୁଲପ୍ରୀତି ରୀତି ହେତୁ କର ଗୁଣ ମଣି ।୪।

(୪୬)

**ରାଗ ଘଣ୍ଟାରବ । ଅଟତାଳ ।**

କମଳିନୀ । ନାହିଁ ପରା ମୁଖେ ଲାଜରେ ।୦।
ଦିନମଣି ଉଦୟରେ । ବେଶ ହୋଇ ତରତରେ ।
ଖେଳୁ ଭୃଙ୍ଗ ସଙ୍ଗେ ଏ କି ତୋ ବ୍ୟାଜରେ ।୧।
ଦୀପ୍ତିକର ମନୋହର । ସହସ୍ରାଂଶୁ କାନ୍ତି ଯାର ।
ତାକୁ ତେଜି ଭ୍ରମୁ ଆନେ କି କାର୍ଯ୍ୟରେ ।୨।
ଏପରି ମଳିନ ବୁଦ୍ଧି । ଦେଖିବାରୁ ଏକା ବିଧି ।
ନାମ ତୋର ରଖିଅଛି ପଙ୍କଜରେ ।୩।
ନିଶାରେ ରମଣୀଗଣ । କରନ୍ତି କେଳି ରଚନ ।
ଏକି ବିପରୀତ ତୁ ନାରୀବ୍ରଜରେ ।୪।
ଗୌରଚନ୍ଦ୍ର ଦେବ ବୋଲେ । ମଳୟ ବାତ ବହିଲେ ।
ହେବକି ଚନ୍ଦନ ବାଉଁଶ ହେଜରେ ।୫।

(୪୭)

**ରାଗ ସାବେରୀ । ଆଦିତାଳ ।**

ହଂସ ବାହନରେ ଭଲ ବିଚକ୍ଷଣ କଲୁ ।
ଜଗତେ ଯେତେକ ଉତ୍ତମ ପଦାର୍ଥ । କଳଙ୍କ ତହିଁ ରଖିଲୁ ।୦।
ଜନ ସମାଜଙ୍କ ଆହ୍ଲାଦ ଜନକ ଚନ୍ଦ୍ରକୁ ତୁହି ଗଢ଼ିଲୁ ।
ସୁଧାକର ଗୁଣ ଥାଉ ଥାଉ ତାର ଶଶାଙ୍କ ବୋଲି ଡାକିଲୁ ।୧।

ଅଶୋକ କୁମୁଦ ପଦ୍ମ ତିନି ଶର ବାଳାଠାରେ ରଖାଇଲୁ ।
ବିରହୀମାନଙ୍କୁ ବିନ୍ଧିବାର ଦେଖି ଅବଳା କିପାଁ ବୋଇଲୁ ।୨।
ସମୁଦ୍ର ଭିତରେ ନାନାରତ୍ନ ମିଳେ ରତ୍ନାକର ଏଣୁ ବୋଲୁ ।
ବିଷ ନ ଦେଖିଣ କେଉଁ କାରଣରୁ ସାଗର ନାମ ବିହିଲୁ ।୩।
କମଳ ପଦରେ ବ୍ରହ୍ମାନନ୍ଦ ରଖି ସୂର୍ଯ୍ୟ ସଙ୍ଗେ ଖେଳାଇଲୁ ।
କି ଲକ୍ଷଣ ଜାଣି ଆରେ କୁଶ ପାଣି ପଙ୍କଜ ବୋଲି ନିନ୍ଦିଲୁ ।୪।
ବୋଲେ ଗୌରଚନ୍ଦ୍ର ନୃପ କୁଳଇନ୍ଦ୍ର ସଂସାର ଦ୍ୱନ୍ଦେ ଛନ୍ଦିଲୁ ।
ଭଲ ମନ୍ଦ ତୁହି ନ କରୁ ବିଚାର ଦାତାକୁ ଦରିଦ୍ର କଲୁ ।୫।

(୪୮)

**ରାଗ ଖମାଚ । ଏକତାଳ ।**

ପିକ ! ତୋର ଏ କି ବୁଦ୍ଧି ହୋଇ ଗୁଣବାନରେ ।୦।
ଋତୁ ରାଜ ବସନ୍ତର ଦୂତପଣେ ନିରନ୍ତର ।
ଖଟି ଦଣ୍ଡୁ ବିରହିଙ୍କି କରି କଳରବରେ ।୧।
ଶୁକ ସାରି ସଙ୍ଗ ଛାଡ଼ି କାକ ସଙ୍ଗତରେ ପଡ଼ି
ଅଭକ୍ଷ କରୁ ଭୋଜନ ତେଜି ସ୍ୱାଦୁ ଫଳରେ ।୨।
ଜଗତେ ପକ୍ଷୀ ନିକର ନିଜ ଶିଶୁ ପାଳିବାର ।
ଦେଖା ଅଛି ତୋରପରି ନାହିଁ କାର ଭାବରେ ।୩।
ଉପକାରୀକି ତୋହର କିଞ୍ଚିତ ନାହିଁ ଆଦର
ବଳ ପାଇଗଲେ ତାକୁ କରୁ ପରିତ୍ୟାଗରେ ।୪।
ଗୌରଚନ୍ଦ୍ର ନୃପବର ବୋଲନ୍ତି ଆରେ କୋକିଳ
ଅଳ୍ପକାଳ ଭୁଞ୍ଜୁ ଭାଗ୍ୟ ନାହିଁ ତୋର ଲକ୍ଷରେ ।୫।

(୪୯)

**ରାଗ ଖରହର ପ୍ରିୟା । ଚଉତାଳ ।**

କୋକିଳ ତୋ ମନୋହର ଗୁଣ କହି ନୋହିରେ ।
ଅନୁଭବ ଯେ କରିଛି ଜାଣେ ମାତ୍ର ସେହିରେ ।ପଦ ।
ବିଶ୍ୱପତି ବୀଣା ହୋଇ । ଜଗନ୍ନାଥା ହସ୍ତେ ଥାଇ
କି ସୁନ୍ଦର ଗାନ କରୁ ପ୍ରଭୁ ଗୁଣ ଗାଇରେ ।୧।

ନିଶା ଶେଷେ ବସନ୍ତରେ । ବସି ତରୁ ଡାଳେ ଧୀରେ ।
ଭାଷିବାର କଳରବ ଶୁଣି ନିଦ ହୋଇରେ ।୨।
ମାତା ବୋଲି ଶିଶୁ ଗଣ । ଚେତାରେ ହୋଇ ମଉନ ।
ଶୁଣୁଥାନ୍ତି ତୋ ସଙ୍ଗୀତ ମନେ ଶ୍ରଦ୍ଧା ବହିରେ ।୩।
ଯୁବା ଯୁବତୀଙ୍କ ପ୍ରେମ । ପ୍ରବଳ କରି କୁସୁମ- ।
ଶର କେଳି ରସେ ତାଙ୍କୁ ନିମଜ୍ଜାଉ ତୁହିରେ ।୪।
ବିଚ୍ଛେଦରେ ଥିଲେ ଜନେ । ଉପଦେଶ ଦେଇ କାନେ ।
ସଂଯୋଗ କରାଉ ତାଙ୍କୁ ବନ୍ଧୁ ପରି ହୋଇରେ ।୫।
ରୋଗୀଙ୍କ ରୋଗ ବିମୁକ୍ତ । କରୁ ଆରେ ପରଭୃତ ।
ସବୁଦିନେ ଥିଲେ ତୁହି ବୈଦ୍ୟ କିପାଁ ମହିରେ ।୬।
ଅନୁପମ ସ୍ୱନ ତୋର । ବସନ୍ତ ହୋଇଲେ ଦୂର ।
ଦେଲେ ରତ୍ନ ଶତ ଭାର ପାଇବ କି କେହିରେ ।୭।
ଦୁଃଖିଙ୍କର ଦୁଃଖ ହରି । ରୂପେ ହେଲୁ କୃଷ୍ଣ ପରି ।
ଧନ୍ୟ ପିକ ଜନ୍ମ ତୋର ଗୌରଚନ୍ଦ୍ର କହିରେ ।୮।

(୫୦)

ରାଗ ଧନାଶ୍ରୀ । ଅଟତାଳ ।

ବରଷା କାଳ ଆସି ହୋଇଲାରେ । ଭରସା ନାହିଁ ନବ ଛଇଲାରେ ।
ମାର ହୋଇ ବିବାଦୀ ବିରହୀ ନାଶେ ହ୍ରାଦୀ । ତରବାରିକି ଝମକାଇଲାରେ ।ପଦ।
ବରହି କରୁ ନୃତ୍ୟ । ବରହି ହୋଇ ଜାତ । ବିରହୀ ହୃଦ ସ୍ଥଳ ଦହିଲାରେ ।
ମୋର ହିୟାରେ ଜ୍ଞାନ । ନ ରହିଲାଟି ଜାଣ । ନିରତେ ଆକୁଳିତ ହୋଇଲାରେ ।୧।
ଦଶ ଦିଶ ଅନ୍ଧାର । ଅସର ନିଶିବାର । ପ୍ରସର ଇନ୍ଦ୍ରଗୋପ ହୋଇଲାରେ ।
ତୋଷ କରି ଦହନ । ପ୍ରସରି ଅଗ୍ନି କଣ । ତ୍ରାସ ତ ହୃଦସ୍ଥଳେ ଥୋଇଲାରେ ।୨।
ମାର ଶରନିକର । ବରଷା ନୀରଧାର । ମୋର ହୃଦକୁ ଲାଖ ବିହିଲାରେ ।
ଶରଣ ନାହିଁ ଆନ । କାରଣ ତୁହି ଜାଣ । ବାରଣଗତି ରକ୍ଷା ନୋହିଲାରେ ।୩।
କିପାଇଁ ମୋର ମନ । ଅପାର ଦୁଃଖ ସ୍ଥାନ । ହେପାତ କିଛି ମୋର ନୋହିଲାରେ ।
ଚମ୍ପା ଗୋରୀର ଅନୁ- । କମ୍ପା ବିନା ଏ ତନୁ । କିପାଁଇ ନ ଫାଟିଣ ରହିଲାରେ ।୪।
ମରମ ଦେଶେ ମୋର । ନିରତେ ଜାତ ଥର । ଦରହାସି ପ୍ରସାଦ ନୋହିଲାରେ ।
ବୀର ଶ୍ରୀ ଗଜପତି । ଗୌରଚନ୍ଦ୍ର ଭାଷନ୍ତି । ମାର ଏକା ଅରାତି ହୋଇଲାରେ ।୫।

(୫୧)

**ରାଗ ବେଗଡ଼ା । ଆଦିତାଳ ।**

ମୋ ରାଣ ଅଛିଟି ତୋତେ । ଲୋକ ହସା କର ନାହିଁ ।
ବସନ ପ୍ରସାରି ମାଗି । ଘେନୁଛି ପରାଣ ସହି । ପଦ ।
ଗଙ୍ଗାରୁ ବଳି ଗଭୀର । ବୋଲି ହୃଦୟ ତୋହର ।
ନ ଛପାଇ କହିଥିଲି । ମନର କଥା ଫିଟାଇ ।୧।
ତୁଚ୍ଛାକୁ ଲୋକେତ ନିତି । କୁଛା ମୋତେ କରୁଥାନ୍ତି ।
ଜଣା ପଡ଼ି ଯିବ ଯଦି । ମହତ ନେବେ ଛଡ଼ାଇ ।୨।
ଫୁଟିଲା ଫୁଲର ବାସ । ହୋଇଯିବ ପରକାଶ ।
ପହିଲୁ ଜୀବସଙ୍ଗିନୀ । ଏଣୁ ଏକା ଡରୁଥାଇ ।୩।
ଜାଣିବା ନ ଜାଣି ମୃତ । ହୁଡ଼ି ଦେଇ ଅଛି ପଥ ।
ଗୌରଚନ୍ଦ୍ର ଗଜପତି । ସ୍ନେହ ଭାବେ ଭୁଲିଯାଇ ।୪।

(୫୨)

**ରାଗ ଘଣ୍ଟାରବ । ଆଦିତାଳ ।**

ଏହି ଏକା କି କଥା ପ୍ରାଣ ସହି । ପଦ ।
ସୁଖେ ସଦନେ ରହି । ଥିବା ଲୋକକୁ ନେଇଁ ।
ନିନ୍ଦା ସାଗରେ ଯା ଦେଲା ଭସାଇ ।୧।
ମୁ ଅବା କି ବଇରି । ତାହାର ସହଚରୀ
ଏଡ଼େ ନାର ଖାର ଦେଲା କରାଇ ।୨।
ହେଲେ ହେ ଯେଡ଼େ ହୀନ । ଜଗତେ ନାରୀ ଗଣ ।
ମାନ ଅପମାନ କି କିଛି ନାହିଁ ? ।୩।
ଶ୍ରୀ ଗୌରଚନ୍ଦ୍ର ବୋଲି । ପରତେ ଯାଇ ଥିଲି ।
ଥରେ ହେଲେ ବିଚାର କଲା ନାହିଁ ।୪।

(୫୩)

**ରାଗ ଦର୍ବାର । ଆଦିତାଳ ।**

ସତେ କୋପନା ସଜନି । କେବେ ନ ଥିବା କଥା ଏବେ ପଡୁଛି ଜଣା ।ପଦ।
ହୂକୁ ଦେଖିଲେ ସରି । ମୋଦମୟ ଲହରୀ ।

ମନ ନିଳୟପୂରି । ପଡୁଥାଇ ଉଚ୍ଛୁଳି ।
କାହିଁ ଗଲା ସେ ନାଶା । ପୁଟ ଫୁଲା ସୁଭାଷା ।
ଶୁଣିବାକୁ ମୁ ଏବେ । ରଙ୍କତ ହୋଇଗଲି ।୧।
ଦର ବିକାଶ ହାସ । ବିଳସୁ ଉଦବାସ ।
ପ୍ରେମ ପୀୟୂଷ ରସ । ଝଳକି ପଡୁଥାଇ ।
କେଡ଼େ ନୀରସ ଆଜ । ଲପନ ସରସିଜ ।
ପ୍ରଭାତ ଶଶି ପରି । ତେଜ ହୀନ ଦିଶଇ ।୨।
ଗୌରଚନ୍ଦ୍ର ଭୂନାଥ । ଠାରେ ଏଡ଼େ ଗୁପତ ।
ସ୍ନେହ ତୋର ସଂଘାତ । ବୋଲି ଜାଣି ନ ଥିଲି ।
କଥା ପର ସଙ୍ଗରେ । ହସ କଉତୁକରେ ।
ସିନା ନବୀନା ଥରେ । ତତେ ପଚାରିଦେଲି ।୩।

(୫୪)

ରାଗ ବିଳାହରି । ଏକତାଳ ।

କରୁଣା ଥାଉ ସଜନି ତୋର ମାତର ।।୦।।
ଯେ ଯାହା ବୋଲନ୍ତୁ । ସହାୟ ଥିଲେ ତୁ ।
କରିବି ଆଉ ଖାତର ? ।୧।
ଗଲେ ଜଳିଯିବ । କି କରି ଘାରିବ । ମଦନ ବୀତିହୋତର ।୨।
ଆଣି ପାଦ ତଳେ । ଲୋଟାଇବି ହେଳେ । ସମ୍ପତ୍ତି ସୁରନାଥର ।୩।
ସେବି ଗୌରଚନ୍ଦ୍ର । ନୃପ କୁଳଇନ୍ଦ୍ର । ଟେକିବି ଜୟ ଛତର ।୪।

(୫୫)

ରାଗ ବେଗଡ଼ା । ଆଦିତାଳ ।

ଆଛାତ ଭଲ ହୋଇଛି । ଦୂର ହୁଅ ଯା ତେଣିକି ।
ଜାଣିଥିଲେ ମୁ ପହିଲୁ । ଆସିନଥାନ୍ତି ଏଣିକି । ପଦ ।
ପଡ଼ି ଗଲେ କା ନଜର । ବୁଡ଼ି ଯିବ ମୋ ସଂସାର ।
କେଡ଼େ ସାହସ ପଣ ମା । କିଛୁତେ ଡର ନାହିଁ କି ? ।୧।
ଏକି ପରମାଦ ସତେ । ପଡ଼ି ଗଲା ଆସି ମତେ ।
କହୁ ଥିଲେ ହେ ଯେତିକି । ପାଶକୁ ଆସେ ତେତିକି ।୨।

ପକାଇ ଦେବାକୁ ଧୀରେ । ଏ ଅସଲଟ କଥାରେ ।
ପଠିଆଇ ଥିଲା ପରା । ପଚାରିବି ନା ସଖିକି ।୩।
ବୋଲାଇ ମହତ ଲୋକ । ଗଜପତି ଭୂପାଳକ ।
ଅନୀତି ପଥେ ପ୍ରବେଶ ।  ହେବା ହେଲା ଉଚିତ  କି ? ।୪।

(୫୬)

**ରାଗ ପୁନ୍ନାଗ । ତାଳ ଝୁଲା ।**

ଆହେ ନବଦ୍ୱୀପଚନ୍ଦ୍ରମା । ଦୟା କରହେ ।୦।
ହୃଦୟ କନ୍ଦରେ । ସ୍ଫୁରୁ ଆନନ୍ଦରେ । ତୁମ୍ଭ କୀର୍ତ୍ତି ହେ କନକ ଧାମା ।
ଶ୍ରୀ ଶଚି ନନ୍ଦନ । ସୁଭକ୍ତ ଜୀବନ । ଜୟ ଶ୍ରୀ କୃଷ୍ଣ ଚୈତନ୍ୟନାମା ।୧।
ଆନନ୍ଦ ଚିନ୍ମୟ  । ପରଂ ପ୍ରେମମୟ । ଭାବି ଯା ରୂପେ ଲୋଭିତ ରମା ।
ବ୍ରହ୍ମା ଈଶ ଶେଷ । ସନକାଦି ବ୍ୟାସ । ଲଭି ନାହାନ୍ତି ଯାହା ମହିମା ।୨।
ନିତ୍ୟାନନ୍ଦ ଦ୍ୱୈତ । ପ୍ରଭୃ ଆଦି ଭକ୍ତ । ବୃନ୍ଦ ସହିତେ ତୁମ୍ଭ ସୁଷମା ।
ଶ୍ରୀ ଗୌରଚନ୍ଦ୍ର । ଗଜପତିଙ୍କ ମତି । ରହୁ ପଦାବ୍ଜେ ଦିନ ତ୍ରିଯାମା ।୩।

(୫୭)

**ରାଗ ବଙ୍ଗଳା । ଅଟତାଳ ।**

ମଥା ଟେକି ପଦେ କଥା କହ ସଜନି ।
ବ୍ୟଥା ହେବ ଗ୍ରୀବା ବୃଥା ଶଶିଲପନି ।୦।
କେବେ ନଥିଲା ଏମନ୍ତ । ଆଜ ଦେଖିଲି ମୁ ଏତ ।
ନୂଆ ରୁଷା ଶିକ୍ଷିଲୁ ତୁ କୁନ୍ଦଦଶନି ।୧।
କେ କିସ ବୋଇଲା ତତେ । ଜଣାତ ଗଲା ମତେ ।
ନଖେ ଧରା ଚିରିବାର ମୃଗଲୋଚନି ।୨।
ଥିଲେ ଅବା ମୋର ଦୋଷ । କ୍ଷମା କରି ରମଣୀଶ ।
ଦଣ୍ଡିବା ଉଚିତ ସିନା ଘନଜଘନି ।୩।
ତୋ ବିନା ଆଉ କେ ଗତି । ନାହିଁ ମୋର ଅନ୍ୟ କ୍ଷିତି ।
ମଣ୍ଡଳରେ ମତ୍ତ ଗଜରାଜଗମନି ।୪।
ନିଜ ଦାସରେ୍  କରୁଣା । ନ କରିବାର ଏ ଊଣା ।
ହେବ କଳକଣ୍ଠ ବୀଣାଜିଣାବଚନି ।୫।

ଗଙ୍ଗବଂଶ ରତ୍ନାକର । ଉଦେ ପୂର୍ଣ୍ଣନିଶାକର ।
ଗୌରଚନ୍ଦ୍ର ଗଜପତି ଭାଷଣ ଘେନି ।୬।

(୫୮)

### ରାଗ ପୁନ୍ନାଗ । ତାଳ ଝୁଲା ।

ଭଜ ମନରେ । ରାଧା ଗୋବିନ୍ଦ ।
ସଦା ଅଚିରେ ପାଇବୁ ପଦାରବିନ୍ଦ ।। ପଦ ।।
ଶ୍ରୀଗୁରୁ ନଳୀନ । ଚରଣେ ଶରଣ ।
ପଶି ସେ ବସୁଧା ବୃନ୍ଦ । ରଙ୍ଗେ ନିଅ କାଳ ।
କାଳ ଦଣ୍ଡ ଭୟ । ଘୁଞ୍ଚିବ ତେଜି ତୁ ଦ୍ୱନ୍ଦ । ୧ ।
ସ୍ୱପ୍ନର ପ୍ରକାର । ତୁଟି ଯିବ ତୋର ।
ନ ବାନ୍ଧିବ ଭବବନ୍ଧ । ଯମୁନା ତଟରେ ।
ରାସ ନିକଟରେ । ଦେଖିବୁ ହୋଇ ଆନନ୍ଦ ।୨।
ଯା ଧୂଳି ଖେଳାରେ । ଚକ୍ଷୁ ଯୁଗଳକୁ ।
ଦାନ ଲଭି ଅଛି ଅନ୍ଧ । ଗୌରଚନ୍ଦ୍ର ଗଜପତି ।
କହନ୍ତି ଦୟା କରିବେ ମୁକୁନ୍ଦ ।

(୫୯)

### ରାଗ ଯମୁନା କଲ୍ୟାଣୀ । ଅଟତାଳ ।

ମୋ ନେତ୍ରାନନ୍ଦ ପସରା । ତେଡ଼େ ସ୍ନେହ ଯାକ ତୋର ଗଲାନି ପରା ।୦।
ପାଛୋଟି ତୁ ଆସୁ କେତେ । ଦୂରରୁ ଦେଖିଲେ ମୋତେ ।
ହାଜର ହେଲେ ମୁ ଏବେ ଚାହୁଁ ତୁ ଧରା ।୧।
ବିନୟେ କହିଲେ ମୁହିଁ । ଏଣିକି ତେଣିକି ଚାହିଁ ।
ଶୁଣାଇ ନ ହେଉ ଏତ ନୁହେ ଟାପରା ।୨।
ଘଡ଼ିଏ ମତେ ନ ଦେଖି । ବସି ମୋ ପଥ ନିରେଖି ।
ପଠାଉ ସଖି ହାତରେ ଶଏ ଡାକରା ।୩।
ଦାସୀକି ପାଶକୁ ଡାକି । ବୋଲୁ ଯାହା କେ ଅଛି କି ।
ଜାଣୁଛି ତୋହର ଏହି ଭଙ୍ଗି ପଟରା ।୪।
ଗୌରଚନ୍ଦ୍ର ଦେବ ବୋଲେ । ସତେ କହ ମୁ ଆସିଲେ ।
କେବେ ଥିଲା କି ଏ ଭାବ ଜବା ଅଧରା ।୫।

(୬୦)

**ରାଗ ବିଳାହରି । ଏକତାଳ ।**

କରୁଣା ଥିଲେ ସଜନି ତୋର ମାତର ।୦।
ଭାଙ୍ଗିବାକୁ ପ୍ରୀତି । ଲୋକେ ଯା କହନ୍ତି । ଶୁଣି ହେବିକି କାତର ? ।୧।
ନ କର ବିଚାର । ଶତ୍ରୁ ସାଧିବାର । କଥାତ ମୋର ହାତର ।୨।
ମୋ ନିଜ ଚାକର । ସମାନକୁ ମାର । ହେବକି କେବେ ପାତର ।୩।
ଭାଷେ ଗଜପତି । ଛାର ଶଚିପତି । ପଦେ ନାହିଁ ମୋ ଖାତର ।୪।

(୬୧)

**ରାଗ ହିନ୍ଦୁସ୍ଥାନ ଭୈରବୀ । ଅଟତାଳ ।**

ଆଜ ଏକି ଗୁମାନରେ ମିତଣି । ତଳେ ବସି ଗଣ୍ଡେ ମଣ୍ଡିଛୁ ପାଣି ।ପଦ।
ନଳିନ ଲପନ । କରି ତୁ ମଳିନ । ମଉନେ ନିରବଧି ଚାହୁଁ ଧରଣୀ ।୧।
କରଜରେ ଗାର । କାଟୁ ଶତବାର । ନିଷେଧିଲେ ମୁ କେତେ ଥରେ ନ ଶୁଣି ।୨।
ପ୍ରବେଶିଲେ ପାଶେ । ଭାଷୁ ଯେ ଉଲ୍ଲାସେ । କାହିଁ ସେ ଛଣା ମଧୁ ଜିଣା ସୁବାଣୀ ।୩।
ଶିଖା ଶିଖି ଗୀର । କରି ତୃ ନିକର । ନ ନାଶ ମାରଶରେ ରମଣୀ ମଣି ।୪।
ପ୍ରବୀଣା କରୁଣା । ହେବ ବୋଲି ଊଣା । ସତ କହୁଛି କେବେ ନ'ଥିଲି ଜାଣି ।୫।
ଶ୍ରୀ ଗଜପତିଙ୍କ । ଉସଙ୍ଗ ପଲଙ୍କ । ତୁ ତେଜିବା ଯାଏ କି କଥା ଗଲାଣି ।୬।

(୬୨)

**ରାଗ ଧନାଶ୍ରୀ । ଆଦିତାଳ ।**

ନାହିଁରେ ସହି କେହି ଏହି ମହିରେ ।୦।
ନୀରଦ କେଶୀ ନିଶାକର ଆନନୀ ନୀରଜହାସି ପରି କେ ।
ନାରୀ ଯୁବା ଗଣେ । ତା ସୁଷମା ଗୁଣେ । ଲୋଡ଼ିଲେ ତା ରୀତି ଯାକେ ।୧।
ହାରମଣୀ ହାର ପରି ମଣିବେ ମୁନି ଦେଖିଲେ ମନାକେ ।
ପୃଥୁଳ ନିତମ୍ବିନୀ । ଗମନ ବିଳମ୍ବିନୀ । କୁନ୍ଦରଦନୀ ସରି ନାକେ ।୨।
ଖଞ୍ଜନ ଗଞ୍ଜନ ରଞ୍ଜନ ସୁନୟନୀ ବର୍ତ୍ତୁଳ କୁଚ ଅବଲୋକେ ।
ଭାଷନ୍ତି ଗଜପତି । ଗୌର ନିଶାପତି । କେଧିତି ଧରିବ ତ୍ରିଲୋକେ ।୩।

(୬୩)

**ରାଗ ଭୈରବୀ । ଅଟତାଳ ।**

ସଜନି କାନ୍ତ ରହିଲେ ଦୂରାନ୍ତରେ । କିପରି ବୁଝିବି ମାର ମାରୁଛି ନିରନ୍ତରେ । ପଦ।
କାଳପରି ସହଜେ ହୋଇଛି ଏ ବସନ୍ତରେ । ମନ୍ଦ ବାତ ପିକ ରତ ବସାଇଲା କୁନ୍ତରେ ।୧।

ଏକାକିନୀ ଦୁଃଖ ଯାହା ହୋଇଛି ଅତ୍ୟନ୍ତରେ ।

କାହାକୁ କହିବି କେ ଫେଡ଼ିବ ଭାବ ଅନ୍ତରେ ।୨।

ଜ୍ୱଳନରୁ ବଳି ଚନ୍ଦ୍ର ଚନ୍ଦନ ଯାବନ୍ତରେ । ଲାଗେ ନାଗବଲ୍ଲୀପିତା ନିଶି ଯୁଗ ଚିନ୍ତାରେ ।୩।

ଦଇବେ ବିଦେଶ ସିନା ସେ କରୁଣାବନ୍ତରେ । ଅୟନକୁ ଚାହୁଁଅଛି ଆସିବା ପର୍ଯ୍ୟନ୍ତରେ ।୪।

ଗୌରଚନ୍ଦ୍ର ଗଜପତି ଲେଖିବା ଉଦନ୍ତରେ । କଣ୍ଠଗଲା କୃପାତ ନ କଲେ ଉମାକାନ୍ତରେ ।୫।

(୬୪)

### ରାଗ ତୋଡ଼ି ପୁନ୍ନାଗ । ଆଦିତାଳ ।

ଆସଗୋ ଦେଖ ସଜନୀ ବ୍ରଜରାଜ ତନୁଜକୁ ।
ହେବକି ମନୁ ପାସୋର ବନ ବାହୁଡ଼ା ସଜକୁ ।୦।
ପ୍ରଶଂସିବାକୁ ସୁଷମା । ଭୁବନେ ନାହି ଉପମା ।
ଆହା ! ଓଷ୍ଠ ଅରୁଣିମା । ଶ୍ରୀ ଲପନ ପଙ୍କଜକୁ ।୧।
ତର୍ଣ୍ଣକ ଅଡ଼ାଇ ଆଗେ । ରେଣୁ ପୂରିତ ସର୍ବାଙ୍ଗେ ।
କୃତ ବେଣୁ ଗୀତ ରଙ୍ଗେ । ପାଶେ ସଖା ସମାଜକୁ ।୨।
କରୀମୋତି ସେ ଶୋହେ ନାସେ । ରତନ ଗଳେ ବିକାଶେ ।
ଆବର ହୃଦୟ ଦେଶେ । ନବୀନ ବନ୍ୟସ୍ରଜକୁ ।୩।
ଭଲା ନଟବର ମୂର୍ତ୍ତି । ରସା ମଧ୍ୟେ କୁଳବତୀ ।
ଶାଶୁ ଗୁରୁଜନ ଭୀତି । ତେଜିବ ଛାଡ଼ି ଲାଜକୁ ।୪।
ଗଜପତି ଗୌରଚନ୍ଦ୍ର । ହିମାଂଶୁ ଗଙ୍ଗ ବଂଶର ।
ମୋଦରେ ଭଣିଲେ ଗୀର । ରଭସେ ରସରାଜକୁ ।୫।

(୬୫)

### ରାଗ କଳହରପ୍ରିୟା । ଅଟତାଳ ।

ଲମ୍ପଟ ରାଜା । କପଟେ ତାଜା । ହୋଇ କହନା ଆଉ ରହନା ଯାଯା । ପଦ ।
ଯେ ରସବତୀ ତୁଲେ ମାତି କାଲି ରାତି । ରହି ଯିବାର ମୁହିଁ କରିଛି ହେଜା ।
ସେପରି ନୋହେ ହରି । ବ୍ରଜଯାକରେ ହୁରି । ପଡ଼ି ଯିବଟି ଏବେ ବାଜିବ ବାଜା ।୧।
ତାର ପ୍ରତି ଅଙ୍ଗ । ସଙ୍ଗରୁ ଶ୍ରୀଅଙ୍ଗ । ଚିହ୍ନାଙ୍କିତ ଦେଖିମୋ କମ୍ପୁଛି ମଜା ।
ଅଧର ଅଞ୍ଜନ । ପିନ୍ଧା ନୀଳ ବସନ । ଛି ଛି ଶ୍ରୀମୁଖେ କିଛି ନାହିଁଟି ଲଜା ।୨।

ଛଳି ତାର ସଖି । ଚଳିହେବେ ଦେଖି । ଚଳ ବହନ ସେ ପ୍ରୀତି ସରଜା ।
ବେଗରେ ସେ ମାନେ । ଲୋଡୁଥିବେ ବନେ । ଆଗ ଯମୁନା ଯାଇ ତୋ ତନୁ ଧୋ ଯା ।୩।
ଆହେ ଛାରବର । ତୁମ୍ଭଙ୍କୁ ସେ ମାର । କଦନ ନାଶି ଯେ ହୋଇଛି ପ୍ରଜା ।
ଶ୍ରୀଗୌରଚନ୍ଦ୍ର ଗଜପତି ଭୂପତି । ଭାଷନ୍ତି ଏଣିକି ତେଣିକି ନ ଯା ।୪।

(୬୬)

ରାଗ ଭାଟିଆ । ଅଟତାଳ ।

ଆଜ କୁନ୍ଦରଦନା । କାହିଁକି ବିମନା । କେ କି ଲଗାଇ ମୋ ନାରେ କହିଛିନା ।୦।
କେବେ ନଥିଲା ଗୁମାନ । ଆଜ କାହିଁ କିରେ ଧନ । ନ କହୁ ପ୍ରେମ ବଚନ ସ୍ନେହାଧିନା ।୧।
ରସାଳସା ରସା ଭୂଷା । ଯୋଷା ନ ଭାଙ୍ଗ ମୋ ଆଶା ।
ରସାଭୂଷା ଲୋକହସା ତୁ କରନା ।୨।
କଳ୍ପଲତା ପ୍ରିୟସଙ୍ଗି । ଅଙ୍ଗ କେ ଦେଉଛୁ ଭାଙ୍ଗି ।
ସ୍ୱଙ୍ଗ ହୋଇ ନାଶୁଛୁ ଦୟାଳୁ ବାନା ।୩।
ରୋଷ ଥିଲେ ତୋ ଚିତ୍ତରେ । ବାନ୍ଧି ବାହୁ ଯୁଗଳରେ ।
ନଖାଙ୍କୁଶ ମୋ ଉରରେ ମାର ସିନା ।୪।
ଗୌରଚନ୍ଦ୍ର ଗଜପତି । ଭାଷନ୍ତି ମୃଦୁ ଭାରତୀ । ଟେକି ତୋ ବଦନ ଶଶି ବାରେ ଅନା ।୫।

(୬୭)

ରାଗ ଘଣ୍ଟାରବ । ଅଟତାଳ ।

ଭାଗ୍ୟ ଏଣିକିରେ । ଯେବେ ଭେଟିବି ଗୁଣମଣିକିରେ ।
ଛଡ଼ି ଥିବି ଚନ୍ଦ୍ର ଚନ୍ଦନପରାଏ । ଅନ୍ତର ନୋହିବି କେଣିକିରେ ।୦।
ଇନ୍ଦୀବର ନୟନାକୁ କୋଳେ ଧରି । ଚାହିଁ ତା ପ୍ରେମ ଚାହାଁଣିକିରେ ।
ଖଣ୍ଡ ଦରପଣ ସୁଗଣ୍ଡ ମଣ୍ଡଳେ । ଚୁମ୍ବ ଦେବି ଗଣି ଗଣିକିରେ ।୧।
ବନ୍ଧୁଲିଅଧର ମଧୁପାନ କରି । କୁଚେ ପ୍ରଚାଳିବି ପାଣିକିରେ ।
"ନା ମୁ ନ ପାରିବି" ଗେଲାଇ ଭାଷିବ । ଝୁଲାଇ ନାସିକା ମଣିକିରେ ।୨।
କକ୍ଷ ତଳେ ତୀକ୍ଷ ନଖ ଚଲାଇଣ । ଚାଳି ଦେବି ନିଶାମଣ କିରେ ।
ଅତନୁ ମଦେ ସିତ୍କାର ଭଜି ତନୁ । ପୁଲକାଇ ରୋମ ଶ୍ରେଣୀକିରେ ।୩।
ସୁରତିରେ ସେ ପିରତି ବସଳାକୁ । ଶୁଆଇବି ଉରେ ଆଣିକିରେ ।
ଝୁଲିବାର ମୋଦେ ମନ ମଜାଇବ । ବଜାଇ କଟୀ କିଙ୍କିଣିକିରେ ।୪।

ତେଜିଣ ଏ ବିଦେଶ ଯାଇଣ ତା ସଙ୍ଗେ । ରଙ୍ଗେ ହରିବି ରୟଣିକିରେ ।
ଗୌରଚନ୍ଦ୍ର ଗଜପତି ଭାଷନ୍ତି ଶତେ । ଚମ୍ପା ଦେବି ଶୂଳପାଣି କିରେ ।୫।

(୬୮)

**ରାଗ କାମୋଦି । ଚଉତାଳ ।**

ଯାହାରେ ଦେଖିଲୁ ମନ । ଭାବି ନିଶି ଦିନ ।
ଗୋବିନ୍ଦ ଶ୍ରୀ ଗୋପୀନାଥ ମଦନ ମୋହନ ।୦।
ପରିବାରି ସଙ୍ଗେ ଧରି । ପରଭାତୁ ମଧୁପୁରି । ପରିହରି ପ୍ରବେଶିଲି । ଶ୍ରୀବୃନ୍ଦାବିପୀନ ।୧।
ମୁଖେ ବୋଲି ହରି ହରି । କୁଞ୍ଜେ କୁଞ୍ଜେ ଫେରି ଫେରି ।
ନୟନ ଯୁଗଳ ଭର । କଲି ଦରଶନ ।୨।
କେଶି ଘାଟେ ସ୍ନାନ ସାରି । ବଂଶୀ ବଟେ ଅନୁସରି ।
ନିଭୃତ ନିକୁଞ୍ଜଧରି । କଲି ପ୍ରଦକ୍ଷିଣ ।୩।
ଶ୍ରୀରାଧା କୁଣ୍ଡେ ଉତ୍ତରି । ଅର୍ଚ୍ଚନେ ବନ୍ଦନେ ବାରି ।
ମଜ୍ଜନ ଆନନ୍ଦେ କରି । ଗଲି ଗୋବର୍ଦ୍ଧନ ।୪।
ଗଙ୍ଗବଂଶେ ଉତପତି । ଗୌରଚନ୍ଦ୍ର ଗଜପତି ।
ହୋଇଣ ଆନନ୍ଦମତି । କରନ୍ତି ଗାୟନ ।୫।

(୬୯)

**ରାଗ । ଝୁଲା ତାଳ ।**

ଆହେ ବଂଶିଧାରି । ଘେନ ମୋ ଗୁହାରି । କହୁଛି ଶ୍ରୀହସ୍ତ ଧରି ଧରିହେ ।୦।
ମୋହନ ମୁରଲି । ରାଧା ରାଧା ବୋଲି । ବିପିନେ ବଜାଅ ଧିରିଧିରି ।
ଅତି ଉଚ୍ଚ ସ୍ୱନ । ବ୍ରଜେ ଗୋପୀଜନ । ଶୁଣୁଛନ୍ତି କର୍ଣ୍ଣ ଡେରି ।୧।
ଗୃହେ ନଣନ୍ଦିନୀ । ଛିଦ୍ର ଅନୁକ୍ଷଣି । ଲେଖେ କୁଢ଼େ କେତେ ଗାରି ଗାରି ।
ଦେଖି ମୋ ପରାଣ । ଜଳେ ନିଶିଦିନ । ମନ ହୋଏ ସଦା ଘାରି ଘାରି ।୨।
ଜାଣି ବ୍ରଜବାସୀ । ମନ୍ଦେ ମନ୍ଦେ ହସି । ଭାଳନ୍ତି ନୟନ ଠାରି ଠାରି ।
ତର୍କି ଶାଶୁ ବୁଢ଼ୀ । ଲାଜେ ଯାଇ ସଢ଼ି । ନିବାରେ ଶପଥ କରି ।୩।
କିଶୋରୀଙ୍କ ରୀତି । ହୃଦେ ଗଜପତି । ଗୌରଚନ୍ଦ୍ରଦେବ ଝୁରି ଝୁରି ।
ବୋଲନ୍ତି କଠିନ । ଏହି ଶ୍ୟାମଘନ । ଅଧିକେ ଦେବେ ମା ହୁରି ହୁରି ।୪।

(୭୦)

### ରାଗ ପୁରୀ । ଆଦିତାଳ ।

କି ଦେଖିଲି ବେଣୁ ପାଣିରେ । ମିତଣି । ଛବି ଶକ୍ରମଣି ଜିଣି ।୦।
କଳିନ୍ଦ ଯା କୂଳେ । ନିପ ତରୁ ମୂଳେ । ଥିଲା ତ୍ରିଭଙ୍ଗିମା ଠାଣି ।୧।
ପୁରଟ ମୁକୁଟ । ଶିରେ ଝଟ ଝଟ । ପୁଚ୍ଛ ଗୁଚ୍ଛ ତାଏ ପୁଣି ।୨।
ତା କର୍ଣ୍ଣେ କୁଣ୍ଡଳ । ନାସା ମୋତିବର । ଆହା କି ମନ୍ଦ ଦୋଳଣି ।୩।
ଚଳ ଚଳ ବେଣି । କୁଟୀଳ ଚାହାଁଣି । ହୃଦୟ ଦେଲା ମୋ ହାଣି ।୪।
ଭାଲେ ଗୋରଚନା । ଅଧର ରଙ୍ଗିମା । ସ୍ମିତ ଯୁତ ମୃଦୁ ବାଣୀ ।୫।
ଗଳେ ତାର ହାର । ହୃଦେ ବନମାଳ । ନିନ୍ଦେ ଚେଳ ସୌଦାମିନୀ ।୬।
ଚରଣ କିଙ୍କିଣି । ପ୍ରେମେ ଅନୁକ୍ଷଣି । ଶବ୍ଦ କରେ କିଣି କିଣି ।୭।
ଶ୍ରୀମତୀଙ୍କ ଭାବ । ଗୌରଚନ୍ଦ୍ର ଦେବ । ଗଜପତି ସଦା ଭଣି ।୮।

(୭୧)

### ରାଗ ପୁରୀ । ଏକତାଳ ।

ରାସେ ଯିବା ପରାରେ ଆଳି । ଶୁଭିଲାନି ଘନ ଘନ ମୁରଲି । ପଦ ।
ଅରୁଣିମା ଉଦୟାଚଳ । ମଳିନିମା ନକ୍ଷତ୍ର ଜାଳ ।
ଅତି ସେ ହରଷ ପାଇ ଔଷଧୀଶ । କଲେନି ପ୍ରକାଶ । କିରଣ ପାଳି ।୧।
ନିଶବଦ ବ୍ରଜ ଭୁବନ । ଉଚ୍ଛୁଳିତ ଶ୍ରୀବୃନ୍ଦାବନ ।
ନାହିଁଟି ଚେତନ ବ୍ରଜବାସି ଜନ । କଲେନି ଶୟନ ହୋଇ ବାଉଳି ।୨।
ବିକଶିତ ମଲି ମାଳତୀ । ହୋଇ ବେନି ଜାତୀ ସେବତୀ ।
ଆଭିର ନାଗରୀ । ଭୁଜ ଧରାଧରି । ହୋଇ ନାଚୁ ଥିବା ବଜାଇ ତାଳି ।୩।
ସାରି ଶୁକ ପିକ ମୟୂର । ଗାନ ମଧୁକର ଝଙ୍କାର ।
ଶୁଣି ନାନା ରଙ୍ଗେ । ଗାନ କରି ତୁଙ୍ଗେ । ନୃତ୍ୟ ଶ୍ୟାମ ସଙ୍ଗେ କରିବା ମିଳି ।୪।
କୁତି ବାଣୀ ଶ୍ରୀମତୀ ଶୁଣି । ଭେଟିଲେ ଚଳି ବେନୁପାଣି ।
ଗୌରଚନ୍ଦ୍ର ଗଜପତି । ହୃଷ୍ଟମତି । ମାଗନ୍ତି ଯୁଗଳ ଚରଣ ଧୂଳି ।୫।

(୭୨)

### ରାଗ ଘଣ୍ଟାରବ । ଏକତାଳ ।

ବିନା ଦୋଷେ ନବୀନାରେ । ନୁହ ବିମନା । ନୁହଇ ମୁ ଅପରାଧି ଘନଜଘନା । ପଦ ।
କହୁଛି ତୋ କର ଧରି । ଶୁଣରେ କନକ ଗୋରି । ଅରୁଣାଧରି ମୋଠାରେ ରୋଷ ବହନା ।୧।

ଭ୍ରମର ମାଳିକା କେଶି । ଆହାରେ ରସ ସରସି । ମହି ମହିଳାକୁ ନଖ ଘାତ କରାନା ।୨।
ଆରେ ପଞ୍ଚାସ୍ୟଉଦରି । ବାରେ ଅଙ୍ଗୀକାର କରି । ଚିତ୍ତଜ ଚିତ୍ତ ବିସ୍ତାରି ଉଡ଼ାଅବାନା ।୩।
ଶୁଣି ମୋହର ବିନତି । ରମଣି ମଣି ଝଟତି । କମନୀୟ ବଦନ ମହିକି ମଣ୍ଡନା ।୪।
ସହି ନ ପାରଇ ସହି । ମଦନ କଦନ ମୁ ହି । ଦର୍ପକ ଦର୍ପ ବିନାଶି କର କରୁଣା ।୫।
ସରସ ବଚନେ ମାନ । ତେଜି କଲା ଆଲିଙ୍ଗନ । ଗୌରଚନ୍ଦ୍ର ଗଜପତି ଉରମଣ୍ଡନା ।୬।

(୭୩)

(ରାଗ ଝଞ୍ଜୋଟି । ଏକତାଳ ।)

ଉଠ ଉଠ ଯିବା ଦୂତୀଗୋ । ଦେଖୁ ଦେଖୁ ପାଇ ଯିବ ରାତିଗୋ । ପଦ ।
ଦେଖ ମଧୁକର ନିକର । ଦୂର କରି କୁମୁଦାକର ।
କମଳିନୀ ମୁଖ । ଚୁମ୍ବନ ପ୍ରମୁଖ । ହୋଇ ଧାଇଁଲେନି ତାଙ୍କ କତିଗୋ ।୧।
ନବୀନ ନାଗରୀ ଲମ୍ପଟ । ନ ଆସିଲେ କରି କପଟ ।
ନୂଆ ପ୍ରୀତିରେ ଲୋଭି ହୋଇ ସୁରତେ ନିମଜ୍ଜିଲେ କାହା ସଙ୍ଗେ ମାତି ଗୋ ।୨।
ସଖି ଚକ୍ରବାକ ମିଥୁନ । ସରସିରେ ବିରହାଛନ୍ନ ।
ମନକୁ ପ୍ରସନ୍ନ । କରିଣ ବାରଣ । ଗମନୀ ଆରମ୍ଭିଲେନି ରତିଗୋ ।୩।
ଜାଣି ଜଟିଳା ସମାଚାର । ଜଗି ବସିଥିବ ଦୁଆର ।
ଭରଛନା କରି । ବରଜ ନାଗରୀ । ମଧରେ ଘେନିବ ଆସ୍ଥ ଜାତିଗୋ ।୪।
ପୁରନ୍ଦର ଶିଖରୀ ତଟ । ଆରୋହଣ ହୋଇ ଉତ୍କଟ ।
ଦିବାକର ରଥ । ଆସିଲା ନିଶଙ୍କୁ । ଚିତ ହୋଇଲାନି ଧ୍ରୁବ ଧୃତିଗୋ ।୫।
ନଟକୁଟିଆଙ୍କ ମୁକୁଟ । ନବବଲ୍ଲବୀଚୟ ବିଟ ।
ନନ୍ଦସୁତ ଫାନ୍ଦେ । ପଡ଼ିଲ କି ଛନ୍ଦେ । ବୋଲେ ଗୌରଚନ୍ଦ୍ର ଗଜପତିଗୋ ।୬।

(୭୪)

ରାଗ । ଆନନ୍ଦ ଭୈରବ । ଆଦିତାଳ ।

ନନ୍ଦକୁମର ସୁନ୍ଦର ରଜନୀ । ନିଜ ଅଳିନ୍ଦରେ ଦେଖି ।
କୁନ୍ଦବୃନ୍ଦ ରୁଚିର ବୃନ୍ଦାବନ । ଅମନ୍ଦରେ ଗଲେ ମନ୍ଦିର ଉପେକ୍ଷି ।୦।
ପର୍ବ ନିଶାକର । କର ମନୋହର । ସାର କୁମୁଦ ପନ୍ତି ।
ଗର୍ବ ମାର ଖରଧାରଶରପରି । ତରତରରେ କିଶୋର ହୃଦେ ଚିନ୍ତି ।

ହୋଇ ହତ ଚେତନ । ଛାଇ ପୁଳିନ୍ଦ ବନ । ଦେଇ ରାସରେ ମନ ।
କଲେ ମୁରଲି ଗାନ । ବ୍ରଜ ମହିଳା ଜନ । ଶ୍ରବଣେ ଛନଛନ ।
ପରିହରି ରନ୍ଧନ । ଚଳିଲେ ସେ ବହନ ।୧।
ଖଞ୍ଜନ ସୁଲୋଚନରେ ଅଞ୍ଜନକୁ କେ ରଞ୍ଜନ ନ କରି ।
ଗଞ୍ଜନ ଗୁରୁଙ୍କର ଭଞ୍ଜନକୁ କରି ପ୍ରଭଞ୍ଜନ ଗତିରେ ଆନ କିଶୋରୀ ।
ପତି କରି ବଞ୍ଚନ । ହରି ପଟ କୁଞ୍ଚନ । ବିନିମୟ ରଞ୍ଚନ ।
ଧରିବେଶ ସଞ୍ଚନ । ନ ଗଣି ଏକାଞ୍ଚନ । ସତି କୁଳଲାଞ୍ଛନ ।
ଗଲେ କେତେ କାଞ୍ଚନ । ଗୋରୀ ହରିଙ୍କ ଥାନ ।୨।
ବ୍ରଜ ଯୁବତିତତି । ପାଇ ସେ ଶ୍ରୀପତି । ହୋଇ ହତଧୃତି ।
ଋତୁପତି ରାତିରେ । ରତିପତି ରସରେ । ମାତିଲେ ହୋଇ ହରଷ ମତି ।
ଆରମ୍ଭି ସୁନର୍ତ୍ତନ । କରିଲେ ଆଳାପନ । ବ୍ରଜରମଣି ମାନ ।
କଲେ କର ଚାଳନ । ମୁରଲି କଳସ୍ୱନ । କରନ୍ତି ସେ ମୋହନ ।
ଦେଖି ବିସ୍ମିତ ମନ । ହେଲେ ବିବୁଧ ଗଣ ।୩।
ଧୀର ସମୀର ମିହିରଜା ତୀରରେ । ଜର ଜରରେ ଅତି ।
ଦରହାସିଙ୍କର ଅପାର ଆକାଂକ୍ଷା ପୁରି ବାର ବାର କରିଏ ସୁରତି ।
ସଲିଳ ପ୍ରବେଶନ । ସହ ବନିତାଗଣ । କରିଣ ପୁନଃପୁନ ।
ପୁରେ ବିଜେ ମୋହନ । ବ୍ରଜ ରମଣି ଜନ । ତେଜି ଗୃହ ତତ୍‌କ୍ଷଣ ।
ପ୍ରବେଶିଲେ କଲେ ଗଜପତି ଗାୟନ ।୪।

(୭୫)

**ରାଗ । ଘଣ୍ଟାରବ ଏକତାଳ ।**

ବିନା ଦୋଷରେ ନବୀନା । ନୁହ ବିମନା ।
ବାଳାବର ତୁ ମୋହର ସୁଖ ସଦନା । ପଦ ।
ବାମଦେବର ପର । ଘାତରୁ ରଖିବାର । ବାରଣ ଗତି ତୁ ମୋ କାରଣ ଅଭିନା ।୧।
ଗୁନ୍ଥି କୁସୁମ ମାଳା । ଧରି ଆସିଛି ବାଳା । ଲାଗି କରାଇ ଦେବିରେ ବିଧୁବଦନା ।୨।
ତୋ ବିନାରେ ସୁମନା । ଆନେ ଯଦି ଭାବନା ।
ପରକ୍ଷି ଦଣ୍ଡ ଦିଅତୁ ଶ୍ରୀଫଳା ସ୍ତନା ।୩।

ତୋ ପ୍ରତିବିମ୍ବ ସଖି । ମୋ ଅଙ୍ଗରେ ବିଲୋକି ।

ରୋଷ ବହିଲୁ ଚିହ୍ନି ନ ପାରିଲୁ ସିନା ।୪।

ବୀର ଶ୍ରୀ ଗଜପତି । ଗୌରଚନ୍ଦ୍ର ଭୂପତି । ଚିନ୍ତି ଶ୍ରୀ ଗୋପୀପତିଙ୍କି କଲେ ରଚନା ।୫।

(୭୬)

ରାଗ । ସାବେରୀ ଅଟତାଳ ।

ଏବେ ଦେଲୁ କି ପାଶୋରିରେ । ଯେତେ ଯେତେ ଭାବ ଗୋରିରେ ।
ଅଳସ ଯେ ଦିନ । ପେଷି ଦାସୀଜନ । ବାର୍ତ୍ତା ବୁଝୁ ସୁକୁମାରିରେ ।୧।
କେ ଡାକେ ମୋ ନାମ ଧରିରେ । ଶୁଣି ତାହା ବେଗ କରିରେ ।
ପୁରୁ ପ୍ରାଙ୍ଗଣରେ । ଦେଇ ବାସ ଶିରେ । ରହୁ ଭେଟକୁ ଚତୁରିରେ ।୨।
ଦଇବେ ହେଲେ ବିଦେଶରେ । ନ ଥାଇ ଅସନ ବେଶରେ ।
ଲେଉଟିବା ପାଇଁ । ଶହେ ଚମ୍ପା ସହୁ । ଦେବୁ ବୋଲି ତ୍ରିପୁରାରିରେ ।୩।
ଗୁରୁଜନମାନଙ୍କର । ନିନ୍ଦିବା ବଚନ ବାରରେ ।
କର୍ପୂର ଚନ୍ଦନ । ପରି ତେବେ ଧନ । ଘେନି ଥିଲୁ କୃଶୋଦରିରେ ।୪।
ଖିମୁଣ୍ଡି ଖାର ଉଦଧିରେ । ଉଦେ ପୂର୍ଣ୍ଣ ସୁଧାନିଧିରେ ।
ଗୌରଚନ୍ଦ୍ର ବାରଣେଶ କହେ ଗୀର । ବାରିଜାକ୍ଷି ନୋହେ ବାରିରେ ।୫।

(୭୭)

ରାଗ ସାବେରି । ଅଟତାଳ ।

ରାମାବରରେ । ଅଛି ପରା ତୋର ଦିବ୍ୟ ଅବଧାନେ । ପଦ ।
ଦରବିକାଶ କୁମୁଦ ହାସେ । ବିଳସାଇ କୁନ୍ଦରଦବାସେ ।
ମଦାଳସି ଚାରୁ ପଦନ୍ୟାସେ । ବିଜେ କଲୁ ଦିନେ କେଳିପୁର ଭିତରେ ।୧।
ଫୁଲାଇଣ ତିଳଫୁଲ ନାସା । ଝୁଲାଇଣ ରଙ୍ଗେ ଶ୍ରୁତିଭୂଷା ।
ଚେଳାଞ୍ଚଳ ମଣ୍ଡୁଥିଲା ରସା । ଆସି ଜୁହାରି ବସିଲୁ ତଳପ ପରରେ ।୨।
କାମଅମଳ ଭାବ ବଶରେ । ଆଣି ବସାଇ ଅଙ୍କ ଦେଶରେ ।
ଗଣି ଚୁମ୍ବନ ଦେଉ ଗଣ୍ଡରେ । ରାକା ପ୍ରଦୋଷ ଜଳଧି ହେଲା ଅନ୍ତରରେ ।୩।
ଭାଷେ ସୁରସରିତ ସନ୍ତତି । ଗୌରଚନ୍ଦ୍ର ଦେବ ଗଜପତି ।
ତେତେବେଳେ ଯେଉଁ ଶୋଭାତତି । କିଛି ଜାଣନ୍ତି ପ୍ରଦୀପ ଚକ୍ଷୁ ଚେତନାରେ ।୪।

(୭୮)

## ରାଗ ରାମକେରୀ । ଆଦିତାଳ ।

କାହାକୁ କହିବି କିସରେ । ସଙ୍ଗାତ ।
ଯାହାକୁ ମୋହର । କରି ଘେନିଥିଲି । ତାହାକୁ ହୋଇଲି ବିଷରେ । ପଦ ।
ଆସିବେ ସେ ବୋଲି । ଚାହିଁ ବସିଥିଲି । ହୋଇ ଅଙ୍ଗେ ଦିବ୍ୟ ବେଶ ।
ରହିଲେ ସେ କାହିଁ । ରାତିକି ପୁଆଇ । ଦେଇ ମୋତେ କାମ ତ୍ରାସରେ ।୧।
ପ୍ରାତେ ଆସି ଯେତେ । ରୂପେ ମୋ ଅଗ୍ରତେ । ଭାଷିଲେ ବିନୟମାନ ।
ପ୍ରତେ ତା କିଞ୍ଚିତେ । ନ ଘେନି ମୁଁ ଚିତ୍ତେ । ଅଧିକେ କଲି ଗୁମାନରେ ।୨।
ସରାଗରେ ପୁଣି । ମୋତି ହାର ଆଣି । ମୋ ଆଗରେ ଯାଚୁଥିଲେ ।
ବିରାଗ ମୁଁ ବହି । ଅବହେଳେ ତହିଁ । ଦୃଷ୍ଟିକି ନ ଦେଲି ଭଲେ ରେ ।୩।
ପଟୁବର ବହୁ । ଆରତରେ ତହୁଁ । ଲୋଟିଲେହେଁ ପାଦ ତଳେ ।
କଟୁ ପ୍ରାଏ ମଣି । କପଟରେ ଗଣି । ଛାଟିଦେଲି ସେହି କାଳେରେ ।୪।
ନିଜ ସଖି ବୋଧ । ନ ରଖିଲି ମଧ । ବ୍ରଜରାଜ ଗଲେ ଲାଜେ ।
ଗଜପତି ଗୌର । ଚନ୍ଦ୍ର କହେ ଆଜ । କରିବେ ଅବଶ୍ୟ ବିଜେରେ ।୫।

(୭୯)

## ରାଗ କାମୋଦୀ । ଏକତାଳ ।

ଭଲା ରଚିଲା ବାଳା ଚିତ୍ରକୁ ରେ ।୦।
ଚାରୁ ଚିବୁକ ଧରି । ବିନୟ ହୋଇ କରି । ରସାଅ ବୋଲି ଦେବା ମାତ୍ରକୁ ରେ ।
ନାସାପୁଟ ଫୁଲାଇ । ଗେଲାଇ ନାହିଁ ନାହିଁ । କହି ଢଳିଲା ମୋର ଗାତ୍ରକୁ ରେ ।୧।
ନଚାଇ ପୃଷ୍ଠେ ବେଣୀ । ହଲାଇ ନାସାମଣି । ଭୁଲାଇ ନେଲା ମନ ନେତ୍ରକୁ ରେ ।
କଟିର ଚମକରେ । ରସନା ଝମକରେ । ଛାଡ଼ିଲା ଭୀତି କାମ ଶସ୍ତ୍ରକୁ ରେ ।୨।
ବିଳସାଇ କିଂଚିତେ । ମନ୍ଦ ବଳକ୍ଷ ସ୍ମିତେ । ଖୋସିଲା ନେତ୍ର ଶତ ପତ୍ରକୁ ରେ ।
ହେଲା ବୋଲିଣ ଭାଷି । ମଦନ ମଦାଳସୀ । ଉଚ୍ଚାରି ଇଶୀ ଇଶୀ ମନ୍ତ୍ରକୁ ରେ ।୩।
ଉର ଦେଶରେ ନେଇ । ଢ଼ାଳିଲା ପ୍ରାଣସହୀ । ଉରଜ ପ୍ରେମ ସୁଧା ପାତ୍ରକୁ ରେ ।
ଅଳି-ନୀଳକୁନ୍ତଳା । ଭାଳି ଲିଭାଇ ଦେଲା । ଜଳିଲା ସ୍ମର ବୀତିହୋତ୍ରକୁ ରେ ।୪।
ଭାଷେ ଶ୍ରୀ ଗଜପତି । ଗୌରଚନ୍ଦ୍ର ଭୂପତି । ଟେକାଇ ଦେଇ ଜୟ ଛତ୍ରକୁ ରେ ।
ସୁଶୀଳା ଗୁଣବତୀ । ଦେଇ ସ୍ୱର୍ଗସମ୍ପତ୍ତି । ପୁହାଇଦେଲା ରଙ୍ଗେ ରାତ୍ରକୁ ରେ ।୫।

(୮୦)

### ରାଗ ସାବେରୀ । ଅଟତାଳ ।

ରହି କି ଗଲିରେ ଛଇଲାକୁ ଛାଡ଼ି ମୁହିଁ ।
ସେ ସୁରଭି ଦେହି । ଅତି ଶୀର୍ଣ୍ଣ ହୋଇ । ବସି ଥିବ ପଥ ଚାହିଁ । ପଦ ।
ଏ ମଧୁ କାଳରେ । ବିଧୁ ରଜନିରେ । କୁନ୍ଦ ଦନ୍ତି ଏକାହୋଇ ।
ଚନ୍ଦନ ପାନକୁ । ବାନ୍ଧବୀ ଇଛିବ ନାହିଁ ।୧।
ଟାଣ କରି ମାର । ବାଣ ବିନ୍ଧି ତାର । ପ୍ରାଣ ନେବ ତ୍ରାଣ ନାହିଁ ।
ଅଳପ ଉଦରି । ଜଳପୀ ନ ପାରି । ତଳପରେ ଥିବ ଶୋଇ ।୨।
କୁମ୍ଭ ପୟୋଧରି । ବିମ୍ବ ପକ୍ୱାଧରି । ଚୁମ୍ବଦେବା ଭାବ ବହି ।
ଡମ୍ବରୁ ମଧ୍ୟମା । କମ୍ବୁକଣ୍ଠୀବାମା । କଣ୍ଢୁହାର ଦେବ ଫେଇ ।୩।
ଦ୍ୱିରଦଗମନୀ । ନୀରଜ ନୟନୀ । ଶରଦ ଚନ୍ଦ୍ରମା ମୁହିଁ ।
କାଶଜିତହାସୀ । ବେଶକୁ ନ ରସି । କେଶ ସଜାଡ଼ିବ ନାହିଁ ।୪।
ଗଉରଚନ୍ଦର । ଭାଷନ୍ତି ଏ ଗୀର । ମଞ୍ଜୁ ଭାଷି ପାଶେ ଯାଇ ।
ଅନ୍ତର ନୋହିବି । ନିଶି ଦିବା ଥିବି । ଅଙ୍ଗରେ ଅଙ୍ଗ ମିଶାଇ ।୫।

(୮୧)

### ରାଗ କାମୋଦୀ । ତାଳ ତ୍ରିପୁଟା ।

ସଙ୍ଗାତ । ଶ୍ୟାମ ପରି ସୁରସିକ । କାମ ତ ନୋହିବ ।
କ୍ଷେମ କେ ହୋଇବ । ସମ ପାଇ ଏ ତ୍ରିଲୋକ । ପଦ ।
ଶୋଭା ବିଳାସ ମାଧୁର୍ଯ୍ୟ ତେଜ ଧୈର୍ଯ୍ୟ । ଗାମ୍ଭୀର୍ଯ୍ୟ ଲଳିତୌଦାର୍ଯ ।
ବିଭାତି ଯାହାଙ୍କ ଅଛି ଏ ସାତ୍ୱିକ । ସମ୍ଭାଇ ଅଷ୍ଟ ଐଶ୍ୱର୍ଯ୍ୟରେ ।୧।
ଦକ୍ଷିଣ ନାୟକ । ଭାବରେ ଅନେକ । ଲକ୍ଷଣେ ସ୍ୱରୂପ ଧରି ।
ସୁକ୍ଷଣ ପ୍ରଭାଙ୍ଗୀ ଗଣେ ବିହରନ୍ତି । ବୀକ୍ଷଣ ସମାନ କରିରେ ।୨।
ପୀଠ କରି ଏକ । ଠାରେ ସ୍ନେହ ସୁଖ । କଠରେ କପଟ ବହି ।
ପାଠ କରୁଥାନ୍ତି ଅନ୍ୟ ଯୁବତୀକି । ଶଠ ନାଗର ବୋଲାଇ ।୩।
ହୃଷ୍ଟ ଭରେ ଲଜ୍ଜା ଭୟ ତେଜି ଉପ- । ବିଷ୍ଟ ହୋଇ ଆପଣାର ।
କଷ୍ଟକୁ ଜଣାଉଥାନ୍ତି ପରା ସେହୁ । ଧୃଷ୍ଟ ପଣେ ଜୋଡ଼ କରରେ ।୪।

ଅନୁରାଗ ଭଜି ରସେ ତୁମ୍ଭ ମଜି । ଅନୁସରି ଥାନ୍ତି ତୋଷେ ।
ଅନୁକୂଳ ଭାବ ଗଜପତିଦେବ । ଅନୁଚିନ୍ତା କରି ଭାଷେରେ ।୫।

(୮୨)

ରାଗ ଘଣ୍ଟାରବ । ଏକତାଳ ।

ବାରେ କର କରୁଣାରେ । ବର ବରନା । ବିନା ଦୋଷେ ରୋଷ ବହି ମୁଖ ସୁଖାନା ।୦।
ଶରଦ ଇନ୍ଦୁ ଲପନି । ଦ୍ୱିରଦ ମତ୍ତ ଗମନି । ନୀରଦ କେଶି କରଜେ ମହୀ ଚିରନା ।୧।
ଦାସ ଜନରେ ନିରାଶ । ଭାଷାକୁ ତୁ ନ ପ୍ରକାଶ ।
ଦୋଷ ଥିଲେ ନାଶ ଆରେ ଘନଜଘନା ।୨।
ପୁଣ୍ଡରୀକନେତ୍ରି ଆରେ । ଖଣ୍ଡପର୍ଶୁଅରି ଶରେ । ଖଣ୍ଡଚନ୍ଦ୍ରଗଣ୍ଡସ୍ଥଳା ଦଣ୍ଡକୁ ଦେନା । ୩।
ତରୁଣ ଅରୁଣାଧରି । କରୁଣା ବରୁଣ ପୁରୀ । ତରୁଣୀମଣି ତୁ ବୀଣା ବଚନ ଶୁଣା ।୪।
ଗୌରଚନ୍ଦ୍ର ନୃପବର । ଗୀର ଶୁଣି ରାମାବର । ବରଜି ମାନକୁ କଲା ପୂର୍ଣ୍ଣ କାମନା ।୫।

(୮୩)

ରାଗ ଭୈରବୀ । ଆଦିତାଳ ।

କର କର ମାନ ଦୂର ବରବରନି । ଛାର ପର ଗୀରେ ତୁହି ନୁହ ଗୁମାନି । ପଦ ।
ସାରଙ୍ଗ ରଙ୍ଗ କୁରଙ୍ଗ ମୀନନୟନି । ସାରଙ୍ଗ ଗମନା ମନା କରୁ କି ଘେନି ।୧।
ବାରଣ ମୋଡି ଜିତ କରକରଦନି । କର ପରକାଶ କାଶହାସ ସଜନି ।୨।
ହରପର ଶରେ ଜରଜର ହେଲିଣି । ହର ମୋର ଦୁଃଖ ଆରେ ରମଣିମଣି ।୩।
ବାର ବାର କରି ଶୁଣ ମନ୍ଦରସ୍ତନି । ମୋର ଦୋଷ ନାଶ ଘେନ ଘେନ ସୁମନି ।୪।
ନରବର ଗୌରଚନ୍ଦ୍ର ଭାଷେ ଏ ବାଣୀ । ହରଷରେ ରସେ ବରବୀଣାବଚନୀ ।୫।

(୮୪)

ରାଗ ସାବେରି । ଅଟତାଳ ।

ରସାଳସାରେ । ରସା ସୁରସେ ମୋ ଅଙ୍କେ କରି ତୁ ବସା ରେ । ପଦ ।
ପରସନ ମୁଖକୁ ତୁ ଥରେ । ଦରଶନ ଦିଅ ବାଳା ଆରେ ।
ବିରସ ନ ହୋଇ ମୋର ଠାରେ । କର ସନମତ ବଣାଏଣୀ ସୁଦୃଶାରେ ।୧।
ସୁନ୍ଦରବର ମନ୍ଦରସ୍ତନା । କୁନ୍ଦରଦନା ଘନଜଘନା ।
ପନ୍ଦରବୟସାରେ ସୁମନା । କନ୍ଦରପ ଦର୍ପ ଧ୍ୱଂସା ଅନା ଅସୁସାରେ ।୨।

ସୁରମଣି ମାରେ ମାରଶର । ମୋର ମରମରେ ନିରନ୍ତର ।
ପରମ ସନ୍ତାପ ନାଶକର । ଦରମରା ନ କରି ରଖ ବନ୍ଧୁ ସଂସାରେ ।୩।
ଭରମ କର୍ବୁର ତନୁ ନିଶା । ଚରମ, ମୟୂଖ ଜିଣା ହସା ।
ପଣ୍ଡିତା ଶିରୋମଣି ସୁକେଶା । ପର ମଣିଲେ ନାହିଁ ତୋ ବିନୁ ଭରସା ।୪।
ହସି କହ ମୋ ପ୍ରାଣସହି । ଦୋଷ କରିଥିଲେ ହେଲେ ମୁହିଁ ।
ନାଶି କରୁଣା ମୋଠାରେ ବହି । ରସିକ ବୃନ୍ଦରେ ଏବେ ଦିଅ ପ୍ରଶଂସାରେ ।୫।
ପରମଦା ହସିଲା ସେ କ୍ଷଣି । ହରମଥାଧିତଜ ଅଗ୍ରଣି ।
ଧୀରମଣ୍ଡଳପଦ୍ମତରଣୀ । ବୀର ମହିନ୍ଦ୍ର ଶ୍ରୀ ଗୌରଚନ୍ଦ୍ରଙ୍କ ଭାଷାରେ । ୬ ।

(୮୫)

## ରାଗ ଆସାବରି । ଅଟତାଳ ।

ମୂର୍ଚ୍ଛି ନୁହଇରେ ସୁକୁନ୍ଦଦନ୍ତୀ ପୀରତି । ମୂର୍ଚ୍ଛି ଦେବା ଦିନୁ ଆରେ ମଦାଳସି ।
ମଦନ ଦିଏ କରତି । ପଦ ।
ଲୁଚି ଲୁଚି ଆସିକରି ଘନକେଶି । ବୋଲେ ଥାଉ ମୋରେ ପ୍ରୀତି ।
ସେ ଭାବ ମନରେ ପଡ଼ିଲେ ମୋ ନେତ୍ରେ । ନାଚେ କୁନ୍ଦନ ମୂରତି ।୧।
କୋଟୀ କୋଟୀ ରାଣ ଦେଇଣ ପରାଣ । ବନ୍ଧୁକୁ ହୋଇ ଆରତି ।
କାଲିକି ଆସିବୁ ବୋଲନ୍ତେ ବୋଇଲା । ଅଟକେ ଶାଶୁ ଜଗତି ।୨।
ଆସିବା ଦିନେ ମୋ ପାଶେ ମିଳି ନେତ୍ରେ । ନୀରକୁ କଲା ଭରତି ।
ସେ ସଜ୍ଜସରୋଜଲପନା ମୋ ବିନା । ଆଉ ଥିବକି ବରତି ।୩।
ସୁରସରିତ ସନ୍ତତି ଗୌରଚନ୍ଦ୍ର । ଦ୍ୱିରଦପତି ଧରିତ୍ରୀ- ।
ପତି ପ୍ରଦେଶରେ ଦୁଃଖଭର ହୋଇ । କହିଲେ ଏହି ଭାରତି ।୪।

(୮୬)

## ରାଗ ପୁରବୀ । ଆଦିତାଳ ।

ହିତାହିତ । ନ ବୁଝି ତା ସ୍ନେହେ ହେଉ ରତ । ପଦ ।
ତେଜିଣ ମାନ ମହତ । ତା ଗୁଣେ ହେଉ ମୋହିତ । ଅପରାଧ ନିଜକୃତ ।
ଦଣ୍ଡେ ହେବୁ ବିତାଡ଼ିତ । କହେ ସତ । କି ପରି ବରତରେ ।୧।
ଘେନାଇ କହିଲେ ଶତ- ଥର ଧରି ତୋର ହାତ । ଶୁଣି ନ ହେଲୁ ପରିତ ।
ରହୁ ତୁ ଏ କି ଉଚିତ । ଯଥୋଚିତ । ନ ବିଚାରି ଚିତ୍ତରେ ।୨।

ପୁରୁଷ ଜାତିକି ଭୀତି । ନ କରି ରତି ସୀମନ୍ତୀ- । ମଣ୍ଡନ ଭୂଷା ସମ୍ପତ୍ତି ।
ବଳାଇ ତା ପ୍ରେମେ ମତି । ଗତାଗତ । ନ ଭାବୁ କିଞ୍ଚିତରେ ।୩।
ତହିଁରେ ଭ୍ରମର ରୀତି । ଶ୍ରୀ ଗୌରଚନ୍ଦ୍ରଙ୍କ ପ୍ରୀତି ।
ଲୋଡ଼ିଛୁ ଯା ରସବତି । ଜାଣିବୁ ମାରେ କି ଜାତି ।
ଅବିରତ ହେବୁ ତୁ ପୀଡ଼ିତରେ ।୪।

(୮୭)

**ରାଗ ତୋଡ଼ିପରଜ । ଏକତାଳ ।**

ରେ ସଙ୍ଗାତ । ଆଉ କି ପଚାରୁ ସୁଖ ।
ଦରଶନ ଯେବେ । ମୋର ନାହିଁ ଲବେ ।
ଶ୍ୟାମ କଳାକରମୁଖ । ପଦ ।
ଧରି ଶ୍ୟାମ କର । ବିହରୁଥିବାର । ଦ୍ୟୁମଣି ତନୟା ପାଖ ।
ନିକୁଞ୍ଜ ବନରେ । ନିପୋପବନରେ ଗଲାଣି ହେଲି ନିରେଖ ।୧।
ଶତପତ୍ର ପତ୍ର । ନିନ୍ଦେ ଯାର ନେତ୍ର । ସେ ଘନ ଗାତ୍ର ମୟୂଖ ।
ଆଜଯାଏ ମିତ୍ର । ଦେଇନାହିଁ ମାତ୍ର । ଦିନେ ସେ ଶ୍ରୀହସ୍ତ ଲେଖ ।୨।
କୈତବ ରୋମାଞ୍ଚ । ଉପପ୍ଲବ ପଞ୍ଚ । ବିଶିଖ ସେହି ମୁରୁଖ ।
ମୋ ତନୁ ଦେଶକୁ । ବିଚାରି ନାଶକୁ । କରିଅଛି ଅଦ୍ଭୁତ ଦେଖ ।୩।
ଶୁଣି ଶ୍ରୀ ଗଉର । ଚନ୍ଦ୍ର ନୃପବର । ଭଣିଲେ ହୋଇ ବିମୁଖ ।
ଦହହେମ ତନୁ । ରାଜା ବୃଷଭାନୁ । ସୁତା ରସମୟ ଦୁଃଖ ।୪।

(୮୮)

**ରାଗ ଝଙ୍କୋଟି । ଅଟତାଳ ।**

ହେମବରନି କାମ । ସମ ବିଗ୍ରହ ଶ୍ୟାମ । ପ୍ରେମକୁ ଆଜ ସରଜାଇବି କି ମା ।୦।
ମୀନବର ଈକ୍ଷଣି । ଘେନ ମୋହର ବାଣୀ । ମନକୁ ମନ ପରଜାଇବି କି ମା ।୧।
ଜୀବନ ଥିଲେ ମୋର । ନବ ରମଣୀ ତାର । ଭାବକୁ କେବେ ବରଜାଇ ବି କି ମା ।୨।
ସୁରସବତୀସହି । ମୋର ସପତ ଏହି । ସ୍ମରପ ଶରରେ ତରଜାଇବି କି ମା ।୩।
ଭାଷେ ଶ୍ରୀ ଗୌରଚନ୍ଦ୍ର । ତୋଷେ ନୃପତିଇନ୍ଦ୍ର ।
ପାଶେ ମୁ ଯାଇ ଭରଯାଇବି କି ମା ।୪।

(୮୯)

**ରାଗ ତୋଡ଼ି । ଏକତାଳ ।**

ରେ ସହି । କେହି ସେ ନବ ନାଗର ।
ଚାହିଁ ଦେବାରେ ତା ବଦନଚନ୍ଦ୍ରକୁ । ରହିଲା ନେତ୍ର ଚକୋର । ପଦ ।
ଶକ୍ରଚାପ ଭ୍ରୁରୁ ଚାରୁ ନୟନର । ଅଞ୍ଜନ ରଞ୍ଜନ ଗୁଣ ।
ବକ୍ର ଚାହାଣି ଶରେ ମାରି ନେଉଛି । ହୃଦ ହରିଣର ପ୍ରାଣ ।୧।
ନବୀନ ତମାଳତରୁଛିତ କଳେବର ନୀରଦ ତାହାର ।
ଛବି ଦେଖିଦେଲେ । ଦ୍ରବି ହୋଇଯିବେ । ପବି ଭୟେ ଗିରିବର ।୨।
ଚଳାପାଙ୍ଗୀ ମୋର ମାନସେ ମଣିଲି । ନିଶ୍ଚେ ଏ ଘନ କାଳିୟା ।
ଖେଳାଉଛି ହୃଦେ ହାର ଚପଳାକୁ । ଦେଖାଇ ଶିଖିଚୂଳିୟା ।୩।
କଟୀ ପୀତାମ୍ବର ଉପରେ କିଙ୍କିଣି । ସ୍ତନିତରେ ଦଶଦିଶ ।
ଘୋଟି ଆସି କି ମୋ ମନ ଚାତକକୁ । ଦେବ ପ୍ରେମ ଘନ ରସ ।୪।
ଏ ପରି ରମଣୀମଣି ବାଣି ଶୁଣି । ଗୋପ ନାରୀ ବର ସେହି ।
ଭୂପତି ତାରକାବୃନ୍ଦ ଚନ୍ଦ୍ର । ଗୌରଚନ୍ଦ୍ର ଗଜପତି କହି ।୫।

(୯୦)

**ରାଗ ନାଦରାଗକ୍ରିୟା । ଆଦିତାଳ ।**

କି ଘେନି ମାନସରେ । କରିଛି, ବିନାଦୋଷରେ ।
କୋପ ମୋଠାରେ । ରେ ସଜନି ।୦।
କେତେ ପରି ମୁହିଁ । କହିଲି ମନାଇ । ନ ଶୁଣିଲା ଥରେ । ତା ଶ୍ରୁତି ପଥରେ ।
ଅଶ୍ରୁ ଧାର, କରି ହାର । ବସିଲା ଗୁରୁ ଗୁମାନରେ ।୧।
ନ ଜାଣିଲି ବୋଲି । ବସନ ପ୍ରସାରି । କହିଲେ ମୁ ଯେତେ ।
ମୁଖ ମୋଡ଼ି ତେତେ । ନାରୀ ଈଶ ବହି ରୋଷ । ନ ଚାହେଁ ନେତ୍ରକୋଣେ ଥରେ ।୨।
କିଣା ଦାସ ତୋର । ମୁହିଁ ରାମାବର । ତୋ ହତାଦରରେ ।
ମାର ଶର ମାରେ । କର ତ୍ରାହି ପ୍ରାଣସହି । ବୋଲୁ ଅଧିକ ରୁଷିଲାରେ ।୩।
କରଜ ମୁନରେ । ଗାର ଧରଣୀରେ । କାଟି ନିରନ୍ତର । ଦେଲା ସେ ଅପାର ।
ଦୁଃଖ ମୋତେ । ଏବେ ଚିତ୍ତେ । ଚିନ୍ତା ଅନଳ ଜାଳିଲାରେ ।୪।

ଗଜପତି ଗୌର । ଚନ୍ଦ୍ର ଦେବ ମୋର । ଅଟେ ଗଳାହାର ।
ବୋଲି ଘୋଷିବାର । ପାସୋରିଲା ନବବାଳା ।
ଦେଖିଲେ ମୁଖ ପୋତିଲାରେ । ସଜନି ।୫।

(୯୧)

(ରାଗ ସୁରଟ । ଅଟତାଳ ।)

ସଜନି ଗୁମାନ ମୋହନ । କି ଘେନି ବହନ । କହ ମୋରେ ନାରୀ ରତନ ।୦।
ମୁ କରିନାହିଁତ ଦୋଷ । ଚାକର ଜନେ କି ରୋଷରେ ।
ପିକବଚନା ମାରେ ମରମରେ ମକର କେତନ ।୧।
ରାଜୀବ ବିଷଦ ହାସି । ମୋ ଜୀବ ତୁ ମଦାଳସିରେ ।
ସାଜି ହଂସତୁଳି ତଳପଂକୁ ଥିଲି । ତେଜି ନିକେତନ ।୨।
ଘନଜଘନି ସୁମୁଖି । ମୀନନେତ୍ରି ଥିଲି ରଖିରେ ।
ପାନ ସୁମନ ଜକ୍ଷ କର୍ଦମକୁ । ଘନ ଅପଘନ ।୩।
ପଣ୍ଡିତା ଶିରମଣ୍ଡନା । ଖଣ୍ଡିବ କେ ମୋ ବେଦନାରେ ।
ଦଣ୍ଡିଏ କୋଟୀ କଳ୍ପ ମଣିଥିଲି । ମଣ୍ଡି କୁଞ୍ଜବନ ।୪।
ଶୁଣି ଶ୍ରୀ କିଶୋରୀ ବାଣୀ । ଆଣି ଦେବି ବଂଶିପାଣିରେ ।
ଭଣିଲେ ଶ୍ରୀ ଗୌରଚନ୍ଦ୍ର ଦେବନୃପମଣି ଏବଚନ ।୫।

(୯୨)

ରାଗ ଆନନ୍ଦଭୈରବ । ଆଦିତାଳ ।

ଏ ବରଷାକାଳେ ଜୀବବନ୍ଧୁ ମୋର । ଥିବ ମୋ ପଥକୁ ଚାହିଁ ।
ସେ ବନଜନେତ୍ରୀ କେବଳ ତ ଦୁଃଖି ହେବ ଯୁଗ ସରି ନେବ ନିଶି କେହି ।୦।
ଏକାକିନୀ ଜନେ । ସେ କାମ ନୃପତି ପକାଇବାକୁ ବିପତ୍ତି । ଡକାଇଣ ସୈନ୍ୟ ।
ଥକାଇଛି ଆଣି । ଆକାଶରେ ମେଘ । ଏକା ଯେ ଚଳନ୍ତି । ଭାବନାରେ ସେ ଏହି ।
ନବ ରଥ ମଣ୍ଡାଇ । ଧବଳ ପତକା କି । ସୁବକ ପନ୍ତି ହୋଇ । ଯେ ବଉଳା ଝରା
କଦଂବ ସୁମନ ତହିଁ । କି ବନ୍ଧା ଜାତି ତ୍ରୋଣା । ସେ ବଡ଼ ଶୋଭା ପାଇ ।୧।
ପବନାଶ୍ୱଯୋଚି । ସବଳକୁ ଘେନି । ସେ ବସି ଦିଗ ବିଜେକୁ ।
ଜୀବ ଭାବି ଧରି । ଦେବ ଇନ୍ଦ୍ରଧନୁ । ଯେ ବଳେ ପ୍ରହାରି । ହାବଡ଼ା କରକାକୁ ।

ଚଉପାଶେ ଚପଳା । ଦିଉଡ଼ି ପନ୍ତି ଜଳେ । ଗାଉଛନ୍ତି ମଙ୍ଗଳ ।
ଡାହୁକ ଦ୍ୱିଜ ମେଳେ । ମୟୂର କାହାଳିକି । ଦେଉଛି ପୂଙ୍କୀ ବେଳେ ।
ଦାଉଣ୍ଡି ଭେରି ଭେକେ । ବାଉଁଛନ୍ତି ଗହଳେ ।୨।
ଅରଜୁନ ଯୋଦ୍ଧା । ସୁରମ୍ୟରେ ପୁଷ୍ପ । ଭାରତିରେତ ମଣ୍ଡନ ।
ବାର ବଧୂ ଯଥା । ଆରମ୍ଭିଛି ନୃତ୍ୟ ।
ଘୋର ଘଡ଼ଘଡ଼ି । ଗରଜଇ ଜାଣ । ସେ କରଯୋଡ଼ିଣ ।
ଶାମୁକଟି ଭାଟ ରହି । ଡାକଇ ବାରବାର । ଶଂଖ ଭ୍ରମରବାହି ।
ଶୁକଳ ଛତ୍ର ପରି । ଦେଖ ମାଳତୀ ହୋଇ ।
ଠିକ ଶିଳିନ୍ଧ କଉତୁକ ଚାମର ତହିଁ ।୩।
ରହି ଧାରା ଶର । ନେଇଁ ମାରିବାରୁ ।
ମହି ମହିଳା ରକତେ । ହୋଇ ଟୋପି ଟୋପି ।
ନୋହି ଇନ୍ଦ୍ରଗୋପ । ତ୍ରାହି ହେବା ଦିଶୁନାହିଁ ବୁଦ୍ଧିମୋତେ ।
କେତକୀ ତ ଆବର । କୁନ୍ତମୁନ ଦେଖାଇ । କାତର କରାଉଛି ।
ସେତ ଶିରିଶ ଦେହି । ଚିତ୍ତରେ ଭାବୁଥିବ । କାନ୍ତ ବିହୁନେ ମୁହିଁ
ପାତ୍ରର ହେଲି ମାର ହାତ ପ୍ରହାର ସହି ।୪।
ଭୀଷ୍ମଙ୍କର ମାତା । ବଂଶ କ୍ଷୀରୋଧିରେ । ଔଷଧୀଶ ପ୍ରକାଶିତ ।
ତୋଷ ଏ ପାରଳା । ଦେଶ ଜନ ହୃଦ । ଦେଶ କୁମୁଦ ବିକାଶକର ସେତ ।
ଧୀରଙ୍କ ଶିଖାମଣି । ବୀର ଶ୍ରୀଗଜପତି 'ଗୌରଚନ୍ଦ୍ର ନୃପତି ।
ବର ମାନସେ ଚିନ୍ତି । ପରବାସ ତେଜି । ସତ୍ୱର ନାଗରୀ କତି ।
ପରବେଶି ହରିଲେ ସ୍ମର କଦନତତି ।୫।

(୯୩)

**ରାଗ ହିନ୍ଦୁସ୍ଥାନି ଭୈରବୀ । ଏକତାଳ ।**

ତୋବିନା ନବୀନାରେ । କେ ଜାଣେ ତା ହୃଦ ବେଦନା । ପଦ ।
ଧରିଛି ଜୀବ ସିନା । କରି ତୋ ପୀରତି କାମନା ।୧।
ରେ ବୀଣାବାଣୀ ଜିଣା । ଦାସଠାରେ କର କରୁଣା ।୨।
ଏଣିକିରେ ସୁମନା । ତା ଠାରେ ନ ହୁଅ ବିମନା ।୩।
କରନା ପର ପରି । ଗୌରଚନ୍ଦ୍ର ଦେବଙ୍କୁ ଅନା ।୪।

(୯୪)

**ରାଗ ଝଞ୍ଜୋଟି । ଚଉତାଳ**

ହେଲାନି ଲଜ୍ଜା ସହି କହନା ତୁହି ଯା ।୦।

ଯାହା ହେଲେ ତ ହେଉ । ଅଣ୍ଟିଲାନି ଆଉ । ତାର ପ୍ରୀତି ନ ସରଜା ।୧।

ଯାର ଚାଲି ଚଳଣୀ । ଠକାଠକି ବାଣୀ । ଭେଦିଛି ମୋହର ମଜ୍ଜା ।୨।

ଥିଲେ ତୋହର ଚିତ୍ତେ । ରତିପତି ହାତେ । ଏଥର ପଛେ ତରଜା ।୩।

ଶ୍ରୀ ଗୌରଚନ୍ଦ୍ର ଦେବ । ପୀରତି ବିଭବ । କଥା ତୁ ପକାଉଛୁ ଯା ।୪।

(୯୫)

**ରାଗ ଖମାଚ । ଏକତାଳ ।**

ଯାହା ଇଚ୍ଛା ତାହା କର ସଖି ତୋ ଧରମରେ ।

ବୁଲି ନ ପାରଇ ଆଉ ବରଜି ସରମରେ ।୦।

ଚିର ପରିଚିତ ବୋଲି । କରି ପରତେ ଛଇଲି ।

କହିଥିଲି ସିନା ତୋତେ ଫିଟାଇ ମରମରେ ।୧।

ଅନୁସରି ସନ୍ତତରେ । ତନୁ ସଡ଼ିଗଲାଠାରେ ।

ହେଲା ନାହିଁ ଯଦି ଲବେ ତୋଚିତ୍ତ ନରମରେ ।୨।

ଛାତିକି କରି ପାଷାଣ । ଯେତେ ମାନ ଅପମାନ ।

ପକାଇ ଦେଲିଣି ନେଇଁ ସବୁ ମୁ ଚରମରେ ।୩।

କାହାକୁ ବୋଲିବି କିସ । ଆପେ ଅରଜିବା ଦୋଷ ।

ପଡ଼ିଗଲିନିତ ଶ୍ରୀଗୌରଚନ୍ଦ୍ର ଭରମରେ ।୪।

(୯୬)

**ରାଗ ଆନନ୍ଦଭୈରବୀ । ଆଦିତାଳ ।**

ଆନ ମନରେ ନ ଘେନ ନବୀନା ମାନସେ ତୋର ଅଧୀନ ।

ଆନ ଅଛି ମୋର ଆନନକୁ ଟେକ କାନ୍ତ ସନ୍ନିଧିକି କର ଗମନ । ପଦ ।

ଗଣବଣାଏଣୀଲୋଚନି ଜାଣି ନ ଜାଣିଲା ପରି ହେଉ ।

ରଣ ରଣ ଶାଣ ବାଣ ଗଣରେ ଅକାରଣେ ତୁ ତାକୁ ଦୁଃଖ ଦେଉ ।

ଧରି ଏଡ଼େ ବିଗୁଣ । ବାରୀ ପୂର୍ଣ୍ଣ ନୟନ । ଧରିତ୍ରୀରେ ପାତନ ।

କରି ତୁ ଅନୁକ୍ଷଣ । ବାରୀଜାକ୍ଷି ଜଣାଣ । କରିଲେ ପୁନଃପୁନଃ ।
ସରି କରି ଏଣିକି ଥରେ ନଚାହୁଁ ଧନ ।୧।
ରଖ ମୋର ଗୀର ମୁଖ ନିଶାକର ନ କର ସଖି ମ୍ଳାନ ।
ଦେଖ ଅଭିସାରୀପକ୍ଷେ କୃଷ୍ଣପକ୍ଷ କରେ ଅଲେଖ ସୁଖ ପ୍ରଦାନ ।
ଚର ଅଚର ବସା । ନୀର ମେଖଳାରସା । ସୁରସା ଜୀବ ଭୂଷା ।
ସରଧାରେ ଏ ନିଶା । ଗରଳ ମିଶା ନିଶା । ସାର ପାନେ ଏ ଦଶା ।
ନିରତେ ଅନୁଭୋଗି କରିଛି କି ଶୟନ ।୨।
ଯୋଗୀ ପରି ଜଗିଅଛି ତୋରି ସରାଗୀ କରି ତୋହର ଧିଆନ ।
ରାଗି ନୁହ ସତେ ମାଗି ଘେନେ ତୋତେ ଥରେ ହେଲେ ରଖ ମୋ ବଚନ ।
ପିନ୍ଧି ସୁନୀଳ ଚେଳ । ବାନ୍ଧି ଘନ କୁନ୍ତଳ । ସନ୍ଧି ମୁକୁତା ଜାଳ । ଛନ୍ଦି କୁଚ ଯୁଗଳ ।
ନିନ୍ଦି ରସିକାକୁଳ । ବିନ୍ଧି ଅପାଙ୍ଗ ଶର । ବନ୍ଦୀ କର ମାରକୁ କରୁ ମଙ୍ଗଳ ଗାନ ।୩।
ହରପର ହାତେ ହରବର ଯେତେ ପାଇ ପୁଣ୍ଡରୀକ ଲପନି ।
ନିରଜନେ ରହି ତୋର ପଥ ଚାହିଁ ବସିଅଛି ସେ ସୁଷମାନନୀ ।
ପାରଳା ମହୀଶ୍ବର । ଧୀରବର ସୁନ୍ଦର । ସାର ଗୁଣ ଆକର । । ନିରତ କ୍ଷମାପର ।
ମାର କଦନ ହର । ସୁରସିକ ଶେଖର । ବୀର ଶ୍ରୀ ଗୌରଚନ୍ଦ୍ର ଗଜପତି ସୁଜାଣ ।୪।

(୯୭)

ରାଗ ବେହାଗ । ଏକତାଳ ।

ଦେଉଛୁ ଦଣ୍ଡ ମୋତେ । ସୁନ୍ଦରୀମଣି ସତେ ।
କି ଦୋଷ କଲି କହ ? କୋପ ବହି ତୁ ଚିତ୍ତେ । ପଦ ।
କର ଧରି ତୋହର । କହିଲେ କେତେ ଥର ।
ନ ଚାହିଁ ସହି ଥରେ । ଏବେ ତୁ ମାର ହାତେ । ୧।
ତୋବିନା ଏ ଜୀବନ । ଅଟଇ ଅକାରଣ ।
ନ କରୁ ତୁ ଉଦ୍ଧାର । ଜାଣି ଜାଣି ସନ୍ତତେ ।୨।
କା ଖଚ ବାଣୀ ଶୁଣି । ମାନେ ହୋଇ ମଉନି ।
ମୋର ବିନୟ ବାଣୀ । ନ ଶୁଣି କଦାଚିତ୍ତେ ।୩।
ଗୌରଚନ୍ଦ୍ର ଭୂପତି । ବୋଲୁ ତୋର ସମ୍ପତ୍ତି ।
ସେ ଭାବ ଗଲା କେଣେ । ନ ବିଚାରି କିଞ୍ଚିତେ ।୪।

(୯୮)

### ରାଗ ସାବେରୀ । ଆଦିତାଳ ।

ଏହିପରି ସ୍ନେହ କରି ଥିଲେ ତ ସରି ।୦।
ଅଳପ ଦୋଷକୁ ଘେନି । ହୋଇ ଗୁରୁ ଅଭିମାନୀ । ହସାଉଥିବ ବଇରି ।୧।
କରୁଣା ଲବେ ନୋହିବ । ତନୁ ସଢ଼ି ଯାଉଥିବ । ଅବିରତେ ଅନୁସରି ।୨।
ପଥ ଜଗି ବସିଥିବ । ଦେଖି ଆଡ଼ ହୋଇଯିବ । ଶ୍ରୀମୁଖ ମଳିନ କରି ।୩।
ଭାଷେ ଗଜପତି ଦେବ । କ୍ଷମା ଥରେତ ନୋହିବ । କାଳ ଯାକ ଶିଶୁସରି ।୪।

(୯୯)

### ରାଗ ଆନନ୍ଦ ଭୈରବ । ରୂପକତାଳ ।

ଆସ ସକଳ ଭ୍ରାତୃ ବୃନ୍ଦ କର ସ୍ମରଣ । ସତ୍ୟକାମ ନିତ୍ୟରୂପ ପଦ୍ମଚରଣ । ପଦ ।
ଚନ୍ଦ୍ରତାରା ଗ୍ରହ ଧରା ସହସ୍ରକିରଣ । ବାୟୁ ନୀର କି ଅଗ୍ନିର ଆଦିକାରଣ ।୧।
ଏକ ମାତ୍ର ପ୍ରାଣସଖା ବିପଦବାରଣ । ଭକ୍ତି ପ୍ରେମେ ଧ୍ୟାନ କର ପାପହରଣ ।୨।
ପାପେ ବୁଡ଼ି ଦୁଃଖେ ସଢ଼ି ମର ଅକାରଣ । ଯାର ଧ୍ୟାନ କଲେ ଜାଣ ମରିବ ମରଣ ।୩।
ଭାଷେ ଗୌରଚନ୍ଦ୍ର ଦେବ ସେ ଲୋକଶରଣ୍ୟ । ଗତି ମୁକ୍ତି ଦେଇ ରଖିବେ ଭବତାରଣ ।୪।

●

# ପଦ୍ମନାଭ ନାରାୟଣ ଦେବ

**ପିତା :** ପ୍ରତାପରୁଦ୍ର ଗଜପତି ନାରାୟଣ ଦେବ

ମାତା : କୃଷ୍ଣପ୍ରିୟା ଦେବୀ

**ଜନ୍ମସ୍ଥାନ :** ପାରଳାଖେମୁଣ୍ଡି

**୧୮୭୨, ଡିସେମ୍ବର'୧୫** - ଜନ୍ମ

୧୮୭୯ - ବିଦ୍ୟାରମ୍ଭ (ରାଧାକୃଷ୍ଣ ଗୁରୁ ଓ ଗୁରୁଦନ୍ତି ଚେଲମୟା ଶାସ୍ତ୍ରୀଙ୍କଠାରୁ ଓଡ଼ିଆ ଓ ତେଲୁଗୁ ଶିକ୍ଷା)

୧୮୮୧ - ଖଲ୍ଲିକୋଟ, ଧରାକୋଟ, ସାନଖେମୁଣ୍ଡି, ଜରଡ଼ା ରାଜକୁମାର ଓ ନିଜ ଭ୍ରାତା ଜଗନ୍ନାଥ ଦେବଙ୍କ ସହ ପାରଳାଖେମୁଣ୍ଡି ରାଜକୁମାର ପାଠଶାଳାରେ ବିଦ୍ୟାର୍ଜନ । ପଦ୍ମନାଭ ପରୀକ୍ଷା, ରାଜାନ୍ନା ପଣ୍ଡିତ, ଉଇଲିୟମ୍ ଟେଲର୍‌ଙ୍କଠାରୁ ଓଡ଼ିଆ, ତେଲୁଗୁ ଓ ଇଂରାଜୀ ଶିକ୍ଷା ।

୧୮୮୬ - ସଂଗୀତ ଶିକ୍ଷକ ଦାମୋଦର ପାଠୀଙ୍କଠାରୁ ସଂଗୀତ ଓ ବେହେଲା ବାଦନ, ମୃଦଙ୍ଗରାୟ ଲକ୍ଷ୍ମନଙ୍କଠାରୁ ମୃଦଙ୍ଗ ଶିକ୍ଷା ।

୧୮୮୯ - ପ୍ରବଳ ଜ୍ୱରରେ ଆକ୍ରାନ୍ତ । ତୃତୀୟ ଭ୍ରାତା ଜଗନ୍ନାଥ ନାରାୟଣ ଦେବଙ୍କ ଆତ୍ମହତ୍ୟା ।

୧୮୯୦ - କୋର୍ଟ ଅଫ୍ ୱାର୍ଡସ୍‌ଙ୍କ ଠାରୁ ଅଗ୍ରଜ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ପାରଳା ରାଜ୍ୟଭାର ଗ୍ରହଣ ।

- ରାଜକୁମାର ପାଠଶାଳା ବନ୍ଦ ।

| | |
|---|---|
| | ପାରଳା କଲେଜ ଅଧ୍ୟାପକ ଗିଡୁଗୁ ଭେଙ୍କଟ ରାମମୂର୍ତ୍ତିଙ୍କଠାରୁ ଇଂରାଜୀ ଶିକ୍ଷା । |
| | ମହାପାତ୍ର ପୁରୁଷୋତ୍ତମ ପଟ୍ଟନାୟକଙ୍କଠାରୁ ଅମରକୋଷ, ଭଂଜ ସାହିତ୍ୟ ଓ ଅନ୍ୟାନ୍ୟ ରୀତିକାବ୍ୟ ଶିକ୍ଷା । |
| | - ପାରଳା କଲେଜର ବିଜ୍ଞାନ ଶିକ୍ଷକ ଶ୍ରୀନିବାସ ରାଓ ଓ ସେମନପଲ୍ଲୀ ରାମେୟାଙ୍କଠାରୁ ପଦାର୍ଥ ବିଜ୍ଞାନ ଓ ରସାୟନ ବିଜ୍ଞାନ ସମ୍ପର୍କରେ ଜ୍ଞାନ ଆହରଣ । |
| ୧୮୯୨ | - ଶ୍ୟାମସୁନ୍ଦର ରାଜଗୁରୁ ବି.ଏ.ଙ୍କ ଠାରୁ ଇଂରାଜୀ ବ୍ୟାକରଣ ଓ ସାହିତ୍ୟ, ଗଣିତ ଓ ଜ୍ୟାମିତି; ଶରୀରତତ୍ତ୍ୱ ଓ ଦର୍ଶନ ଶାସ୍ତ୍ର ଅଧ୍ୟୟନ । |
| ୧୮୯୩ | - ଶ୍ୟାମସୁନ୍ଦର ରାଜଗୁରୁ, ଡଃ. କୁପାଡ଼ା ଜଗନ୍ନାଥ ରାଓ, କୃଷ୍ଣଚନ୍ଦ୍ର ରାୟ ଓ ପରିକରଙ୍କ ସମଭିବ୍ୟାହାରରେ ଭାରତ ଭ୍ରମଣ । ମାନ୍ଦ୍ରାଜ, ବମ୍ବେ, ବରୋଦା, ଦିଲ୍ଲୀ, ଅଯୋଧ୍ୟା, ଜୟପୁର, ମଥୁରା ବୃନ୍ଦାବନ, ଆଗ୍ରା, ବାରଣାସୀ, କଲିକତାରେ ଦର୍ଶନୀୟ ସ୍ଥାନ ଅବଲୋକନ । |
| | - କଲିକତାରେ ଇଂରାଜୀ ଥିଏଟରରେ ନାଟ୍ୟାଭିନୟ ଦର୍ଶନ ଓ ପାରଳାରେ ପ୍ରେସ ସ୍ଥାପନାର୍ଥେ ଓଡ଼ିଆ ଅକ୍ଷର କ୍ରୟ । |
| ୧୮୯୪, ମାର୍ଚ୍ଚ-୧ | - ଭାରତ ଭ୍ରମଣରୁ ପାରଳା ପ୍ରତ୍ୟାବର୍ତ୍ତନ । ପାରଳାରେ ଅଭ୍ୟର୍ଥନା । |
| ୧୮୯୪, ଡିସେମ୍ବର | - ଭାରତୀୟ ଜାତୀୟ କଂଗ୍ରେସ ଅଧିବେଶନରେ ଯୋଗଦାନପାଇଁ ମାନ୍ଦ୍ରାଜ ଯାତ୍ରା - ମାତାଙ୍କ ଅସୁସ୍ଥତା ସଂବାଦରେ ପ୍ରତ୍ୟାବର୍ତ୍ତନ । |
| ୧୮୯୫, ଫେବୃୟାରୀ | - ମାତୃବିୟୋଗ । |
| ୧୮୯୫, ମେ | - ସମ୍ବଲପୁର ଜିଲ୍ଲାନ୍ତର୍ଗତ ଚକୁଲି ଗ୍ରାମ ହୟବଂଶର ସର୍ଦ୍ଦାର ସିଂହଙ୍କ କନ୍ୟାସହ ବିବାହ । |

| | |
|---|---|
| ୧୮୯୫, ଡିସେମ୍ବର | - ଭାରତୀୟ ଜାତୀୟ କଂଗ୍ରେସ ଅଧିବେଶନରେ (ପୁନା) ଯୋଗଦାନ (ଶ୍ୟାମସୁନ୍ଦର ରାଜଗୁରୁ, ଦ୍ୱୈପାୟନ ରାଓ, ଅପର୍ଣ୍ଣା ପଣ୍ଡା, ଖୁଦୁତାସୁର ଦୁର୍ଗରାଜ ସିଂହ, ଅପନ୍ନା ପରିଚ୍ଛା ପ୍ରଭୃତିଙ୍କ ସହ) ଓ ବମ୍ବେ ଭ୍ରମଣ । |
| ୧୮୯୬, ଜୁନ୍ | - ଶ୍ରୀକାକୁଲମ୍ ଟାଉନ୍‌ହଲ ବାର୍ଷିକ ଅଧିବେଶନରେ ସଭାପତିତ୍ୱ-ଇଂରାଜୀ ଅଭିଭାଷଣ ପ୍ରଦାନ । |
| | ଗଜପତି ପ୍ରେସ୍ ପ୍ରତିଷ୍ଠା ଓ ଦି ଗଞ୍ଜାମ ନିୟୁଜ ପତ୍ରିକା ପ୍ରକାଶନ । |
| ୧୮୯୭, ଡିସେମ୍ବର | - ଅନୁଚର ବର୍ଗଙ୍କ ସହ ଭାରତୀୟ ଜାତୀୟ କଂଗ୍ରେସ ଅଧିବେଶନ (ଅମରାବତୀ)ରେ ଯୋଗଦାନ । କାର୍ଯ୍ୟ ନିର୍ବାହିକା ସମିତିକୁ ସେ ଓ ଶ୍ୟାମସୁନ୍ଦର ରାଜଗୁରୁ ମନୋନୀତ । |
| ୧୮୯୮ | - 'ତାଲ ସର୍ବସାର ସଂଗ୍ରହ' ସଂକଳନ ଓ ପ୍ରକାଶନ । |
| ୧୮୯୯ | - 'ଗୀତସ୍ତବକ' ପ୍ରକାଶନ । ରକ୍ତପୀତ ରୋଗରେ ଆକ୍ରାନ୍ତ । ଅନ୍ତସତ୍ତ୍ୱା ସ୍ତ୍ରୀ ରୋଗାକ୍ରାନ୍ତ । |
| | - ପ୍ଲେଗ୍ ମହାମାରୀ ସମ୍ପର୍କୀୟ ପୁସ୍ତିକା ପ୍ରକାଶନ ଓ ବିତରଣ । |
| ୧୯୦୦ | - 'ରାଧାଗୋବିନ୍ଦ ଜଣାଣ' ପୁସ୍ତିକା ପ୍ରକାଶନ । |
| | - ପଦ୍ମନାଭ ରଙ୍ଗାଳୟର ଜନ୍ମ । |
| ୧୯୦୦,ଜୁଲାଇ-୧୯ | - ପଞ୍ଚମ ପୁତ୍ର ସନ୍ତାନ ଜନ୍ମ । ନବଜନ୍ମିତ ପୁତ୍ରସହ ସ୍ତ୍ରୀଙ୍କ ମୃତ୍ୟୁ । |
| ୧୯୦୧ | - 'ଶ୍ରୀ ସଂଗୀତ ପ୍ରହ୍ଲାଦ ନାଟକ' ରଚନା, ରଙ୍ଗାଳୟରେ ଅଭିନୟ ଓ ଗଜପତି ପ୍ରେସ୍‌ରେ ମୁଦ୍ରଣ । |
| | - 'ଚନ୍ଦ୍ରାବତୀ ସ୍ୱୟଂବର'ର ରଚନା ଓ ଅଭିନୟ । |
| | - 'ବାଣ ଦର୍ପଦଳନ ନାଟକ'ର ରଚନା, ଅଭିନୟ ଓ ମୁଦ୍ରଣ । |

| | |
|---|---|
| ୧୯୦୨ | - 'ଅହଲ୍ୟାଶାପ ଓ ବିମୋଚନ' ନାଟକ ରଚନା, ଅଭିନୟ ଓ ମୁଦ୍ରଣ । |
| | - ଦ୍ୱିତୀୟ ବିବାହ । |
| | - 'ତାରକ ସଂହାର' ରଚନା ଓ ଅଭିନୟ । 'ଦାନ ପରୀକ୍ଷା ନାଟକ' ରଚନା, ଅଭିନୟ ଓ ମୁଦ୍ରଣ । |
| ୧୯୦୩, ଅଗଷ୍ଟ | - ରୋଗାକ୍ରାନ୍ତ । |
| ଅକ୍ଟୋବର | - ଚିକିତ୍ସାପାଇଁ କଲିକତା ଯାତ୍ରା । |
| ଡିସେମ୍ବର-୧୪ | - ଚିକିତ୍ସାପାଇଁ ମାନ୍ଦ୍ରାଜ ଯାତ୍ରା । |
| ୧୯୦୪, ଜାନୁୟାରୀ-୧୮ | - ପାରଳା ପ୍ରତ୍ୟାବର୍ତ୍ତନ । |
| ଫେବୃୟାରୀ-୪ | - ଦୀପ ନିର୍ବାଣ । |

●

